# ମହାଭାରତ

ଆଶ୍ୱମେଧିକ ପର୍ବ, ଆଶ୍ରମବାସିକ ପର୍ବ,
ମୌଷଳ ପର୍ବ, ମହାପ୍ରାସ୍ଥାନକ ପର୍ବ,
ସ୍ୱର୍ଗାରୋହଣ ପର୍ବ




ଗୋବିନ୍ଦଚନ୍ଦ୍ର ମହାପାତ୍ର

Digitized by srujanika@gmail.com

# ପର୍ବ ସୂଚୀ



——0——

Digitized by srujanika@gmail.com

# ବିଷୟ ସୂଚୀ

## ଆଶ୍ୱମେଧିକ ପର୍ବ



Digitized by srujanika@gmail.com

Digitized by srujanika@gmail.com

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|


Digitized by srujanika@gmail.com

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|
| ୭୭ । | ସୈନ୍ଧବ ଯୁଦ୍ଧ | ୨୧୪ |
| ୭୮ । | ସୈନ୍ଧବ ପରାଜୟ | ୨୧୮ |
| ୭୯ । | ଅର୍ଜ୍ଜୁନ-ବଭ୍ରୁବାହନ ଯୁଦ୍ଧ | ୨୨୨ |
| ୮୦ । | ଅର୍ଜ୍ଜୁନ ପ୍ରତ୍ୟୁଜ୍ଜୀବନ | ୨୨୬ |
| ୮୧ । | ଉଲୂପୀ-ଅର୍ଜ୍ଜୁନ ସଂବାଦ | ୨୩୩ |
| ୮୨ । | ମଗଧରାଜ ପରାଜୟ ... ... | ୨୩୬ |
| ୮୩ । | ଗାନ୍ଧାରଦେଶ ପ୍ରବେଶ | ୨୪୦ |
| ୮୪ । | ଶକୁନିପୁତ୍ରର ପରାଜୟ ... | ୨୪୨ |
| ୮୫ । | ଯଜ୍ଞର ଆୟୋଜନ | ୨୪୪ |
| ୮୬ । | ଅର୍ଜ୍ଜୁନଙ୍କ କଥନ | ୨୪୮ |
| ୮୭ । | ବଭ୍ରୁବାହନର ଆଗମନ | ୨୫୦ |
| ୮୮ । | ଅଶ୍ୱମେଧ ଯଜ୍ଞାରମ୍ଭ | ୨୫୨ |
| ୮୯ । | ଅଶ୍ୱମେଧ ସମାପ୍ତି | ୨୫୬ |
| ୯୦ । | ନକୁଲ ଉପାଖ୍ୟାନ | ୨୬୦ |
| ୯୧ । | ହିଂସାମିଶ୍ରିତ ଧର୍ମନିନ୍ଦା ... | ୨୬୩ |
| ୯୨ । | ବୈଷ୍ଣବଧର୍ମ ... | ୨୬୬ |

## ଆଶ୍ରମବାସିକ ପର୍ବ

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|
| ୧ । | ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ସେବା | ୨୮୫ |
| ୨ । | ପାଣ୍ଡବଙ୍କ ଅନୁକୂଳ ବ୍ୟବହାର | ୨୮୭ |
| ୩ । | ଧୃତରାଷ୍ଟ୍ର-ନିର୍ବେଦ ... | ୨୯୦ |
| ୪ । | ବ୍ୟାସଙ୍କ ଅନୁଜ୍ଞା ... | ୨୯୪ |
| ୫ । | ଧୃତରାଷ୍ଟ୍ରଙ୍କ ଉପଦେଶ ... | ୩୦୧ |
| ୬ । | ରାଜନୀତି ଉପଦେଶ ... | ୩୦୫ |
| ୭ । | ରାଜନୀତି ଉପଦେଶ ... | ୩୦୭ |

Digitized by srujanika@gmail.com

| ଅଧ୍ୟାୟ | ବିଷୟ | | | ପୃଷ୍ଠା |
|---|---|---|---|---|


Digitized by srujanika@gmail.com

## ମୌଷଳ ପର୍ବ



## ମହାପ୍ରାସ୍ଥାନିକ ପର୍ବ



Digitized by srujanika@gmail.com

## ସ୍ୱର୍ଗାରୋହଣ ପର୍ବ





Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

ନାରାୟଣ ନରୋତ୍ତମ ନର ଓ ସରସ୍ୱତୀ ଦେବୀଙ୍କୁ ନମସ୍କାର ପୂର୍ବକ ଜୟ ନାମକ ଗ୍ରନ୍ଥକୁ କୀର୍ତ୍ତନ କରିବ ।

ବୈଶମ୍ପାୟନ କହିଲେ, ହେ ମହାରାଜ ! ତଦନନ୍ତର ଧୃତରାଷ୍ଟ୍ର ଭୀଷ୍ମଦେବଙ୍କ ଉଦ୍ଦେଶ୍ୟରେ ତର୍ପଣ ପ୍ରଭୃତି କାର୍ଯ୍ୟ ନିର୍ବାହ କଲେ । ୧ ।

ମହାବାହୁ ମହାବୀର ଜୟ ଯୁଧିଷ୍ଠିର ରାଜା ଧୃତରାଷ୍ଟ୍ରଙ୍କୁ ଅଗ୍ରବର୍ତ୍ତୀ କରି ବ୍ୟାକୁଳିତ ଚିତ୍ତରେ ଗଙ୍ଗାଗର୍ଭରୁ ତୀରକୁ ଉତ୍ତୀର୍ଣ୍ଣ ହେଲେ । ୨ । ସେହି ମହାବାହୁ ବାଷ୍ପାକୁଳ ଲୋଚନରେ ଗଙ୍ଗାରୁ ତୀରକୁ ଉତ୍ତୀର୍ଣ୍ଣ ହୋଇ ବ୍ୟାଧ ମାତଙ୍ଗ ସଦୃଶ ଭୂତଳରେ ନିପତିତ ହେଲେ । ୩ ।

ତେତେବେଳେ ଭୀଷ୍ମ କୃଷ୍ଣଙ୍କ ଆଦେଶାନୁସାରେ ତତ୍କ୍ଷଣାତ୍ ସେହି ଅବସନ୍ନ ଯୁଧିଷ୍ଠିରଙ୍କୁ ଗ୍ରହଣକଲେ ଏବଂ ପରଲଂଘନକାରୀ କୃଷ୍ଣ "ମହାରାଜ ! ଆପଣ ଅଧୀର ହୁଅନ୍ତୁ ନାହିଁ" ଏହା କହି ଯୁଧିଷ୍ଠିରଙ୍କୁ ଆଶ୍ୱାସ ପ୍ରଦାନ କଲେ । ୪ ।

ହେ ରାଜନ୍ ! ଏତତ୍ସମୟରେ ପାଣ୍ଡବ ଓ ପାର୍ଥିବଗଣ ସେହି ରାଜା ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଭୂତଳଶାୟୀ, ଶୋକାର୍ତ୍ତ, ଦୀନଚିତ୍ତ, ଜ୍ଞାନବିରହିତ ଓ ଘନ ଘନ ଦୀର୍ଘନିଃଶ୍ୱାସ ପରିତ୍ୟାଗ କରିବାର ଦର୍ଶନ କରି ଅତିଶୟ ଶୋକାକୁଳ ଚିତ୍ତରେ ଭୂତଳରେ ଉପବେଶନ କଲେ । ୬ ।

ସେହି ସମୟରେ ପୁତ୍ରଶୋକସନ୍ତପ୍ତ ପ୍ରଜ୍ଞାଚକ୍ଷୁ ମହାବୃଦ୍ଧ ରାଜା ଧୃତରାଷ୍ଟ୍ର ନରନାଥ ଯୁଧିଷ୍ଠିରଙ୍କୁ କହିଲେ । ୭ । ହେ କୁରୁଶାର୍ଦ୍ଦୂଳ କୌନ୍ତେୟ ! ତୁମ୍ଭେ ଏତେବେଳେ ଭୂଶଯ୍ୟାରୁ ଉତ୍ଥିତ ହୋଇ କର୍ତ୍ତବ୍ୟ କାର୍ଯ୍ୟର ଅନୁଷ୍ଠାନ କରିବାକୁ ଯତ୍ନଶୀଳ ହୁଅ । ତୁମ୍ଭେ କ୍ଷତ୍ରିୟଧର୍ମାନୁସାରେ ବୀରଗଣଙ୍କୁ

Digitized by srujanika@gmail.com

ପରାଜିତ କରି ଏହି ପୃଥିବୀକୁ ଲାଭ କରିଅଛ । ୮ । ଅତଏବ, ହେ ଧାର୍ମିକ-ପ୍ରବର ! ତୁମ୍ଭେ ବନ୍ଧୁବର୍ଗଙ୍କ ସହିତ ଏହି ପୃଥିବୀ ଭୋଗକର । ସମ୍ପ୍ରତି ଶୋକ କରିବାର ଉଚିତ ନୁହେ । କାରଣ, ତୁମ୍ଭର ଶୋକ କରିବାର କୌଣସି କାରଣ ଦେଖୁନାହୁଁ । ୯ ।

ହେ ମହୀପତେ ! ଯେଉଁ ଦୁହିଙ୍କର ସ୍ୱପ୍ନଲବ୍ଧଧନ ସଦୃଶ ଶତପୁତ୍ର ନଷ୍ଟ ହୋଇଛନ୍ତି, ସେହି ଗାନ୍ଧାରୀ ଏବଂ ଆମ୍ଭର ଶୋକ କରିବାର ଉଚିତ ଅଟେ । ୧୦ । ଆମ୍ଭେ ପୂର୍ବେ ଦୁର୍ବୁଦ୍ଧିବଶରୁ ମହାତ୍ମା ହିତୈଷୀ ବିଦୁରଙ୍କର ସୁମହତ୍ ଅର୍ଥଯୁକ୍ତ ବାକ୍ୟସମୂହ ଶ୍ରବଣ ନକରି ଏହିପରି ପରିତାପ କରୁଅଛୁ । ୧୧ । ଦିବ୍ୟଦର୍ଶୀ ମହାତ୍ମା ବିଦୁର ଆମ୍ଭଙ୍କୁ କହିଥିଲେ— ମହାରାଜ ! ଦୁର୍ଯ୍ୟୋଧନଙ୍କ ଅପରାଧରେ ଆପଣଙ୍କର କୁଳ ବିନଷ୍ଟ ହେବ ।୧୨। ହେ ରାଜନ୍ ! ଯଦି ଆପଣ ନିଜର ମଙ୍ଗଳ ଇଚ୍ଛା କରନ୍ତି, ତେବେ ଆମ୍ଭ ବାକ୍ୟ ଅନୁସାରେ ଏହି ଦୁଷ୍ଟାତ୍ମା ମନ୍ଦମତି ରାଜା ଦୁର୍ଯ୍ୟୋଧନଙ୍କୁ ପରିତ୍ୟାଗ କରନ୍ତୁ । ୧୩ । ଏବଂ ଯେଉଁ ଉପାୟଦ୍ୱାରା କର୍ଣ୍ଣ ଓ ଶକୁନିଙ୍କର ସୁଯୋଧନଙ୍କ ସହିତ ସାକ୍ଷାତ ନହୁଏ, ଏବଂ ଅପ୍ରମାଦରେ ଏହିମାନଙ୍କ ଦ୍ୟୂତକ୍ରିୟା ନିବାରିତ ହୁଏ, ତାହାର ପ୍ରତିବିଧାନ କରନ୍ତୁ । ୧୪ । ହେ ରାଜା ! ଧର୍ମାତ୍ମା ଯୁଧିଷ୍ଠିରଙ୍କୁ ରାଜ୍ୟରେ ଅଭିଷିକ୍ତ କରିବା ହେଉନ୍ତୁ । ସେହି ଜିତେନ୍ଦ୍ରିୟ ଧର୍ମନନ୍ଦନ ରାଜ୍ୟରେ ଅଭିଷିକ୍ତ ହେଲେ ଧର୍ମାନୁସାରେ ଏହି ପୃଥିବୀ ପାଳନ କରିବେ । ୧୫ । ଅଥବା, ଯଦି ସେହି କୁନ୍ତୀନନ୍ଦନଙ୍କୁ ରାଜ୍ୟରେ ଅଭିଷିକ୍ତ କରିବାକୁ ଆପଣଙ୍କର ଉତ୍ତମରୂପେ ଇଚ୍ଛା ହେଉନାହିଁ, ତେବେ ମଧ୍ୟସ୍ଥ ହୋଇ ସ୍ୱୟଂ ରାଜ୍ୟଭାର ଗ୍ରହଣ କରିବା ହେଉନ୍ତୁ । ହେ ଜ୍ଞାତିବର୍ଦ୍ଧନ ନରନାଥ ! ଆପଣ ସର୍ବଭୂତରେ ସମାନଭାବରେ ବିଦ୍ୟମାନ ଥାଇ, ଭ୍ରାତାମାନଙ୍କ ସହିତ ରାଜ୍ୟପାଳନ କଲେ, ସମସ୍ତ ଜ୍ଞାତିଗଣ ଆପଣଙ୍କୁ ଆଶ୍ରୟକରି ଜୀବିକା ନିର୍ବାହ କରିବେ । ୧୬ ।

ହେ କୁନ୍ତୀନନ୍ଦନ ! ଦୀର୍ଘଦର୍ଶୀ ମହାତ୍ମା ବିଦୁର ଏହିପରି କହିଲେ । ସୁଧୀ ! ଆମ୍ଭେ ଦୁର୍ବୁଦ୍ଧି ବଶତଃ ତଦୀୟ ବାକ୍ୟ ଶ୍ରବଣ ନକରି ପାପାତ୍ମା ଦୁର୍ଯ୍ୟୋଧନଙ୍କର ବଶବର୍ତ୍ତୀ ହୋଇଥିଲୁ । ସେହି ଦୀର୍ଘଦର୍ଶୀ ବିଦୁରଙ୍କ ହିତକର ବାକ୍ୟସମୂହ ଅବହେଳା କରିବାରୁ ଏହି ମହଦ୍ଦୁଃଖ ଫଳ ଲାଭକରି

Digitized by srujanika@gmail.com

ଶୋକସାଗରରେ ନିମଗ୍ନ ହୋଇ ରହିଅଛୁ । ୧୯ । ହେ ଜନାଧିପ ! ତୁମ୍ଭେ ସେହି ଦୁଃଖୀ ବୃଦ୍ଧ ପିତାମାତା ଦୁହିଙ୍କୁ ଅବଲୋକନ କର । ସଂପ୍ରତି ତୁମ୍ଭର କଣ୍ଠ ଶୋକ ବିଷୟ ଦୃଷ୍ଟ ହେଉନାହିଁ । ୨୦ ।

# ଦ୍ୱିତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ମେଧାବୀ ଯୁଧିଷ୍ଠିର ଧୀମାନ୍ ରାଜା ଧୃତରାଷ୍ଟ୍ରଙ୍କ-ଠାରୁ ଏହି ବାକ୍ୟ ଶ୍ରବଣ କରି ମୌନଭାବରେ ଅବସ୍ଥିତ ହେବାରୁ କେଶବ ତାହାଙ୍କୁ କହିଲେ—ହେ ଜନାଧିପ ! ଯେଉଁମାନେ ମନେ ଅତିଶୟ ଶୋକ କରନ୍ତି, ତାହାଙ୍କର ପ୍ରତି ଭୂତପୂର୍ବ ପିତାମହଗଣ ସମଧିକ ସଂତପ୍ତ ହୁଅନ୍ତି । ଅତଏବ ଆପଣ ଶୋକ ପରିହାର ପୂର୍ବକ ସଦକ୍ଷିଣ ବିବିଧ ଯଜ୍ଞାନୁଷ୍ଠାନ କରି ଦେବତାମାନଙ୍କର ଯଥାବିଧି ପୂଜନ ଓ ସୋମଦ୍ୱାରା ତର୍ପଣ କରନ୍ତୁ ଏବଂ ସ୍ୱଧାମନ୍ତ୍ରଦ୍ୱାରା ପିତୃଲୋକଙ୍କୁ ପରିତୃପ୍ତ କରିବା ହେଉନ୍ତୁ । ହେ ରାଜନ୍ ! ସଂପ୍ରତି ଭବାଦୃଶ ମହାପ୍ରାଜ୍ଞ ପୁରୁଷଙ୍କର ଅନ୍ନ ଓ ପାନୀୟଦ୍ୱାରା ଅତିଥି ଏବଂ ଅନ୍ୟବିଧ କାମନାଦ୍ୱାରା ଅକିଞ୍ଚନ ଜନମାନଙ୍କର ମନୋଽଭିଳାଷ ପୂରଣ କରିବା ଉଚିତ । ଏତାଦୃଶ ମୁଗ୍ଧ ହେବାର ଉଚିତ ନୁହେ । ମହାରାଜ ! ଆପଣ ଗଙ୍ଗାନନ୍ଦନ ଭୀଷ୍ମ, କୃଷ୍ଣ ଦ୍ୱୈପାୟନ ବ୍ୟାସ, ନାରଦ ଓ ବିଦୁରଙ୍କ ନିକଟରୁ ବେଦବିଷୟ ବିଦିତ ହୋଇଅଛନ୍ତି, ଦାତବ୍ୟ ଓ କର୍ତ୍ତବ୍ୟ ବିଷୟସମୂହ ଅନୁଷ୍ଠାନ କରିଅଛନ୍ତି ଏବଂ ସମସ୍ତ ରାଜଧର୍ମ ଶ୍ରବଣ କରିଅଛନ୍ତି । ଅତଏବ ଆପଣଙ୍କର ଏତାଦୃଶ ମୂଢ଼ ବୃତ୍ତିର ଅନୁବର୍ତ୍ତୀ ହେବାର ଉଚିତ ହେଉନାହିଁ । ଆପଣ ପିତୃପୈତାମହ ବୃତ୍ତି ଅବଲମ୍ବନ ପୂର୍ବକ ରାଜ୍ୟଭାର ବହନ କରିବା ହେଉନ୍ତୁ । ୭ ।

କ୍ଷତ୍ରିୟମାନଙ୍କର ଯଶସ୍ୱରୂପ ମାନ ଧର୍ମଯୁଦ୍ଧ ଦ୍ୱାରା ଯେଉଁ ସ୍ୱର୍ଗଲାଭ ହେବାର ଉଚିତ ତାହା ସେମାନଙ୍କର ହୋଇଅଛି । କାରଣ, କୌଣସି ଶୂର ଯୁଦ୍ଧରେ ପରାଙ୍ମୁଖ ହୋଇ ନିହତ ହୋଇନାହାନ୍ତି । ହେ ମହାରାଜ ! ଯାହା ଭବିତବ୍ୟ ତାହା ହୋଇ ଯାଇଅଛି । ଏହି ବିଷୟରେ ଶୋକ କରନ୍ତୁ ନାହିଁ । ଶୋକ ପରିତ୍ୟାଗ କରିବା ହେଉନ୍ତୁ । ଆପଣ ଯୁଦ୍ଧରେ ଯେଉଁମାନଙ୍କୁ ସଂହାର କରିଅଛନ୍ତି, ସେମାନଙ୍କୁ ଆଉ କଦାପି ଦେଖିପାରିବେ ନାହିଁ । ୮ ।

Digitized by srujanika@gmail.com

ହେ ମହାରାଜ ! ଗୋବିନ୍ଦ ଧର୍ମରାଜ ଯୁଧିଷ୍ଠିରଙ୍କୁ ଏହିପ୍ରକାର କହି ବିରତ ହେଲେ । ତଦନନ୍ତର ମହାତେଜା ଯୁଧିଷ୍ଠିର ତାହାଙ୍କୁ କହିଲେ । ୯ । ହେ ଗୋବିନ୍ଦ ! ତୁମ୍ଭର ଆମ୍ଭଉପରେ ଯେଉଁ ପ୍ରୀତି ଅଛି ଏବଂ ପ୍ରେମ ଓ ସୌହୃଦ୍ୟ ସହକାରରେ ତୁମ୍ଭେ ଆମ୍ଭଠାରେ ଯେଉଁ ଅନୁକମ୍ପା କରିଅଛ, ଆମ୍ଭେ ତାହାସବୁ ଜାଣିଅଛୁଁ । ପରନ୍ତୁ, ହେ ଶ୍ରୀମନ୍ ! ଯାଦବନନ୍ଦନ ଚକ୍ରଗଦାଧର ! ତୁମ୍ଭେ ଯଦି ପ୍ରୀତ ଓ ସନ୍ତୁଷ୍ଟ ଚିତ୍ତରେ ଆମ୍ଭଙ୍କୁ ତପୋବନ ଗମନ ବିଷୟରେ ଆଦେଶ କରିବ, ତେବେ ତୁମ୍ଭଦ୍ୱାରା ଆମ୍ଭର ଅତିଶୟ ପ୍ରିୟକାର୍ଯ୍ୟ ସମ୍ପାଦିତ ହେବ । ସଂଗ୍ରାମରେ ଅପରାଙ୍ମୁଖ ପୁରୁଷପ୍ରବର ଓ ପିତାମହ ଭୀଷ୍ମଙ୍କୁ ନିହତ କରି ତପୋବନଗମନ ବ୍ୟତିରେକେ ଆମ୍ଭେ କଦାପି ଶୋକ ଶାନ୍ତିର ଉପାୟ ଦେଖୁନାହୁଁ । ହେ ଜନାର୍ଦ୍ଦନ ! ଯେଉଁ କର୍ମ କଲେ ଆମ୍ଭେ ଏହି ପାପରୁ ମୁକ୍ତହେବୁଁ ଏବଂ ଆମ୍ଭର ଚିତ୍ତ ବିଶୁଦ୍ଧ ହେବ, ତୁମ୍ଭେ ତାହା ବିଧାନ କର ।

ପୃଥାନନ୍ଦନ ଯୁଧିଷ୍ଠିର କୃଷ୍ଣଙ୍କୁ ଏହିପ୍ରକାର କହିବାରୁ ମହାତେଜା ଧର୍ମଜ୍ଞ ବ୍ୟାସ ତାହାଙ୍କୁ ସାନ୍ତ୍ୱନା କରି ଅର୍ଥଯୁକ୍ତ କଲ୍ୟାଣକର ବାକ୍ୟ କହିଲେ—ହେ ତାତ ! ତୁମ୍ଭ ବୁଦ୍ଧି ଅତିଶୟ ଅପରିପକ୍ୱ । ତୁମ୍ଭେ ବାରମ୍ବାର ବାଲ୍ୟସ୍ୱଭାବରେ ମୁଗ୍ଧ ହୋଇଅଛ । ୧୬ । ଆମ୍ଭେମାନେ କି ଉନ୍ମତ୍ତ ସଦୃଶ ପୁନଃ ପୁନଃ ଆକାଶରେ କଥା କହିବୁଁ ? ଯେଉଁମାନଙ୍କର ଯୁଦ୍ଧଦ୍ୱାରା ଜୀବିକା ନିର୍ବାହ ହୁଏ, ସେହି କ୍ଷତ୍ରିୟଗଣଙ୍କର ସମସ୍ତ ଧର୍ମ ବିଦିତ ହୋଇଅଛ । ନୃପତି ନ୍ୟାୟସଙ୍ଗତ କାର୍ଯ୍ୟକଲେ ସେ ଆଧିରୂପ ବନ୍ଧନରେ ବଦ୍ଧ ହୁଅନ୍ତି ନାହିଁ ବୋଲି ତୁମ୍ଭେ ଏହିକଥା ଜାଣିଅଛ, ନିଖିଳ ମୋକ୍ଷଧର୍ମକୁ ଯଥାର୍ଥରୂପେ ଶ୍ରବଣ କରିଅଛ । ୧୭ । ଏବଂ ଆମ୍ଭେ ମଧ୍ୟ ତୁମ୍ଭର କାମଜ ସନ୍ଦେହମାନଙ୍କୁ ଅନେକବାର ଭଞ୍ଜନ କରିଅଛୁଁ । ତୁମ୍ଭେ ଦୁର୍ମେଧାବଶତଃ ଆମ୍ଭମାନଙ୍କ ବାକ୍ୟରେ ଶ୍ରଦ୍ଧା କରୁନାହଁ । ତୁମ୍ଭ ସ୍ମରଣଶକ୍ତି ନିଶ୍ଚୟ ଲୁପ୍ତ ହୋଇଯାଇଅଛି । ୧୮ । ତୁମ୍ଭେ ଏପରି ନହୁଅ । ଈଦୃଶ ଅଜ୍ଞାନ ତୁମ୍ଭପକ୍ଷରେ ଅଯୁକ୍ତ ଅଟେ । ହେ ଅନଘ ! ତୁମ୍ଭେ ସମସ୍ତ ପ୍ରାୟଶ୍ଚିତ୍ତ ଜାଣିଅଛ । ୧୯ । ହେ ଭରତ ! ରାଜଧର୍ମ ଓ ଦାନଧର୍ମସମୂହ ଶ୍ରବଣ କରିଅଛ । ଅତଏବ ସର୍ବଧର୍ମଜ୍ଞ ଏବଂ ସର୍ବାଗମବିଶାରଦ ହୋଇ କି ନିମିତ୍ତ ବାରମ୍ବାର ଅଜ୍ଞାନୀ ସଦୃଶ ମୁଗ୍ଧ ହେଉଅଛ ? ୨୦ ।



Digitized by srujanika@gmail.com

# ତୃତୀୟ ଅଧ୍ୟାୟ

ବ୍ୟାସ କହିଲେ—ହେ ଯୁଧିଷ୍ଠିର ! ଆମ୍ଭେ ଜାଣୁଅଛୁଁ ତୁମ୍ଭର ଉତ୍ତମ ବୁଦ୍ଧି ନାହିଁ । କାରଣ, କୌଣସି ନର ସ୍ୱୟଂ ସ୍ୱବଶ ହୋଇ କାର୍ଯ୍ୟ କରନ୍ତି ନାହିଁ । ହେ ମାନଦ ! ପୁରୁଷ ଈଶ୍ୱରକର୍ତ୍ତୃକ ପ୍ରେରିତ ହୋଇ ଯେଉଁ ଉତ୍ତମ ଓ ଅଧମ କାର୍ଯ୍ୟ କରନ୍ତି, ତଦ୍‌ବିଷୟରେ ପରିବେଦନା କି ? ହେ ଭାରତ ! ତୁମ୍ଭେ ଯଦି ଆପଣାକୁ ନିଶ୍ଚୟ ପାପକର୍ମା ବୋଲି ମନେ କରୁଅଛ, ତେବେ ଯାହାଦ୍ୱାରା ନିରାକୃତ ହୁଏ, ତାହା ଶ୍ରବଣକର । ୩ ।

ହେ ଯୁଧିଷ୍ଠିର ! ନରଗଣ ନିତ୍ୟ ଭୂରି ଭୂରି ପାପକର୍ମ କରିଥିଲେ, ତପସ୍ୟା, ଯଜ୍ଞ ଏବଂ ଦାନଦ୍ୱାରା ତହିଁରୁ ମୁକ୍ତ ହୋଇପାରନ୍ତି । ୪ । ହେ ନରାଧିପ ! ନରଶ୍ରେଷ୍ଠ ! ଦୁଷ୍କୃତକାରୀ ନରଗଣ ଯଜ୍ଞ, ତପସ୍ୟା ଓ ଦାନଦ୍ୱାରା ପବିତ୍ର ହୁଅନ୍ତି । ମହାତ୍ମା ସୁର ଏବଂ ଅସୁରବୃନ୍ଦ ପୁଣ୍ୟହେତୁରୁ ଯଜ୍ଞକାର୍ଯ୍ୟରେ ସମଧିକ ଯତ୍ନ କରନ୍ତି । ଅତଏବ ଯଜ୍ଞ ସମସ୍ତଙ୍କର ଉତ୍ତମାଶ୍ରୟ ଅଟେ । ମହାନୁଭବ ସୁରଗଣ ଯଜ୍ଞଦ୍ୱାରା ଅସୁରଗଣଙ୍କ ଅପେକ୍ଷା ଅଧିକ ହୋଇଅଛନ୍ତି । ସେହି କାରଣରୁ କ୍ରିୟାପର ଦେବଗଣ ଦାନବଦଳଙ୍କୁ ଧର୍ଷିତ କରିଅଛନ୍ତି । ୭ ।

ଅତଏବ, ହେ ଭାରତ ! ଯୁଧିଷ୍ଠିର ! ଦଶରଥପୁତ୍ର ରାମଚନ୍ଦ୍ରଙ୍କପରି ତୁମ୍ଭେ ରାଜସୂୟ, ଅଶ୍ୱମେଧ, ସର୍ବମେଧ ଓ ନରମେଧ ଯଜ୍ଞର ଆହରଣ କର ଏବଂ ବିଧି ଅନୁସାରେ ଦକ୍ଷିଣାଯୁକ୍ତ ବହୁକାମ ଅନ୍ନ ଓ ବିତ୍ତସମନ୍ୱିତ ଅଶ୍ୱମେଧ-ଯଜ୍ଞ କର । ୯ । ତୁମ୍ଭର ପୂର୍ବ ପିତାମହ ଦୁଷ୍ମନ୍ତତନୟ ଶକୁନ୍ତଳାନନ୍ଦନ ମହାବୀର ପୃଥିବୀପତି ରାଜା ଭରତ ଏହିପରି ସକଳ ଯଜ୍ଞ କରିଥିଲେ । ୧୦ ।

ଯୁଧିଷ୍ଠିର କହିଲେ—ଅଶ୍ୱମେଧ ଯଜ୍ଞ ପୃଥିବୀପତିଙ୍କୁ ଯେ ପବିତ୍ର କରେ ତଦ୍‌ବିଷୟରେ ସଂଶୟ ନାହିଁ । କିନ୍ତୁ ଏହି ବିଷୟରେ ଆମ୍ଭର ଯେଉଁ ଅଭିପ୍ରାୟ ଅଛି, ତାହା ଆପଣ ଶ୍ରବଣ କରିବା ହେଉନ୍ତୁ । ୧୧ । ହେ ଦ୍ୱିଜୋତ୍ତମ ! ଆମ୍ଭେ ଏହି ସୁମହତ୍ ଜ୍ଞାତିଗଣଙ୍କୁ ବଧକରି ଅଳ୍ପଦାନ କରିପାରିବୁ ନାହିଁ, ଏବଂ ବହୁଦାନ କରିବାକୁ ଆମ୍ଭର ଧନ ନାହିଁ । ଆମ୍ଭେ ଏହି ଆର୍ଦ୍ରବଣଯୁକ୍ତ ଅତିକଷ୍ଟରେ ବର୍ତ୍ତମାନ ଥିବା ଏବଂ ବାଳକ ନୃପନନ୍ଦନଗଣଙ୍କ ନିକଟରୁ

Digitized by srujanika@gmail.com

ଧନଭିକ୍ଷା କରିବାକୁ ଉତ୍ସାହିତ ହେଉନାହୁଁ । ହେ ଦ୍ୱିଜସତ୍ତମ ! ଆମ୍ଭେ ସ୍ୱୟଂ ପୃଥିବୀର ବିନାଶ ସାଧନ କରି ଯଜ୍ଞ ନିମିତ୍ତ ପୁନଶ୍ଚ କି ପ୍ରକାର କର ଆହରଣ କରିବୁଁ । ହେ ମୁନିସତ୍ତମ ! ଦୁର୍ଯ୍ୟୋଧନ ଆମ୍ଭମାନଙ୍କୁ ଅକୀର୍ତ୍ତିକର କାର୍ଯ୍ୟରେ ନିଯୁକ୍ତ କରିଅଛନ୍ତି ଏବଂ ତାହାଙ୍କ ଅପରାଧରେ ପୃଥିବୀର ସମସ୍ତ ରାଜା ନିହତ ହୋଇଅଛନ୍ତି । ଧୃତରାଷ୍ଟ୍ରଙ୍କ ପୁତ୍ର ସେହି ଦୁର୍ମତି ଦୁର୍ଯ୍ୟୋଧନ ଧନଲାଲସାରେ ପୃଥିବୀ କ୍ଷୟ କରିଅଛନ୍ତି ଏବଂ ତଦୀୟ କୋଷ ମଧ୍ୟ ବିଶୀର୍ଣ୍ଣ ହୋଇ ଯାଇଅଛି । ଏହି ଯଜ୍ଞରେ ପୃଥିବୀ ଦକ୍ଷିଣା ପ୍ରଥମ କଳ୍ପ । ବିଦ୍ୱାନ୍ ପଣ୍ଡିତଗଣଙ୍କଦ୍ୱାରା ଏହି ବିଧି ପରିଦୃଷ୍ଟ ହୁଏ ଓ ଏହାର ଅନ୍ୟଥା ହେଲେ ବିଧିବିପର୍ଯ୍ୟୟ ହୁଏ । ହେ ତପୋଧନ ! ଆମ୍ଭେ ଏହି ବିଧିର ପ୍ରତିନିଧିଭି କରିବାକୁ ଇଚ୍ଛୁକ ନୋହୁଁ । ଅତଏବ ଏହି ବିଷୟରେ ଆପଣ ସମ୍ୟକ୍ରୂପେ ଆମ୍ଭର ସଚିବ ହେଉନ୍ତୁ । ୧୮ ।

ତେତେବେଳେ କୃଷ୍ଣ ଦ୍ୱୈପାୟନ ବ୍ୟାସ ପୃଥାନନ୍ଦନ ଯୁଧିଷ୍ଠିରଙ୍କ ଏହି ବାକ୍ୟ ଶ୍ରବଣ କରି ମୁହୂର୍ତ୍ତିକକାଳ ଚିନ୍ତାକରି ଧର୍ମରାଜଙ୍କୁ କହିଲେ । ୧୯ । ହେ ପାର୍ଥ ! ଯେଉଁ କୋଷ ବିଶୀର୍ଣ୍ଣ ହୋଇଅଛି, ତାହା ପରିପୂର୍ଣ୍ଣ ହେବ । ମହାତ୍ମା ମରୁତ୍ତ ରାଜାଙ୍କ ଯଜ୍ଞରେ ବ୍ରାହ୍ମଣଗଣଙ୍କର ଉତ୍ସୃଷ୍ଟ ଧନ ହିମାଳୟ ପର୍ବତରେ ବିଦ୍ୟମାନ ଅଛି । ତୁମ୍ଭେ ସେହି ଧନ ଆନୟନ କର । ତାହା ପର୍ଯ୍ୟାପ୍ତ ହେବ । ୨୧ ।

ଯୁଧିଷ୍ଠିର କହିଲେ—ହେ ବକ୍ତୃପ୍ରବର ! ମରୁତ୍ତ ରାଜାଙ୍କ ଯଜ୍ଞରେ କେଉଁ ପ୍ରକାରରେ ଧନ ସଞ୍ଚିତ ହୋଇଥିଲା ଏବଂ ସେ କେଉଁ ସମୟରେ ରାଜା ହୋଇଥିଲେ ?

ବ୍ୟାସ କହିଲେ—ହେ ପାର୍ଥ ! ସେହି ମହାଧନ ମହାବୀର ଯେଉଁ ସମୟରେ ରାଜା ହୋଇଥିଲେ, ତାହା ଯଦି ଶୁଣିବାକୁ ତୁମ୍ଭର ଇଚ୍ଛା ଅଛି, ତେବେ ସେହି କାରନ୍ଧମ ନୃପଙ୍କ ବୃତ୍ତାନ୍ତ ଶ୍ରବଣ କର । ୨୩ ।



Digitized by srujanika@gmail.com

# ଚତୁର୍ଥ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ ଧର୍ମଜ୍ଞ ଅନଘ ! ଆମ୍ଭେ ସେହି ରାଜର୍ଷି ମରୁତ୍ତଙ୍କ ବିଷୟ ଶ୍ରବଣ ନିମିତ୍ତ ଇଚ୍ଛା କରୁଛୁଁ । ଆପଣ ଆମ୍ଭ ନିକଟରେ ତାହାଙ୍କ କଥା ବିସ୍ତୃତରୂପେ କୀର୍ତ୍ତନ କରିବା ହେଉନ୍ତୁ । ୧ ।

ବ୍ୟାସ କହିଲେ—ହେ ତାତ ! ସତ୍ୟଯୁଗରେ ମନୁ ନାମରେ ପ୍ରଜାପାଳକ ଦଣ୍ଡଧର ରାଜା ଥିଲେ । ତାହାଙ୍କ ପୁତ୍ର ମହାବାହୁ ପ୍ରସନ୍ଧି ନାମରେ ବିଖ୍ୟାତ । ୨ । ପ୍ରସନ୍ଧିଙ୍କ ପୁତ୍ର କ୍ଷୁପ ଓ କ୍ଷୁପଙ୍କ ପୁତ୍ର ଇକ୍ଷ୍ୱାକୁ ରାଜା ହୋଇଥିଲେ । ୩ । ହେ ରାଜନ୍ ! ସେହି ଇକ୍ଷ୍ୱାକୁଙ୍କର ପରମଧାର୍ମିକ ଶତପୁତ୍ର ହୋଇଥିଲେ । ସେ ସେହି ଶତପୁତ୍ରଙ୍କୁ ମହୀପାଳ କରିଥିଲେ । ୪ । ଧନୁର୍ଦ୍ଧାରିଗଣଙ୍କ ପ୍ରଧାନ ବିଂଶ ସେମାନଙ୍କର ଜ୍ୟେଷ୍ଠ ଥିଲେ । ହେ ଭାରତ ! ବିଂଶଙ୍କ ପୁତ୍ର ପରମସୁନ୍ଦର ବିବିଂଶ । ୫ । ବିବିଂଶଙ୍କର ପଞ୍ଚଦଶ ପୁତ୍ର ହୋଇଥିଲେ । ବିବିଂଶଙ୍କର ପୁତ୍ରଗଣ ସମସ୍ତେ ଧନୁର୍ବିଦ୍ୟାରେ ବିକ୍ରାନ୍ତ, ବ୍ରହ୍ମନିଷ୍ଠ, ଦାନଧର୍ମନିରତ, ଶାନ୍ତ ଓ ସତତ ପ୍ରିୟବାଦୀ ଥିଲେ । ସେମାନଙ୍କ ଜ୍ୟେଷ୍ଠ ଖନୀନେତ୍ର ସମସ୍ତଙ୍କୁ ପୀଡ଼ା ପ୍ରଦାନ କରୁଥିଲେ । ୭ । ଖନୀନେତ୍ର ଅତିଶୟ ବିକ୍ରାନ୍ତ ଥିଲେ । ସେ ଅକଣ୍ଟକ ରାଜ୍ୟ ଜୟ କରିଥିଲେ । ତାହାଙ୍କଠାରେ ପ୍ରଜାଗଣ ଅନୁରକ୍ତ ନଥିବାରୁ ସେ ରାଜ୍ୟ ରକ୍ଷା କରିବାକୁ ସମର୍ଥ ହୋଇନଥିଲେ । ୮ । ହେ ରାଜେନ୍ଦ୍ର ! ପ୍ରଜାଗଣ ସମସ୍ତେ ତାହାଙ୍କୁ ତ୍ୟାଗକରି ତାହାଙ୍କ ପୁତ୍ର ସୁବର୍ଚ୍ଚାଙ୍କୁ ରାଜ୍ୟରେ ଅଭିଷିକ୍ତ କରି ଆନନ୍ଦିତ ହୋଇଥିଲେ । ସେହି ସୁବର୍ଚ୍ଚା ପିତାଙ୍କ ବିକ୍ରିୟା ଓ ରାଜ୍ୟରୁ ତାହାଙ୍କୁ ନିର୍ବାସିତ ହେବାର ଦେଖି ପ୍ରଜାଗଣଙ୍କ ହିତ କରିବା ଇଚ୍ଛାରେ ସଯତ୍ନ ହୋଇଥିଲେ । ୧୦ । ପ୍ରଜାଗଣ ସେହି ବ୍ରହ୍ମନିଷ୍ଠ, ସତ୍ୟବାଦୀ, ଶୁଚି, ଶମଦମାନ୍ୱିତ, ମନସ୍ୱୀ ଓ ଧାର୍ମିକ ସୁବର୍ଚ୍ଚାଙ୍କଠାରେ ଅନୁରକ୍ତ ହୋଇଥିଲେ । ୧୧ । ପରେ ଧର୍ମପ୍ରବୃତ୍ତ ସେହି ସୁବର୍ଚ୍ଚାଙ୍କର କୋଷ ଓ ବାହନ ବିଶୀର୍ଣ୍ଣ ହେବାରୁ ସାମନ୍ତବୃନ୍ଦ ସର୍ବତୋଭାବରେ ତାହାଙ୍କୁ ପୀଡ଼ନ କରିଥିଲେ । ୧୨ । କୋଷହୀନ ଓ ଅଶ୍ୱାଦିରଥପଦାତିହୀନ ସେହି ନୃପତି ସାମନ୍ତଗଣକର୍ତ୍ତୃକ ପୀଡ଼ିତ ହେବାରୁ ତାହାଙ୍କର ପୁର ସହିତ ଭୃତ୍ୟବର୍ଗ ପରମ ପୀଡ଼ା ପ୍ରାପ୍ତ ହୋଇଥିଲେ । ୧୩ ।

Digitized by srujanika@gmail.com

ହେ ଯୁଧିଷ୍ଠିର ! ସେହି ସୁବର୍ଚ୍ଚା ନୃପତିଙ୍କର ବଳକ୍ଷୟ ହେଲେ ସୁଦ୍ଧା ସେ ନିତ୍ୟ ଧର୍ମପ୍ରବୃତ୍ତ ଥିଲେ ବୋଲି ସାମନ୍ତଗଣ ତାହାଙ୍କୁ ବିନଷ୍ଟ କରିବାକୁ ସମର୍ଥିତ ହୋଇନଥିଲେ । ପରନ୍ତୁ ଯେତେବେଳେ ସେହି ଭୂପତି ସୁବର୍ଚ୍ଚା ପୁର ସହିତ ପରମ ପୀଡ଼ା ପ୍ରାପ୍ତ ହୋଇଥିଲେ, ତତ୍‌ସମୟରେ ସେ ଅଗ୍ନିରେ ନିଜ କର ପ୍ରକ୍ଷେପ କରିବାରୁ ତହିଁରୁ ବଳ ଆବିଷ୍କୃତ ହେଲେ । ୧୫ । ଅନନ୍ତର ସେ ସେହି ସୈନ୍ୟଦ୍ୱାରା ସ୍ୱୀୟ ସୀମାର ଅନ୍ତର୍ବର୍ତ୍ତୀ ସମସ୍ତ ନୃପତିଗଣଙ୍କୁ ଜୟ କରିଥିଲେ । ହେ ରାଜନ୍ ! ଏହି କାରଣରୁ ସେ କରନ୍ଧମ ନାମରେ ବିଖ୍ୟାତ ହୋଇଥିଲେ । ୧୬ ।

ତ୍ରେତାଯୁଗର ପ୍ରାରମ୍ଭରେ କରନ୍ଧମଙ୍କର ଇନ୍ଦ୍ରସଦୃଶ ଶ୍ରୀମାନ୍ ଦେବଗଣଙ୍କର ଦୁର୍ଜୟ କାରନ୍ଧମ ନାମରେ ପୁତ୍ର ହୋଇଥିଲେ । ୧୭ । ତେତେବେଳେ ସେ ବଳ ଓ ବୃତ୍ତଦ୍ୱାରା ସମସ୍ତଙ୍କର ସମ୍ରାଟ୍ ହୋଇ ସମସ୍ତ ନରପାଳଗଣଙ୍କୁ ଆପଣାର ବଶବର୍ତ୍ତୀ କରିଥିଲେ । ୧୮ । ସେହି କାରନ୍ଧମ ଅବିକ୍ଷିତ୍ ନାମରେ ବିଖ୍ୟାତ ହୋଇଥିଲେ । ସେହି ଧର୍ମାତ୍ମା ଅବିକ୍ଷିତ୍ ଇନ୍ଦ୍ରସଦୃଶ ଶୌର୍ଯ୍ୟଶାଳୀ, ଯଜ୍ଞଶୀଳ, ଧର୍ମରତ, ଧୃତିମାନ୍, ସଂଯତେନ୍ଦ୍ରିୟ, ସୂର୍ଯ୍ୟସମ ତେଜସ୍ୱୀ, ପୃଥିବୀ ସମାନ କ୍ଷମାସମ୍ପନ୍ନ, ବୃହସ୍ପତିଙ୍କ ସଦୃଶ ବୁଦ୍ଧିମାନ୍ ଏବଂ ହିମାଳୟବତ୍ ଅତି ସ୍ଥିର ଥିଲେ । ୨୦ । ସେହି ନୃପ ଅବିକ୍ଷିତ୍ କର୍ମ, ମନ, ବାକ୍ୟ, ଦମ, ଶମଦ୍ୱାରା ପ୍ରଜାଗଣଙ୍କ ଚିତ୍ତ ଆହ୍ଲାଦିତ କରିଥିଲେ । ୨୧ । ଯେଉଁ ପ୍ରଭୁ ଅବିକ୍ଷିତ୍ ଯଥାବିଧି ଶତ ଅଶ୍ୱମେଧଯଜ୍ଞ କରିଥିଲେ, ବିଦ୍ୱାନ୍ ଅଙ୍ଗିରା ସ୍ୱୟଂ ତାହାଙ୍କୁ ଯଜ୍ଞ କରାଇଥିଲେ । ୨୨ । ସେହି ଅବିକ୍ଷିତଙ୍କ ପୁତ୍ର ଧର୍ମଜ୍ଞ, ଚକ୍ରବର୍ତ୍ତୀ, ଅୟୁତନାଗସମ ବଳସମ୍ପନ୍ନ ସାକ୍ଷାତ୍ ଦ୍ୱିତୀୟ ବିଷ୍ଣୁସଦୃଶ ମହାଯଶା ମରୁତ୍ତ ନିଜଗୁଣଦ୍ୱାରା ପିତାଙ୍କୁ ଅତିକ୍ରମ କରିଥିଲେ । ୨୩ । ସେହି ଧର୍ମାତ୍ମା ମରୁତ୍ତ ଯଜ୍ଞ କରିବେ ବୋଲି ସୁବର୍ଣ୍ଣମୟ ସହସ୍ର ସଂଖ୍ୟକ ପାତ୍ର ସୁଶୋଭିତ କରିଥିଲେ । ସେ ହିମାଳୟର ଉତ୍ତର ପାର୍ଶ୍ୱରେ ମେରୁ ପର୍ବତରେ ଅବସ୍ଥିତ ହୋଇ ତତ୍‌ସ୍ଥ ସୁମହାନ୍ ସ୍ୱର୍ଣ୍ଣମୟ ପ୍ରତ୍ୟନ୍ତ ପର୍ବତରେ କର୍ମ କରିଥିଲେ । ସେଠାରେ ସ୍ୱର୍ଣ୍ଣକାରମାନେ ଅସଂଖ୍ୟ ସୁବର୍ଣ୍ଣମୟ କୁଣ୍ଡ, ପାତ୍ରୀ, ପିଠର ଓ ଆସନ ନିର୍ମାଣ କରିଥିଲେ । ତନ୍ନିକଟରେ ଯଜ୍ଞବାଟ ଥିଲା । ଧର୍ମାତ୍ମା ପୃଥିବୀପତି ମରୁତ୍ତ ସମସ୍ତ ରାଜାମାନଙ୍କ ସହିତ ସେହି ସ୍ଥାନରେ ଯଜ୍ଞ କରିଥିଲେ । ୨୮ ।



# ପଞ୍ଚମ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ ବାଗ୍ମିବର ଦ୍ୱିଜ ! ସେହି ମରୁତ୍ତ ରାଜା କାଦୃଶ ବୀର୍ଯ୍ୟସମ୍ପନ୍ନ ଥିଲେ ? ଏବଂ ସେ କେଉଁପରି ଅବା ସୁବର୍ଣ୍ଣ ସଞ୍ଚୟ କରିଥିଲେ ? ୧ । ହେ ଭଗବନ୍ ତପୋଧନ ! ସମ୍ପ୍ରତି ସେହି ଦ୍ରବ୍ୟସମୂହ କେଉଁଠାରେ ଅଛି ? ଆମ୍ଭେ ତାହା ପ୍ରାପ୍ତହେବାକୁ କେଉଁପରି ସମର୍ଥ ହେବୁଁ ? ୨ ।

ବ୍ୟାସ କହିଲେ—ହେ ତାତ ! ଯେଉଁପରି ଦକ୍ଷପ୍ରଜାପତିଙ୍କର ସୁର ଏବଂ ଅସୁରବହୁଳ ଅପତ୍ୟ ହୋଇ ପରସ୍ପର ପ୍ରତି ନିରନ୍ତର ସ୍ପର୍ଦ୍ଧା କରନ୍ତି, ତଦ୍‌ବତ୍ ତୁଲ୍ୟବ୍ରତଶାଳୀ ତପୋଧନ ସମ୍ବର୍ତ୍ତ ଓ ବୃହତ୍ତେଜା ବୃହସ୍ପତି ନାମକ ଦୁଇଗୋଟି ପୁତ୍ର ଜାତ ହୋଇଥିଲେ । ୪ । ହେ ରାଜନ୍ ! ସେହି ଦୁହେଁ ପରସ୍ପର ଅତିଶୟ ସ୍ପର୍ଦ୍ଧାଯୁକ୍ତ ହେବାରୁ ଉଭୟେ ପୃଥକ୍ ପୃଥକ୍ ସ୍ଥାନରେ ବାସ କରିଥିଲେ । କିନ୍ତୁ ବୃହସ୍ପତି ନିରନ୍ତର ସମ୍ବର୍ତ୍ତଙ୍କୁ ପୁନଃ ପୁନଃ ପୀଡ଼ା ପ୍ରଦାନ କରୁଥିଲେ । ୫ । ହେ ଭାରତ ! ସେହି ସମ୍ବର୍ତ୍ତ ଜ୍ୟେଷ୍ଠଭ୍ରାତା ବୃହସ୍ପତିଙ୍କ ଦ୍ୱାରା ସତତ ପୀଡ଼ିତ୍ୟମାନ ହେବାରୁ ଦିଗମ୍ବର ହୋଇ ଅର୍ଥସମୂହ ପରିତ୍ୟାଗ ପୂର୍ବକ ବନବାସକୁ ଅଭିଳାଷ କଲେ । ୬ । ବାସବ ଅସୁରମାନଙ୍କୁ ଜୟ ଏବଂ ନିପାତିତ କରି ତ୍ରିଲୋକର ଇନ୍ଦ୍ରତ୍ୱ ଲାଭ କରି ଅଙ୍ଗିରାଙ୍କ ଜ୍ୟେଷ୍ଠପୁତ୍ର ବିପ୍ରଶ୍ରେଷ୍ଠ ବୃହସ୍ପତିଙ୍କୁ ପୌରୋହିତ୍ୟରେ ବରଣ କରିଥିଲେ । ୭ । ଲୋକ ମଧ୍ୟରେ ଅପ୍ରତିମ ବଳ-ବିତ୍ତ-ବୀର୍ଯ୍ୟସମନ୍ୱିତ ଶତକ୍ରତୁଙ୍କ ସମାନ ତେଜସ୍ୱୀ ସଂଶିତବ୍ରତ ଧର୍ମାତ୍ମା ରାଜା କରନ୍ଧମ ପୂର୍ବେ ଅଙ୍ଗିରାଙ୍କ ଯଜମାନ ଥିଲେ । ୯ । ତାହାଙ୍କର ଅତୀବ ସୁନ୍ଦର ବାହନ, ବଳବାନ୍ ଯୋଦ୍ଧା, ମତିମାନ୍ ବିବିଧ ଗୁଣ ଏବଂ ମହାମୂଲ୍ୟ-ବୀର୍ଯ୍ୟ ଥିଲା । ୧୦ । ହେ ରାଜନ୍ ! ସେ ଧ୍ୟାନକରି ଯୋଗବଳରେ ରାଜା ହୋଇ ନିଜ ଗୁଣ ଏବଂ ମୁଖବାୟୁଦ୍ୱାରା ସମସ୍ତ ପାର୍ଥିବଗଣଙ୍କୁ ବଶୀଭୂତ କରିଥିଲେ । ୧୧ । ସେ ସ୍ୱୀୟ ଅଭିଲଷିତ କାଳ ପର୍ଯ୍ୟନ୍ତ ଜୀବନଧାରଣ କରି ସଶରୀରରେ ସ୍ୱର୍ଗଗାମୀ ହୋଇଥିଲେ ।

ତାହାଙ୍କର ଯଯାତି ସଦୃଶ ଧର୍ମବିତ୍ ଶତ୍ରୁଜିତ୍ ଅବିକ୍ଷିତ୍ ନାମକ ପୁତ୍ର ପୃଥିବୀକୁ ଆପଣାର ବଶବର୍ତ୍ତିନୀ କରି ସ୍ୱୀୟ ବିକ୍ରମ ଓ ଗୁଣସମୂହଦ୍ୱାରା

Digitized by srujanika@gmail.com

ପିତାଙ୍କ ସଦୃଶ ରାଜ୍ୟପାଳନ କରିଥିଲେ ।୧୩। ତାହାଙ୍କ ପୁତ୍ର ମରୁତ୍ତ ବାସବଙ୍କ ସଦୃଶ ବୀର୍ଯ୍ୟବାନ୍ ଥିଲେ । ସେ ସସାଗରା ବସୁନ୍ଧରାର ଅତିଶୟ ଅନୁରାଗୀ ପାତ୍ର ଥିଲେ । ୧୪ । ହେ ପାଣ୍ଡୁନନ୍ଦନ ! ପୃଥିବୀ ମଧ୍ୟରେ ସେହି ମରୁତ୍ତ ଦେବରାଜଙ୍କ ସହିତ ସ୍ପର୍ଦ୍ଧା କରିଥିଲେ, ଏବଂ ଦେବରାଜ ମଧ୍ୟ ତାହାଙ୍କ ସହିତ ସ୍ପର୍ଦ୍ଧା କରିଥିଲେ । ୧୫ । ବାସବ ବହୁଯତ୍ନରେ ସେହି ଗୁଣବାନ୍ ପରବୀରଘ୍ନ ପୃଥିବୀପତି ମରୁତ୍ତଙ୍କ ଅପେକ୍ଷା ବୈଶିଷ୍ଟ୍ୟ ଲାଭ କରିପାରିନଥିଲେ ।

ଏକଦା ହରିବାହନ ଇନ୍ଦ୍ର ବୈଶିଷ୍ଟ୍ୟଲାଭ ବିଷୟରେ ଅସମର୍ଥ ହୋଇ ଦେବଗଣଙ୍କ ସହିତ ସମଭିବ୍ୟାହାରରେ ବୃହସ୍ପତିଙ୍କୁ ଆହ୍ୱାନ କରି ତାହାଙ୍କୁ କହିଲେ । ୧୭ । ହେ ବୃହସ୍ପତେ ! ଆପଣ ଯଦି ଆମ୍ଭର ପ୍ରିୟକାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି, ତେବେ ଆପଣ କୌଣସି ପ୍ରକାରରେ ମରୁତ୍ତ ରାଜାଙ୍କର ଦୈବ ଅବା ପିତୃକାର୍ଯ୍ୟ କରିବେ ନାହିଁ । ୧୮ । ହେ ବୃହସ୍ପତେ ! ଦେବଗଣ ମଧ୍ୟରେ ଆମ୍ଭେ ଏକାକୀ ଏହି ତ୍ରିଲୋକରେ ଆଧିପତ୍ୟ ଲାଭ କରିଅଛୁଁ । ମରୁତ୍ତ କେବଳ ପୃଥିବୀର ଅଧିପତି ହୋଇଅଛନ୍ତି । ୧୯ । ହେ ବ୍ରହ୍ମନ୍ ! ଆପଣ ଅମରଗଣଧର୍ମା ସୁରପତି ଇନ୍ଦ୍ରଙ୍କୁ ଯାଜନ କରି ମରଣଧର୍ମଯୁକ୍ତ ମହୀପତି ମରୁତ୍ତଙ୍କୁ ଆଶଙ୍କାରହିତରେ କେଉଁ ପ୍ରକାରରେ ଯାଜନ କରିବେ ? ୨୦ । ହେ ବୃହସ୍ପତେ ! ଆପଣ ଯଦି ନିଜ କୁଶଳ କାମନା କରନ୍ତି, ତେବେ କେବଳ ଆମ୍ଭଙ୍କୁ କିମ୍ବା ମହୀପତି ମରୁତ୍ତଙ୍କୁ ବରଣ କରିବା ହେଉନ୍ତୁ । ମରୁତ୍ତଙ୍କୁ ପରିତ୍ୟାଗ କରି ଯଥାସୁଖରେ ଆମ୍ଭଙ୍କୁ ଭଜନା କରନ୍ତୁ ।

ହେ କୌରବ୍ୟ ! ଦେବରାଜ ଇନ୍ଦ୍ର ବୃହସ୍ପତିଙ୍କୁ କହିବାରୁ ସେ ମୁହୂର୍ତ୍ତିକକାଳ ଚିନ୍ତାକରି ତାହାଙ୍କୁ କହିଲେ । ୨୨ । ହେ ସୁରପତେ ! ଆପଣ ଭୂତସମୂହର ଅଧିପତି । ଆପଣଙ୍କଠାରେ ଲୋକସମୂହ ପ୍ରତିଷ୍ଠିତ । ଆପଣ ବିଶ୍ୱରୂପ ସମ୍ଭୂତ ଅସୁରର ନିହନ୍ତା ଅଟନ୍ତି । ୨୩ । ହେ ବଳସୂଦନ ! ଆପଣ ଏକାକୀ ଦେବଗଣଙ୍କର ବୀରଶ୍ରୀ ହରଣ କରିଅଛନ୍ତି ଏବଂ ସ୍ୱର୍ଗ ଓ ପୃଥିବୀକୁ ସର୍ବଦା ପାଳନ କରୁଅଛନ୍ତି । ୨୪ । ହେ ପାକଶାସନ ! ଆମ୍ଭେ ଆପଣଙ୍କର ପୌରୋହିତ୍ୟ କରି କିପରି ମର୍ତ୍ତ୍ୟ ନରପାଳ ମରୁତ୍ତଙ୍କୁ ଯାଜନ କରାଇବୁ ? ୨୫ । ହେ ଦେବେନ୍ଦ୍ର ! ଆପଣ ଆଶ୍ୱାସିତ ହେଉନ୍ତୁ । ଆପଣ ଆମ୍ଭର ଏହି ବାକ୍ୟଲୁ ନିଶ୍ଚୟ କରି ଜାଣନ୍ତୁ ଯେ, ଆମ୍ଭେ କଦାପି ସେହି ମର୍ତ୍ତ୍ୟ ନର

Digitized by srujanika@gmail.com

ମରୁତ୍ତଙ୍କ ଯଜ୍ଞରେ ସ୍ରୁବ ଗ୍ରହଣ କରିବୁ ନାହିଁ । ୨୬ । ଯଦି ହିରଣ୍ୟରେତା ଅଗ୍ନି ଉଷ୍ଣ ନ ହୁଅନ୍ତୁ, ଭୂଦେବୀ ପରିବର୍ତ୍ତିତା ହୁଅନ୍ତୁ ଏବଂ ସୂର୍ଯ୍ୟଦେବ ପ୍ରକାଶମାନ ନ ହୁଅନ୍ତୁ, ତେବେ ଆମ୍ଭର ସତ୍ୟ ବିଚଳିତ ହେବନାହିଁ । ୨୭ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ତେତେବେଳେ ଇନ୍ଦ୍ରଦେବ ବୃହସ୍ପତିଙ୍କ ବଚନ ଶ୍ରବଣ କରି ମତ୍ସରଶୂନ୍ୟ ହୋଇ ବୃହସ୍ପତିଙ୍କୁ ପ୍ରଶଂସା କରି ସ୍ୱୀୟ ଭବନକୁ ଗମନ କଲେ । ୨୮ ।

---

# ଷଷ୍ଠ ଅଧ୍ୟାୟ

ବ୍ୟାସଦେବ କହିଲେ—ହେ ଯୁଧିଷ୍ଠିର ! ବାସସ୍ଥାନରେ ପଣ୍ଡିତମାନେ ବୃହସ୍ପତି ଓ ବୁଦ୍ଧିମାନ୍ ମରୁତ୍ତ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ଇନ୍ଦ୍ରଙ୍କ ସହିତ ବୃହସ୍ପତିଙ୍କର ଅବଧାରିତ ପ୍ରତିଜ୍ଞା ଶ୍ରବଣ କରି ମହୀପତି ମରୁତ୍ତ ଗୋଟିଏ ସୁମହତ୍ ଯଜ୍ଞର ଆୟୋଜନ କଲେ । ୨ । କରନ୍ଧମସୁତାତ୍ମଜ ବାଗ୍ମିବର ମରୁତ୍ତ ମନୋମଧ୍ୟରେ ଯଜ୍ଞର ସଙ୍କଳ୍ପ ସ୍ଥିର କରି ବୃହସ୍ପତିଙ୍କ ନିକଟକୁ ଗମନପୂର୍ବକ ତାହାଙ୍କୁ କହିଲେ, ହେ ତପୋଧନ ! ଗୁରୋ ! ହେ ଭଗବନ୍ ! ପୂର୍ବେ ଆପଣ ଆମ୍ଭନିକଟକୁ ଗମନପୂର୍ବକ ଯେଉଁ ଯଜ୍ଞର ପ୍ରସ୍ତାବ କରିଥିଲେ ଆମ୍ଭେ ଆପଣଙ୍କ ବଚନାନୁସାରେ ସେହି ଯଜ୍ଞର ଅଭିସନ୍ଧି କରିଅଛୁଁ । ୪ । ହେ ସାଧୋ ! ଆମ୍ଭେ ସେହି ଯଜ୍ଞ କରିବାର ଅଭିଳାଷୀ ହୋଇ ଯଜ୍ଞୀୟ ସମ୍ଭାରସମୂହ ସଞ୍ଚୟ କରିଅଛୁଁ । ଆମ୍ଭେ ଆପଣଙ୍କର ଯଜମାନ, ଅତଏବ ଆପଣ ସେହି ସମ୍ଭାରସମୂହ ଗ୍ରହଣ କରି ଯଜ୍ଞ ସମ୍ପାଦନ କରନ୍ତୁ ।

ବୃହସ୍ପତି କହିଲେ, ହେ ପୃଥିବୀପତେ ! ଆମ୍ଭେ ତୁମ୍ଭର ଯାଜନ କରିବାକୁ କାମନା କରୁନାହୁଁ, କାରଣ ଆମ୍ଭେ ଇନ୍ଦ୍ରଦେବଙ୍କ ପୌରୋହିତ୍ୟରେ ପ୍ରବୃତ୍ତ ହୋଇ ତାହାଙ୍କ ନିକଟରେ ପ୍ରତିଜ୍ଞା କରିଅଛୁଁ ଯେ କଦାପି ମନୁଷ୍ୟର ଯାଜ୍ୟ କ୍ରିୟା କରିବୁ ନାହିଁ । ୬ ।

ମରୁତ୍ତ କହିଲେ, ହେ ଗୁରୋ ! ଆମ୍ଭେ ଆପଣଙ୍କର ପୈତୃକ ଯଜମାନ ହୋଇ ଆପଣଙ୍କୁ ଅତିଶୟ ସମ୍ମାନ କରିଥାଉଁ । ସମ୍ପ୍ରତି ଆମ୍ଭେ ଆପଣଙ୍କର

Digitized by srujanika@gmail.com

ଯାଜ୍ୟତା ପ୍ରାପ୍ତ ହୋଇଅଛୁଁ । ଅତଏବ ଆପଣ ଆମ୍ଭଙ୍କୁ ଯଜମାନ କରିବା ହେଉନ୍ତୁ । ୭ ।

ବୃହସ୍ପତି କହିଲେ, ହେ ମରୁତ୍ତ ! ଆମ୍ଭେ ଅମର୍ତ୍ତ୍ୟ ଯାଜନ କରି କେଉଁ ପ୍ରକାରରେ ମର୍ତ୍ତ୍ୟ ମାନୁଷର ଯାଜନ କରିବୁଁ । ଅତଏବ ଆପଣ ଯାଆନ୍ତୁ ଅବା ନ ଯାଆନ୍ତୁ, ଆମ୍ଭେ ଅନ୍ୟ ଯାଜନ କରିପାରିବୁ ନାହିଁ । ୮ । ସୁତରାଂ ସମ୍ପ୍ରତି ଆମ୍ଭେ ଆପଣଙ୍କ ଯାଜନ କରିପାରିବୁ ନାହିଁ । ଅତଏବ ହେ ମହାବାହୋ ! ଆପଣଙ୍କର ଯାହାଙ୍କୁ ଉପାଧ୍ୟାୟ କରିବାକୁ ଅଭିଳାଷ ହୁଏ ଏବଂ ଯେ ଆପଣଙ୍କର ଯଜ୍ଞ କରିବେ, ଆପଣ ତାହାଙ୍କୁ ବରଣ କରିବା ହେଉନ୍ତୁ । ୯ ।

ବ୍ୟାସ କହିଲେ—ମରୁତ୍ତ ମହୀପତି ବୃହସ୍ପତିଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଅତିଶୟ ଲଜ୍ଜିତ ହେଲେ, ଏବଂ ଅତିଶୟ ଉଦ୍‌ବିଗ୍ନ ଚିତ୍ତରେ ପ୍ରତ୍ୟାଗମନ କରି ପଥମଧ୍ୟରେ ନାରଦଙ୍କୁ ଦେଖିଲେ । ୧୦ । ମହୀପତି ମରୁତ୍ତ ପଥମଧ୍ୟରେ ଦେବର୍ଷି ନାରଦଙ୍କୁ ଗମନ କରୁଥିବାର ଦେଖି କୃତାଞ୍ଜଳି-ପୁଟରେ ଯଥାବିଧିରେ ଅବସ୍ଥାନ କଲେ ।

ନାରଦ ତାହାଙ୍କୁ କହିଲେ, ହେ ରାଜର୍ଷେ ! ଆପଣ କେଉଁ ନିମିତ୍ତ ଅତିଶୟ ଅସନ୍ତୁଷ୍ଟ ହୋଇଅଛନ୍ତି ? ହେ ଅନଘ ! ଆପଣଙ୍କର ମଙ୍ଗଳ ତ ? ଆପଣ କେଉଁ ସ୍ଥାନକୁ ଗମନ କରିଥିଲେ, କେଉଁଠାରେ ଏତାଦୃଶ ଅପ୍ରୀତି ପ୍ରାପ୍ତ ହୋଇଅଛନ୍ତି ? ହେ ପାର୍ଥିବଶ୍ରେଷ୍ଠ ! ରାଜନ୍ ! ଉକ୍ତ ବିଷୟ ଯଦି ଆମ୍ଭର ଶୁଣିବା ଉପଯୁକ୍ତ ଅଟେ, ତେବେ ଆପଣ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ହେ ନରାଧିପ ! ଆମ୍ଭେ ସର୍ବପ୍ରକାର ଯତ୍ନଦ୍ୱାରା ଆପଣଙ୍କର ସେହି ମନ୍ୟୁ ଅପନୋଦନ କରିବୁଁ । ୧୩ ।

ବୈଶମ୍ପାୟନ କହିଲେ, ମରୁତ୍ତ ମହର୍ଷି ନାରଦଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଉପାଧ୍ୟାୟ ବୃହସ୍ପତିଙ୍କର ବିସମ୍ବାଦସମୂହ ତାହାଙ୍କ ନିକଟରେ ନିବେଦନ କଲେ । ୧୪ ।

ମରୁତ୍ତ କହିଲେ, ହେ ଦେବର୍ଷେ ! ଆମ୍ଭେ ଅଙ୍ଗିରାଙ୍କ ପୁତ୍ର ସୁରଗୁରୁ ବୃହସ୍ପତିଙ୍କୁ ଯଜ୍ଞରେ ଋତ୍ୱିକ୍ କରିବା ନିମିତ୍ତ ତାହାଙ୍କୁ ଦର୍ଶନ କରିବା

Digitized by srujanika@gmail.com

ସକାଶେ ଯାଇଥିଲୁଁ । ସେ ଆମ୍ଭଙ୍କୁ ଅଭିନନ୍ଦନ କଲେ ନାହିଁ । ୧୫ । ପ୍ରତ୍ୟୁତ ସେ ଆମ୍ଭଙ୍କୁ ପ୍ରତ୍ୟାଖ୍ୟାନ କଲେ । ଅତଏବ ହେ ନାରଦ ! ଆମ୍ଭେ ଯଦି ଗୁରୁଙ୍କ କର୍ତ୍ତୃକ ଦୂଷିତ ଓ ପରିତ୍ୟକ୍ତ ହେଲୁଁ, ତେବେ ପ୍ରାଣରକ୍ଷା ନିମିତ୍ତ ଆକାଂକ୍ଷା କରୁନାହୁଁ । ୧୬ ।

ବ୍ୟାସ କହିଲେ, ହେ ମହାରାଜ ! ଦେବର୍ଷି ନାରଦ ମରୁତ୍ତ ନରପାଳଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଅବକ୍ଷିତପୂର୍ବ ମରୁତ୍ତଙ୍କୁ ବାକ୍ୟଦ୍ୱାରା ଜୀବିତ କଲାପରି କହିଲେ । ୧୭ ।

ନାରଦ କହିଲେ, ହେ ରାଜନ୍ ! ଅଙ୍ଗିରାଙ୍କ ପୁତ୍ର ଧର୍ମଶୀଳ ସମ୍ବର୍ତ୍ତ ଦିଗମ୍ବର ହୋଇ ପ୍ରଜାଗଣଙ୍କୁ ମୋହିତ କରି ଦିକ୍‌ସମୂହରେ ଭ୍ରମଣ କରୁଅଛନ୍ତି । ୧୮ । ବୃହସ୍ପତି ଯଦି ଆପଣଙ୍କ ଯାଜନ କରିବା ନିମିତ୍ତ ଏକାନ୍ତ ଇଚ୍ଛୁକ ହେଉ ନାହାନ୍ତି, ତେବେ ଆପଣ ସେହି ମହାତେଜା ସମ୍ବର୍ତ୍ତଙ୍କ ନିକଟକୁ ଗମନ କରିବା ହେଉନ୍ତୁ । ସେ ପ୍ରସନ୍ନ ହୋଇ ଆପଣଙ୍କ ଯାଜନ କରିବେ । ୧୯ ।

ମରୁତ୍ତ କହିଲେ, ହେ ବାଗ୍ମୀବର ନାରଦ ! ଆପଣଙ୍କର ଏହି ବାକ୍ୟଦ୍ୱାରା ଆମ୍ଭେ ଜୀବିତ ହେଲୁଁ । ପରନ୍ତୁ କେଉଁ ସ୍ଥାନରେ ଆମ୍ଭେ ସେହି ସମ୍ବର୍ତ୍ତଙ୍କୁ ଦର୍ଶନ କରିପାରିବୁଁ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୨୦ । ଆମ୍ଭେ ତାହାଙ୍କ ନିକଟରେ କିପରି ରହିବୁଁ, ସେ କେଉଁ ପ୍ରକାରରେ ଆମ୍ଭଙ୍କୁ ପରିତ୍ୟାଗ ନ କରିବେ, ସେହି ଉପାୟ ଉପଦେଶ କରିବା ହେଉନ୍ତୁ । ସେ ଆମ୍ଭଙ୍କୁ ପ୍ରତ୍ୟାଖ୍ୟାନ କଲେ ଆମ୍ଭେ ପ୍ରାଣଧାରଣ କରିବାକୁ ଉତ୍ସାହିତ ହେବୁ ନାହିଁ । ୨୧ ।

ନାରଦ କହିଲେ, ହେ ମହାରାଜ ! ସେହି ସମ୍ବର୍ତ୍ତ ଉନ୍ମତ୍ତ ବେଶ ଧାରଣ କରି ମହେଶ୍ୱରଙ୍କ ଦର୍ଶନାଭିଳାଷରେ ବାରାଣସୀରେ ଯଥାସୁଖରେ ବିଚରଣ କରୁଅଛନ୍ତି । ହେ ମହୀପତେ ! ଆପଣ ସେହି ବାରାଣସୀର ଦ୍ୱାରଦେଶରେ ଉପସ୍ଥିତ ହୋଇ ତାହାର କୌଣସି ସ୍ଥାନରେ ଗୋଟିଏ ଶବ ରକ୍ଷା କରିବେ । ଯେଉଁ ବ୍ୟକ୍ତି ସେହି ଶବ ଦର୍ଶନ କରି ସେଠାରୁ ନିବୃତ୍ତ ହେବେ, ତାହାଙ୍କୁ ସମ୍ବର୍ତ୍ତ ବୋଲି ଜାଣିବା ହେବେ ।୨୩। ସେହି ବୀର୍ଯ୍ୟବାନ୍ ସମ୍ବର୍ତ୍ତ ଯେଉଁ ସ୍ଥାନକୁ ଗମନ କରିବେ ଆପଣ କୃତାଞ୍ଜଳିପୂର୍ବରେ ତାହାଙ୍କ ଅନୁଗମନ କରି

Digitized by srujanika@gmail.com

ଏକାନ୍ତରେ 'ଆମ୍ଭେ ଆପଣଙ୍କର ଶରଣାଗତ ହେଲୁଁ', ତାହାଙ୍କୁ ଏହିକଥା କହିବେ । ୨୪ । ସେହି ସମ୍ବର୍ତ୍ତ ଯଦି ଆପଣଙ୍କୁ ପ୍ରଶ୍ନ କରିବେ, କେଉଁ ବ୍ୟକ୍ତି ଆପଣଙ୍କୁ ଆମ୍ଭର ଅନୁସନ୍ଧାନ କହିଲେ, ତେବେ ଆପଣ କହିବେ ଯେ ନାରଦ ଆମ୍ଭଙ୍କୁ ଭବଦୀୟ ସନ୍ଧାନ କହିଥିଲେ । ୨୫ । ସେ ଯଦି ଆମ୍ଭର ଅନୁଗମନ କରିବାକୁ ଆପଣଙ୍କୁ ଆଦେଶ ଦେବେ, ତେବେ ଆପଣ ନିଃଶଙ୍କଚିତ୍ତରେ କହିବେ ଯେ, ସେ ଅନଳରେ ଆରୋହଣ କରିଅଛନ୍ତି । ୨୬ ।

ବ୍ୟାସ କହିଲେ, ରାଜର୍ଷି ମରୁତ୍ତ ନାରଦଙ୍କ ବାକ୍ୟ ସ୍ୱୀକାର ପୂର୍ବକ ତାହାଙ୍କୁ ପୂଜାକରି ତଦୀୟ ଅନୁମତି ପ୍ରାପ୍ତ ହୋଇ ବାରାଣସୀପୁରକୁ ଗମନ କଲେ । ୨୭ । ମହାଯଶା ମରୁତ୍ତ ବାରାଣସୀକୁ ଗମନ କରି ନାରଦଙ୍କ ବଚନ ସ୍ମରଣପୂର୍ବକ ସେହି ପୁରୀର ଦ୍ୱାରଦେଶରେ ନାରଦଙ୍କ ବାକ୍ୟାନୁସାରେ ଶବ ସ୍ଥାପନ କଲେ । ୨୮ । ବିପ୍ରବର ସମ୍ବର୍ତ୍ତ ସମାନ ସମୟରେ ପୁରୀର ଦ୍ୱାର-ଦେଶରେ ଉପସ୍ଥିତ ହୋଇ ସେଠାରେ ସହସା ଶବ ଦର୍ଶନ କରି ନିବୃତ୍ତ ହେଲେ । ୨୯ । ଅବିକ୍ଷିତ୍‌ନନ୍ଦନ ମହୀପାଳ ମରୁତ୍ତ ତାହାଙ୍କୁ ନିବୃତ୍ତ ହେବାର ଦେଖି ତାହାଙ୍କ ନିକଟରୁ ଶିକ୍ଷିତ ହେବା ନିମିତ୍ତ ତାହାଙ୍କ ପଶ୍ଚାଦ୍ଭାଗରେ କୃତାଞ୍ଜଳିପୁଟରେ ଗମନ କଲେ ।୩୦। ସମ୍ବର୍ତ୍ତ ମହାରାଜ ମରୁତ୍ତଙ୍କୁ ପଶ୍ଚାଦ୍ଭାଗରେ ଗମନ କରୁଥିବାର ଦେଖି ତାହାଙ୍କୁ ନିର୍ଜନ ସ୍ଥାନରେ ପାଂଶୁ, କର୍ଦ୍ଦମ, ଶ୍ଳେଷ୍ମା ଓ ନିଷ୍ଠୀବନଦ୍ୱାରା ସମାଚ୍ଛନ୍ନ କଲେ । ୩୧ । ମହୀପତି ମରୁତ୍ତ ସମ୍ବର୍ତ୍ତ କର୍ତ୍ତୃକ ସେହିପରି ବାଧାପ୍ରାପ୍ତ ହୋଇ ସୁଦ୍ଧା କୃତାଞ୍ଜଳିପୁଟରେ ତାହାଙ୍କୁ ପ୍ରସନ୍ନ କରାଇବା ଇଚ୍ଛାରେ ତଦୀୟ ଅନୁଗମନ କଲେ । ୩୨ । କିୟତ୍‌କାଳ ପରେ ସମ୍ବର୍ତ୍ତ ପରିଶ୍ରାନ୍ତ ହୋଇ ବହୁଶାଖାସମନ୍ୱିତ ଶୀତଳ ଚ୍ଛାୟାଯୁକ୍ତ ନ୍ୟଗ୍ରୋଧ ବୃକ୍ଷତଳରେ ପ୍ରବେଶନ କଲେ ।



Digitized by srujanika@gmail.com

# ସପ୍ତମ ଅଧ୍ୟାୟ

ସମ୍ବର୍ତ୍ତ କହିଲେ—ତୁମ୍ଭେ ଆମ୍ଭଙ୍କୁ କେଉଁପରି ଜାଣିଲ ? ଏବଂ କେଉଁ ବ୍ୟକ୍ତି ତୁମ୍ଭଙ୍କୁ ଆମ୍ଭର ପରିଚୟ କହିଲେ ? ତୁମ୍ଭେ ଯଦି ଆମ୍ଭର ପ୍ରିୟ ହେବାକୁ ଅଭିଳାଷୀ ହୁଅ, ତେବେ ଆମ୍ଭ ନିକଟରେ ଉକ୍ତ ବିଷୟ ଯଥାର୍ଥରୂପେ କୀର୍ତ୍ତନ କର । ୧ । ତୁମ୍ଭେ ଯଦି ଏହା ସତ୍ୟ କହିବ ତେବେ ତୁମ୍ଭର ମନୋରଥ ସଫଳ ହେବ । ନଚେତ୍ ତୁମ୍ଭ ମସ୍ତକ ଶତଧା ବିଦୀର୍ଣ୍ଣ ହେବ । ୨ ।

ମରୁତ୍ତ କହିଲେ—ଆପଣ ଯେ ଆମ୍ଭର ଗୁରୁପୁତ୍ର ଅଟନ୍ତି, ଏହା ଆମ୍ଭେ ପଥମଧ୍ୟରେ ଭ୍ରମଣକାରୀ ନାରଦଙ୍କ ମୁଖରୁ ଶ୍ରବଣ କରିଅଛୁଁ । ତଦବଧି ଆପଣଙ୍କଠାରେ ଆମ୍ଭର ଉତ୍ତମା ପ୍ରୀତି ଜନ୍ମିଅଛି । ୩ ।

ସମ୍ବର୍ତ୍ତ କହିଲେ—ସେହି ନାରଦ ଆମ୍ଭଙ୍କୁ ଯାଜ୍ଞିକ ବୋଲି ଜାଣନ୍ତି । ଏହି କଥା ଆମ୍ଭ ନିକଟରେ ତୁମ୍ଭେ ସତ୍ୟ କହିଅଛ । ଉତ୍ତମ ହେଲି । ଏତେବେଳେ ସେ କେଉଁଠାରେ ଅଛନ୍ତି, ଆମ୍ଭଙ୍କୁ ତାହା କହ । ୪ ।

ମରୁତ୍ତ କହିଲେ—ଦେବର୍ଷିଶ୍ରେଷ୍ଠ ସେହି ନାରଦ ଆମ୍ଭଙ୍କୁ ଆପଣଙ୍କ ପରିଚୟ କହି, ଭବଦୀୟ ନିକଟକୁ ଗମନ ନିମିତ୍ତ ଆଦେଶ ପ୍ରଦାନ କରି ହୁତାଶନରେ ପ୍ରବିଷ୍ଟ ହେଲେ । ୫ ।

ବ୍ୟାସ କହିଲେ—ସମ୍ବର୍ତ୍ତ ମହୀପତି ମରୁତ୍ତଙ୍କ ଏତାଦୃଶ ବାକ୍ୟ ଶ୍ରବଣରେ ସମଧିକ ସନ୍ତୁଷ୍ଟ ହୋଇ ଆମ୍ଭେ ଏତାବତ୍ କାର୍ଯ୍ୟ କରିବାକୁ ସମର୍ଥ ଅଟୁଁ, ଏହି କଥା ସେ କହିଲେ । ୬ । ହେ ରାଜନ୍ ! ତପୂରେ ସମ୍ବର୍ତ୍ତ ଉନ୍ମତ୍ତ ହୋଇ ପରୁଷବାକ୍ୟ ଦ୍ୱାରା ମରୁତ୍ତଙ୍କୁ ବାରମ୍ବାର ଭର୍ତ୍ସନା କରି କହିଲେ । ୭ । ଆମ୍ଭେ ବାୟୁରୋଗଗ୍ରସ୍ତ, ସୁତରାଂ ଆମ୍ଭ ଚିତ୍ତରେ ଯେତେବେଳେ ଯାହା ଉଦୟ ହୁଏ, ତେତେବେଳେ ତାହା କରୁଁ । ଅତଏବ ତୁମ୍ଭେ ଏତାଦୃଶ ବିକୃତସ୍ୱଭାବ ବ୍ରାହ୍ମଣଦ୍ୱାରା ଯଜ୍ଞ କରିବାକୁ କାହିଁପାଇଁ ଅଭିଳାଷୀ ହୋଇଅଛ ? ଯଜ୍ଞ କାର୍ଯ୍ୟରେ ସମର୍ଥ ମଦୀୟ ଭ୍ରାତା ବୃହସ୍ପତି ବାସବଙ୍କ ସହିତ ସଙ୍ଗତ ହୋଇ ତଦୀୟ ଯାଜ୍ୟ କ୍ରିୟାରେ ନିଯୁକ୍ତ ଅଛନ୍ତି । ତୁମ୍ଭେ ତାହାଙ୍କଦ୍ୱାରା ଭଦୀୟ କାର୍ଯ୍ୟ ସମ୍ପାଦନ କର । ୯ । ଆମ୍ଭର ପୂର୍ବଜ ବୃହସ୍ପତି ମଦୀୟ ଏହି ଶରୀର

Digitized by srujanika@gmail.com

ଭକ୍ଷ ଯାବତୀୟ ଗୃହସ୍ଥିତ ସାମଗ୍ରୀ ଏବଂ ଗୃହ୍ୟ ଦେବତା ଓ ଯଜମାନସମୂହ ହରଣ କରି ନେଇଅଛନ୍ତି । ହେ ଅବୀକ୍ଷିତତନୟ ! ସେ ଆମ୍ଭର ପୂଜ୍ୟତମ । ତାହାଙ୍କ ଅନୁମତି ବ୍ୟତିରେକେ ଆମ୍ଭେ ତୁମ୍ଭର ଯାଜନ କରିବା ନିମିତ୍ତ କଦାପି ସମର୍ଥ ହେବୁ ନାହିଁ । ଅତଏବ ତୁମ୍ଭେ ଯଦି ଯାଗ କରିବାକୁ ଇଚ୍ଛାକର ତେବେ ସେହି ବୃହସ୍ପତିଙ୍କ ନିକଟକୁ ଗମନ ପୂର୍ବକ ତାହାଙ୍କ ଅନୁମତି ଘେନି ଆସିଲେ ଆମ୍ଭେ ତୁମ୍ଭର ଯାଜନ କରିବୁଁ । ୧୨ ।

ମରୁତ୍ତ କହିଲେ—ହେ ସମ୍ବର୍ତ୍ତ ! ଆମ୍ଭେ ଆପଣଙ୍କ ନିକଟରେ ବୃହସ୍ପତିଙ୍କ ବୃତ୍ତାନ୍ତ କୀର୍ତ୍ତନ କରୁଅଛୁଁ । ଆପଣ ତାହା ଶ୍ରବଣ କରିବା ହେଉନ୍ତୁ । ଆମ୍ଭେ ପ୍ରଥମେ ବୃହସ୍ପତିଙ୍କ ନିକଟକୁ ଗମନ କରିଥିଲୁଁ । ସେ ବାସବଙ୍କୁ ଯଜମାନ କାମନା କରିବାରୁ ଆମ୍ଭଙ୍କୁ ଯଜମାନ କରିବାକୁ ଅଭିଳାଷୀ ହେଉ ନାହାନ୍ତି ।୧୩।

ହେ ବିପ୍ର ! ଆମ୍ଭେ ବୃହସ୍ପତିଙ୍କ ନିକଟକୁ ଗମନ ପୂର୍ବକ ଯଜ୍ଞର ବୃତ୍ତାନ୍ତ ନିବେଦନ କଲାରୁ ସେ ଆମ୍ଭଙ୍କୁ କହିଲେ ଯେ, ବାସବ ଆମ୍ଭଙ୍କୁ କହିଅଛନ୍ତି ମରୁତ୍ତ ପୃଥିବୀପତି ହୋଇ ଆମ୍ଭ ସହିତ ସର୍ବଦା ସ୍ପର୍ଦ୍ଧା କରି ଥାଆନ୍ତି । ଅତଏବ ଆପଣ ତାହାଙ୍କର ଯାଜ୍ୟକ୍ରିୟା କରି ପାରିବେ ନାହିଁ । ଏହି କଥା କହି ଆମ୍ଭଙ୍କୁ ନିଷେଧ କରିଅଛନ୍ତି । ଅତଏବ ଆମ୍ଭେ ଦେବତା ଯଜମାନ ପ୍ରାପ୍ତ ହୋଇ ମନୁଷ୍ୟଙ୍କ ଯାଜନ କରିବୁ ନାହିଁ । ହେ ମୁନିବର ! ବାସବ ଆପଣଙ୍କ ଭ୍ରାତା ବୃହସ୍ପତିଙ୍କୁ ଆମ୍ଭର ଯାଜ୍ୟକ୍ରିୟା କରିବାକୁ ନିଷେଧ କରିଥିବାରୁ ସେ ତହିଁରେ ସ୍ୱୀକୃତ ହୋଇଅଛନ୍ତି । ହେ ମୁନିପୁଙ୍ଗବ ! ଆପଣ ଏହି କଥା ନିଶ୍ଚୟ ଜାଣିବା ହେଉନ୍ତୁ ଯେ, ସେ ଦେବରାଜଙ୍କ ଆଶ୍ରୟ ପାଇଅଛନ୍ତି ବୋଲି ଆମ୍ଭେ ପ୍ରୀତିସହକାରେ ତାହାଙ୍କ ନିକଟକୁ ଯାଇଥିଲୁଁ । ତଥାପି ସେ ଆମ୍ଭଙ୍କୁ ଯଜମାନ କରିବାକୁ ଅଭିଳାଷୀ ହେଲେ ନାହିଁ । ସେହି କାରଣରୁ ଆମ୍ଭେ ସର୍ବସ୍ୱ ବ୍ୟୟକରି ସୁଦ୍ଧା ଆପଣଙ୍କଦ୍ୱାରା ଯାଗ କରାଇବାର ଏବଂ ଭବତ୍‌କୃତ ଗୁଣସମୂହଦ୍ୱାରା ବାସବଙ୍କୁ ଅତିକ୍ରମ କରିବାର ବାସନା କରିଅଛୁଁ ।

ହେ ବ୍ରହ୍ମନ୍ ! ଆମ୍ଭେ ବିନାଅପରାଧରେ ସେହି ବୃହସ୍ପତିଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିବାରୁ ଆମ୍ଭ ମନ ଆଉ ତାହାଙ୍କ ନିକଟକୁ ଗମନ କରିବାକୁ ପ୍ରବୃତ୍ତ ହେଉନାହିଁ । ୧୪ ।

Digitized by srujanika@gmail.com

ସମ୍ବର୍ତ୍ତ କହିଲେ—ହେ ପାର୍ଥିବ ! ତୁମ୍ଭେ ଯଦି ଆମ୍ଭର ସମସ୍ତ ଅଭିପ୍ରାୟ ସମ୍ପାଦନ କରିପାର, ତେବେ ଆମ୍ଭେ ତୁମ୍ଭର ଅଭିଳଷିତ ଏହି ସମସ୍ତ କାର୍ଯ୍ୟ କରିବାକୁ ଇଚ୍ଛା କରୁଅଛୁଁ । ୧୯ । ପରନ୍ତୁ ଆମ୍ଭର ଏହି ସଂଶୟ ଉପସ୍ଥିତ ହେଉଅଛି ଯେ, ଆମ୍ଭେ ତୁମ୍ଭର ଯାଜନ କ୍ରିୟାରେ ପ୍ରବୃତ୍ତ ହେଲେ, ବୃହସ୍ପତି ଏବଂ ପୁରନ୍ଦର ଉଭୟେ ଅତିଶୟ କ୍ରୁଦ୍ଧହୋଇ ଆମ୍ଭପ୍ରତି ଦ୍ୱେଷ କରିବେ । ସେହି ସମୟରେ ଆମ୍ଭଠାରେ ତୁମ୍ଭର ଦୃଢ଼ଭକ୍ତି ରହିବ କି ନାହିଁ ତଦ୍‌ବିଷୟରେ ଆମ୍ଭର ସନ୍ଦେହ ହେଉଅଛି । ଅତଏବ ପ୍ରଥମତଃ ତୁମ୍ଭେ ଦୃଢ଼ ଶପଥଦ୍ୱାରା ଆମ୍ଭର ସେହି ସନ୍ଦେହ ଭଞ୍ଜନକର । ନଚେତ୍ ଆମ୍ଭେ କୋପଯୁକ୍ତ ହେଲେ ତୁମ୍ଭଙ୍କୁ ବାନ୍ଧବ ସହିତ ଭସ୍ମସାତ୍ କରିବୁଁ । ୨୧ ।

ମରୁତ୍ତ କହିଲେ—ହେ ବ୍ରହ୍ମନ୍ ! ଆମ୍ଭେ ଯଦି ଆପଣଙ୍କ ସଙ୍ଗ ପରିତ୍ୟାଗ କରିବୁଁ, ତେବେ ଯାବତ୍‌କାଳ ପର୍ଯ୍ୟନ୍ତ ସୂର୍ଯ୍ୟ ପ୍ରକାଶିତ ହେଉଥିବେ ଏବଂ ପର୍ବତସମୂହ ବିଦ୍ୟମାନ ଥିବେ, ତାବତ୍ ପର୍ଯ୍ୟନ୍ତ ଆମ୍ଭେ ଉତ୍ତମ ଲୋକସମୂହ ଲାଭ କରିପାରିବୁ ନାହିଁ, ଅର୍ଥାତ୍ ନରକ ଭୋଗ କରିବୁଁ । ଅପିଚ ଆମ୍ଭେ ଯଦି ଆପଣଙ୍କ ସଙ୍ଗ ପରିତ୍ୟାଗ କରି ପାରିବୁଁ, ତେବେ ଆମ୍ଭେ କଦାପି ଶୁଭବୁଦ୍ଧି ଲାଭ କରିପାରିବୁ ନାହିଁ ଏବଂ ବିଷୟବାସନା ପରିତ୍ୟାଗ କରିପାରିବୁ ନାହିଁ । ୨୩ ।

ସମ୍ବର୍ତ୍ତ କହିଲେ—ହେ ଅବିକ୍ଷିତତନୟ ! ଶ୍ରବଣ କର । ତୁମ୍ଭର କର୍ମବିଷୟରେ ଯେଉଁପରି ସୁନ୍ଦର ମନୋଯୋଗ ହୋଇଅଛି, ଆମ୍ଭ ଅନ୍ତଃକରଣରେ ମଧ୍ୟ ତଦ୍‌ବତ୍ ଯାଜନ ବିଦ୍ୟମାନ ଅଛି ।

ହେ ରାଜନ୍ ! ତୁମ୍ଭଙ୍କୁ ଉତ୍କୃଷ୍ଟ ଅକ୍ଷୟ ଯଜ୍ଞୀୟ ଦ୍ରବ୍ୟସମୂହ ଆମ୍ଭେ କହୁଅଛୁଁ, ଯେଉଁ ଦ୍ରବ୍ୟଦ୍ୱାରା ତୁମ୍ଭେ ଗନ୍ଧର୍ବଗଣଙ୍କ ସହିତ ଦେବଗଣ ଓ ଇନ୍ଦ୍ରଙ୍କୁ ଅଭିଭୂତ କରିବ । ପରନ୍ତୁ ରାଜ୍ୟ ଅବା ଧନ ବିଷୟରେ ଆମ୍ଭର ସ୍ପୃହା ନାହିଁ । ଆମ୍ଭେ କେବଳ ସେହି ଭ୍ରାତା ବୃହସ୍ପତି ଓ ଇନ୍ଦ୍ର ଉଭୟଙ୍କର ବିପ୍ରିୟ କାର୍ଯ୍ୟ କରିବୁଁ । ଆମ୍ଭେ ତୁମ୍ଭଙ୍କୁ ଏହା ସତ୍ୟ କହୁଅଛୁଁ ଯେ, ଆମ୍ଭେ ନିଶ୍ଚୟ ଇନ୍ଦ୍ରଙ୍କ ସହିତ ତୁମ୍ଭର ସମାନତା ଲାଭ କରାଇବୁଁ । ୨୭ ।

Digitized by srujanika@gmail.com

# ଅଷ୍ଟମ ଅଧ୍ୟାୟ

ସମ୍ମର୍ତ୍ତି କହିଲେ—ହିମାଳୟ ପର୍ବତର ପୃଷ୍ଠରେ ମୁଞ୍ଜବାନ୍ ନାମକ ଗୋଟିଏ ପର୍ବତ ଅଛି । ଭଗବାନ୍ ତପୋନିଧି ଉମାପତି ସେହିଠାରେ ନିତ୍ୟ ତପସ୍ୟା କରନ୍ତି ।୧। ଶୂଳପାଣି ମହାତେଜା ମହେଶ୍ୱର ନାନାବିଧ ଭୂତଗଣରେ ପରିବୃତ ହୋଇ ଉମାଦେବୀଙ୍କ ସହିତ ସେହି ଶୈଳରାଜର ଗୁହା ବିଷମ ଶୃଙ୍ଗ ଏବଂ ତତ୍ସ୍ଥ ବନସ୍ପତି ତରୁତଳରେ ନିତ୍ୟ ଇଚ୍ଛାନୁସାରେ ଯଥାସୁଖରେ ଅବସ୍ଥାନ କରନ୍ତି ।୩।

ସେଠାରେ ରୁଦ୍ରଗଣ, ସାଧ୍ୟଗଣ, ବିଶ୍ୱଦେବ, ବସୁଗଣ, ଯମ, ବରୁଣ, ସହଚରଗଣଙ୍କ ସହିତ କୁବେର, ଭୂତ, ପିଶାଚ, ଅଶ୍ୱିନୀତନୟ ନାସତ୍ୟଦ୍ୱୟ, ଗନ୍ଧର୍ବ, ଅପ୍ସରା, ଯକ୍ଷ, ଦେବର୍ଷି, ଆଦିତ୍ୟ, ମରୁତ୍ ଓ ଯାତୁଧାନସମୂହ ମହାତ୍ମା ବହୁରୂପୀ ଉମାପତିଙ୍କୁ ଉପାସନା କରନ୍ତି ।୬।

ହେ ପୃଥିବୀପତେ ! ଭଗବାନ୍ ଶଙ୍କର ବିକୃତ ଓ ବିକୃତାକାର କ୍ରୀଡ଼ା କରି କୁବେରଙ୍କ ଅନୁଚରଗଣ ସହିତ ସେଠାରେ କ୍ରୀଡ଼ା କରନ୍ତି ।୭। ବାଳସୂର୍ଯ୍ୟ ସମାନ ଦ୍ୟୁତିଶାଳୀ ସେହି ଶୈଳବର ସ୍ୱୀୟ ସୌନ୍ଦର୍ଯ୍ୟଦ୍ୱାରା ପ୍ରଜ୍ୱଳିତ ଅନଳ ସଦୃଶ ଲୋକର ନୟନଗୋଚର ହୁଏ । ମାଂସଲୋଚନ ପ୍ରାକୃତ କୌଣସି ପ୍ରାଣୀ ତାହାର ରୂପ ଅବା ଅବୟବ ନିର୍ଦ୍ଦେଶ କରିବାକୁ କଦାପି ସମର୍ଥ ହୁଅନ୍ତି ନାହିଁ ।

ହେ ରାଜନ୍ ! ସେଠାରେ ଉଷ୍ଣ, ଶୀତ, ବାୟୁ, ସୂର୍ଯ୍ୟ, ଜରା, କ୍ଷୁଧା, ପିପାସା, ମୃତ୍ୟୁ ଏବଂ ଭୟ ଏହି ସମସ୍ତ କିଛି ନଥାଏ । ହେ ବିଜୟିପ୍ରବର ! ସେହି ଶୈଳର ଚତୁଃପାର୍ଶ୍ୱରେ ସୂର୍ଯ୍ୟରଶ୍ମି ସଦୃଶ ପ୍ରଭାଶାଳୀ ପ୍ରଭୂତ ସୁବର୍ଣ୍ଣର ଆକର ବିଦ୍ୟମାନ ଅଛି । ହେ ରାଜନ୍ ! ମହାତ୍ମା କୁବେରଙ୍କ ପ୍ରିୟଚିକୀର୍ଷୁ ଉଦ୍ୟତ ଆୟୁଧଧାରୀ ସହାୟକବୃନ୍ଦ ସେହି ଆକର-ନିକରକୁ ରକ୍ଷା କରୁଅଛନ୍ତି ।୧୧।

ତୁମ୍ଭେ ସେଠାକୁ ଗମନପୂର୍ବକ ସେହି ଭଗବାନ୍ ଶର୍ବ, ବିଧାତା, ରୁଦ୍ର, ଶିତିକଣ୍ଠ, ସୁରୂପ, ସୁବର୍ଚ୍ଚା, କପର୍ଦ୍ଦୀ, କରାଳ, ହର୍ଯ୍ୟକ୍ଷ,

Digitized by srujanika@gmail.com

ବରଦ, ତ୍ରିଲୋଚନ, ସୂର୍ଯ୍ୟଦଣ୍ଡନେତ୍ର, ବାମନ, ଶିବ, ଦକ୍ଷିଣାମୂର୍ତ୍ତି, ଅବ୍ୟକ୍ତରୂପୀ, ସଦ୍‌ବୃତ୍ତ, ଶଙ୍କର, ମଙ୍ଗଳ, ହରକେଶ, ସ୍ଥାଣୁ, ପୁରୁଷ, ହରନେତ୍ର, ମୁଣ୍ଡ, କୃଶ, ଉତ୍ତର, ଭାସ୍ୱର, ସୁତୀର୍ଥ, ଦେବଦେବ, ରୁଦ୍ର, ଉଷ୍ଣୀଷୀ, ସୁବକ୍ତ୍ର, ସହସ୍ରାକ୍ଷ, ପର୍ଜନ୍ୟରୂପୀ, ଗିରିଶ, ପ୍ରଶାନ୍ତ, ଯତି, ଚୀରବାସ, ବିଲ୍ୱଦଣ୍ଡ, ସିଦ୍ଧ, ସର୍ବଦଣ୍ଡଧାରୀ, ମୃଗବ୍ୟାଧ, ମହାଧନ୍ୱା, ଭବ, ବର, ସୋମବକ୍ତ୍ର, ସିଦ୍ଧମନ୍ତ୍ର, ଚକ୍ଷୁସ୍ୱରୂପ, ହିରଣ୍ୟବାହୁ, ଉଗ୍ର, ଦିକ୍‌ପତି, ଲେଲିହାନ, ଗୋଷ୍ଠ, ସିଦ୍ଧମନ୍ତ୍ର, ସର୍ବବ୍ୟାପୀ, ପଶୁପତି, ଭୂତପତି, ବୃଷ, ମାତୃଭକ୍ତ, ସେନାନୀ, ମଧ୍ୟମ, ସ୍ରୁବହସ୍ତ, ଯତି, ଧନ୍ୱୀ, ଭାର୍ଗବ, ଅଜ, କୃଷ୍ଣନେତ୍ର, ବିରୂପାକ୍ଷ, ତୀକ୍ଷ୍ଣଦଂଷ୍ଟ୍ର, ତୀକ୍ଷ୍ଣ, ବୈଶ୍ୱାନରମୁଖ, ମହାଦ୍ୟୁତି, ଅନଙ୍ଗ, ବିଲୋହିତ, ଦୀପ୍ତ, ଦୀପ୍ତାକ୍ଷ, ମହାତେଜା, କପାଳମାଳୀ, ସୁବର୍ଣ୍ଣମୁକୁଟଧାରୀ, ମହାଦେବ, କୃଷ୍ଣ, ତ୍ର୍ୟମ୍ବକ, ଅନଘ, କ୍ରୋଧନ, ନୃଶଂସ, ମୃଦୁ, ବାହୁଶାଳୀ, ଦଣ୍ଡୀ, ତପସ୍ୱୀ, ଅକ୍ରୂରକର୍ମା, ସହସ୍ରଶିର, ସହସ୍ରଚରଣ, ସ୍ୱଧାସ୍ୱରୂପ, ଦଂଷ୍ଟ୍ରା, ପିନାକୀ, ମହାଦେବ, ମହାଯୋଗୀ, ଅବ୍ୟୟ, ତ୍ରିଶୂଳହସ୍ତ, ବରଦ, ତ୍ର୍ୟମ୍ବକେଶ୍ୱର, ତ୍ରିପୁରଘ୍ନ, ତ୍ରିନୟନ, ତ୍ରିଲୋକେଶ, ମହୌଜା, ସର୍ବଭୂତପ୍ରଭବ, ସର୍ବଭୂତାବାସ, ଧରଣୀଧର, ଈଶାନ, ଶଙ୍କର, ସର୍ବ, ଶିବ, ବିଶ୍ୱେଶ୍ୱର, ଭବ, ଉମାପତି, ପଶୁପତି, ବିଶ୍ୱରୂପ, ମହେଶ୍ୱର, ବିରୂପାକ୍ଷ, ଦଶଭୁଜ, ଦିବ୍ୟଗୋବୃଷଭଧ୍ୱଜ, ଉଗ୍ର, ସ୍ଥାଣୁ, ଶିବ, ରୌଦ୍ର, ଗୌରୀଶ୍ୱର, ଈଶ୍ୱର, ଶିତିକଣ୍ଠ, ଅଜ, ଶୁକ୍ର, ପୃଥୁ, ପୃଥୁହର, ବର, ବିଶ୍ୱରୂପ, ବିରୂପାକ୍ଷ, ବହୁରୂପ, ଉମାପତି, ଅନଙ୍ଗାଙ୍ଗହର, ଶରଣ୍ୟ, ଚତୁର୍ମୁଖ ମହାଦେବଙ୍କୁ ଅବନତ ମସ୍ତକରେ ପ୍ରଣାମକରି ତାହାଙ୍କର ଶରଣାଗତ ହୁଅ । ୩୨ ।

ହେ କ୍ଷିତିପତେ ! ସେହି ମହାରଂହ ମହାତ୍ମା ମହାଦେବଙ୍କୁ ଏହିରୂପେ ନମସ୍କାର କରି ତାହାଙ୍କ ଶରଣାଗତ ହେଲେ ତୁମ୍ଭେ ସେହି ସୁବର୍ଣ୍ଣ ପ୍ରାପ୍ତହେବ । ୩୩ । ଏପରି ଶୁଣିକରି ସୁବର୍ଣ୍ଣଆହରଣେଚ୍ଛୁକ ମନୁଷ୍ୟମାନେ ସେଠାକୁ ଗମନ କରନ୍ତୁ । ଅନନ୍ତର କାରନ୍ଧମସୁତ ମରୁତ୍ତ ସମ୍ବର୍ତ୍ତଙ୍କଠାରୁ ଏହି ବାକ୍ୟ ଶ୍ରବଣକରି ତଦନୁସାରେ କାର୍ଯ୍ୟକରି ମନୁଷ୍ୟର ଅସାଧ୍ୟ ଯଜ୍ଞୀୟ ଦ୍ରବ୍ୟବିଧାନସମୂହ ସଞ୍ଚୟ କଲେ । ସେଠାରେ ଶିଳ୍ପିଗଣ ସୁବର୍ଣ୍ଣମୟ ଭାଣ୍ଡସମୂହ ନିର୍ମାଣ କଲେ । ୩୪ ।

Digitized by srujanika@gmail.com

ତଦନନ୍ତର ବୃହସ୍ପତି ମହୀପତି ମରୁତ୍ତଙ୍କର ଦେବଗଣ ଅପେକ୍ଷା ସମଧିକ ସମୃଦ୍ଧି ଶ୍ରବଣକରି ଅତିଶୟ ସନ୍ତାପ କଲେ । ୩୬ । ବୃହସ୍ପତି, ମହାସୁ ଶତ୍ରୁ ସମ୍ବର୍ତ୍ତ ବସୁମାନ୍ ହେବେ, ମନେ ମନେ ଏହିପରି ଚିନ୍ତାକରି ଅତିଶୟ ସନ୍ତପ୍ତ ଏବଂ ବୈବର୍ଣ୍ଣ୍ୟ ଓ କୃଶତ୍ୱପ୍ରାପ୍ତ ହେଲେ । ୩୭ । ଦେବରାଜ ବୃହସ୍ପତିଙ୍କର ସନ୍ତାପ ବୃତ୍ତାନ୍ତ ଶ୍ରବଣକରି ଅମରଗଣରେ ପରିବୃତ ହୋଇ ତାହାଙ୍କ ନିକଟକୁ ଆଗମନ ପୂର୍ବକ କହିଲେ । ୩୮ ।

---

# ନବମ ଅଧ୍ୟାୟ

ଇନ୍ଦ୍ର କହିଲେ—ହେ ବୃହସ୍ପତେ ! ଆମ୍ଭେ ପଚାରୁଅଛୁଁ, ଆପଣଙ୍କର ସୁଖରେ ନିଦ୍ରା ହେଉଅଛି ତ ? ପରିଚାରକଗଣ ଆପଣଙ୍କର ମନୋମତ ହୋଇଅଛନ୍ତି ତ ? ହେ ବିପ୍ରବର ! ଆପଣ ଦେବଗଣଙ୍କର ସୁଖ କାମନା-କରନ୍ତି ତ ? ଦେବଗଣ ଆପଣଙ୍କୁ ପାଳନ କରନ୍ତି ତ ? ୧ ।

ବୃହସ୍ପତି କହିଲେ—ହେ ଦେବରାଜ ! ଆମ୍ଭେ ଶଯ୍ୟାରେ ସୁଖରେ ନିଦ୍ରା ଯାଉଅଛୁ, ପରିଚାରକଗଣ ଆମ୍ଭର ମନୋଜ୍ଞ ହୋଇ ଅଛନ୍ତି । ଆମ୍ଭେ ନିରନ୍ତର ଦେବଗଣଙ୍କର ସୁଖ କାମନା କରୁଅଛୁଁ ଏବଂ ଦେବଗଣ ମଧ୍ୟ ଆମ୍ଭଙ୍କୁ ପରମାଦରରେ ପାଳନ କରୁଅଛନ୍ତି । ୨ ।

ଇନ୍ଦ୍ର କହିଲେ—ହେ ବ୍ରହ୍ମନ୍ ! ତେବେ କେଉଁ କାରଣରୁ ଆପଣଙ୍କର ଶାରୀରିକ ଓ ମାନସିକ ଦୁଃଖ ଉପସ୍ଥିତ ହେଲା ? ଅଦ୍ୟ କେଉଁ କାରଣରୁ ବା ଆପଣ ପାଣ୍ଡୁ ଓ ବିବର୍ଣ୍ଣ ହୋଇଅଛନ୍ତି ? ଯେଉଁ କାରଣରୁ ଆପଣଙ୍କର ଏହି ଦୁଃଖ ଉପସ୍ଥିତ ହୋଇଅଛି, ତାହା ଆପଣ ଆମ୍ଭଙ୍କୁ କହିବା ହେଉନ୍ତୁ । ଆମ୍ଭେ ସମ୍ପ୍ରତି ଆପଣଙ୍କର ସେହି ଦୁଃଖଦାୟକ ବ୍ୟକ୍ତିଗଣଙ୍କୁ ବିନଷ୍ଟ କରିବୁଁ । ୩ ।

ବୃହସ୍ପତି କହିଲେ—ହେ ମଘବନ୍ ! ଆମ୍ଭେ ପରଂପରାରେ ଶୁଣିଲୁଁ ଯେ, ମହୀପତି ମରୁତ୍ତ ଉତ୍ତମ ଦକ୍ଷିଣାଯୁକ୍ତ ଗୋଟିଏ ମହାଯଜ୍ଞ କରିବେ; ସମ୍ବର୍ତ୍ତ ସେହି ମରୁତ୍ତଙ୍କୁ ଯଜ୍ଞ କରାଇବେ । ଅତଏବ ଏହାଦ୍ୱାରା ଆମ୍ଭର ଏହି ଅଭିଳାଷ

Digitized by srujanika@gmail.com

ଯେ, ସମ୍ବର୍ତ୍ତ ଯେଉଁପରି ମରୁତ୍ତଙ୍କୁ ଯଜ୍ଞ କରାଇ ନପାରିବେ, ଆପଣ ତାହାର ଉପାୟ କରିବା ହେଉନ୍ତୁ । ୪ ।

ଇନ୍ଦ୍ର କହିଲେ—ହେ ବିପ୍ର ! ଆପଣ ଦେବଗଣଙ୍କର ମନ୍ତ୍ରଜ୍ଞ ସୁପୁରୋହିତ ହୋଇ ଅଛନ୍ତି ଏବଂ ଜରା ଓ ମୃତ୍ୟୁ ଏହି ଉଭୟଙ୍କୁ ଅତିକ୍ରମ କରିଅଛନ୍ତି । ଅତଏବ ସମ୍ପ୍ରତି ସମ୍ବର୍ତ୍ତ ଆପଣଙ୍କର କି କରିପାରିବେ । ୫ ।

ବୃହସ୍ପତି କହିଲେ—ହେ ଦେବେନ୍ଦ୍ର ! ଶତ୍ରୁମଧ୍ୟରେ କେହି ସମୃଦ୍ଧିସମ୍ପନ୍ନ ହେଲେ ତାହା ଦୁଃଖକର ହୁଏ ବୋଲି ଆପଣ ଯେଉଁପରି ଦେବଗଣଙ୍କ ସହିତ ଅସୁରଗଣଙ୍କୁ ସର୍ବଂଶରେ ଖଣ୍ଡନକରି, ତନ୍ମଧ୍ୟରୁ ଯେଉଁ ଯେଉଁମାନଙ୍କୁ ସମୃଦ୍ଧିସମ୍ପନ୍ନ ହୋଇଥିବାର ଅବଲୋକନ କରନ୍ତି ସେହି ସେହି ଅସୁରମାନଙ୍କୁ ନିଧନ କରିବାକୁ ଅଭିଳାଷୀ ହୁଅନ୍ତି, ସେହିପରି ଆମ୍ଭେ ମଧ୍ୟ ମଦୀୟ ଶତ୍ରୁ ସଂବର୍ଦ୍ଧିତ ହୋଇ ଅଛନ୍ତି ବୋଲି ଶ୍ରବଣ କରି ଦୁଃଖରେ ବିବର୍ଣ୍ଣ ହୋଇଅଛୁଁ । ଅତଏବ ହେ ମଘବନ୍ ! ଆପଣ ସର୍ବବିଧ ଉପାୟଦ୍ୱାରା ସେହି ସମ୍ବର୍ତ୍ତ ବା ମରୁତ୍ତଙ୍କୁ ଦମନ କରିବା ହେଉନ୍ତୁ । ୭ ।

ଇନ୍ଦ୍ର ବୃହସ୍ପତିଙ୍କ ବାକ୍ୟ ଶ୍ରବଣ ଉତ୍ତାରୁ ଅଗ୍ନିଙ୍କୁ ସମ୍ବୋଧନ ପୂର୍ବକ ଆହ୍ୱାନ କରି କହିଲେ, ହେ ଜାତବେଦ ! ତୁମ୍ଭେ ଆମ୍ଭ ଆଦେଶାନୁସାରେ ବୃହସ୍ପତିଙ୍କୁ ମରୁତ୍ତଙ୍କ ସମୀପକୁ ନେବା ନିମିତ୍ତ ତାହାଙ୍କ ନିକଟକୁ ଗମନ କରି କହିବ ଯେ, ବୃହସ୍ପତି ତୁମ୍ଭର ଯାଜନ କରିବେ, ଏବଂ ଅମର କରିଦେବେ । ୮ ।

ଅଗ୍ନି କହିଲେ—ଭଗବନ୍ ! ଆମ୍ଭେ ବୃହସ୍ପତିଙ୍କୁ ମରୁତ୍ତଙ୍କ ନିକଟକୁ ନେବା ନିମିତ୍ତ ଆପଣଙ୍କର ଦୂତ ହୋଇ ସମ୍ପ୍ରତି ତାହାଙ୍କ ନିକଟକୁ ଗମନ କରୁଅଛୁଁ । ଅଗ୍ନି ଇନ୍ଦ୍ରଙ୍କୁ ଏହି କଥା କହି ବୃହସ୍ପତିଙ୍କ ସମ୍ମାନ ବର୍ଦ୍ଧନ ଏବଂ ପୁରୁହୂତଙ୍କର ବାକ୍ୟ ସତ୍ୟ କରିବା ନିମିତ୍ତ ମରୁତ୍ତଙ୍କ ନିକଟକୁ ଗମନ କଲେ । ୯ ।

ବ୍ୟାସ କହିଲେ—ତଦନନ୍ତର ମହାତ୍ମା ଧୂମକେତୁ ଅଗ୍ନି ହିମାବସାନରେ ଇଚ୍ଛାନୁସାରେ ମୂର୍ତ୍ତିମାନ ମହାବେଗଶାଳୀ ଶବ୍ଦାୟମାନ

Digitized by srujanika@gmail.com

ସମୀରଣ ସଦୃଶ, ସମସ୍ତ ବନ ଓ ବୃକ୍ଷସମୂହ ବିମର୍ଦ୍ଦିତ କରି ମରୁତ୍ତଙ୍କ ନିକଟରେ ଉପନୀତ ହେଲେ । ୧୦ ।

ମରୁତ୍ତ ସମାଗତ ବହ୍ନିଙ୍କୁ ରୂପବାନ୍ ଦର୍ଶନ କରି ବିସ୍ମୟ ସହକାରରେ କହିଲେ—ହେ ମୁନେ ! ଅଦ୍ୟ ଆମ୍ଭେ ଏହା ଅତିବ ବିସ୍ମୟକର ବ୍ୟାପାର ଦର୍ଶନ କଲୁଁ, କାରଣ ବହ୍ନି ସ୍ୱୀୟ ରୂପ ଧାରଣ କରି ଆଗମନ କରିଅଛନ୍ତି । ଅତଏବ ଆପଣ ଏହାଙ୍କୁ ଆସନ, ସଲିଳ, ପାଦ୍ୟ ଓ ଗୋ ପ୍ରଦାନ କରନ୍ତୁ । ୧୧ ।

ଅଗ୍ନି କହିଲେ—ହେ ଅନଘ ! ଆମ୍ଭେ ତୁମ୍ଭର ଆସନ, ସଲିଳ ଓ ପାଦ୍ୟ ପ୍ରତିଗ୍ରହ କରୁଅଛୁଁ । ପରନ୍ତୁ ତୁମ୍ଭେ ଆମ୍ଭଙ୍କୁ ଏହିପରି ଜ୍ଞାନକର ଯେ, ଆମ୍ଭେ ଇନ୍ଦ୍ରଙ୍କ ଆଦେଶାନୁସାରେ ତାହାଙ୍କର ଦୂତ ହୋଇ ତୁମ୍ଭ ନିକଟକୁ ଆଗମନ କରିଅଛୁଁ । ୧୨ ।

ମରୁତ୍ତ କହିଲେ—ହେ ଧୂମକେତୋ ! ଶ୍ରୀମାନ୍ ଦେବରାଜ ସୁଖରେ ଅଛନ୍ତି ତ ? ସେ ଆମ୍ଭମାନଙ୍କ ପ୍ରତି ସନ୍ତୁଷ୍ଟ ଅଛନ୍ତି ତ ? ଏବଂ ଦେବଗଣ ତାହାଙ୍କ ବଶୀଭୂତ ଅଛନ୍ତି ତ ? ହେ ଦେବ ! ଆପଣ ଏହି ସମସ୍ତ ବିଷୟ ଆମ୍ଭଙ୍କୁ ଯଥାର୍ଥ କରି କହିବା ହେଉନ୍ତୁ । ୧୩ ।

ଅଗ୍ନି କହିଲେ—ହେ ପାର୍ଥିବେନ୍ଦ୍ର ! ଦେବରାଜ ପରମସୁଖରେ ଅବସ୍ଥାନ କରିଅଛନ୍ତି । ତୁମ୍ଭଠାରେ ମଧ୍ୟ ପ୍ରୀତ ଅଛନ୍ତି । ଏବଂ ଦେବଗଣ ମଧ୍ୟ ତାହାଙ୍କର ବଶୀଭୂତ ହୋଇଅଛନ୍ତି । ପରନ୍ତୁ ତୁମ୍ଭେ ଦେବରାଜଙ୍କ ବାର୍ତ୍ତା ଶ୍ରବଣ କର । ସେ ତୁମ୍ଭ ସହିତ ପ୍ରୀତି ଓ ତୁମ୍ଭଙ୍କୁ ଅଜର କରିବାକୁ ଅଭିଳାଷୀ ହୋଇ ଅଛନ୍ତି, ଏବଂ ବୃହସ୍ପତିଙ୍କୁ ତୁମ୍ଭଙ୍କୁ ଦେବା ନିମିତ୍ତ ସେ ଆମ୍ଭଙ୍କୁ ତୁମ୍ଭନିକଟକୁ ପ୍ରେରଣ କରିଅଛନ୍ତି । ହେ ନୃପ ! ଏହି ସୁରଗୁରୁ ବୃହସ୍ପତି ତୁମ୍ଭର ଯାଜନ କରନ୍ତୁ, ଏବଂ ତଦ୍ଦ୍ୱାରା ତୁମ୍ଭଙ୍କୁ ଅମର କରନ୍ତୁ । ୧୪ ।

ମରୁତ୍ତ କହିଲେ—ଏହି ଦ୍ୱିଜସତ୍ତମ ସମ୍ବର୍ତ୍ତ ଆମ୍ଭର ଯାଜନ କରିବେ । ସେହି ବୃହସ୍ପତିଙ୍କ ନିକଟକୁ ଆମ୍ଭର ଏହି ଅଞ୍ଜଳି, ତାହାଙ୍କଠାରେ ଆମ୍ଭର

Digitized by srujanika@gmail.com

ଆଉ ପ୍ରୟୋଜନ ନାହିଁ । ଏବଂ ସେ ମହେନ୍ଦ୍ରଙ୍କୁ ଯାଜନ କରି ଅପ୍ରତ୍ତ ମନୁଷ୍ୟଙ୍କର ଯାଜନ କଲେ ତାହାଙ୍କର ତାଦୃଶ ଶୋଭା ହେବ ନାହିଁ । ୧୭ ।

ଅଗ୍ନି କହିଲେ—ବୃହସ୍ପତି ଯଦି ତୁମ୍ଭର ଯାଜନ କରିବେ, ତାହା ହେଲେ ତୁମ୍ଭେ ଦେବରାଜଙ୍କ ଅନୁଗ୍ରହରେ, ଦେବଲୋକ ମଧ୍ୟରେ ଯେଉଁ ସମସ୍ତ ସ୍ଥାନ ଉତ୍କୃଷ୍ଟ, ତାହା ପ୍ରାପ୍ତ ହେବ, ଏବଂ ମହାଯଶସ୍ୱୀ ହୋଇ ନିଶ୍ଚୟ ସ୍ୱର୍ଗ ଜୟ କରିବ । ଅପିଚ, ହେ ନରେନ୍ଦ୍ର ! ବୃହସ୍ପତି ତୁମ୍ଭର ଯାଜନ କଲେ, ତୁମ୍ଭେ ମନୁଷ୍ୟଲୋକ, ଦେବଲୋକ, ସମଗ୍ର ଦେବରାଜ୍ୟ, ପ୍ରଜାପତିଙ୍କ ସୃଷ୍ଟ ଯାବତୀୟ ଉତ୍କୃଷ୍ଟ ଲୋକ ଜୟ କରି ପାରିବ । ୧୮ ।

ସମ୍ବର୍ତ୍ତ କହିଲେ—ହେ ପାବକ ! ତୁମ୍ଭେ ବୃହସ୍ପତିଙ୍କୁ ମରୁତ୍ତଙ୍କ ନିକଟରେ ଦେବା ନିମିତ୍ତ ଏହିପରି କଦାପି ପୁନଶ୍ଚ ଆଗମନ କରିବ ନାହିଁ । ତୁମ୍ଭେ ଯଦି ପୁନଶ୍ଚ ଆଗମନ କରିବ, ତାହାହେଲେ ତୁମ୍ଭେ ନିଶ୍ଚୟ ଜାଣିଥାଅ ଯେ, ଆମ୍ଭେ କ୍ରୁଦ୍ଧ ହୋଇ ଦାରୁଣ ଦୃଷ୍ଟିଦ୍ୱାରା ତୁମ୍ଭଙ୍କୁ ଦଗ୍ଧ କରିବୁଁ । ୧୯ ।

ବ୍ୟାସ କହିଲେ—ତଦନନ୍ତର ଧୂମକେତୁ ଅଗ୍ନି ଦାହ ହେତୁରୁ ଭୀତ ଓ ଅଶ୍ୱତ୍ଥପତ୍ର ସଦୃଶ କମ୍ପିତ ହୋଇ ଦେବଗଣଙ୍କ ନିକଟକୁ ଗମନ କଲେ । ତତ୍ପରେ ମହାତ୍ମା ଶକ୍ର ହବ୍ୟବାହ ବହ୍ନିଙ୍କୁ ବୃହସ୍ପତିଙ୍କ ସନ୍ନିଧିରେ ଦର୍ଶନକରି ତାହାଙ୍କୁ କହିଲେ । ୨୦ ।

ଇନ୍ଦ୍ର କହିଲେ—ହେ ଜାତବେଦ ! ତୁମ୍ଭେ ଯେ ବୃହସ୍ପତିଙ୍କୁ ମରୁତ୍ତଙ୍କ ସମୀପରେ ଦେବା ନିମିତ୍ତ ମତ୍କର୍ତ୍ତୃକ ପ୍ରେରିତ ହୋଇ ତଦୀୟ ନିକଟକୁ ଗମନ କରିଥିଲ, ତାହା କି ହେଲା ? ସେହି ଯାଜ୍ୟମାନ ମହୀପତି ମରୁତ୍ତ କି କହିଲେ ? ସେ ସେହି ବାକ୍ୟକୁ ସ୍ୱୀକାର କରି ଅଛନ୍ତି ତ ? ୨୧ ।

ଅଗ୍ନି କହିଲେ—ହେ ଦେବରାଜ ! ଆମ୍ଭେ ମରୁତ୍ତଙ୍କୁ ଆପଣଙ୍କ ବାକ୍ୟ ବାରଂବାର କହିଲେ ସୁଦ୍ଧା ସେ ତହିଁରେ ସମ୍ମତ ହେଲେ ନାହିଁ । ପ୍ରତ୍ୟୁତ ସେ ବୃହସ୍ପତିଙ୍କୁ ଅଞ୍ଜଳି ବନ୍ଧନ କରି କହିଲେ, ସମ୍ବର୍ତ୍ତ କେବଳ ଆମ୍ଭର ଯାଜନ କରିବେ । ପୁନଶ୍ଚ, ସେ ଏହି କଥା କହିଲେ ଯେ, ମନୁଷ୍ୟ-ଲୋକ, ସ୍ୱର୍ଗଲୋକ ଏବଂ ପ୍ରଜାପତି ଯେଉଁ ସମସ୍ତ ଉତ୍କୃଷ୍ଟ ଲୋକ ନିର୍ମାଣ କରି ଅଛନ୍ତି, ତାହା ଆମ୍ଭେ ଲାଭ କରିବାକୁ ଅଭିଳାଷୀ ହେଉନାହୁଁ ।

Digitized by srujanika@gmail.com

ଯଦି ଆମ୍ଭର ତାହାଁରେ ଅଭିଳାଷ ଥାଆନ୍ତା, ତେବେ ଆମ୍ଭେ ତାହାଙ୍କ ସହିତ ସମ୍ଭାଷଣ କରନ୍ତୁ । ୨୩ ।

ଇନ୍ଦ୍ର କହିଲେ—ତୁମ୍ଭେ ପୁନଶ୍ଚ ସେଠାକୁ ଗମନ ପୂର୍ବକ ସେହି ମହୀପତି ମରୁତ୍ତଙ୍କ ସହିତ ମିଳିତ ହୋଇ ତାହାଙ୍କୁ ଏହି ମର୍ମଯୁକ୍ତ ଅର୍ଥଯୁକ୍ତ ବାକ୍ୟରେ ପ୍ରବୋଧିତ କର । ସେ ଯଦି ପୁନଶ୍ଚ ତୁମ୍ଭ ବାକ୍ୟ ପ୍ରତିପାଳନ ନ କରିବେ, ତେବେ ଆମ୍ଭେ ତାହାଙ୍କୁ ବଜ୍ରପ୍ରହାର କରିବୁଁ । ୨୪ ।

ଅଗ୍ନି କହିଲେ—ହେ ବାସବ ! ସେଠାକୁ ଏହି ଗନ୍ଧର୍ବରାଜ ଦୂତ ହୋଇ ଗମନ କରନ୍ତୁ । ସେଠାକୁ ପୁନଶ୍ଚ ଯିବା ନିମିତ୍ତ ଆମ୍ଭର ଭୟ ହେଉଅଛି । କାରଣ, ସେହି ବ୍ରହ୍ମଚର୍ଯ୍ୟସମ୍ପନ୍ନ ତୀକ୍ଷ୍ଣ-କ୍ରୋଧ-ପରବଶ ସମ୍ବର୍ତ୍ତ ପରମ ସତ୍କାରରେ ଆମ୍ଭଙ୍କୁ କହିଅଛନ୍ତି ଯେ, ତୁମ୍ଭେ ଯଦି ବୃହସ୍ପତିଙ୍କୁ ମରୁତ୍ତଙ୍କ ନିକଟରେ ଦେବା ନିମିତ୍ତ ପୁନଶ୍ଚ ଏହି ସ୍ଥାନକୁ ଆଗମନ କରିବ, ତେବେ ଜାଣିଥାଅ, ଆମ୍ଭେ କ୍ରୁଦ୍ଧ ହୋଇ ଦାରୁଣ ଦୃଷ୍ଟିଦ୍ୱାରା ତୁମ୍ଭଙ୍କୁ ଦଗ୍ଧ କରିବୁଁ ।

ଇନ୍ଦ୍ର କହିଲେ—ହେ ଜାତବେଦ ! ତୁମ୍ଭେ ସମସ୍ତଙ୍କୁ ଦଗ୍ଧ କରୁଅଛ । ତୁମ୍ଭ ବ୍ୟତିରେକେ ଅନ୍ୟ କେହି ଭସ୍ମକର୍ତ୍ତା ନାହାନ୍ତି । ଏବଂ ତୁମ୍ଭର ସଂସ୍ପର୍ଶ ହେତୁରୁ ସମସ୍ତ ଲୋକ ଭୀତ ହେଉଅଛନ୍ତି । ଅତଏବ ହେ ହବ୍ୟବାହ ! ତୁମ୍ଭେ ଯାହା କହିଲ, ତାହା ଅଶ୍ରଦ୍ଧେୟ ବୋଲି ଆମ୍ଭଙ୍କୁ ଜଣାଯାଉଅଛି । ୨୬ ।

ଅଗ୍ନି କହିଲେ—ହେ ଦେବେନ୍ଦ୍ର ! ଆପଣ ସ୍ୱୀୟ ବଳଦ୍ୱାରା ସ୍ୱର୍ଗ, ମର୍ତ୍ତ୍ୟ, ଅନ୍ତରୀକ୍ଷ ଏହି ଲୋକତ୍ରୟ ବେଷ୍ଟନ କରିଅଛନ୍ତି । ପରନ୍ତୁ ଏତାଦୃଶ ତ୍ରିଲୋକ-ବିହାରୀ ଆପଣ ଏହି ସ୍ଥାନରେ ବିଦ୍ୟମାନ ଥାଉଁ ଥାଉଁ ପୂର୍ବେ ବୃତ୍ରାସୁର କେଉଁପରି ସ୍ୱର୍ଗ ହରଣ କରିଥିଲେ ?

ଇନ୍ଦ୍ର କହିଲେ—ହେ ବହ୍ନେ ! ଆମ୍ଭେ ପର୍ବତକୁ ମଶକାଦି ସଦୃଶ ସୂକ୍ଷ୍ମ କରିପାରୁଁ, ପରନ୍ତୁ ଆମ୍ଭେ ଶତ୍ରୁପ୍ରଦତ୍ତ ସୋମପାନ କରୁନାହୁଁ ବୋଲି ବୃତ୍ରାସୁର ଆମ୍ଭଙ୍କୁ ଆରାଧନା କରି ନଥିଲେ ଏବଂ ଆମ୍ଭେ ଦୁର୍ବଳ ବ୍ୟକ୍ତିପ୍ରତି ବଜ୍ରପ୍ରକ୍ଷେପ ନକରୁଁ ବୋଲି ସେ ମତ୍କର୍ତ୍ତୃକ ନିର୍ଜିତ ହୋଇନାହିଁ । ତଥାପି କୌଣସି ମାନବ ଆମ୍ଭଙ୍କୁ ପ୍ରହାର କରି ସୁଖରେ ରହିପାରେ ନାହିଁ ।

Digitized by srujanika@gmail.com

ଅପିଚ, ହେ ଅଗ୍ନେ ! ଆମ୍ଭେ କାଳକେୟ ଅସୁରମାନଙ୍କୁ ପୃଥିବୀରୁ ପ୍ରବ୍ରାଜିତ କରିଅଛୁ, ଦାନବଦଳଙ୍କୁ ଅନ୍ତରୀକ୍ଷରୁ ଦୂର କରିଅଛୁଁ ଏବଂ ପ୍ରହ୍ଲାଦଙ୍କୁ ସ୍ୱର୍ଗରୁ ଦୂରୀଭୂତ କରିଅଛୁଁ । ଅତଏବ କୌଣସି ମାନବ ସୁଖରେ ରହିବା ନିମିତ୍ତ ଆମ୍ଭଙ୍କୁ ପ୍ରହାର କରିବ କି ? ୩୦ ।

ଅଗ୍ନି କହିଲେ—ହେ ମହେନ୍ଦ୍ର ! ପୂର୍ବେ ଚ୍ୟବନ ଅଶ୍ୱିନୀକୁମାରଙ୍କ ସହିତ ଶର୍ଯ୍ୟାତିଙ୍କୁ ଯଜ୍ଞ କରାଇ ଏକାକୀ ସୋମପାନ କରିବାରୁ ଆପଣ ତାହାଙ୍କ ପ୍ରତି କ୍ରୁଦ୍ଧ ହୋଇ ଶର୍ଯ୍ୟାତିଙ୍କ ଯଜ୍ଞ ନିବାରଣ କରିଥିଲେ । ତାହା ଥରେ ସ୍ମରଣ କରିବା ହେଉନ୍ତୁ । ୩୧ ।

ହେ ପୁରନ୍ଦର, ଆପଣ ବଜ୍ର ଗ୍ରହଣ ପୂର୍ବକ ଚ୍ୟବନଙ୍କ ପ୍ରତି ଘୋରତର ପ୍ରହାର କରିବାକୁ ଉଦ୍ୟତ ହେବାରୁ ସେହି ବିପ୍ର କ୍ରୁଦ୍ଧ ହୋଇ ତପୋବଳରେ ବଜ୍ରସହିତ ଆପଣଙ୍କ ବାହୁ ସ୍ତମ୍ଭ କରିଥିଲେ । ୩୨ ।

ତଦନନ୍ତର ସେ ରୋଷବଶତଃ ପୁନଶ୍ଚ ଆପଣଙ୍କର ଏ ପ୍ରକାର ଗୋଟିଏ ଶତ୍ରୁ ଉତ୍ପାଦନ କଲେ ଯେ, ଆପଣ ସେହି ବିଶ୍ୱରୂପ ଭୟଙ୍କର ମଦ ନାମା ଅସୁରକୁ ଦର୍ଶନ କରି ତେତେବେଳେ ନୟନ ମୁଦ୍ରିତ କରିଥିଲେ । ୩୩ ।

ସେହି ଦାନବର ଗୋଟିଏ ସୁଦୀର୍ଘ ହନୁ ପୃଥିବୀକୁ ଓ ଗୋଟିଏ ହନୁ ସ୍ୱର୍ଗକୁ ବ୍ୟାପିଥିଲା । ତାହାର ଶତ ଯୋଜନ ବିସ୍ତୀର୍ଣ୍ଣ ସୂକ୍ଷ୍ମାଗ୍ର ସହସ୍ର ଦନ୍ତ ଥିଲା । ତନ୍ମଧ୍ୟରେ ଚାରିଟି ଦନ୍ତ ବୃତ୍ତ ଅଥଚ ସ୍ଥୂଳ, ରଜତ ସ୍ତମ୍ଭ ସଦୃଶ ଉଜ୍ଜ୍ୱଳ, ଦ୍ୱିଶତ ଯୋଜନ ବିସ୍ତୀର୍ଣ୍ଣ । ସେହି ମଦ ଆପଣଙ୍କୁ ନିହତ କରିବା ବାସନାରେ ଦନ୍ତସମୂହ ଦଂଶନକରି ଘୋରତର ଶୂଳ ଉଦ୍ୟତ କରି ଆପଣଙ୍କ ପ୍ରତି ଧାବିତ ହୋଇଥିଲା । ୩୪ ।

ଆପଣ ତେତେବେଳେ ସେହି ଘୋରରୂପ ଅସୁରକୁ ଦେଖି ଏ ପ୍ରକାର ହୋଇଥିଲେ ଯେ, ସମସ୍ତେ ଆପଣଙ୍କୁ ଦର୍ଶନୀୟ ବସ୍ତୁ ସଦୃଶ ଦେଖିଥିଲେ । ହେ ଦାନବଘ୍ନ ! ତତ୍ପରେ ଆପଣ ତାହାଠାରୁ ଭୀତହୋଇ କୃତାଞ୍ଜଳିପୁଟରେ ସେହି ମହର୍ଷି ଚ୍ୟବନଙ୍କର ଶରଣାଗତ ହେଲେ । ୩୫ ।

Digitized by srujanika@gmail.com

ହେ ଶକ୍ର, କ୍ଷତ୍ରିୟବଳ ଅପେକ୍ଷା ବ୍ରାହ୍ମଣବଳ ଗରୀୟାନ୍, ବ୍ରାହ୍ମଣଙ୍କ ଅପେକ୍ଷା କେହି ଗରୀୟାନ୍ ନାହିଁ । ଅତଏବ ଆମ୍ଭେ ବ୍ରହ୍ମତେଜକୁ ବିଶେଷ ରୂପେ ବିଦିତ ହୋଇଥିବାରୁ ସମ୍ବର୍ତ୍ତଙ୍କୁ ଜୟ କରିବାକୁ ଇଚ୍ଛୁକ ହେଉନାହୁଁ । ୩୭ ।

---

# ଦଶମ ଅଧ୍ୟାୟ

ଇନ୍ଦ୍ର କହିଲେ—ସକଳ ବଳ ଅପେକ୍ଷା ବ୍ରହ୍ମବଳ ଯେ ଗରୀୟାନ୍ ଏବଂ ବ୍ରାହ୍ମଣ ଅପେକ୍ଷା ଅନ୍ୟ କେହି ଯେ ଗୁରୁତର ନାହାନ୍ତି, ଏହା ସତ୍ୟ । ପରନ୍ତୁ ଅବିକ୍ଷିତ୍‌ପୁତ୍ର ମରୁତ୍ତଙ୍କ ବଳ ଆମ୍ଭେ କଦାପି ସହ୍ୟ କରିବୁନାହିଁ । ଏହାଙ୍କୁ ଘୋରତର ବଜ୍ରପ୍ରହାର କରିବୁଁ । ୧ ।

ଅତଏବ ହେ ଧୃତରାଷ୍ଟ୍ର ! ତୁମ୍ଭେ ମତ୍‌କର୍ତ୍ତୃକ ପ୍ରେରିତ ହୋଇ ସମ୍ବର୍ତ୍ତଙ୍କ ସହିତ ସଙ୍ଗତ ସେହି ମରୁତ୍ତଙ୍କୁ ଏହି କଥା କହ ଯେ—ହେ ରାଜନ୍, ତୁମ୍ଭେ ବୃହସ୍ପତିଙ୍କ ନିକଟରେ ଶିକ୍ଷିତ ହୁଅ । ତୁମ୍ଭେ ଯଦି ଏହା ନ କରିବ, ତେବେ ତୁମ୍ଭଙ୍କୁ ଇନ୍ଦ୍ର ଘୋରତର ବଜ୍ରପ୍ରହାର କରିବେ । ୨ ।

ବ୍ୟାସ କହିଲେ—ତଦନନ୍ତର ଗନ୍ଧର୍ବ ଧୃତରାଷ୍ଟ୍ର ମହୀପତି ମରୁତ୍ତଙ୍କ ନିକଟକୁ ଯାଇ ତାହାଙ୍କୁ ଇନ୍ଦ୍ରଙ୍କ ବାକ୍ୟ କହିଲେ । ୩ ।

ଧୃତରାଷ୍ଟ୍ର କହିଲେ—ହେ ନରେନ୍ଦ୍ର ! ଆମ୍ଭଙ୍କୁ ଗନ୍ଧର୍ବ ଧୃତରାଷ୍ଟ୍ର ବୋଲି ଜାଣିବା ହେଉନ୍ତୁ । ଆମ୍ଭେ ଆପଣଙ୍କୁ ବୃହସ୍ପତିଙ୍କ ବାକ୍ୟ କହିବା ଅଭିଳାଷରେ ଭବଦୀୟ ସମୀପକୁ ଆସିଅଛୁ ।

ଅତଏବ ହେ ରାଜସିଂହ ! ତ୍ରିଲୋକାଧିପତି ମହାତ୍ମା ମହେନ୍ଦ୍ର ଆପଣଙ୍କୁ ଯାହା କହି ଅଛନ୍ତି, ତାହା ଶ୍ରବଣ କରିବା ହେଉନ୍ତୁ ।

ଅଚିନ୍ତ୍ୟକର୍ମା ମହାତ୍ମା ମହେନ୍ଦ୍ର ଆପଣଙ୍କୁ ଏହି କଥା ମାତ୍ର କହିଅଛନ୍ତି ଯେ, "ତୁମ୍ଭେ ବୃହସ୍ପତିଙ୍କୁ ଯଜ୍ଞରେ ଯାଜକ ରୂପେ ବରଣ କର । ଯଦି ଆମ୍ଭର ଏହି ବାକ୍ୟ ପ୍ରତିପାଳନ ନକରିବ, ତେବେ ଆମ୍ଭେ ତୁମ୍ଭଙ୍କୁ ଘୋରତର ବଜ୍ରପ୍ରହାର କରିବୁଁ" । ୫ ।

Digitized by srujanika@gmail.com

ମରୁତ୍ତ କହିଲେ—ଆପଣ ପୁରନ୍ଦର, ବିଶ୍ୱଦେବ, ବସୁଗଣ ଏବଂ ଅଶ୍ୱିନୀକୁମାରଯୁଗଳ, ଆପଣମାନେ ସମସ୍ତେ ଏହା ଜାଣନ୍ତୁ ଯେ, ଇହଲୋକରେ ମିତ୍ରଦ୍ରୋହୀ ପୁରୁଷର ନିସ୍କୃତି ନାହିଁ, ମିତ୍ରଦ୍ରୋହ ମହାପାପ ଏବଂ ତାହା ବ୍ରହ୍ମହତ୍ୟା ସଦୃଶ । ୬ ।

ହେ ରାଜନ୍ ! ସ୍ୱୟଂ ବୃହସ୍ପତି ଓ ଇନ୍ଦ୍ରଙ୍କ ବାକ୍ୟରେ ଆମ୍ଭର ଅଭିରୁଚି ହେଉନାହିଁ । ବୃହସ୍ପତି ସେହି ବଜ୍ରଧର ବରିଷ୍ଠ ଦେବରାଜ ମହେନ୍ଦ୍ରଙ୍କ ଯାଜନ କରନ୍ତୁ, ସମ୍ବର୍ତ୍ତ ଆମ୍ଭର ଯାଜନ କରିବେ । ୭ ।

ଗନ୍ଧର୍ବ କହିଲେ—ହେ ରାଜସିଂହ । ଆପଣ ନଭସ୍ଥଳରେ ଗର୍ଜନକାରୀ ବାସବଙ୍କର ଘୋରତର ନିନାଦ ଶ୍ରବଣ କରିବା ହେଉନ୍ତୁ । ସହସ୍ରଲୋଚନ ସ୍ପଷ୍ଟରୂପରେ ଆପଣଙ୍କ ପ୍ରତି ବଜ୍ରମୋଚନ କରିବେ ।

ଅତଏବ, ହେ ରାଜନ୍, ଆପଣ ଏହି ସମୟରେ ଆପଣାର କୁଶଳ ଚିନ୍ତା କରିବା ହେଉନ୍ତୁ । ୮ ।

ବ୍ୟାସ କହିଲେ—ମହୀପତି ମରୁତ୍ତ ଗନ୍ଧର୍ବ ଧୃତରାଷ୍ଟ୍ରଙ୍କ ବାକ୍ୟ ଶ୍ରବଣ କରି ନଭସ୍ଥଳରେ ଉତ୍କଟ ଶବ୍ଦାୟମାନ ଶକ୍ରଙ୍କ ଶବ୍ଦ ଶ୍ରବଣ କରି ଧର୍ମବିତ୍ ବ୍ୟକ୍ତିଗଣଙ୍କ ମଧ୍ୟରେ ବରିଷ୍ଠ ସମ୍ବର୍ତ୍ତଙ୍କୁ ଶକ୍ରଙ୍କ କାର୍ଯ୍ୟ ନିବେଦନ କଲେ । ୯ ।

ମରୁତ୍ତ କହିଲେ—ହେ ବିପ୍ରବର ! ଅଦ୍ୟ ସମୀପରେ ମେଘ ଉଦିତ ହେବାରୁ ନିକଟରେ ଇନ୍ଦ୍ର ଦୃଷ୍ଟ ହେଉଅଛନ୍ତି । ସୁତରାଂ ଆପଣଙ୍କ ହେତୁରୁ ସୁଖଲାଭର ସମ୍ଭାବନା ଦେଖୁନାହୁଁ । ଅତଏବ, ହେ ବିପ୍ରେନ୍ଦ୍ର ! ଆପଣ ଆମ୍ଭଙ୍କୁ ଇନ୍ଦ୍ରଙ୍କଠାରୁ ଅଭୟ ପ୍ରଦାନ କରିବା ହେଉନ୍ତୁ ।

ଏହି ବଜ୍ରଧର ପୁରନ୍ଦର ଭୟଙ୍କର ଅମାନୁଷ ରୂପେ ଦଶଦିକ୍ ପ୍ରକାଶିତ କରି ଆମ୍ଭର ସଦସ୍ୟବୃନ୍ଦଙ୍କୁ ତ୍ରାସ ଦେଇ ଆଗମନ କରୁଅଛନ୍ତି ।୧୧।

ସମ୍ବର୍ତ୍ତ କହିଲେ—ହେ ରାଜସିଂହ ! ତୁମ୍ଭର ଶକ୍ରଙ୍କଠାରୁ ଭୟ ଦୂରୀଭୂତ ହେଉ । ଆମ୍ଭେ ଶୀଘ୍ର ସ୍ତମ୍ଭିନୀ ବିଦ୍ୟାଦ୍ୱାରା ତୁମ୍ଭର ଏହି ଘୋରତର ଭୟ ଖଣ୍ଡନ କରିବୁଁ । ଅତଏବ, ତୁମ୍ଭେ ସୁସ୍ଥ ହୁଅ, ଇନ୍ଦ୍ରଙ୍କ ଅଭିଭବ ହେତୁରୁ କଦାପି ଭୀତ ହୁଅନା । ହେ ନରନାଥ ! ତୁମ୍ଭେ ଶତକ୍ରତୁଙ୍କଠାରୁ ଭୀତ ହୁଅନା ।

Digitized by srujanika@gmail.com

ଆମ୍ଭେ ସ୍ତମ୍ଭନ କଲେ ଦେବଗଣଙ୍କର ଯାବତୀୟ ଅସ୍ତ୍ର କ୍ଷୟ ହେବ । ୧୩ ।

ବଜ୍ର ଦିକ୍‌ସମୂହରେ ଗମନ କରୁ, ବାୟୁ ମେଘ ହୋଇ ଏହି ସ୍ଥାନକୁ ଆଗମନ ପୂର୍ବକ ବନମଧ୍ୟରେ ବାରିବର୍ଷଣ କରୁ ଏବଂ ଜଳରାଶି ଅନ୍ତରୀକ୍ଷରେ ପ୍ଳାବିତ ହେଉ ।

ମହାରାଜ ! ଏହି ଯେଉଁ ସୌଦାମିନୀ ଦୃଷ୍ଟ ହେଉଅଛି, ଏହା ବୃଥା । ଏହାଠାରୁ ତୁମ୍ଭେ ଭୟପ୍ରାପ୍ତ ହୁଅନା ।

ହେ ରାଜନ୍ ! ବାସବ ଯେ ତୁମ୍ଭର ବଧନିମିତ୍ତ ଜଳରାଶିରେ ପ୍ଳାବମାନ ଘୋରତର ଅଶନି ଯଥାସ୍ଥାନରେ ସ୍ଥାପିତ କରିଅଛନ୍ତି, ତାହା କରନ୍ତୁ । ତହିଁରେ ତୁମ୍ଭେ ଭୀତ ହୁଅନା ।

କାରଣ, ବହ୍ନିଦେବ ତୁମ୍ଭର ସମସ୍ତ ରକ୍ଷା କରିବେ, ଏବଂ ସମସ୍ତ କାମନା ପୂରଣ କରିବେ । ୧୫ ।

ମରୁତ୍ତ କହିଲେ—ହେ ଦ୍ୱିଜପ୍ରବର ! ସମୀରଣ ସହ ଅଶନିର ଏହି ମହାସ୍ୱନସମନ୍ୱିତ ଭୟଙ୍କର ଶବ୍ଦ ଶ୍ରବଣ-ବିବରରେ ପ୍ରବିଷ୍ଟ ହେବାରୁ ଆମ୍ଭ ଆତ୍ମା ବାରମ୍ବାର ବ୍ୟଥିତ ହେଉଅଛି । ସୁତରାଂ କାହିଁରେ ଆମ୍ଭର ସ୍ୱାସ୍ଥ୍ୟ ହେଉନାହିଁ । ୧୬ ।

ସମ୍ବର୍ତ୍ତ କହିଲେ—ହେ ନରନାଥ ! ଏହି ଉଗ୍ର ବଜ୍ରଠାରୁ ତୁମ୍ଭର ଭୟ ବିଗତ ହେଉ । ଆମ୍ଭେ ସମ୍ପ୍ରତି ବାୟୁ ହୋଇ ବଜ୍ରକୁ ନିରସ୍ତ କରୁଅଛୁଁ ।

ଅତଏବ, ତୁମ୍ଭେ ଭୟ ତ୍ୟାଗ କରି ତୁମ୍ଭ ମନରେ ଯାହା ଅଭିଳାଷ ହୁଏ ସେହି ବର ପ୍ରାର୍ଥନା କର, ଆମ୍ଭେ ତାହା ସାଧନ କରୁଅଛୁଁ ।

ମରୁତ୍ତ କହିଲେ—ହେ ଦ୍ୱିଜପ୍ରବର ! ଇନ୍ଦ୍ର ପ୍ରତ୍ୟକ୍ଷ ହୋଇ ଆଗମନ ପୂର୍ବକ ସହସା ଯଜ୍ଞରେ ହବିଃ ପ୍ରତିଗ୍ରହ କରନ୍ତୁ, ଏବଂ ଦେବଗଣ ସ୍ୱୀୟ ସ୍ୱୀୟ ଯଜ୍ଞଭାଗ ଗ୍ରହଣ ପୂର୍ବକ ସୋମପାନ କରନ୍ତୁ, ଏହା କେବଳ ଆମ୍ଭେ ପ୍ରାର୍ଥନା କରୁଅଛୁଁ । ୧୮ ।

ସମ୍ବର୍ତ୍ତ କହିଲେ—ହେ ରାଜନ୍ ! ଆମ୍ଭେ ମନ୍ତ୍ରଦ୍ୱାରା ଶକ୍ରଙ୍କୁ ଆକର୍ଷଣ କରୁଅଛୁଁ । ଇତରମାନେ ଦେବଗଣକର୍ତ୍ତୃକ ସ୍ତୂୟମାନ ସେହି ଇନ୍ଦ୍ର ମତ୍‌କର୍ତ୍ତୃକ

Digitized by srujanika@gmail.com

ମନ୍ତ୍ରଦ୍ୱାରା ଆହୂତ ହୋଇ ଅଶ୍ୱଦ୍ୱାରା ଏହି ଯଜ୍ଞକୁ ଆଗମନ କରୁଅଛନ୍ତି । ତୁମ୍ଭେ ଇନ୍ଦ୍ରଙ୍କୁ ପ୍ରତ୍ୟକ୍ଷ ଅବଲୋକନ କର । ୧୯ ।

ତଦନନ୍ତର ଦେବରାଜ ସେହି ସର୍ବୋତ୍କୃଷ୍ଟ ହରିଗଣଙ୍କୁ ରଥରେ ଯୁକ୍ତକରି ଦେବଗଣଙ୍କ ସହିତ ଅବିକ୍ଷିତ୍‌କୁମାର ଅପ୍ରମେୟାତ୍ମା ମରୁତ୍ତଙ୍କ ଯଜ୍ଞକୁ ଆଗମନ କରି ସୋମପାନ କଲେ । ୨୦ ।

ମରୁତ୍ତ ପୁରୋଧା ସମ୍ବର୍ତ୍ତଙ୍କ ସହିତ ଦେବଗଣସହ ସମାଗତ ଶକ୍ରଙ୍କୁ ପ୍ରତ୍ୟୁତ୍ଥାନ ଓ ଅଭିବାଦନ କରି ପ୍ରୀତିଯୁକ୍ତ ଚିତ୍ତରେ ଶାସ୍ତ୍ରାନୁସାରେ ଦେବରାଜଙ୍କୁ ଉତ୍ତମରୂପେ କୁଶଳାଦି ପ୍ରଶ୍ନପୂର୍ବକ ପୂଜାକଲେ ଏବଂ ସମ୍ବର୍ତ୍ତ ଦେବରାଜଙ୍କୁ ସ୍ୱାଗତ ପ୍ରଭୃତି ପ୍ରଶ୍ନକଲେ । ୨୧ ।

ସମ୍ବର୍ତ୍ତ କହିଲେ—ହେ ପୁରୁହୂତ ! ଆପଣଙ୍କର କୁଶଳ ତ ? ହେ ବିଦ୍ୱନ୍ ! ଆପଣ ଏହି ସ୍ଥାନରେ ସନ୍ନିହିତ ହେବାରୁ ସମ୍ପ୍ରତି ଏହି ଯଜ୍ଞ ସାତିଶୟ ଶୋଭିତ ହେଲା ।

ଅତଏବ, ହେ ବଳବୃତ୍ରହନ୍ ! ଆପଣ ଅଦ୍ୟ ମତ୍‌କର୍ତ୍ତୃକ ସୃତ ଏହି ସୋମରସକୁ ପୁନଶ୍ଚ ପାନ କରିବା ହେଉନ୍ତୁ । ୨୨ ।

ମରୁତ୍ତ କହିଲେ—ହେ ସୁରେନ୍ଦ୍ର ! ଆପଣଙ୍କୁ ନମସ୍କାର । ଆପଣ କୁଶଳ ନୟନରେ ଆମ୍ଭଙ୍କୁ ଦର୍ଶନ କରିବା ହେଉନ୍ତୁ ।

ଆପଣ ଆମ୍ଭ ଯଜ୍ଞକୁ ଆଗମନ କରିବାରୁ ଆମ୍ଭର ଜୀବନ ସଫଳ ହେଲା ।

ହେ ସୁରରାଜ ! ବୃହସ୍ପତିଙ୍କ ଅନୁଜ ଏହି ବିପ୍ରବର ସମ୍ବର୍ତ୍ତ ଆମ୍ଭର ଯଜ୍ଞ କରିଅଛନ୍ତି ।

ଇନ୍ଦ୍ର କହିଲେ—ହେ ନରନାଥ ! ତୁମ୍ଭର ଗୁରୁ ଏହି ବୃହସ୍ପତିଙ୍କ ଅନୁଜ ତିଗ୍ମତେଜା ତପୋଧନ ସମ୍ବର୍ତ୍ତଙ୍କୁ ଆମ୍ଭେ ଜାଣୁଁ ।

ଏ ଆହ୍ୱାନ କରିବାରୁ ଆମ୍ଭେ ଆସିଅଛୁଁ । ଅଦ୍ୟ ଆମ୍ଭେ ଅତିଶୟ ପ୍ରୀତ ହେଲୁଁ । ତୁମ୍ଭଠାରେ ଆମ୍ଭର ଯେଉଁ କୋପ ଥିଲା, ତାହା ନଷ୍ଟ ହେଲା । ୨୪ ।

Digitized by srujanika@gmail.com

ସମ୍ବର୍ତ୍ତ କହିଲେ—ହେ ଦେବରାଜ ! ଆପଣ ଯଦି ପ୍ରୀତ ହୋଇ ଅଛନ୍ତି, ତେବେ ସ୍ୱୟଂ ଯଜ୍ଞର ବିଧାନ କହିବା ହେଉନ୍ତୁ, ଏବଂ ସ୍ୱୟଂ ସମସ୍ତ ବିଭାଗ କରିବା ହେଉନ୍ତୁ । ହେ ଦେବ ! ଏହି ସମସ୍ତ ଲୋକ ଏହା ଦେବରାଜକୃତ ବୋଲି ଜାଣନ୍ତୁ ।

ବ୍ୟାସ କହିଲେ—ଶକ୍ରଦେବ ଅଙ୍ଗିରାଙ୍କ ପୁତ୍ର ସମ୍ବର୍ତ୍ତଙ୍କ ବାକ୍ୟ ଶ୍ରବଣ କରି ସ୍ୱୟଂ ଦେବଗଣଙ୍କୁ ଆଦେଶ କଲେ ଯେ, "ହେ ଦେବଗଣ ! ତୁମ୍ଭେମାନେ ଚିତ୍ର ସଦୃଶ ସୁନ୍ଦର ଅତି ଉତ୍କୃଷ୍ଟ ସହସ୍ର ଗୃହ ଏବଂ ସଭା ନିର୍ମାଣ କର । ଗନ୍ଧର୍ବ ଏବଂ ଅପ୍‌ସରାଗଣଙ୍କ ଆରୋହଣ ନିମିତ୍ତ ସତ୍ୱର ସୋମପାନ ସମୂହ ସ୍ଥୂଳ ଓ ଦୃଢ଼ କର, ଯଜ୍ଞ ବାଟରେ ଯେଉଁ ସ୍ଥାନରେ ଅପ୍‌ସରାସମୂହ ନୃତ୍ୟ କରିବେ, ସେହି ସ୍ଥାନ ସ୍ୱର୍ଗ ସଦୃଶ ସୁସଜ୍ଜିତ କର" । ୨୭ ।

ହେ ନରେନ୍ଦ୍ର ! ସ୍ୱର୍ଗବାସୀ ସୁରଗଣ ଶକ୍ରଙ୍କ ଆଦେଶାନୁସାରେ ସତ୍ୱର ସେହି କାର୍ଯ୍ୟରେ ନିଯୁକ୍ତ ହେଲେ ।

ତଦନନ୍ତର ଶକ୍ର ମହୀପତି ମରୁତ୍ତଙ୍କୁ କହିଲେ—ହେ ରାଜନ୍ ! ଆମ୍ଭେ ତୁମ୍ଭର ପୂଜାରେ ପରମ ପ୍ରୀତ ହେଲୁଁ ।

ହେ ନରେନ୍ଦ୍ର ! ଆମ୍ଭେ ଏହି ସ୍ଥାନରେ ତୁମ୍ଭ ସହିତ ସଙ୍ଗତ ହେବାରୁ, ତୁମ୍ଭର ପୂର୍ବପୁରୁଷସମୂହ ଏବଂ ଅନ୍ୟାନ୍ୟ ସମସ୍ତ ଦେବଗଣ ସନ୍ତୁଷ୍ଟ ହୋଇ ତୁମ୍ଭର ହବିଃ ପ୍ରତିଗ୍ରହ କଲେ ।

ହେ ରାଜନ୍ ! ସମ୍ପ୍ରତି ବ୍ରାହ୍ମଣଶ୍ରେଷ୍ଠଗଣ ଅଗ୍ନିଦେବ ସମ୍ବନ୍ଧୀୟ ଲୋହିତ ବର୍ଣ୍ଣ ବିଶ୍ୱଦେବ ସମ୍ବନ୍ଧୀୟ ବହୁରୂପ, ଏବଂ ନୀଳବର୍ଣ୍ଣ ବଳାଛନ୍ନ ପବିତ୍ର ବିଧି ବୋଧିତ ବୃଷ ବଧ କରନ୍ତୁ । ୩୦ ।

ହେ ରାଜନ୍ ! ତଦନନ୍ତର ମହୀପତି ମରୁତ୍ତଙ୍କର ଯଜ୍ଞ ବର୍ଦ୍ଧିତ ହେଲା ।

ସେହି ଯଜ୍ଞରେ ସ୍ୱୟଂ ଦେବଗଣ ଅନ୍ନ ସମସ୍ତ ଆହରଣ କଲେ ।

ହରିମାନ୍ ଦେବରାଜ ସେହି ଯଜ୍ଞରେ ବ୍ରାହ୍ମଣଗଣ କର୍ତ୍ତୃକ ପୂଜିତ ହୋଇ ସଦସ୍ୟ ହେଲେ । ୩୧ ।

ତଦନନ୍ତର ପ୍ରଜ୍ୱଳିତ ଅନଳ ସଦୃଶ ମହାତ୍ମା ସମ୍ବର୍ତ୍ତ ଚୈତନ୍ୟପ୍ରାପ୍ତ ହୋଇ ଉଚ୍ଚୈଃସ୍ୱରରେ ଦେବଗଣଙ୍କୁ ଆହ୍ୱାନ କରି ସୁପ୍ରସନ୍ନ ଚିତ୍ତରେ ମନ୍ତ୍ରଦ୍ୱାରା ଅଗ୍ନିରେ ଘୃତାହୁତି ପ୍ରଦାନ କଲେ । ୩୨ ।

Digitized by srujanika@gmail.com

ଅନନ୍ତର ବଳସୂଦନ ଇନ୍ଦ୍ର ପ୍ରଥମତଃ ସୋମପାନ କଲେ ଏବଂ ଅନ୍ୟାନ୍ୟ ସୋମପାୟୀ ଦେବଗଣ ଇନ୍ଦ୍ରଙ୍କ ଆଦେଶାନୁସାରେ ପୃଥିବୀପତି ମରୁତ୍ତଙ୍କ ସହିତ ଯଥାସୁଖରେ ସୋମପାନ କରି ପରିତୃପ୍ତ ଓ ପ୍ରୀତିଯୁକ୍ତ ହୋଇ ପ୍ରସ୍ଥାନ କଲେ । ୩୩ ।

ତଦନନ୍ତର ଶତ୍ରୁନାଶନ ରାଜା ମରୁତ୍ତ ହୃଷ୍ଟ ହୋଇ ସ୍ଥାନେ ସ୍ଥାନେ ସୁବର୍ଣ୍ଣ-ରାଶି ପ୍ରସ୍ତୁତ କରାଇ ବ୍ରାହ୍ମଣଗଣଙ୍କୁ ଭୂରି ବିତ୍ତ ବିତରଣ କରି ଧନାଧ୍ୟକ୍ଷ କୁବେରଙ୍କ ସଦୃଶ ବିରାଜିତ ହେଲେ । ୩୪ ।

ତଦନନ୍ତର ସେ ଉତ୍ସାହ ସହକାରରେ କୋଶ ମଧ୍ୟରେ ବିବିଧ ବିତ୍ତ ସନ୍ନିହିତ କରି ଗୁରୁଙ୍କ ଆଦେଶାନୁସାରେ ସେଠାରୁ ନିବୃତ୍ତ ହୋଇ ସସାଗରା ବସୁନ୍ଧରାକୁ ଶାସନ କଲେ । ୩୫ ।

ହେ ନରେନ୍ଦ୍ର ! ମହାରାଜ ମରୁତ୍ତ ଏତାଦୃଶ ଗୁଣଶାଳୀ ଥିଲେ ଯେ, ତାହାଙ୍କ ଯଜ୍ଞରେ ପ୍ରଭୂତ ସୁବର୍ଣ୍ଣ ସଞ୍ଚିତ ହୋଇଥିଲା ।

ତୁମ୍ଭେ ସେହି ସୁବର୍ଣ୍ଣ ଆନୟନ କରି ବିଧାନାନୁସାରେ ଦେବଗଣଙ୍କୁ ତର୍ପଣ କରି ଅଶ୍ୱମେଧ ଯଜ୍ଞ କର । ୩୬ ।

ବୈଶମ୍ପାୟନ କହିଲେ—ତଦନନ୍ତର ପାଣ୍ଡୁନନ୍ଦନ ରାଜା ଯୁଧିଷ୍ଠିର ସତ୍ୟବତୀସୁତ ବେଦବ୍ୟାସଙ୍କ ବାକ୍ୟ ଶ୍ରବଣ କରି ହୃଷ୍ଟହୋଇ ସେହି ବିତ୍ତ-ଦ୍ୱାରା ଯଜ୍ଞ କରିବାକୁ ମନ କରି ଅମାତ୍ୟଗଣଙ୍କ ସହିତ ପୁନଶ୍ଚ ମନ୍ତ୍ରଣା କଲେ । ୩୭ ।

---

# ଏକାଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଅଦ୍ଭୁତକର୍ମା ବ୍ୟାସ ନୃପତି ଯୁଧିଷ୍ଠିରଙ୍କୁ ଏହିପରି କହିଲା ଉତ୍ତାରୁ ମହାତେଜା ବାସୁଦେବ କହିଲେ । ୧ ।

ବୃଷ୍ଣିକୁଳୋଦ୍ଭବ କୃଷ୍ଣ, ଧର୍ମସୁତ ପୃଥାନନ୍ଦନ ନୃପତି ଯୁଧିଷ୍ଠିରଙ୍କୁ ବନ୍ଧୁ ଓ ଜ୍ଞାତିଗଣ ନିହତ ହେବାରୁ ସଧୂମ ପାବକ ଓ ରାହୁଗ୍ରସ୍ତ ଦିବାକର

Digitized by srujanika@gmail.com

ସଦୃଶ ନଷ୍ଟ୍ରଭ, ଧନଶତ୍ରୁ ଏବଂ ନର୍ବିଣ୍ଣମନା ଦେଖି ଆଶ୍ୱାସବାକ୍ୟଦ୍ୱାରା ଅର୍ଥାତ୍ ଶୋକ ବ୍ରହ୍ମଜ୍ଞାନୈକନାଶ୍ୟ କନ୍ତୁ ବୃଦ୍ଧୋକ୍ତ ସହସ୍ର କମ୍ବା ଶତ୍ରୁସହସ୍ରଦ୍ୱାରା ନଷ୍ଟ ହୁଏ ନାହିଁ । ଏହି ଅଭିପ୍ରାୟରେ ଆଶ୍ୱାସିତ କରି କହିବାକୁ ଉପକ୍ରମ କଲେ । ୩ ।

ବାସୁଦେବ କହିଲେ—ହେ ରାଜନ୍ ! ସର୍ବ ପ୍ରକାର ସରଳତା ଅଟେ ଏହି, ଅର୍ଥାତ୍ ଶମ ଦମାଦି ବ୍ରହ୍ମପ୍ରାପକ । ଏହି ଜ୍ଞାନର ବିଷୟକୁ ହେୟୋପାଦେୟ ରୂପରେ ଗଣିବା ବିଧେୟ । ନରଗଣ ଏହା ବିଶେଷରୂପେ ବୁଝିପାରିଲେ କାହିଁକି ପ୍ରଳାପ କରନ୍ତେ ? ୪ ।

ହେ ମହାରାଜ ! ଆପଣଙ୍କର କର୍ମ ନିଃଶେଷିତ ହୋଇନାହିଁ ଏବଂ ସମସ୍ତ ଶତ୍ରୁ ପରାଜିତ ହୋଇନାହାନ୍ତି । କାରଣ, ଆପଣ ସ୍ୱୀୟ ଅନ୍ତରସ୍ଥ ଶତ୍ରୁକୁ ଜାଣିପାରି ନାହାନ୍ତି । ୫ ।

ଅତଏବ ଆମ୍ଭେ ଆପଣଙ୍କ ନିକଟରେ ଯଥାଧର୍ମ ଓ ଯଥାଶ୍ରୁତ ଚିଦାତ୍ମା ଓ ଚିଦଚିଦ୍ ଗ୍ରନ୍ଥିରୂପାହଙ୍କାର ଯୁଦ୍ଧବୃତ୍ତାନ୍ତ ବର୍ଣ୍ଣନ କରୁଅଛୁ । ୬ ।

ହେ ନରାଧିପ ! ପୂର୍ବକାଳରେ ବୃତ୍ରାସୁରକର୍ତ୍ତୃକ ସ୍ଥୂଳଶରୀର ଉତ୍ପନ୍ନ ହେଲା । ଆତ୍ମରୂପରେ ଗୃହୀତ ହେବାରୁ ଗନ୍ଧର ପ୍ରଦେଶ ପିଣ୍ଡୀଭୂତ ଏବଂ ଧରାହରଣଜନ୍ୟ ଅନାତ୍ମଭୂତ ବ୍ରହ୍ମାଣ୍ଡ ଉତ୍ପନ୍ନ ହେଲା । ଏହାର ପରିଗ୍ରହ ହେତୁରୁ ଶତକ୍ରତୁ ତାହା ଦର୍ଶନ କରି ବୃତ୍ରାସୁର ପ୍ରତି କୁପିତ ହେଲେ । ୮ ।

ଅନନ୍ତର ଇନ୍ଦ୍ର କ୍ରୁଦ୍ଧ ହୋଇ ବୃତ୍ରାସୁର ପ୍ରତି ବକ୍ଷ୍ୟମାଣ ବିବେକ ବଜ୍ରନିକ୍ଷେପ କଲେ ।

ବୃତ୍ରାସୁର ସେହି ଭୂରିତେଜା ଇନ୍ଦ୍ରକର୍ତ୍ତୃକ ବଜ୍ରଦ୍ୱାରା ଅତିଶୟ ଆହତ ହେବାରୁ ସହସା ସଲିଳ ମଧ୍ୟରେ ଅର୍ଥାତ୍ କ୍ରମସମବେତ ସୋମାଜ୍ୟ ପ୍ରଭୃତି ବହୁଳାର୍ଦ୍ର ଦ୍ରବ୍ୟଦ୍ୱାରା ସୋମଲୋକକୁ ଭୋଗାର୍ଥ ଆରବ୍ଧ ଦିବ୍ୟଦେହରେ ପ୍ରବେଶ କଲେ ।

ଅର୍ଥାତ୍ ମାନୁଷ ଦେହରୁ ଉତ୍ଥାପିତ କର୍ତ୍ତୃକ ଦିବ୍ୟଦେହ ସଗୃହୀତ, ବୃତ୍ରକର୍ତ୍ତୃକ ସଲିଳ ସଗୃହୀତ ଏବଂ ସଲିଳର ବିଷୟ ଦିବ୍ୟଲୋକ ଅପହୃତ

Digitized by srujanika@gmail.com

ହେଲାରୁ ଅର୍ଥାତ୍ ଶମିତା ସ୍ୱବଶ୍ୱତା ହେବାରୁ ଇନ୍ଦ୍ର ଅତିଶୟ କ୍ରୁଦ୍ଧ ହୋଇ ତାହାଙ୍କ ପ୍ରତି ବଜ୍ରନିକ୍ଷେପ କଲେ ।

ଅନନ୍ତର ବୃତ୍ରାସୁର ସେହି ଅମିତତେଜା ଇନ୍ଦ୍ରକର୍ତ୍ତୃକ ବଜ୍ରଦ୍ୱାରା ଆହତ ହୋଇ ସହସା ତେଜୋମଧ୍ୟରେ ଅର୍ଥାତ୍ ଦେହଦ୍ୱୟରୁ ଉତ୍‌ଥାପିତ ହୋଇ ତେଜଃ ପ୍ରପଞ୍ଚ ମଧ୍ୟରେ ପ୍ରବିଷ୍ଟ ହେଲେ ।

ଅନନ୍ତର ବୃତ୍ର ତେଜୋ ମଧ୍ୟରେ ପ୍ରବିଷ୍ଟ ହୋଇ କିଞ୍ଚିତ୍ ଦୃଶ୍ୟ ପଦାର୍ଥ ଆତ୍ମରୂପରେ ଗ୍ରହଣ କରିବାରୁ ତେଜ ମଧ୍ୟରେ ଗ୍ରହଣ କଲେ । ଏବଂ ତେଜର ବିଷୟ ରୂପ ମମତା ଦ୍ୱାରା ଗ୍ରହଣ କରି ଅପହରଣ କରିବାରୁ ଶତକ୍ରତୁ ଅତିଶୟ କ୍ରୁଦ୍ଧ ହୋଇ ତାହାଙ୍କ ପ୍ରତି ବଜ୍ର ବିସର୍ଜନ କଲେ ।

ପରେ ବୃତ୍ରାସୁର ଅମିତବିକ୍ରମ ବଳସୂଦନକର୍ତ୍ତୃକ ବଜ୍ରଦ୍ୱାରା ବଧ୍ୟମାନ ହୋଇ ସହସା ସମୀରଣ ମଧ୍ୟରେ ସମଷ୍ଟିଲିଙ୍ଗ ମଧ୍ୟରେ ପ୍ରବେଶ କଲେ ।

ତଦନନ୍ତର ବୃତ୍ରାସୁରକର୍ତ୍ତୃକ ବାୟୁବ୍ୟାପ୍ତ ସେହି ସ୍ଥାନରେ ଉପାସ୍ୟା-ଦ୍ୱାରା ସଙ୍କଳ୍ପଲବ୍ଧ ବିଷୟ ପୂର୍ବବତ୍ ଆତ୍ମରୂପରେ ସଂଗୃହୀତ ଏବଂ ବାୟୁର ବିଷୟସ୍ପର୍ଶ ଅର୍ଥାତ୍ ମାନସ ବିଷୟସଙ୍ଗ ଅପହୃତ ହେବାରୁ ପୁରନ୍ଦର ଅତିଶୟ କ୍ରୁଦ୍ଧ ହୋଇ ତାହାଙ୍କ ପ୍ରତି ବଜ୍ରନିକ୍ଷେପ କଲେ । ୧୪ ।

ତତ୍‌ପରେ ବୃତ୍ରାସୁର ସେହି ଅପରିମିତ ବଳଶାଳୀ ବଳସୂଦନକର୍ତ୍ତୃକ ଅଶନିଦ୍ୱାରା ଆହତ ହୋଇ ଦ୍ୱିବିଧ ସୃଷ୍ଟିରୁ ଉତ୍‌ଥାପିତ ହୋଇ ଅବ୍ୟାକୃତ ସୁଷୁପ୍ତ୍ୟାଖ୍ୟ ଜାଡ୍ୟ ସ୍ଥାନକୁ ଗମନ କଲେ । ୧୫ ।

ତଦନନ୍ତର ବୃତ୍ରକର୍ତ୍ତୃକ ଆକାଶ ବ୍ୟାପ୍ତ ଏବଂ ଆକାଶର ବିଷୟ ଶବ୍ଦ ଅପହୃତ ହେବାରୁ ଇନ୍ଦ୍ର ଅତିଶୟ କ୍ରୁଦ୍ଧ ହୋଇ ତାହାଙ୍କ ପ୍ରତି ବଜ୍ର ନିକ୍ଷେପ କଲେ । ୧୬ ।

ତଦନନ୍ତର ଅମିତତେଜା ଇନ୍ଦ୍ରକର୍ତ୍ତୃକ ବଜ୍ରଦ୍ୱାରା ଆହତ ହୋଇ ସହସା ସେ ତାହାଙ୍କୁ ଅର୍ଥାତ୍ ଚିଦାତ୍ମାଙ୍କୁ ଗ୍ରହଣ କଲେ । ୧୭ ।

ଏବଂ ଇନ୍ଦ୍ର ବୃତ୍ରକର୍ତ୍ତୃକ ଗୃହୀତ ହୋଇ ଅତିଶୟ ବିମୋହିତ ହେଲେ । ୧୮ ।

Digitized by srujanika@gmail.com

ହେ ତାତ ! ଭରତର୍ଷଭ ! ଆମ୍ଭେମାନେ ଏହିପରି ଶ୍ରବଣ କରିଅଛୁଁ ଯେ, ଇନ୍ଦ୍ର ବୃତ୍ରକର୍ତ୍ତୃକ ଗୃହୀତ ହୋଇ ମହାନ୍ ମୋହପ୍ରାପ୍ତ ହେଲେ । ବଶିଷ୍ଠ ତାହାଙ୍କୁ ପ୍ରବୋଧିତ କରିବାରୁ ସେ ବୃତ୍ର୍ ଦୃଶ୍ୟ ବିବେକ ଦ୍ୱାରା ସ୍ୱୀୟ ଶରୀରସ୍ଥ ସେହି ବୃତ୍ରାସୁରକୁ ନିହତ କଲେ । ୧୯ ।

ହେ ରାଜନ୍ ! ତୁମ୍ଭେ ଯାହା ଶ୍ରବଣ କଲ, ଏହି ଧର୍ମରହସ୍ୟକୁ ପ୍ରଥମତଃ ଇନ୍ଦ୍ର ମହର୍ଷିଗଣଙ୍କ ନିକଟରେ ଏବଂ ମହର୍ଷିଗଣ ଆମ୍ଭ ନିକଟରେ କୀର୍ତ୍ତନ କରିଥିଲେ । ୨୦ ।

---

# ଦ୍ୱାଦଶ ଅଧ୍ୟାୟ

ବାସୁଦେବ କହିଲେ—ମହାରାଜ ! ଶାରୀର ଓ ମାନସ ଏହି ଦ୍ୱିବିଧ ବ୍ୟାଧି ଉତ୍ପନ୍ନ ହୁଏ । ପରନ୍ତୁ ପରସ୍ପରର ସହଯୋଗରେ ସେହି ଦ୍ୱିବିଧ ବ୍ୟାଧିର ଜନ୍ମ ହୋଇଥାଏ । ସହଯୋଗ ବ୍ୟତିରେକେ ସେହି ଦୁହେଁ ଉତ୍ପନ୍ନ ହୋଇ ପାରନ୍ତି ନାହିଁ । ୧ ।

ଯେଉଁ ବ୍ୟାଧି ଶରୀରରୁ ଉତ୍ପନ୍ନ ହୁଏ ତାହା ମାନସ ବୋଲି କଥିତ ହୁଏ । ୨ ।

ହେ ରାଜନ୍ ! ଶୀତ, ଉଷ୍ଣ ଅର୍ଥାତ୍ କଫ ଓ ପିତ୍ତ ଏବଂ ବାୟୁ ଏହିମାନେ ଶରୀରର ରଜୋଗୁଣ । ଏହି ଗୁଣସମୂହର ସାମ୍ୟାବସ୍ଥାକୁ ପଣ୍ଡିତମାନେ ସ୍ୱସ୍ଥର ଲକ୍ଷଣ ବୋଲି କହନ୍ତି । ୩ ।

ପରନ୍ତୁ ଶୀତ ଓ ଉଷ୍ଣ ଅର୍ଥାତ୍ କଫ ଓ ପିତ୍ତ ଏହି ଉଭୟ ମଧ୍ୟରେ ଅନ୍ୟତରର ଆଧିକ୍ୟ ହେଲେ ଅର୍ଥାତ୍ ବୈଷମ୍ୟରୁ ଇତର ବର୍ଦ୍ଧକ ଔଷଧାଦି ଦ୍ୱାରା ତଜ୍ଜନ୍ୟ ଦୋଷର ଅପନୟନ କରିବ । ସତ୍ତ୍ୱ, ରଜ ଓ ତମ ଏହି ତିନି ଗୋଟି ଗୁଣକୁ ପଣ୍ଡିତମାନେ ଆତ୍ମଗୁଣ ବୋଲି କହନ୍ତି । ୪ ।

ଏହି ଗୁଣସମୂହର ସାମ୍ୟାବସ୍ଥାକୁ ପଣ୍ଡିତମାନେ ସ୍ୱାସ୍ଥ୍ୟ କହନ୍ତି ।

Digitized by srujanika@gmail.com

ପରନ୍ତୁ ଏହିମାନଙ୍କ ମଧ୍ୟରେ ଅନ୍ୟତମର ବୃଦ୍ଧି ହେଲେ ତାହାର ଶାନ୍ତି ଉପାୟ କରିବାକୁ ହେବ । ୫ ।

ହେ ରାଜନ୍ ! ହର୍ଷକର୍ତ୍ତୃକ ଶୋକ ଏବଂ ଶୋକକର୍ତ୍ତୃକ ହର୍ଷ ବାଧ ହୋଇଥାଏ । କେହି ଦୁଃଖରେ ବର୍ତ୍ତମାନ ଥାଇ ସୁଖର ସ୍ମରଣ, କେହି ଅବା ସୁଖରେ ବିଦ୍ୟମାନ ଥାଇ ଦୁଃଖର ସ୍ମରଣ କରିବାକୁ ଇଚ୍ଛା କରନ୍ତି । ପରନ୍ତୁ ହେ କୌନ୍ତେୟ ! ଆପଣ ସୁଖ ଦୁଃଖ ରୂପ ଉକ୍ତ ଦ୍ୱିବିଧ ବ୍ୟାଧିହୀନ ହୋଇ ସୁଖ ଅବା ଦୁଃଖ କିଛି ମାତ୍ର ଇଚ୍ଛା କରନ୍ତୁ ନାହିଁ ।

ତେବେ ଆପଣଙ୍କ ଦୁଃଖ ବିଭ୍ରମ ହେବାରୁ ଅନ୍ୟ ବ୍ରହ୍ମଙ୍କୁ କେବଳ ଅନୁସନ୍ଧାନ କରିବାକୁ ଇଚ୍ଛାକରନ୍ତୁ । ହେ ପୃଥାତନୟ ! ଅଥବା ଏହି ଦୁଖିଭାବ ଆପଣଙ୍କର ସ୍ୱଭାବ । କାରଣ, ଏହାଦ୍ୱାରା ଆପଣ ଆକୃଷ୍ଟ ହୋଇଅଛନ୍ତି ।

ମହାରାଜ ! ଆପଣ ଯେ ପାଣ୍ଡବମାନଙ୍କ ସମକ୍ଷରେ ରଜସ୍ୱଳା ଏକ-ବସ୍ତ୍ରା କୃଷ୍ଣାଙ୍କୁ ସଭାମଧ୍ୟକୁ ଆସିବାର ଦେଖିଥିଲେ, ସମ୍ପ୍ରତି ଆଉ ସେହି ଅତୀତ ଦୁଃଖର ସ୍ମରଣ କରିବାର ଆପଣଙ୍କର ଉଚିତ ନୁହେ । ୮ ।

ନଗରରୁ ପ୍ରବ୍ରାଜନ, ଅଜିନ ପରିଧାନ ପୂର୍ବକ ନିବାସନ, ମହାରଣ୍ୟରେ ନିବାସ, ଜଟାସୁରଠାରୁ କ୍ଳେଶପ୍ରାପ୍ତି, ଚିତ୍ରସେନ ସହିତ ସଂଗ୍ରାମ, ସୈନ୍ଧବ ଠାରୁ କ୍ଳେଶଭୋଗ, ଅଜ୍ଞାତଚର୍ଯ୍ୟାରେ କୀଚକର ଦ୍ରୌପଦୀଙ୍କୁ ପଦାଘାତ, ଏବଂ ଭୀଷ୍ମ ଓ ଦ୍ରୋଣଙ୍କ ସହିତ ଯୁଦ୍ଧ ଏହି ସମସ୍ତ ବିଷୟ ଆପଣ ଆଉ ସ୍ମରଣ କରିବେ ନାହିଁ ।

ହେ ଅରିଦମନ ! ଏକାକୀ ମନ ସହିତ ଯେଉଁ ଯୁଦ୍ଧ କରିବାକୁ ହୁଏ, ସମ୍ପ୍ରତି ଆପଣଙ୍କର ସେହି ଯୁଦ୍ଧ ଉପସ୍ଥିତ ହୋଇଅଛି । ଅତଏବ ହେ ଭରତର୍ଷଭ ! ଆପଣ ଯୁଦ୍ଧ ନିମିତ୍ତ ମନର ଅଭିମୁଖୀ ହୋଇ ଯୋଗ ଏବଂ ସ୍ୱୀୟ ଶୋଧକ କର୍ମଦ୍ୱାରା ସେହି ଅବ୍ୟକ୍ତ ରୂପ ମନକୁ ଜୟକରି ତାହାର ପରପାରକୁ ଗମନ କରିବା ହେଉନ୍ତୁ ।

ମହାରାଜ ! ଯେଉଁ ଯୁଦ୍ଧରେ ଶର, ଭୃତ୍ୟ ଏବଂ ବନ୍ଧୁର ପ୍ରୟୋଜନ ନାହିଁ, କେବଳ ମନର ସହିତ ଯୁଦ୍ଧ କରିବାକୁ ହୁଏ, ସମ୍ପ୍ରତି ଆପଣଙ୍କର ସେହି ଯୁଦ୍ଧ ଉପସ୍ଥିତ ହୋଇଅଛି ।

Digitized by srujanika@gmail.com

ସେହି ଯୁଦ୍ଧ ଜୟ କରିବାକୁ ନ ପାରିଲେ ଆପଣ ଦୁଃଖବହୁଳ ଅବସ୍ଥା ପ୍ରାପ୍ତ ହେବ ।

ଅତଏବ, ହେ କୁନ୍ତୀତନୟ ! ଆପଣ ଏହି କଥା ଜାଣି କାର୍ଯ୍ୟ କରିବା ହେଉନ୍ତୁ । ତାହାହେଲେ ଆପଣ କୃତକାର୍ଯ୍ୟ ହେବେ ।

ମହାରାଜ ! ଆପଣ ଏହି ବୁଦ୍ଧି ଏବଂ ପ୍ରାଣିଗଣଙ୍କ ଗତ ପ୍ରଳୟ ଅଗତ ଓ ଉତ୍ପତ୍ତି ବିଶେଷରୂପେ ଅର୍ଥାତ୍ ମାୟା ମାତ୍ର ବୋଲି ନିଶ୍ଚୟ କରି ପିତୃ ପୈତାମହ ବୃତ୍ତାନ୍ତର ଅନୁବର୍ତ୍ତୀ ହୋଇ ଯଥୋଚିତ ରାଜ୍ୟଶାସନ କରିବା ହେଉନ୍ତୁ । ୧୬ ।

# ତ୍ରୟୋଦଶ ଅଧ୍ୟାୟ

ବାସୁଦେବ କହିଲେ—ହେ ଭାରତ ! ବାହ୍ୟଦ୍ରବ୍ୟ ରାଜ୍ୟାଦି ପରିତ୍ୟାଗ କଲେ, ସିଦ୍ଧି ଅର୍ଥାତ୍ ମୋକ୍ଷ ହୁଏ ନାହିଁ, ଶାରୀର ଦ୍ରବ୍ୟ କାମାଦି ତ୍ୟାଗ କଲେ ମୋକ୍ଷ ହୁଏ । ୧ ।

କି ନା, ପରନ୍ତୁ ଶୁଷ୍କ ବୈରାଗ୍ୟଯୁକ୍ତ ବିବେକବିହୀନ ମାନବର ମୋକ୍ଷ ହୁଏ ନାହିଁ ।

ବାହ୍ୟଦ୍ରବ୍ୟ ରାଜ୍ୟାଦିବିଯୁକ୍ତ ଏବଂ ଶାରୀରଦ୍ରବ୍ୟ କାମାଦିରେ ସଂସକ୍ତ ପୁରୁଷର ମୌଢ୍ୟର ଅନପାୟ ହେତୁରୁ ସେ ଧର୍ମ ସେ ଅଧର୍ମ, ଓ ସେ ସୁଖ ସେ ଅସୁଖ । ଅତଏବ ସେ ଦୁହେଁ ଶତ୍ରୁମାନଙ୍କର ହେଉ । ୨ ।

ସଂସାର ବିଷୟରେ ମମରୂପ ଦ୍ୟକ୍ଷର ମୃତ୍ୟୁ ବୋଲି କଥିତ ହୋଇଅଛି । ଏବଂ ସଂସାର ବିଷୟରେ ନିର୍ମମ ତାର ତ୍ର୍ୟକ୍ଷର ଶାଶ୍ୱତବ୍ରହ୍ମ ବୋଲି କୀର୍ତ୍ତିତ ହୋଇଅଛି । ଅର୍ଥାତ୍ ମମତାରୁ ବନ୍ଧ ହୁଏ, ତଚ୍ଛୂନ୍ୟରେ ମୋକ୍ଷ ହୁଏ ।

ହେ ରାଜନ୍ ! ସେହି ବ୍ରହ୍ମନିଃସଙ୍ଗତ୍ୱ ଏବଂ ସସଙ୍ଗତ୍ୱ ଉଭୟେ ଅଦୃଶ୍ୟ ରୂପରେ ମନୁଷ୍ୟ ଶରୀରରେ ବିଦ୍ୟମାନ ଥାଇ ପ୍ରାଣିଗଣଙ୍କୁ ଯୁଦ୍ଧରେ ପ୍ରବର୍ତ୍ତିତ କରନ୍ତି ଅର୍ଥାତ୍ ଏକଶରୀରରେ ବହୁ ପଦାର୍ଥର ମମତାପ୍ରଯୁକ୍ତ ପରସ୍ପର ବିରୋଧ ଘଟେ ।

Digitized by srujanika@gmail.com

ହେ ଭାରତ ! ଅଧିଷ୍ଠାନ ସର୍ଭୂତଙ୍କ ସନ୍ଧହେତୁରୁ ଏହି ଜଗତର ଯଦି ଅବିନାଶ ନିଶ୍ଚିତ ହୁଏ, ତେବେ କେହି କୌଣସି ପ୍ରାଣିର ଶରୀର ଭେଦକଲେ ସୁଦ୍ଧା ସେହିଜନ୍ୟ ପାପଭାଗୀ ହେବେ ନାହିଁ ।

ହେ ପୃଥାତନୟ ! କେହି ଯଦି ସ୍ଥାବର ଓ ଜଙ୍ଗମପନ ସମସ୍ତ ପୃଥିବୀ ଲାଭ କରି ତହିଁରେ ମମତା ନ କରନ୍ତି, ତେବେ 'ହତ୍ୱାପି ସଇମାନ୍ ନହନ୍ତି ନ ନିବଧ୍ୟତେ', ଏହି ବଚନ ପ୍ରାମାଣ୍ୟରୁ ହିଂସା ପାପରେ ଲିପ୍ତ ହୁଏ ନାହିଁ ।

ସେହି ପୃଥିବୀ ଉପଲବ୍ଧ ପଦାର୍ଥ ପରିରେ ତାହାଙ୍କ ପକ୍ଷରେ ଫଳଦାୟିନୀ ହୁଏ ନାହିଁ ।

ଯେ ବନବାସୀ ହୋଇ ବନ୍ୟ ଫଳମୂଳଦ୍ୱାରା ଜୀବିକା ନିର୍ବାହ କରି ବାହ୍ୟବସ୍ତୁ ରାଜ୍ୟାଦିରେ ମମତା କରନ୍ତି, ସେ ମୃତ୍ୟୁମୁଖ ମଧ୍ୟରେ ବାସ କରନ୍ତି ।

ହେ ଭରତ ! ଆପଣ ଧ୍ୟାନଯୋଗରେ ବାହ୍ୟ ଏବଂ ଅନ୍ତର ଶତ୍ରୁରାଜ୍ୟ ଓ କାମାଦିର ମାୟାମୟତ୍ୱ ରୂପ ସ୍ୱଭାବ ଦର୍ଶନ କରିବା ହେଉନ୍ତୁ ।

ଯେଉଁ ବ୍ୟକ୍ତି ସେହି ଅନାଦି ମାୟାମୟ ସ୍ୱଭାବକୁ ବିଶେଷରୂପେ ଅବଗତ ହୋଇପାରନ୍ତି, ଅର୍ଥାତ୍ ଅନାଦି ମାୟାକୁ ବାଧିକରି ବ୍ରହ୍ମସ୍ୱରୂପ ଲାଭଦ୍ୱାରା ସେ ମହାଭୟଙ୍କର ସଂସାରରୁ ମୁକ୍ତ ହୁଅନ୍ତି । ୮ ।

ଲୋକ ମଧ୍ୟରେ ସମସ୍ତେ କାମନାବାନ୍ ବ୍ୟକ୍ତିଙ୍କୁ ପ୍ରଶଂସା କରନ୍ତି ନାହିଁ । ଏବଂ ଇହଲୋକ କାମନା ସକଳ ମନର ଅଙ୍ଗୀଭୂତ ବୋଲି କାମନା ବ୍ୟତିରେକେ କୌଣସି ବିଷୟରେ ପ୍ରବର୍ତ୍ତିତ ହୋଇପାରନ୍ତି ନାହିଁ ।

ଅତଏବ ଯୋଗବିତ୍ ପଣ୍ଡିତମାନେ ପୁନଃ ପୁନଃ ଜନ୍ମରେ ଅଭ୍ୟାସ ଯୋଗବଶତଃ ଶୁଦ୍ଧଚିତ୍ତ ହୋଇ ସର୍ବଦା ଉତ୍କୃଷ୍ଟ ମୋକ୍ଷମାର୍ଗ ଧ୍ୟାନପୂର୍ବକ କାମନାସମୂହକୁ ସଂହାର କରନ୍ତି ।

ଯେଉଁ ମାନବ ଯାହା ଯାହା କାମନା କରନ୍ତି, ତାହା ଧର୍ମ ନୁହେଁ, ଏହା ବିଶେଷରୂପେ ବିଦିତ ହୋଇ କାମନା ପୂର୍ବକ ବ୍ରତ, ଯଜ୍ଞ, ନିୟମ ଏବଂ ଧ୍ୟାନଯୋଗ ସମୂହର ଅନୁଷ୍ଠାନ ନ କରନ୍ତି, ସେ କାମନା ନିଗ୍ରହକୁ ଧର୍ମ ଏବଂ ମୋକ୍ଷମୂଳ ବୋଲି ଜ୍ଞାନ କରନ୍ତି । ୧୧ ।

Digitized by srujanika@gmail.com

ପରଂତୁ, ହେ ଯୁଧିଷ୍ଠିର ! ଏହି ବିଷୟରେ କାମର ଦୁରୁଚ୍ଛେଦତ୍ୱବୋଧୀ ପୁରାବିତ୍ ପଣ୍ଡିତଗଣ କାମଗୀତ ବହୁଳଗାଥା କୀର୍ତ୍ତନ କରି ଥାଆନ୍ତି ।

ଆମ୍ଭେ ଆପଣଙ୍କ ନିକଟରେ ସେହି ସକଳ ଗାଥା ସମ୍ପୂର୍ଣ୍ଣରୂପେ କୀର୍ତ୍ତନ କରୁଅଛୁ, ତାହା ଶ୍ରବଣ କରିବା ହେଉନ୍ତୁ ।

କାମ କହେ, ନିର୍ମମତ୍ୱ ଓ ଯୋଗାଭ୍ୟାସ ରୂପ ଉପାୟ ବ୍ୟତିରେକେ କୌଣସି ପ୍ରାଣୀ ଆମ୍ଭଙ୍କୁ ଜୟ କରିବାକୁ ସମର୍ଥ ହୁଅନ୍ତି ନାହିଁ ।

ଯେଉଁ କାମନାବାନ୍ ମାନବ ମନୋମଧ୍ୟରେ ଆମ୍ଭର ବଳ ବିଦିତ ହୋଇ ବାକ୍ ପ୍ରଭୃତି ଇନ୍ଦ୍ରିୟସାଧ୍ୟ ଜପାଦି ରୂପ ଶସ୍ତ୍ରଦ୍ୱାରା ଆମ୍ଭଙ୍କୁ ନିହତ କରିବାକୁ ପ୍ରଯତ୍ନବାନ୍ ହୁଅନ୍ତି, ଆମ୍ଭେ ତାହାଙ୍କ ଚିତ୍ତମଧ୍ୟରେ "ଆମ୍ଭେ ସର୍ବୋତ୍କୃଷ୍ଟ ଓ ଜପକର୍ତ୍ତା" ଏତାଦୃଶ ଅଭିମାନ ରୂପେ ଆବିର୍ଭୂତ ହୋଇ ତାହାଙ୍କର ସମସ୍ତ ଜପ ପ୍ରଭୃତି ବିଫଳ କରୁଁ । ପୁରୁଷ ବିବିଧ ଦକ୍ଷିଣାସମନ୍ୱିତ ଯଜ୍ଞଦ୍ୱାରା ଆମ୍ଭଙ୍କୁ ନିଗ୍ରହ କରିବାକୁ ପ୍ରଯତ୍ନବାନ୍ ହୁଅନ୍ତି, ଆମ୍ଭେ ଉତ୍ତମ ଯୋନି ସମ୍ଭୂତ ଧର୍ମାତ୍ମା ମାନବ ସଦୃଶ ତାହାଙ୍କ ଚିତ୍ତ ମଧ୍ୟରେ ଦମ୍ଭାଦି ରୂପେ ପୁନର୍ବାର ଆବିର୍ଭୂତ ହୋଇଥାଉଁ ।

ଯେଉଁ ବ୍ୟକ୍ତି ବେଦ ଓ ବେଦାଙ୍ଗ ସାଧନ ଦ୍ୱାରା ଆମ୍ଭର ବିନାଶ ବିଷୟରେ ପ୍ରଯତ୍ନବାନ୍ ହୁଅନ୍ତି, ସ୍ଥାବର ଯୋନିରେ ଅନଭିବ୍ୟକ୍ତ ରୂପେ ଆବିର୍ଭୂତ-ଜୀବସଦୃଶ ଆମ୍ଭେ ତାହାଙ୍କ ଚିତ୍ତ ମଧ୍ୟରେ ଆବିର୍ଭୂତ ହେଉଁ । ୧୫ ।

ଯେଉଁ ସତ୍ୟପରାକ୍ରମ ମାନବ ଧୈର୍ଯ୍ୟଦ୍ୱାରା ଆମ୍ଭଙ୍କୁ ଜୟ କରିବାକୁ ପ୍ରଯତ୍ନବାନ୍ ହୁଅନ୍ତି, ଆମ୍ଭେ ତାହାଙ୍କର ଚିତ୍ତରୂପେ ଆବିର୍ଭୂତ ହେଉଁ ; ତନ୍ନିମିତ୍ତ ସେ ଆମ୍ଭଙ୍କୁ ଜାଣିପାରନ୍ତି ନାହିଁ । ୧୬ ।

ଯେଉଁ ଶଂସିତବ୍ରତ ମାନବ ତପସ୍ୟାଦ୍ୱାରା ଆମ୍ଭଙ୍କୁ ଜୟ କରିବାକୁ ପ୍ରଯତ୍ନବାନ୍ ହୁଅନ୍ତି, ଆମ୍ଭେ ତାହାଙ୍କ ଚିତ୍ତମଧ୍ୟରେ ତପୋରୂପରେ ଆବିର୍ଭୂତ ହେଉଁ । ସୁତରାଂ ସେ ଆମ୍ଭଙ୍କୁ ବୋଧ କରିପାରନ୍ତି ନାହିଁ । ୧୭ ।

ଯେଉଁ ପଣ୍ଡିତ ପୁରୁଷ, ନିତ୍ୟ ମୁକ୍ତ ଆମ୍ଭଙ୍କୁ ନଜାଣି ମୋକ୍ଷନିମିତ୍ତ ମୋକ୍ଷମାର୍ଗ ଅବଲମ୍ବନ ପୂର୍ବକ ଆମ୍ଭଙ୍କୁ ଜୟ କରିବାକୁ ପ୍ରଯତ୍ନବାନ୍ ହୁଅନ୍ତି,

Digitized by srujanika@gmail.com

ସର୍ବଭୂତର ଅବଧ ସନାତନ ଅଦ୍ୱିତୀୟ ଆତ୍ମ ସେହି ମୋକ୍ଷରତିଷ୍ଠ ଅକ୍ଷ ପୁରୁଷଙ୍କୁ ଉପହାସ କରି ତାହାଙ୍କ ନିକଟରେ ନୃତ୍ୟ କରିଥାଉଁ ।

ହେ ମହାରାଜ ! ଯଦି ନିଷ୍କାମ ପୂର୍ବକ ଯୋଗାଭ୍ୟାସ ବ୍ୟତିରେକେ କାମଜପୂର ଉପାୟାନ୍ତର ଦୃଷ୍ଟ ନୁହେ, ତେବେ ସେହି କାମ ପରିତ୍ୟାଗ ପୂର୍ବକ ବିବିଧ ଦକ୍ଷିଣାଯୁକ୍ତ ଯଜ୍ଞର ଅନୁଷ୍ଠାନ କଲେ ଆପଣଙ୍କର ଶ୍ରେୟଃ-ସିଦ୍ଧି ହେବ ।

ଅତଏବ ଆପଣ ନିଷ୍କାମ ହୋଇ ବିଧିବତ୍ ଦକ୍ଷିଣାସମନ୍ୱିତ ବାଜିମେଧ ଏବଂ ଅନ୍ୟବିଧ ସଦକ୍ଷିଣ ଯଜ୍ଞର ଅନୁଷ୍ଠାନ କରନ୍ତୁ । ୨୦ ।

ଆପଣ ସମରହତ ବନ୍ଧୁଗଣଙ୍କୁ ବାରମ୍ବାର ସ୍ମରଣ କରି ବୃଥା ବ୍ୟଥିତ ହେବେ ନାହିଁ ।

ଯେଉଁମାନେ ଏହି ରଣଭୂମିରେ ନିହତ ହୋଇଅଛନ୍ତି, ଆପଣ ପୁନଶ୍ଚ ଆଉ ସେମାନଙ୍କୁ ଦେଖି ପାରିବେ ନାହିଁ ।

ଅତଏବ ଆପଣ ଶୋକ ସମ୍ବରଣ ପୂର୍ବକ ସମୃଦ୍ଧିସମ୍ପନ୍ନ ସଦକ୍ଷିଣ ମହାଯଜ୍ଞରେ ଦେବଗଣଙ୍କର ପୂଜା କଲେ ଇହଲୋକରେ ଅନୁତ୍ତମ ଯଶ ପ୍ରାପ୍ତ ହୋଇ ଉତ୍କୃଷ୍ଟ ଗତିଲାଭ କରି ପାରିବେ । ୨୨ !

---

## ଚତୁର୍ଦ୍ଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହତବନ୍ଧୁ ରାଜର୍ଷି ଯୁଧିଷ୍ଠିର ସେହି ତପୋଧନ ମୁନିଗଣକର୍ତ୍ତୃକ ଏତାଦୃଶ ବହୁବିଧ ବାକ୍ୟଦ୍ୱାରା ସମ୍ୟକ୍ ରୂପେ ଆଶ୍ୱାସିତ ହେଲେ । ୧ ।

ହେ ପାର୍ଥିବ ! ଧର୍ମରାଜ ଭଗବାନ୍ ବିଷ୍ଟରଶ୍ରବା, ଦ୍ୱୈପାୟନକୃଷ୍ଣ, ଦେବସ୍ଥାନ, ଭୀମ, ନକୁଳ, ସହଦେବ, ଦ୍ରୌପଦୀ, ଧୀମାନ୍ ବିଜୟ, ଅନ୍ୟାନ୍ୟ ପୁରୁଷପ୍ରବର ଏବଂ ଶାସ୍ତ୍ରଦର୍ଶୀ ବ୍ରାହ୍ମଣଗଣକର୍ତ୍ତୃକ ଅନୁମତ ହୋଇ ମାନସିକ ସନ୍ତାପ ଏବଂ ଶୋକ ଦୁଃଖ ପରିତ୍ୟାଗ କଲେ । ୪ ।

Digitized by srujanika@gmail.com

ଅନନ୍ତର ଧର୍ମାତ୍ମା ଯୁଧିଷ୍ଠିର ବନ୍ଧୁମାନଙ୍କର ମାସିକ ପ୍ରଭୃତି ସମସ୍ତ ପ୍ରେତକାର୍ଯ୍ୟ ସମ୍ପାଦନ କରି ବ୍ରାହ୍ମଣ ଏବଂ ଦେବଗଣଙ୍କ ଅର୍ଚ୍ଚନା କରି ସସାଗରା ବସୁନ୍ଧରାକୁ ଆପଣାର ବଶବର୍ତ୍ତିନୀ କଲେ ।

କୁରୁନନ୍ଦନ ନୃପତି ଯୁଧିଷ୍ଠିର ସ୍ୱୀୟ ରାଜ୍ୟ ପ୍ରାପ୍ତ ହୋଇ ପ୍ରଶାନ୍ତ ଚିତ୍ତରେ ବ୍ୟାସ, ନାରଦ ଏବଂ ଅନ୍ୟାନ୍ୟ ମୁନିଗଣଙ୍କୁ କହିଲେ ଯେ, ଆପଣମାନେ ମୁନିଗଣଙ୍କ ମଧ୍ୟରେ ପ୍ରଧାନ, ପୁରାତନ ଏବଂ ପ୍ରାଚୀନ । ସୁତରାଂ ଆପଣମାନଙ୍କ ଦ୍ୱାରା ଆମ୍ଭେ ଆଶ୍ୱାସିତ ହେବାରୁ ସମ୍ପ୍ରତି ଆମ୍ଭର ଅଣୁମାତ୍ର ଦୁଃଖ ନାହିଁ । ୭ ।

ବିଶେଷତଃ ଯାହାଦ୍ୱାରା ଦେବତାମାନଙ୍କର ପୂଜା କରିବାକୁ ହେବ, ସେହି ମହାନ୍ ଅର୍ଥ ମଧ୍ୟ ଆମ୍ଭେ ପ୍ରାପ୍ତ ହୋଇଅଛୁଁ ।

ଅତଏବ ଅଦ୍ୟ ଆମ୍ଭେମାନେ ଆପଣମାନଙ୍କୁ ପୁରୋବର୍ତ୍ତୀ କରି ଯଜ୍ଞ ସମ୍ପାଦନ କରିବୁଁ । ୮ ।

ହେ ଦ୍ୱିଜସତ୍ତମ ! ପିତାମହ ! ଆମ୍ଭେମାନେ ଶୁଣିଅଛୁଁ ଯେ, ସେହି ଦେଶ ଅତିଶୟ ଆଶ୍ଚର୍ଯ୍ୟାନ୍ୱିତ, ଅତଏବ ଆମ୍ଭେମାନେ ଆପଣଙ୍କ ଦ୍ୱାରା ରକ୍ଷିତ ହୋଇ ଯାହାଦ୍ୱାରା ସେହି ହିମାଳୟ ପ୍ରଦେଶକୁ ଗମନ କରି ପାରିବୁଁ, ସେହିପରି ବିଧାନ କରିବା ହେଉନ୍ତୁ ।

ହେ ବିପ୍ରର୍ଷେ ! ଆମ୍ଭର ସେହି ଯଜ୍ଞ ଆପଣଙ୍କ ଅଧୀନ ହୋଇ ରହିଅଛି । ଅପିଚ ଭଗବାନ୍ ଦେବସ୍ଥାନ ଏବଂ ଦେବର୍ଷି ନାରଦ ମନୋହର କଲ୍ୟାଣ-କର ବହୁତର ବାକ୍ୟ କହିଅଛନ୍ତି ।

କୌଣସି ଭାଗ୍ୟହୀନ ମାନବ ବ୍ୟସନପ୍ରାପ୍ତ ହୋଇ ସାଧୁସମ୍ମତ ସୁହୃତ୍ ଏବଂବିଧ ଗୁରୁଲାଭ କରି ପାରନ୍ତି ନାହିଁ ।

ଅନନ୍ତର ସେହି ମହର୍ଷିଗଣ ରାଜା ଯୁଧିଷ୍ଠିରଙ୍କର ଏହି ବାକ୍ୟ ଶ୍ରବଣକରି ତାହାଙ୍କୁ ଏବଂ କୃଷ୍ଣ ଓ ଅର୍ଜୁନଙ୍କୁ ହିମାଳୟ ଗମନ ବିଷୟରେ ଆଦେଶକରି ସେହିଠାରେ ସମସ୍ତଙ୍କ ସମକ୍ଷରେ ଅନ୍ତର୍ହିତ ହେଲେ ଏବଂ ଧର୍ମନନ୍ଦନ ଯୁଧିଷ୍ଠିର ସେହି ସ୍ଥାନରେ ଉପବେଶନ କଲେ । ୧୩ ।

Digitized by srujanika@gmail.com

ସେତେବେଳେ ପାଣ୍ଡବଗଣ ଭୀଷ୍ମଙ୍କର ନିଧନ ହେବାରୁ ତାହାଙ୍କର ଶୌଚକାର୍ଯ୍ୟ କରୁଥିଲେ । ସେହିମାନଙ୍କର ସେହି ଅତିଶୟ ସୁଦୀର୍ଘ କାଳ ଅତିବାହିତ ହେଲନାହିଁ । କୁରୁସତ୍ତମ ଯୁଧିଷ୍ଠିର ଭୀଷ୍ମ ଓ କର୍ଣ୍ଣ ପ୍ରଭୃତି କୁରୁମାନଙ୍କର ଔର୍ଦ୍ଧ୍ୱଦୈହିକ କାର୍ଯ୍ୟ ସମ୍ପାଦନ କରି ବ୍ରାହ୍ମଣଗଣଙ୍କୁ ସମସ୍ତ ମହାଦାନ ଦାନ କଲେ, ଏବଂ ସେ ପୁନଶ୍ଚ ଧୃତରାଷ୍ଟ୍ରଙ୍କ ସହିତ ଔର୍ଦ୍ଧ୍ୱଦୈହିକ କାର୍ଯ୍ୟକରି ବିପ୍ରବର୍ଗଙ୍କୁ ବହୁତର ଧନ ଦାନକଲେ ।

ପରେ ସେ ପ୍ରଜ୍ଞାଚକ୍ଷୁ ପିତା ଧୃତରାଷ୍ଟ୍ରଙ୍କୁ ଅଗ୍ରରେ କରି ଆଶ୍ୱାସ ପ୍ରଦାନ ପୂର୍ବକ ହସ୍ତିନାପୁରରେ ପ୍ରବିଷ୍ଟ ହୋଇ ଭ୍ରାତୃଗଣଙ୍କ ସହିତ ପୃଥିବୀ ଶାସନ କରିଲେ । ୧୭ ।

---

# ପଞ୍ଚଦଶ ଅଧ୍ୟାୟ

ଜନମେଜୟ ବୈଶମ୍ପାୟନଙ୍କୁ ପ୍ରଶ୍ନକଲେ, ହେ ଦ୍ୱିଜସତ୍ତମ ! ପାଣ୍ଡବଗଣ-କର୍ତ୍ତୃକ ରାଷ୍ଟ୍ର ବିଜିତ ଏବଂ ପ୍ରଶାନ୍ତ ହେବାରୁ ମହାବୀର ବାସୁଦେବ ଓ ଧନଞ୍ଜୟ କଅଣ କରିଥିଲେ ?

ବୈଶମ୍ପାୟନ କହିଲେ—ହେ ରାଜନ୍ ! ପାଣ୍ଡବଗଣକର୍ତ୍ତୃକ ରାଷ୍ଟ୍ର ଜିତ ଏବଂ ପ୍ରଶାନ୍ତ ହେବାରୁ ବାସୁଦେବ ଓ ଧନଞ୍ଜୟ ଅତି ହୃଷ୍ଟ ହୋଇ ସୁର-ପୁରରେ ପ୍ରହୃଷ୍ଟଚିତ୍ତ ସୁରପତିଯୁଗଳ ଏବଂ ନନ୍ଦନକାନନ ବିହାରୀ ଅଶ୍ୱିନୀକୁମାରଦ୍ୱୟଙ୍କ ସଦୃଶ ହୃଷ୍ଟ ଅନ୍ତଃକରଣରେ ବିଚିତ୍ର ବନ, ପର୍ବତ, ସାନୁ, ସୁପୁଣ୍ୟ ତୀର୍ଥ, ପଲ୍ୱଲ ଓ ନଦୀ ମଧ୍ୟରେ ବିଚରଣ ପୂର୍ବକ ବିହାର କଲେ ।

ହେ ଭାରତ ! ମହାତ୍ମା କୃଷ୍ଣ ଓ ପାଣ୍ଡୁନନ୍ଦନ ଅର୍ଜ୍ଜୁନ ଉଭୟେ ଇନ୍ଦ୍ର-ପ୍ରସ୍ଥରେ ନାନାପ୍ରକାର କ୍ରୀଡ଼ାକରି ସଭାମଧ୍ୟରେ ପ୍ରବିଷ୍ଟ ହୋଇ ବିହାରକଲେ ।

ହେ ପାର୍ଥିବ ! ସେହି ସଭାମଧ୍ୟରେ ସେହି ଦୁହେଁ ପରସ୍ପର ନାନାପ୍ରକାର କଥୋପକଥନ କରି କରି ବିଚିତ୍ର ଯୁଦ୍ଧ କଥା ଏବଂ ଯୁଦ୍ଧର ସମସ୍ତ କ୍ଳେଶ ସର୍ବଦା ବର୍ଣ୍ଣନ କରୁଥିଲେ ।

Digitized by srujanika@gmail.com

ତତ୍ ସମୟରେ ପୁରାଣ ଋଷିସତ୍ତମ ମହାତ୍ମା କୃଷ୍ଣ ଓ ଅର୍ଜୁନ ଉଭୟେ ପରମ ପ୍ରୀତ ହୋଇ ସର୍ବଦା ଋଷି ଦେବତାମାନଙ୍କର ବଂଶ କୀର୍ତ୍ତନ କରୁଥିଲେ । । ୭ ।

ନଷ୍ଟଚିନ୍ତ କେଶବ କୃଷ୍ଣ ସହସ୍ର ଜ୍ଞାତ ଓ ପୁତ୍ରଶୋକରେ ସନ୍ତପ୍ତ ପୃଥାନନ୍ଦନ ଅର୍ଜୁନଙ୍କୁ ବିଚିତ୍ର ଅର୍ଥପଦ ଓ ନଷ୍ଟଯୁକ୍ତ ମଧୁର ବାକ୍ୟଦ୍ୱାରା ସାନ୍ତ୍ୱନା କଲେ ।

ବିଜ୍ଞାନଜ୍ଞ ମହାତପା କୃଷ୍ଣ ଅର୍ଜୁନଙ୍କୁ ବିଧିବତ୍ ଆଶ୍ୱାସିତ କରି ଶରୀରର ଭାର ଅପହରଣ କଳ୍ପରେ ବିଶ୍ରାମ କଲେ । ୧୦ ।

ତଦନନ୍ତର ବାକ୍ୟର ଅବସାନ ହେଲାରୁ ଗୋବିନ୍ଦ ଗୁଡ଼ାକେଶ ଅର୍ଜୁନଙ୍କୁ ମଧୁର ବାକ୍ୟଦ୍ୱାରା ସାନ୍ତ୍ୱନା କରି ହେତୁଯୁକ୍ତ ବାକ୍ୟ କହିଲେ । ୧୧ ।

ବାସୁଦେବ କହିଲେ—ହେ ଶତ୍ରୁତାପନ ସବ୍ୟସାଚିନ୍ ! ଧର୍ମନନ୍ଦନ ରାଜା ଯୁଧିଷ୍ଠିର ତୁମ୍ଭର ବାହୁବଳ ଆଶ୍ରୟ କରି ଏହି ସସାଗରା ବସୁନ୍ଧରା ଜୟ କରିଅଛନ୍ତି । ୧୨ ।

ହେ ନରୋତ୍ତମ ! ଭୀମସେନ ଓ ଯମଜ ନକୁଳ-ସହଦେବଙ୍କ ପ୍ରଭାବରେ ଧର୍ମରାଜ ଅସପତ୍ନା ପୃଥିବୀ ଭୋଗ କରୁଅଛନ୍ତି । ୧୩ ।

ହେ ଧର୍ମଜ୍ଞ ! ଧର୍ମରାଜ ଧର୍ମବଳରେ ନିଷ୍କଣ୍ଟକ ରାଜ୍ୟ ପ୍ରାପ୍ତ ହୋଇ ଅଛନ୍ତି ଏବଂ ଧର୍ମବଳରେ ଯୁଦ୍ଧରେ ରାଜା ସୁଯୋଧନଙ୍କୁ ନିଧନ କରି ଅଛନ୍ତି । ୧୪ ।

ହେ ପାର୍ଥ ! କୁରୁଦ୍ୱହ ! ଅଧର୍ମାଭିଳାଷୀ ! ସର୍ବଦା ଅପ୍ରିୟଭାଷୀ ଲୁବ୍ଧ ଦୁରାତ୍ମା ଧୃତରାଷ୍ଟ୍ରପୁତ୍ରଗଣ ବାନ୍ଧବ ସହିତ ଯୁଦ୍ଧଶାୟୀ ହେବାରୁ, ଧର୍ମସୁତ ରାଜା ଯୁଧିଷ୍ଠିର ତୁମ୍ଭଦ୍ୱାରା ରକ୍ଷିତ ହୋଇ ଅଖିଳ ପ୍ରଶାନ୍ତ ଭୂମଣ୍ଡଳ ଭୋଗ କରୁଅଛନ୍ତି । ଏବଂ ଆମ୍ଭେ ମଧ୍ୟ ତୁମ୍ଭସହିତ ଅରଣ୍ୟମଧ୍ୟରେ କ୍ରୀଡ଼ା କରୁଅଛୁଁ ।

ହେ ଅମିତ୍ରକର୍ଷଣ ! ଆମ୍ଭେ ତୁମ୍ଭଙ୍କୁ ଆଉ ଅଧିକ କି କହିବା । ୧୭ । ତୁମ୍ଭେ ପୃଥା, ଧର୍ମସୁତ ରାଜା ଯୁଧିଷ୍ଠିର, ମହାବଳ ଭୀମ ଏବଂ ମାଦ୍ରବତୀପୁତ୍ର

Digitized by srujanika@gmail.com

ନକୁଳ ଓ ସହଦେବ ଏହି କନିଷ୍ଠଦ୍ୱୟ ତୁମ୍ଭେ ଯେଉଁ ସ୍ଥାନରେ ଥାଅ, ସେହି ସ୍ଥାନରେ ଆମ୍ଭର ଅତିଶୟ ଅନୁରାଗ ଥାଏ ।

ହେ ଅନଘ ! ସ୍ୱର୍ଗତୁଲ୍ୟ ରମଣୀୟ ପୁଣ୍ୟଜନକ ସମସ୍ତ ସଭା ମଧ୍ୟରେ ଆମ୍ଭେ ତୁମ୍ଭ ସହିତ ଏକତ୍ର ରହିବାର ବହୁଦିବସ ଅତୀତ ହୋଇଗଲାଣି ।

ବସୁଦେବ, ବଳଦେବ ଏବଂ ବୃଷ୍ଣିପୁଙ୍ଗବ ଅନ୍ୟାନ୍ୟ ପୁରୁଷମାନଙ୍କୁ ଅନେକ କାଳ ହେଲା ଦେଖିନଥିବାରୁ ଦ୍ୱାରବତୀପୁରୀକୁ ଗମନ କରିବା ନିମିତ୍ତ ଆମ୍ଭର ଅତିଶୟ ଅଭିଳାଷ ହେଉଅଛି । ଅତଏବ ହେ ପୁରୁଷପ୍ରବର ! ତୁମ୍ଭେ ଆମ୍ଭର ଗମନ ବିଷୟରେ ସମ୍ମତ ହୁଅ ।

ରାଜା ଯୁଧିଷ୍ଠିର ଯେତେବେଳେ ଅତିଶୟ ଶୋକାର୍ତ୍ତ ହୁଅନ୍ତି, ତେତେ-ବେଳେ ସେହି ଶୋକ ନିବାରଣ ନିମିତ୍ତ ଭୀଷ୍ମଙ୍କ ସହିତ ଆମ୍ଭେମାନେ ତାହାଙ୍କୁ ଯୁକ୍ତିଯୁକ୍ତ ବହୁବିଧ ଉପଦେଶ-ବାକ୍ୟ କହୁଥିଲୁଁ । ୨୨ ।

ମହାତ୍ମା ଯୁଧିଷ୍ଠିର ଆମ୍ଭମାନଙ୍କର ଶାସ୍ତା ଓ ପଣ୍ଡିତ ହେଲେ ସୁଦ୍ଧା ଆମ୍ଭେମାନେ ତାହାଙ୍କୁ ଯେଉଁ ସମସ୍ତ ଅନୁଶାସନ ବାକ୍ୟ କହୁଥିଲୁଁ ସେ ସେହି ବାକ୍ୟସମୂହକୁ ଅବହେଳା ନକରି ସମ୍ୟକ୍‌ରୂପେ ଗ୍ରହଣ କରିଅଛନ୍ତି । ୨୩ ।

ଧର୍ମପୁତ୍ର ଧର୍ମଜ୍ଞ, କୃତଜ୍ଞ ଓ ସତ୍ୟବାଦୀ ବୋଲି ତାହାଙ୍କର ଧର୍ମ ଏବଂ ଉତ୍କୃଷ୍ଟ ମତି ଓ ମର୍ଯ୍ୟାଦା କଦାପି ବିଚଳିତ ହୁଏ ନାହିଁ । ୨୪ ।

ହେ ଅର୍ଜୁନ ! ତୁମ୍ଭେ ଯଦି ଆମ୍ଭ ଗମନରେ ସମ୍ମତ ହୁଅ, ତେବେ ତୁମ୍ଭେ ମହାତ୍ମା ଜନନାଥ ଯୁଧିଷ୍ଠିରଙ୍କ ନିକଟକୁ ଗମନ କରି ତାହାଙ୍କୁ ଆମ୍ଭ ଗମନର କଥା କହ ।

ହେ ମହାବାହୋ ! ତାହାଙ୍କ ସମ୍ମତି ବ୍ୟତିରେକେ ଆମ୍ଭେ କୌଣସି କାର୍ଯ୍ୟ କରି ପାରୁନାହୁଁ । ଦ୍ୱାରବତୀପୁରୀକୁ ଅବା କିପରି ଯିବୁଁ । ଆମ୍ଭର ପ୍ରାଣତ୍ୟାଗ ଉପସ୍ଥିତ ହେଲେ ସୁଦ୍ଧା ଆମ୍ଭେ ତାହାଙ୍କର ଅନଭିଳଷିତ କାର୍ଯ୍ୟ କରିପାରିବୁ ନାହିଁ । ୨୬ ।

ହେ ପାର୍ଥ ! ଆମ୍ଭେ ତୁମ୍ଭର ପ୍ରିୟ ଓ ହିତାଭିଳାଷୀ ବୋଲି ଏହି ସମସ୍ତ ସତ୍ୟବାକ୍ୟ କହିଲୁଁ । ଏହା ମିଥ୍ୟା ବୋଲି କଦାପି ବୋଧ କରନା । ୨୭।

Digitized by srujanika@gmail.com

ହେ ଅର୍ଜୁନ ! ଧୃତରାଷ୍ଟ୍ରଙ୍କ ସୁତ ସୁଯୋଧନ ବଳ, ପଦ ଓ ଅନୁଜମାନଙ୍କ ସହିତ ନିହତ ହେବାରୁ ସଂପ୍ରତି ଏଠାରେ ଆମ୍ଭର ବାସ କରିବାର ପ୍ରୟୋଜନ ନିବୃତ୍ତ ହୋଇଅଛି । ୨୮ ।

ହେ ତାତ ! ଶୈଳ, ବନ ଓ କାନନସମନ୍ୱିତା ବହୁବିଧ ରତ୍ନପୂର୍ଣ୍ଣ ସମୁଦ୍ରବଳୟା କୁରୁରାଜଙ୍କ ବସୁନ୍ଧରା ଧର୍ମପୁତ୍ର ଧୀମାନ୍ ଧର୍ମଜ୍ଞ ରାଜା ଯୁଧିଷ୍ଠିରଙ୍କର ବଶବର୍ତ୍ତିନୀ ହୋଇଅଛି ।

ସଂପ୍ରତି ସେ ବହୁବିଧ ମହାନୁଭବ ସିଦ୍ଧଗଣକର୍ତ୍ତୃକ ଉପାସିତ ଓ ବନ୍ଦିଗଣକର୍ତ୍ତୃକ ସନ୍ତତ ସ୍ତୁତ ହୋଇ ଧର୍ମାନୁସାରେ ସେହି ସମସ୍ତ ବସୁନ୍ଧରା ପାଳନ କରନ୍ତୁ ।

ହେ କୁରୁଶାର୍ଦ୍ଦୂଳ ! ଅଦ୍ୟ ତୁମ୍ଭେ ଆମ୍ଭ ସହିତ କୁରୁବର୍ଦ୍ଧନ ରାଜା ଯୁଧିଷ୍ଠିରଙ୍କ ନିକଟକୁ ଗମନ କରି ଆମ୍ଭର ଦ୍ୱାରକାଗମନ ବିଷୟ ତାହାଙ୍କୁ ପ୍ରଶ୍ନକର । ୩୧ ।

ହେ ପାର୍ଥ ! ସେହି କୁରୁପତି ମହାମତି ଯୁଧିଷ୍ଠିର ଆମ୍ଭର ମାନ୍ୟ ଓ ପ୍ରିୟ ବୋଲି ଆମ୍ଭର ଏହି ଶରୀର ଏବଂ ଗୃହସ୍ଥିତ ଯାବତୀୟ ଧନସମୂହକୁ ଆମ୍ଭେ ତାହାଙ୍କୁ ଅର୍ପଣ କରିଅଛୁଁ । ୩୩ ।

ହେ ନୃପନନ୍ଦନ ! ପାର୍ଥ ! ଏହି ପୃଥିବୀ ଯଦି ତୁମର ସୁଚରିତ ଗୁରୁ ଯୁଧିଷ୍ଠିରଙ୍କର ବଶବର୍ତ୍ତିନୀ ହୋଇଅଛି, ତେବେ ଏଠାରେ ତୁମ୍ଭ ବ୍ୟତିରେକେ ଆଉ ଆମ୍ଭର ରହିବାର ଅନ୍ୟ କୌଣସି କାରଣ ଅଦ୍ୟ ପ୍ରୟୋଜନ ନାହିଁ । ୩୪ ।

ହେ ପାର୍ଥିବ ! ସେତେବେଳେ ଅମିତବିକ୍ରମ ଅର୍ଜୁନ ମହାତ୍ମା ଜନାର୍ଦ୍ଦନ କୃଷ୍ଣଙ୍କର ଏହି ପ୍ରକାର ବାକ୍ୟ ଶ୍ରବଣ କରି ଦୁଃଖସହକାରରେ ତାହାଙ୍କୁ ସମ୍ୟକ୍‌ରୂପେ ପୂଜା କରି ତାହା ହେବ ବୋଲି କହିଲେ । ୩୫ ।

---

Digitized by srujanika@gmail.com

# ଅନୁଗୀତା

## ଷୋଡ଼ଶ ଅଧ୍ୟାୟ

ଜନମେଜୟ କହିଲେ—ହେ ଦ୍ୱିଜ ! ମହାତ୍ମା କେଶବ ଓ ଅର୍ଜୁନ ଉଭୟେ ଯୁଦ୍ଧରେ ଶତ୍ରୁଗଣଙ୍କୁ ସଂହାର କରି ସେହି ସଭା ମଧ୍ୟରେ ଅବସ୍ଥାନ ପୂର୍ବକ କେଉଁ କଥା କହୁଥିଲେ ? ୧ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ପୃଥାପୁତ୍ର ଅର୍ଜୁନ ନିଜ ରାଜ୍ୟ ପ୍ରାପ୍ତ ହୋଇ ହର୍ଷ ସହକାରରେ କୃଷ୍ଣଙ୍କ ସହିତ ସେହି ମନୋହର ସଭାମଧ୍ୟରେ ବିହାର କଲେ । ୨ ।

କିଛିଦିନ ଉତ୍ତାରେ ପ୍ରହୃଷ୍ଟଚିତ୍ତ କେଶବ ଓ ଅର୍ଜୁନ ସ୍ୱଜନଗଣରେ ପରିବୃତ ହୋଇ ଯଦୃଚ୍ଛାବଶତଃ ସ୍ୱର୍ଗଦେଶ ସଦୃଶ କୌଣସି ସଭାମଣ୍ଡପକୁ ଗମନ କଲେ । ୩ ।

ତଦନନ୍ତର ପାଣ୍ଡୁନନ୍ଦନ ଅର୍ଜୁନ କୃଷ୍ଣଙ୍କ ସହିତ ସେହି ରମଣୀୟ ସଭା ନିରୀକ୍ଷଣ କରି ସମଧିକ ସନ୍ତୁଷ୍ଟହୋଇ କେଶବଙ୍କୁ ଏହି କଥା କହିଲେ । ୪ ।

ହେ ମହାବାହୋ ଦେବକୀତନୟ ! ଉପସ୍ଥିତ ସଂଗ୍ରାମରେ ଆପଣଙ୍କର ସେହି ଐଶ୍ୱର ରୂପ ଏବଂ ମାହାତ୍ମ୍ୟକୁ ଆମ୍ଭେ ବିଶେଷରୂପେ ବିଦିତ ହୋଇଅଛୁଁ । ୫ ।

ହେ କେଶବ ! ପୁରୁଷବ୍ୟାଘ୍ର ! ପୂର୍ବେ ଆପଣ ସୌହୃଦ୍ୟ ବଶତଃ ଆମ୍ଭଙ୍କୁ ଯେଉଁ ସମସ୍ତ କଥା କହିଥିଲେ, ଆମ୍ଭର ଚିତ୍ତଭ୍ରଂଶ ହେବାରୁ ସେହି ସମସ୍ତ ନଷ୍ଟ ହୋଇ ଯାଇଅଛି । ୬ ।

ହେ ମାଧବ ! ଆପଣ ମଧ୍ୟ ଶୀଘ୍ର ଦ୍ୱାରକାକୁ ଗମନ କରିବା ହେବେ । ପରନ୍ତୁ ସେହି ସମସ୍ତ ବିଷୟ ପୁନଶ୍ଚ ଶ୍ରବଣ କରିବା ନିମିତ୍ତ ଆମ୍ଭର କୌତୂହଳ ହୋଇଅଛି । ୭ ।

ବୈଶମ୍ପାୟନ କହିଲେ—ମହାତେଜା ବାଗ୍ମିବର ବାସୁଦେବ ଫାଲ୍‌ଗୁନ ଅର୍ଜୁନଙ୍କଠାରୁ ଏହିପ୍ରକାର ବାକ୍ୟ ଶ୍ରବଣ କରି ତାହାଙ୍କୁ ଆଲିଙ୍ଗନପୂର୍ବକ କହିଲେ । ୮ ।

Digitized by srujanika@gmail.com

ବାସୁଦେବ କହିଲେ—ହେ ପାର୍ଥ ! ତୁମ୍ଭେ ଆମ୍ଭ ନିକଟରୁ ସମସ୍ତ ଗୁହ୍ୟ ବିଷୟ ଶ୍ରବଣ କରିଅଛ, ଏବଂ ସ୍ୱରୂପ ସମନ୍ୱିତ ସନାତନ ଧର୍ମ ଓ ଶାଶ୍ୱତ ଲୋକ ସମସ୍ତ ମଧ୍ୟ ଅବଗତ ହୋଇଅଛ । ୯ ।

ତୁମ୍ଭେ ଅବୁଦ୍ଧି ବଶତଃ ଯେଉଁ ମଦୁକ୍ତ ବାକ୍ୟସମୂହ ଗ୍ରହଣ ନକରିଛ, ତାହା ଆମ୍ଭର ଅତିଶୟ ଅପ୍ରିୟ ହୋଇଅଛି । କାରଣ, ଅଦ୍ୟ ସେହି କଥା ଆମ୍ଭର ସ୍ମୃତିପଥରେ ଆଉ ଉଦିତ ହେବ ନାହିଁ । ୧୦ ।

ଅତଏବ ହେ ପାଣ୍ଡୁତନୟ ଧନଞ୍ଜୟ ! ତୁମ୍ଭେ ଦୁର୍ମେଧା ଓ ଶ୍ରଦ୍ଧା-ବିହୀନ ବୋଲି ଆମ୍ଭେ ନିଶ୍ଚୟ ବୋଧ କରୁଅଛୁଁ । ଆମ୍ଭେ ପୁନଶ୍ଚ ତାହା ତୁମ୍ଭଙ୍କୁ ପୂର୍ବବତ୍ ବିଶେଷରୂପେ କହିବାକୁ ସମର୍ଥ ହୋଇ ପାରୁ ନାହୁଁ । ୧୧ ।

ଆମ୍ଭେ ପୂର୍ବେ ଯୋଗଯୁକ୍ତ ହୋଇ ତୁମ୍ଭଙ୍କୁ ସେହି ପରମବ୍ରହ୍ମଙ୍କ ବିଷୟ କହିଥିଲୁଁ । ସଂପ୍ରତି ତଦ୍ ବିଷୟରେ ପୁରାତନ ଇତିହାସ କହୁଅଛୁଁ ।

ହେ ଧାର୍ମିକବର ! ତୁମ୍ଭେ ସେହି ବୁଦ୍ଧି ଅବଲମ୍ବନ କଲେ ଉତ୍କୃଷ୍ଟ ଗତି ଲଭ କରି ପାରିବ । ଅତଏବ ତୁମ୍ଭେ ଅବହିତ ହୋଇ ଆମ୍ଭର ସମସ୍ତ ବାକ୍ୟ ଶ୍ରବଣ କର । ୧୪ ।

ହେ ଅରିଦମନ ! ଏକଦା କୌଣସି ଦୁର୍ଦ୍ଧର୍ଷ ବ୍ରାହ୍ମଣ ସ୍ୱର୍ଗ ଓ ବ୍ରହ୍ମଲୋକରୁ ଆମ୍ଭମାନଙ୍କ ନିକଟକୁ ଆଗମନ କଲେ ।

ହେ ଭରତଶ୍ରେଷ୍ଠ ପାର୍ଥ ! ଆମ୍ଭେମାନେ ତାହାଙ୍କୁ ପୂଜାକରି ଧର୍ମ ବିଷୟରେ ପ୍ରଶ୍ନକରିବାରୁ ସେ ଦିବ୍ୟ ବିଧି ଅନୁସାରେ ଆମ୍ଭମାନଙ୍କୁ ଯାହା କହିଥିଲେ, ତାହା ତୁମ୍ଭେ ଅନ୍ୟ ବିଗ୍ରହ ନକରି ଶ୍ରବଣ କର । ୧୬ ।

ବ୍ରାହ୍ମଣ କହିଲେ—ହେ କୃଷ୍ଣ ! ତୁମ୍ଭେ ପ୍ରାଣିଗଣଙ୍କଠାରେ ଅନୁକମ୍ପା କରି ମୋକ୍ଷଧର୍ମ ଅବଲମ୍ବନ ପୂର୍ବକ ମୋହଚ୍ଛେଦନକାରକ ଯେଉଁ ବିଷୟ ଆମ୍ଭଙ୍କୁ ପ୍ରଶ୍ନ କଲ, ଆମ୍ଭେ ତୁମ୍ଭଙ୍କୁ ତାହା ଯଥାବତ୍ କହୁଅଛୁ । ହେ ମାଧବ ! ମଧୁସୂଦନ ! ତୁମ୍ଭେ ସ୍ଥିରମନା ହୋଇ ଶ୍ରବଣ କର । ୧୮ ।

ତପସ୍ୱୀ ଧର୍ମବିତ୍ତମ କାଶ୍ୟପନାମା କୌଣସି ବିପ୍ର ଧର୍ମସମୂହର ଆଗମଜ୍ଞ କୌଣସି ସିଦ୍ଧ ଦ୍ୱିଜବରଙ୍କ ନିକଟକୁ ଗମନ କରିଥିଲେ । ସେହି

Digitized by srujanika@gmail.com

ବ୍ରାହ୍ମଣ ଲୋକତତ୍ତ୍ୱାର୍ଥକୁଶଳ, ସୁଖଦୁଃଖ, ଜନ୍ମମୃତ୍ୟୁ ଓ ପାପପୁଣ୍ୟର ତତ୍ତ୍ୱଜ୍ଞ, ଜୀବନ୍ମୁକ୍ତ, ପ୍ରଶାନ୍ତଚିତ୍ତ, ଜିତେନ୍ଦ୍ରିୟ, ଉଜ୍ଜ୍ୱଳଚନ୍ଦ୍ରପ୍ରଷ୍ଠା, କର୍ମବିତ୍, ଦେହମାନଙ୍କ ଗତିଜ୍ଞ, ମୁକ୍ତବତ୍ ବିଚରଣଶୀଳ, ସିଦ୍ଧ, ବ୍ରହ୍ମତେଜୋଦ୍ୱାରା ଦୀପ୍ୟମାନ, ସର୍ବତ୍ରଗାମୀ ଓ ଅନ୍ତର୍ଦ୍ଧାନ ଗତିଜ୍ଞ । ସେହି ଦ୍ୱିଜବରଙ୍କୁ ଯଥାଯଥରୂପେ ବିଦିତ ହୋଇ ଏବଂ ଅନ୍ତର୍ହିତ ଚକ୍ରଧର, ସିଦ୍ଧଗଣଙ୍କ ସହଗାମୀ, ଏକାନ୍ତରେ ସମ୍ଭାଷମାଣ, ସେମାନଙ୍କ ସହିତ ସମାସୀନ, ପବନ ସଦୃଶ ଯଦୃଚ୍ଛାଗୃହୀ, ଧର୍ମକାମୀ ସେହି ଦ୍ୱିଜବରଙ୍କର ତାଦୃଶ ଅତୀବ ଅଦ୍ଭୁତ ମହତ୍ କାର୍ଯ୍ୟ ଅବଲୋକନ କରି ସମାହିତଚିତ୍ତରେ ଯଥାବିଧାନରେ ତାହାଙ୍କ ଚରଣଦ୍ୱୟ ଗ୍ରହଣ କଲେ । ୨୫ ।

କାଶ୍ୟପ ସେହି ଅଦ୍ଭୁତ କାର୍ଯ୍ୟକାରୀ ଦ୍ୱିଜବରଙ୍କୁ ଦର୍ଶନକରି ବିସ୍ମିତ ହୋଇ ମହତୀ ପରିଚର୍ଯ୍ୟାଦ୍ୱାରା ଗୁରୁ ସଦୃଶ ତାହାଙ୍କୁ ପରିତୋଷ କଲେ । ୨୬ ।

ହେ ପରଂତପ ! କାଶ୍ୟପ ବିଶୁଦ୍ଧ ଚିତ୍ତରେ ଶାସ୍ତ୍ର ଓ ସଚ୍ଚରିତ୍ରସମ୍ପନ୍ନ ସିଦ୍ଧ ଦ୍ୱିଜବରଙ୍କୁ ଗୁରୁବୃତ୍ତିଦ୍ୱାରା ସନ୍ତୁଷ୍ଟ କରିବାରୁ, ତାହାଙ୍କର ସେହି ସମସ୍ତ କାର୍ଯ୍ୟ ଯୁକ୍ତଯୁକ୍ତ ହୋଇଥିଲା । ୨୭ ।

ହେ ଜନାର୍ଦ୍ଦନ ! ସେହି ସିଦ୍ଧ ଦ୍ୱିଜବର, ଶିଷ୍ୟ କାଶ୍ୟପଙ୍କର ପରମସିଦ୍ଧି ପର୍ଯ୍ୟାଲୋଚନା କରି ତାହାଙ୍କ ପ୍ରତି ପରିତୁଷ୍ଟ ହୋଇ ପ୍ରସନ୍ନଚିତ୍ତରେ ତାହାଙ୍କୁ ଯାହା କହିଥିଲେ, ତୁମ୍ଭେ ଆମ୍ଭନିକଟରୁ ତାହା ଶ୍ରବଣ କର । ୨୮ ।

ସିଦ୍ଧ କହିଲେ—ହେ ତାତ ! ମନୁଷ୍ୟବୃନ୍ଦ ବିବିଧ କର୍ମଦ୍ୱାରା ଇହ-ଲୋକରେ ଗତି ଓ କେବଳ ପୁଣ୍ୟଯୋଗ ଦ୍ୱାରା ଦେବଲୋକରେ ସଂସ୍ଥିତି ଲାଭ କରନ୍ତି । ୨୯ ।

ପରନ୍ତୁ ତାହାଦ୍ୱାରା ସେହିମାନଙ୍କର କୌଣସି ପ୍ରକାରରେ ଅତ୍ୟନ୍ତ ସୁଖ ବା ଶାଶ୍ୱତୀ ସ୍ଥିତି ଲାଭ ହୁଏ ନାହିଁ । ପ୍ରତ୍ୟୁତ ସେହିମାନଙ୍କର ଦୁଃଖଲବ୍ଧ ଅତ୍ୟୁଚ୍ଚ ସ୍ଥାନରୁ ବାରମ୍ବାର ପତନ ହୁଏ । ୩୦ ।

ହେ ଅନଘ ! ଆମ୍ଭେ ବିଷୟତୃଷ୍ଣାରେ ବିମୋହିତ, କାମ ଓ ମନ୍ୟୁ-ଯୁକ୍ତ ହୋଇ ପ୍ରଭୂତ ପାପକାର୍ଯ୍ୟର ଅନୁଷ୍ଠାନ କରି ବହୁତର କଷ୍ଟକର ଅଶୁଭ ଗତି ପ୍ରାପ୍ତ ହୋଇଅଛୁଁ । ପୁନଃପୁନଃ ଜନ୍ମମରଣର ଯନ୍ତ୍ରଣା

Digitized by srujanika@gmail.com

ସହ୍ୟ କରିଅଛୁଁ; ବିବିଧ ଭକ୍ଷ୍ୟଭୋଜ୍ୟ ଭୋଜନ, ନାନାବିଧ ସ୍ତନରୁ ଦୁଗ୍ଧପାନ କରିଅଛୁଁ, ବିବିଧ ମାତା ଓ ପୃଥକ୍ବିଧ ପିତା ଦର୍ଶନ କରିଅଛୁଁ ଓ ବିଚିତ୍ର ସୁଖଦୁଃଖ ଭୋଗ କରିଅଛୁଁ । ୩୩ ।

ଆମ୍ଭେ ପ୍ରଭୂତ ପ୍ରିୟଜନଙ୍କ ସହିତ ବିବାସ ଓ ଅପ୍ରିୟଜନଙ୍କ ସହିତ ସମ୍ଭାଷ କରିଅଛୁଁ । ଯେଉଁ ସମସ୍ତ ଧନ ବହୁକଷ୍ଟରେ ଉପାର୍ଜନ କରିଥିଲୁଁ, ତାହା ମଧ୍ୟ ନଷ୍ଟ କରିଅଛୁଁ । ୩୪ ।

ରାଜା ଏବଂ ସ୍ୱଜନଙ୍କ ଠାରୁ ଅବମାନ, କ୍ଲେଶ, ଶାରୀରିକ ଓ ମାନସିକ ସୁଦାରୁଣ ବେଦନା, ଅତିଶୟ ବିମାନନା ଏବଂ ଦାରୁଣ ବଧବନ୍ଧନ ପ୍ରାପ୍ତ ହୋଇଅଛୁଁ । ଆମ୍ଭେ ନରକଗମନ, ଯମଗୃହରେ ଯନ୍ତ୍ରଣା ଏବଂ ଇହଲୋକରେ ସର୍ବଦା ଜରା, ରୋଗ, ବିବିଧ ବ୍ୟସନ ପ୍ରଭୃତି ଦ୍ୱନ୍ଦ୍ୱଜ ବହୁବିଧ ଦୁଃଖ ଅନୁଭବ କରିଅଛୁଁ । ୩୭ ।

ତଦନନ୍ତର ଆମ୍ଭେ କୌଣସି ସମୟରେ ଅତିଶୟ ଦୁଃଖାର୍ତ୍ତ ହୋଇ ବୈରାଗ୍ୟ ଓ ନିରାକାର ବ୍ରହ୍ମଭାବ ଅବଲମ୍ବନ କରି ଏହି ଲୋକତନ୍ତ୍ର ପରିତ୍ୟାଗ କରିଅଛୁ । ଆମ୍ଭେ ଇହଲୋକରେ ସମସ୍ତ ବିଷୟ ଭୋଗ କରି ପରିଶେଷରେ ଏହି ଯୋଗମାର୍ଗ ଅନୁଷ୍ଠାନ ପୂର୍ବକ ମାନସ ପ୍ରସାଦରେ ଏତାଦୃଶୀ ଅନ୍ତର୍ଦ୍ଧାନାଦି ସିଦ୍ଧିଲାଭ କରିଅଛୁଁ । ୩୯ ।

ଅତଏବ ଆମ୍ଭେ ଆଉ ଇହଲୋକକୁ ଆଗମନ କରିବୁ ନାହିଁ, ଏବଂ ଲୋକମାନଙ୍କୁ ଅବଲୋକନ କରିବୁ ନାହିଁ । ହେ ଦ୍ୱିଜଶ୍ରେଷ୍ଠ ! ପ୍ରଜାବୃନ୍ଦର ସୃଷ୍ଟି ଠାରୁ ମୋକ୍ଷ ପର୍ଯ୍ୟନ୍ତ ଆତ୍ମାର ଶୁଭଗତି ଉପଲବ୍ଧି ହେବାରୁ ଆମ୍ଭର ଏତାଦୃଶୀ ସିଦ୍ଧିଲାଭ ହୋଇଅଛି । ଅତଃପର ଆମ୍ଭେ ବ୍ରହ୍ମଙ୍କର ଅବ୍ୟକ୍ତ ପରମ ପଦ ପ୍ରାପ୍ତ ହେବୁଁ, ଏହି ବିଷୟରେ କିଛି ସଂଶୟ ନାହିଁ ।

ହେ ପରନ୍ତପ ! ଆମ୍ଭେ ଆଉ ଇହଲୋକକୁ ଆଗମନ କରି ମର୍ତ୍ତ୍ୟଲୋକ ଦର୍ଶନ କରିବୁ ନାହିଁ । ୪୨ । ହେ ମହାପ୍ରାଜ୍ଞ ! ଆମ୍ଭେ ତୁମ୍ଭ ପ୍ରତି ଅତିଶୟ ପ୍ରୀତ ହୋଇଅଛୁଁ । ଅତଏବ ତୁମ୍ଭର କେଉଁ କାର୍ଯ୍ୟ କରିବୁଁ, ତାହା କହ । ଯଦି ତୁମ୍ଭର କିଛି ଅଭିଳାଷ ଥାଏ ତାହା ସିଦ୍ଧ ହେବ । ତାହାର ଏହି ସମୟ ଉପସ୍ଥିତ ହୋଇଅଛି । ୪୩ ।

Digitized by srujanika@gmail.com

ତୁମ୍ଭେ ଯେଉଁ ନିମିତ୍ତ ଆମ୍ଭ ନିକଟକୁ ଆଗମନ କରିଅଛ, ତାହା ଆମ୍ଭେ ଜାଣି ପାରିଅଛୁଁ । ଆମ୍ଭେ ଅଚିର କାଳରେ ଗମନ କରିବୁଁ, ସେହି ନିମିତ୍ତ ତୁମ୍ଭଙ୍କୁ ଆଦେଶ କରିଅଛୁଁ । ୪୪ ।

ହେ ବିଚକ୍ଷଣ ! ଆମ୍ଭେ ତୁମ୍ଭର ସ୍ୱଭାବରେ ଅତିଶୟ ସନ୍ତୁଷ୍ଟ ହୋଇଅଛୁଁ । ଅତଏବ ଆମ୍ଭେ ଏହି କଥା କହୁଅଛୁଁ ଯେ, ତୁମ୍ଭର ଯେଉଁ କଲ୍ୟାଣ କାମନା ହୁଏ, ତାହା ପ୍ରଶ୍ନ କର, ଆମ୍ଭେ କହିବା । ୪୫ ।

ହେ କାଶ୍ୟପ ! ଆମ୍ଭେ ଅନ୍ତର୍ଦ୍ଧାନପ୍ରାପ୍ତ ହେଲେ ସୁଦ୍ଧା ତୁମ୍ଭେ ତେତେବେଳେ ଯେ ଆମ୍ଭଙ୍କୁ ଜାଣିପାର, ସେହି କାରଣରୁ ଆମ୍ଭେ ତୁମ୍ଭର ବୁଦ୍ଧିକୁ ବହୁମାନ ଓ ଅତିଶୟ ପ୍ରଶଂସା କରୁଅଛୁଁ, ଏବଂ ତୁମ୍ଭଙ୍କୁ ମେଧାବୀ ବୋଲି ଜାଣୁଅଛୁଁ । ୪୬ ।

---

## ସପ୍ତଦଶ ଅଧ୍ୟାୟ

ବାସୁଦେବ ବ୍ରାହ୍ମଣଙ୍କୁ କହିଲେ—ଅନନ୍ତର ଧାର୍ମିକବର କାଶ୍ୟପ ସେହି ସିଦ୍ଧ ଦ୍ୱିଜବରଙ୍କ ଚରଣଯୁଗଳ ଗ୍ରହଣ କରି ତାହାଙ୍କୁ ସୁଦୁର୍ବଚ ପ୍ରଶ୍ନ ପଚାରିଲେ । ସେ ତାହାଙ୍କୁ ସେହି ଧର୍ମସବୁ କହିଥିଲେ । ୧ ।

କାଶ୍ୟପ କହିଲେ—ଆତ୍ମାଜୀବ କେଉଁ ପ୍ରକାରରେ ଶରୀରକୁ ପରିତ୍ୟାଗ କରେ, କେଉଁପରି ଶରୀର ପ୍ରାପ୍ତ ହୁଏ ଏବଂ କଷ୍ଟକର ସଂସାରରେ ଗମନାଗମନ କରି କେଉଁ ପ୍ରକାରରେ ବା ତହିଁରୁ ମୁକ୍ତ ହୁଏ, ପ୍ରକୃତିକୁ ପରିତ୍ୟାଗ କରି କେଉଁପରି ଅବା ତ୍ୟଜ୍ୟ ଶରୀରକୁ ବିମୋଚନ କରେ ଏବଂ ଶରୀରରୁ ନିର୍ମୁକ୍ତ ହୋଇ କେଉଁ ପ୍ରକାରରେ ଅନ୍ୟ ଶରୀର ପ୍ରତିଗ୍ରହ କରେ ?

ଏହି ମନୁଷ୍ୟ କେଉଁରୂପେ ସ୍ୱକୃତ ଶୁଭାଶୁଭ କର୍ମ ଭୋଗ କରନ୍ତି ଏବଂ ମନୁଷ୍ୟ ଦେହହୀନ ହେବା ପରେ ତାହାର କର୍ମ କେଉଁ ସ୍ଥାନରେ ଅବସ୍ଥାନ କରେ ? ୪ ।

ବ୍ରାହ୍ମଣ କହିଲେ—ହେ ବାଷ୍ଣେୟ ! କାଶ୍ୟପଙ୍କର ଏହି ବାକ୍ୟ ଶ୍ରବଣ କରି ପ୍ରଶ୍ନସମୂହର ଯେଉଁ ପ୍ରତ୍ୟୁତ୍ତର କରିଥିଲେ, ତାହା ଆନୁପୂର୍ବିକ ତୁମ୍ଭଙ୍କୁ କହୁଁଛୁ, ଶ୍ରବଣ କର । ୫ ।

Digitized by srujanika@gmail.com

ସିଦ୍ଧ କହିଲେ—ଜୀବ, ବର୍ତ୍ତମାନ ଶରୀରରେ ଆୟୁ ଏବଂ କୀର୍ତ୍ତିକର ଯେଉଁ ସମସ୍ତ କାର୍ଯ୍ୟ କରେ, ଅନ୍ୟ ଶରୀର ଗ୍ରହଣରେ ଭୋଗଦ୍ୱାରା ସେହି ସମସ୍ତ କର୍ମର କ୍ଷୟ ହେଲେ କ୍ଷୀଣାୟୁ ହୋଇ ବିପରୀତ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହୁଏ ଏବଂ ତାହାର ବିନାଶ ସମୟ ଉପସ୍ଥିତ ହେଲେ, ସେ ବିପରୀତ ବୁଦ୍ଧିର ଅନୁବର୍ତ୍ତୀ ହୁଏ । ସେତେବେଳେ ଆପଣାର ସତ୍ତ୍ୱ, ବଳ ଓ କାଳ ବିଦିତ ହୋଇ ସୁଦ୍ଧା ଆତ୍ମଜ୍ଞାନଶୂନ୍ୟ ହୋଇ ସ୍ୱୀୟ ବିରୁଦ୍ଧ କର୍ମସବୁ ସମ୍ୟକ୍-ରୂପେ ଆଚରଣ କରେ ।

ଯେତେବେଳେ ଜୀବର ନାନାବିଧ ଅତିଶୟ କଷ୍ଟ ଉପସ୍ଥିତ ହୁଏ, ସେତେବେଳେ ସେ ସେହି କଷ୍ଟସମୂହକୁ ସମ୍ପୂର୍ଣ୍ଣରୂପେ ଭୋଗ କରେ; କେତେବେଳେ ଅବା ତାହା ଭୋଗ ନ କରେ । ୯ ।

ଉତ୍ତମରୂପେ ଜୀର୍ଣ୍ଣ ନ ହେଲେ ସୁଦ୍ଧା ଦୁଷ୍ଟ ଅନ୍ନ, ଆମିଷ, ଅସତ୍ ପାନ ଏବଂ ଅନ୍ୟାନ୍ୟ ବିରୋଧୀ ଗୁରୁତର ଦ୍ରବ୍ୟ ଅପରିମିତରୂପେ ଭୋଜନ କରେ, ଅତିଶୟ ବ୍ୟାୟାମ ଓ ବ୍ୟବାୟ ସେବା କରେ ଏବଂ ସର୍ବଦା କର୍ମଲୋଭ ବଶତଃ ଉପସ୍ଥିତ ମଳମୂତ୍ରର ବେଗଧାରଣ କରିଥାଏ ।

ଭୁକ୍ତ ଅନ୍ନର ପରିପାକ କାଳ ଉପସ୍ଥିତ ନ ହେଉଣୁ ରସାଭିଯୁକ୍ତ ଅନ୍ନ ଓ ଦିବାନିଦ୍ରାର ସେବା କରି ସ୍ୱୟଂ ଦୋଷସମୂହକୁ ପ୍ରକୋପିତ କରେ । ଏହିରୂପେ ସ୍ୱୀୟ ଦୋଷସମୂହର ପ୍ରକୋପନବଶତଃ ମରଣାନ୍ତକ ରୋଗ ଲାଭ କରେ ଏବଂ ଉଦ୍‌ବନ୍ଧନାଦି ବିପରୀତ କାର୍ଯ୍ୟର ଅନୁଷ୍ଠାନ କରେ । ଏହି ସମସ୍ତ କାରଣରୁ ସେତେବେଳେ ଜୀବର ଶରୀର କ୍ଷୟ ହୁଏ ।

ପରନ୍ତୁ ଜୀବିତର ବିଷୟ ଆମ୍ଭେ ଯଥାର୍ଥରୂପେ କହୁଅଛୁଁ, ତାହା ଶ୍ରବଣ କର । ୧୪ । ଉଷ୍ମା ତୀବ୍ର ବାୟୁଦ୍ୱାରା ସମୀରିତ ହେଲେ ଅତ୍ୟନ୍ତ କୁପିତ ହୋଇ ଶରୀର ମଧ୍ୟରେ ପ୍ରବେଶ କରି ପ୍ରାଣସମୂହକୁ ରୋଧ କରେ । ୧୫ । ଏହିରୂପେ ତାହା ଶରୀର ମଧ୍ୟରେ ପ୍ରକୋପିତ ଏବଂ ଅତ୍ୟନ୍ତ ବଳବାନ୍ ହୋଇ ଜୀବସ୍ଥାନ ମର୍ମସମୂହକୁ ଭେଦକରେ । ତତ୍ପରେ ଜୀବ ତତ୍‌କ୍ଷଣାତ୍ ବେଦନାଯୁକ୍ତ ହୋଇ ପ୍ରକୃତିରୁ ପ୍ରଚ୍ୟୁତ ହୁଏ ।

ହେ ଦ୍ୱିଜସତ୍ତମ ! ସମସ୍ତ ମର୍ମସ୍ଥାନ ଛିନ୍ନ ହେଲେ ଜୀବ ବେଦନାରେ ବ୍ୟଥିତ ହୋଇ ଶରୀର ପରିତ୍ୟାଗ କରେ । ହେ ଦ୍ୱିଜଶ୍ରେଷ୍ଠ ! ଜୀବଗଣ

Digitized by srujanika@gmail.com

ଜନ୍ମମରଣରେ ସର୍ବଦା ସନ୍ତପ୍ତ ହେଲେ ସମସ୍ତ ଶରୀର ପରିହାର କରନ୍ତି । ଗର୍ଭର ସଙ୍କ୍ରମଣ ଏବଂ ମର୍ମସମୂହର ଅତି ବିସର୍ପଣ ହେଲେ ପୁରୁଷ ପୁନଶ୍ଚ ତାଦୃଶ ବେଦନା ପ୍ରାପ୍ତହୁଏ । ସନ୍ଧିସ୍ଥାନ ଭଗ୍ନ ହେଲେ ଶରୀରସ୍ଥ ସଲିଳ ଦ୍ୱାରା ମନୁଷ୍ୟ କ୍ଳେଦ ଲାଭ କରେ । ସୁତରାଂ ସେତେବେଳେ ପଞ୍ଚଭୂତର ମିଳନ ନିରାକୃତ ହୁଏ । ସେତେବେଳେ ଶୈତ୍ୟ ହେତୁରୁ ସମୀରଣ ଶରୀର ମଧ୍ୟରେ ଅତିଶୟ କୋପିତ ହୁଏ ।

ପଞ୍ଚଭୂତ ମଧ୍ୟରେ ଯେଉଁ ବାୟୁ ପ୍ରାଣ ଓ ଅପାନ ବାୟୁ ସହିତ ଅବସ୍ଥିତ ଥାଏ, ସେହି ବାୟୁ ଅତିକଷ୍ଟରେ ଶରୀରକୁ ପରିତ୍ୟାଗ କରିବା ନିମିତ୍ତ ଊର୍ଦ୍ଧ୍ୱଗାମୀ ହୋଇ ଗମନ କରେ । ଜୀବ ଏହିରୂପେ ଶରୀର ପରିତ୍ୟାଗ କରି ଉଚ୍ଛ୍ୱାସ ଉଷ୍ମାଶ୍ରିତ ଓ ଚେତନାବିହୀନ ହୋଇ ଲୋକର ଦର୍ଶନୀୟ ହୁଏ ।

ମନୁଷ୍ୟ ଆତ୍ମାବର୍ଜ୍ଜିତ ଅର୍ଥାତ୍ ଲିଙ୍ଗଶରୀର ବର୍ଜ୍ଜିତ ସମ୍ୟକ୍‌ରୂପେ ପରିତ୍ୟକ୍ତ ହେଲେ ଲୋକମାନେ ତାହାଙ୍କୁ ମୃତ ବୋଲି କହନ୍ତି । ମନୁଷ୍ୟ ଶରୀର ଧାରଣ କରି ଯେଉଁ ସମସ୍ତ ଇନ୍ଦ୍ରିୟଦ୍ୱାରା ଇନ୍ଦ୍ରିୟାର୍ଥସମୂହକୁ ଜ୍ଞାନ କରେ, ସେହି ଇନ୍ଦ୍ରିୟଦ୍ୱାରା ଆହାରସମ୍ଭୂତ ପ୍ରାଣସକଳକୁ ଜାଣିପାରେ ନାହିଁ ।

ଯେଉଁ ଜୀବ ସେହି ଶରୀରରେ ପ୍ରାଣକୁ ରକ୍ଷା କରିପାରେ, ତାହାଙ୍କୁ ସନାତନ ବୋଲି ଜାଣିବ । ସେହିପରି କୌଣସି କୌଣସି ସନ୍ନିପାତରେ ଯାହା ଯାହା ଯୁକ୍ତ ଥାଏ, ଶାସ୍ତ୍ର ଦୃଷ୍ଟି ଅନୁସାରେ ସେହି ସକଳକୁ ମର୍ମ ବୋଲି ଜାଣିବ । ସେହି ମର୍ମସବୁ ଭଗ୍ନ ହେଲେ ଜୀବ ଉଦ୍‌ଗତ ହୋଇ ଜନ୍ତୁର ହୃଦୟରେ ପ୍ରବେଶ କରି ସତ୍ୱର ସତ୍ତ୍ୱକୁ ରୋଧକରେ । ୨୭ ।

ତଦନନ୍ତର ଜୀବ ସଚେତନ ହେଲେ ସୁଦ୍ଧା କିଛି ଜାଣିପାରେ ନାହିଁ । ମର୍ମସକଳ ସମ୍ବୃତ ହେଲେ ତମୋଦ୍ୱାରା ସମ୍ବୃତ ଜ୍ଞାନ ସେହି ଜୀବ ନିରଧିଷ୍ଠାନ ହୋଇ ବାୟୁଦ୍ୱାରା ବିଚଳିତ ହୁଏ ।୨୮। ତଦନନ୍ତର ଅତିଶୟ ଦାରୁଣ ଉଚ୍ଛ୍ୱାସ ପରିତ୍ୟାଗ କରି ନିଷ୍କ୍ରାନ୍ତ ହୋଇ ସେହି ଅଚେତନ ଶରୀରକୁ ସତ୍ୱର କମ୍ପିତ କରେ । ୨୯ ।

ଜୀବ ଶରୀରରୁ ପ୍ରଚ୍ୟୁତ ହୋଇ ସ୍ୱୀୟ ଶୁଭାଶୁଭ କର୍ମଦ୍ୱାରା ପରିବୃତ ହୋଇଥାଏ; ଯଥାବତ୍ ଶାସ୍ତ୍ର ନିଷ୍ଠାବାନ୍ ଜ୍ଞାନସମ୍ପନ୍ନ ବ୍ରାହ୍ମଣଗଣ ସେହିକୃତ ପୁଣ୍ୟକର୍ମ ଏବଂ ପାପସମୂହକୁ ଲକ୍ଷଣଦ୍ୱାରା ଅବଗତ ହୁଅନ୍ତି । ୩୧ ।

Digitized by srujanika@gmail.com

ଜ୍ଞାନଚକ୍ଷୁ ସିଦ୍ଧଗଣ ଦିବ୍ୟଚକ୍ଷୁଦ୍ୱାରା ଅନ୍ଧକାରରେ ଇତସ୍ତତଃ ବିଲୀୟମାନ ଖଦ୍ୟୋତ ସଦୃଶ ବିଲୟପ୍ରାପ୍ତ ଜାୟମାନ ଯୋନିପ୍ରବିଷ୍ଟ ଜୀବକୁ ଦର୍ଶନ କରନ୍ତି । ୩୩ । ସେହି ଜୀବର ଇହଲୋକରେ ଶାସ୍ତ୍ରାନୁସାରେ ତ୍ରିବିଧ ସ୍ଥାନ ଦୃଷ୍ଟ ହୁଏ । ଜନ୍ତୁଗଣ ଯେଉଁ ସ୍ଥାନରେ ଅବସ୍ଥାନ କରନ୍ତି, ସେହି ସ୍ଥାନ ସେମାନଙ୍କର କର୍ମଭୂମି ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ୩୪ ।

ଜୀବଗଣ ସେହି କର୍ମଭୂମିରୁ ସ୍ୱୀୟ କର୍ମଦ୍ୱାରା ଶୁଭ, ଅଶୁଭ ଏବଂ ଉଚ୍ଚାବଚ ଭୋଗସକଳ ଲାଭ କରୁ ଥାଆନ୍ତି । ଅଶୁଭକର୍ମା ମାନବଗଣ କର୍ମଦ୍ୱାରା ଇହଲୋକରେ ନରକପ୍ରାପ୍ତ ହୁଅନ୍ତି । ଯେଉଁ ସ୍ଥାନରେ ସେମାନେ କ୍ଳେଶ ଭୋଗ କରନ୍ତି, ସେହି ଅଧୋଗତି କେବଳ ସେମାନଙ୍କର କଷ୍ଟକର ହୁଏ । ସେହି ନିମିତ୍ତ ମୋକ୍ଷଗତି ଦୁର୍ଲ୍ଲଭ । ତାହାଦ୍ୱାରା ଆତ୍ମାକୁ ସର୍ବତୋଭାବରେ ରକ୍ଷା କରିବେ । ୩୬ ।

ଇହଲୋକରେ ଜନ୍ତୁଗଣ ଊର୍ଦ୍ଧ୍ୱଗାମୀ ହୋଇ ଯେଉଁ ସ୍ଥାନରେ ଅବସ୍ଥାନ କରନ୍ତି, ସେହି ସମସ୍ତ ସ୍ଥାନ ଆମ୍ଭେ ତୁମ୍ଭ ନିକଟରେ ଯଥାର୍ଥରୂପେ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର । ୩୭ ।

ଯେଉଁ ସ୍ଥାନରେ ଚନ୍ଦ୍ରମଣ୍ଡଳ ଏବଂ ଯେଉଁ ସ୍ଥାନରେ ସୂର୍ଯ୍ୟମଣ୍ଡଳ ନିଜ ତେଜଦ୍ୱାରା ପ୍ରକାଶିତ ହୁଏ, ସେହି ସମସ୍ତ ସ୍ଥାନ ଆମ୍ଭ ନିକଟରୁ ଶ୍ରବଣ କରି ନୈଷ୍ଠିକୀ ବୁଦ୍ଧି ଅବଲମ୍ବନପୂର୍ବକ କର୍ମର ନିଷ୍ଠପୂଜ୍ଞାନ କର । ପୁଣ୍ୟବାନ୍ ବ୍ୟକ୍ତିମାନେ କର୍ମାନୁସାରେ ଏହି ସକଳ ସ୍ଥାନକୁ ଗମନ କରନ୍ତି । ୩୯ । କର୍ମ କ୍ଷୟ ହେଲେ ସେମାନେ ସେଠାରୁ ପୁନଶ୍ଚ ପତିତ ହୁଅନ୍ତି ।

ସେହି ସ୍ୱର୍ଗଲୋକରେ ଉଚ୍ଚ, ମଧ୍ୟମ ଓ ନୀଚ ଏହିପରି ବିଶେଷ ଅଛି । ସେଠାରେ ଜନ୍ତୁଗଣ ପରସ୍ପରର ଶ୍ରୀଦର୍ଶନ କରି ସନ୍ତୁଷ୍ଟ ହୁଅନ୍ତି ନାହିଁ । ଆମ୍ଭେ ତୁମ୍ଭ ନିକଟରେ ଏହି ସମସ୍ତ ଗତି ପୃଥକ୍‌ରୂପେ କୀର୍ତ୍ତନ କଲୁଁ । ୪୧ ।

ହେ ଦ୍ୱିଜବର ! ଏଥି ଉତ୍ତାରେ ଆମ୍ଭେ ତୁମ୍ଭଙ୍କୁ ଗର୍ଭର ଉତ୍ପତ୍ତି କହୁଅଛୁଁ । ତୁମ୍ଭେ ସ୍ଥିରମନା ହୋଇ ଶ୍ରବଣ କର । ୪୨ ।

---

Digitized by srujanika@gmail.com

# ଅଷ୍ଟାଦଶ ଅଧ୍ୟାୟ

ବ୍ରହ୍ମନ୍ ! ଇହଲୋକରେ ଶୁଭ ଏବଂ ଅଶୁଭକର୍ମ ସମୂହର ନାଶ ହୁଏ ନାହିଁ । କିନ୍ତୁ ଉକ୍ତ କର୍ମଦ୍ୱୟ, ପ୍ରତି ଦେହକୁ ·ଅନୁଗତ ହୋଇ ଜୀବମାନଙ୍କୁ ଫଳ ପ୍ରଦାନ କରେ । ୧ ।

ଯେଉଁପରି ପ୍ରସୂନମାନ ଫଳଶାଳୀ ପାଦପ ବହୁଳ ଫଳ ପ୍ରଦାନ କରେ, ତଦ୍‌ବତ୍ ଶୁଦ୍ଧମନ ଦ୍ୱାରା କୃତ ଶୁଦ୍ଧକର୍ମ ବିପୁଳ ପୁଣ୍ୟଫଳ ପ୍ରଦାନ କରେ ଏବଂ ପାପଚିତ୍ତ ଦ୍ୱାରା କୃତ ପାପକର୍ମ ପ୍ରଭୂତ ପାପ ଫଳ ପ୍ରଦାନ କରେ । ଯେଉଁ କାରଣରୁ ଆତ୍ମା ମନକୁ ଅଗ୍ରରେ କରି କର୍ମରେ ପ୍ରବୃତ୍ତ ହୁଏ ଅର୍ଥାତ୍ ମନ କେବଳ ଏଥିରେ ପ୍ରଧାନ ।

ମନୁଷ୍ୟ କାମ ଓ କ୍ରୋଧ ଦ୍ୱାରା ସଙ୍କଳ୍ପସମାବୃତ ହୋଇ କର୍ମାନୁସାରେ ଯେଉଁପରି ଗର୍ଭରେ ପ୍ରବିଷ୍ଟ ହୁଏ, ତାହା ଶ୍ରବଣ କର । ୪ ।

ଶୁକ୍ର ଶୋଣିତ ସହିତ ସଂସୃଷ୍ଟ ହୋଇ ସ୍ତ୍ରୀଲୋକର ଗର୍ଭାଶୟକୁ ଗମନ କରି, ଶୁଭ ଏବଂ ଅଶୁଭ କର୍ମଜ କ୍ଷେତ୍ର ପ୍ରାପ୍ତ ହୁଏ । ୫ ।

ପଶ୍ଚାତ୍ ସେହି ଜୀବ ବ୍ରହ୍ମବତ୍ ହେଲେ, ସେହି ଶରୀରୀ, ଶାଶ୍ୱତ ବ୍ରହ୍ମଙ୍କୁ ଜାଣି ଅଭିଳଷିତ ସିଦ୍ଧିଲାଭ କରି ସୂକ୍ଷ୍ମତା ଓ ଅବ୍ୟକ୍ତ ଭାବବଶତଃ କୌଣସି ବିଷୟରେ ସଂସକ୍ତ ହୁଏ ନାହିଁ । ସେହି ଶାଶ୍ୱତ ବ୍ରହ୍ମ ପ୍ରାଣିସମସ୍ତଙ୍କର ବୀଜସ୍ୱରୂପ । ସୁତରାଂ ଜୀବଗଣ ତଦ୍ଦ୍ୱାରା ଜୀବନଧାରଣ କରିଥାନ୍ତି । ସେହି ବ୍ରହ୍ମ ଜୀବ ରୂପରେ ଗର୍ଭର ସମୁଦାୟ ଅବୟବ ବିଭାଗ କ୍ରମେ ସଞ୍ଚାର କରି ଚିତ୍ତ ଉପାଧି ଗ୍ରହଣ ପୂର୍ବକ ପ୍ରାଣ ଇନ୍ଦ୍ରିୟାଦି ସ୍ଥାନରେ ଅବସ୍ଥିତ ହୋଇ ଅଭିମାନ ଧାରଣକରେ । ତଦନନ୍ତର ସେହି ଗର୍ଭ ଚେତନାନ୍ୱିତ ହୋଇ ଅଙ୍ଗସମୂହକୁ ସ୍ପନ୍ଦିତ କରେ । ୮ ।

ତାମ୍ରାଦି ଧାତୁ ଯେଉଁପରି ସୁବର୍ଣ୍ଣରସରେ ସିକ୍ତ ହେଲେ ତାହାର ସମସ୍ତ ଅଙ୍ଗ ସୁବର୍ଣ୍ଣମୟ ବୋଲି ବୋଧହୁଏ, ଲୌହପିଣ୍ଡ ମଧ୍ୟରେ ବହ୍ନି ପ୍ରବେଶ କଲେ ଯେଉଁପରି ତାହାର ସମସ୍ତ ଅବୟବ ଉତ୍ତପ୍ତ ହୋଇଥାଏ, ତଦ୍‌ବତ୍

Digitized by srujanika@gmail.com

ସୂକ୍ଷ୍ମ, ଅବ୍ୟକ୍ତ ଓ ଅସଙ୍ଗ ହେଲେ ମଧ୍ୟ ବ୍ରହ୍ମ ଶରୀର ମଧ୍ୟରେ ପ୍ରବେଶ କରି ସମସ୍ତ ଶରୀରକୁ ବ୍ୟାପ୍ତ ହୁଏ ଓ ସଚେତନ ବୋଲି ବୋଧହୁଏ । ୧୦ ।

ଅସଙ୍ଗ ଦୀପ ଯେଉଁପରି ଗୃହମଧ୍ୟରେ ପ୍ରଜ୍ୱଳିତ ହୋଇ ଗୃହସ୍ଥିତ ଦ୍ରବ୍ୟାଦିକୁ ପ୍ରକାଶିତ କରେ, ତଦ୍‌ବତ୍ ଅସଙ୍ଗ ଚେତନା ସମସ୍ତ ଶରୀରକୁ ଚେତନାଯୁକ୍ତ କରେ । ଜୀବ ଏହି ଶରୀରରେ ଶୁଦ୍ଧ ଅବା ଅଶୁଦ୍ଧ ଯେଉଁ କର୍ମ କରେ, ଶରୀରାନ୍ତର ଗ୍ରହଣ କଲେ, ସେ ପୂର୍ବ ଦେହକୃତ ସେହି ସମସ୍ତ କର୍ମ ଅବଶ୍ୟ ଭୋଗ କରେ । ଯଥା—ପ୍ରକାଶ, ଅନ୍ଧକାର ହେଲେ ସୁଦ୍ଧା ଉପାଧିଗତ ହୋଇ ଉପାଧି, ପରଂତୁ ଉପଭୋଗ ବଶତଃ ସେହି କର୍ମର କ୍ଷୟ ହେଲେ, ଯାବତ୍‌କାଳ ମୋକ୍ଷଯୋଗସ୍ଥ ଧର୍ମ ପରିଗ୍ରହ ନହୁଏ, ତାବତ୍‌କାଳ ପୁନଶ୍ଚ ଅନ୍ୟ କର୍ମ ପ୍ରବର୍ଦ୍ଧିତ ହେଉଥାଏ । ୧୩ ।

ହେ ସତ୍ତମ ! ଜୀବ ଅନ୍ୟାନ୍ୟ ଯୋନିରେ ଆବର୍ତ୍ତମାନ ହୋଇ ଯେଉଁ କର୍ମ ଦ୍ୱାରା ସୁଖୀ ହୁଏ, ତାହା କହୁଅଛୁଁ । ୧୪ ।

ଦାନ, ବ୍ରତ, ବ୍ରହ୍ମଚର୍ଯ୍ୟ, ଯଥୋକ୍ତ ବ୍ରହ୍ମଧାରଣ, ଦମ, ପ୍ରଶାନ୍ତତା, ପ୍ରାଣିଗଣଙ୍କଠାରେ ଅନୁକମ୍ପା, ସଂଯମ, ଚିତ୍ତୈକାଗ୍ର୍ୟ, ଆନୃଶଂସ୍ୟ, ପରଧନଗ୍ରହଣ ବର୍ଜନ, ପୃଥିବୀ ମଧ୍ୟରେ ପ୍ରାଣିଗଣଙ୍କର ଅନ୍ତଃକରଣରୁ ଦୁଃଖ ଦୂରୀକରଣ, ମାତାପିତାଙ୍କର ଶୁଶ୍ରୂଷା, ଦେବତା ଓ ଅତିଥି ପୂଜନ, ଗୁରୁପୂଜା, କରୁଣା, ଶୌଚ, ନିରନ୍ତର ଇନ୍ଦ୍ରିୟ ସଂଯମ ଏବଂ ଶୁଭକର୍ମରେ ପ୍ରବର୍ତ୍ତନ—ଏହି ସମସ୍ତ ସାଧୁମାନଙ୍କ ବୃତ୍ତି ବୋଲି କଥିତ ହୋଇଅଛି । ଯେଉଁ ଧର୍ମ ଶାଶ୍ୱତ ପ୍ରଜାପାଳନ କରେ, ସେହି ଧର୍ମ ଏହି ସମସ୍ତଙ୍କଠାରୁ ବର୍ଦ୍ଧିତ ହୋଇଥାଏ । ୧୮ ।

ଯେତେବେଳେ ସାଧୁମାନଙ୍କ ମଧ୍ୟରେ ସର୍ବଦା ଏତାଦୃଶ କାର୍ଯ୍ୟ ଦୃଷ୍ଟ ହୁଏ, ତେତେବେଳେ ସେମାନେ ନିତ୍ୟସ୍ଥିତି ଲାଭ କରନ୍ତି । ଅପିଚ ଯହିଁରେ ଶାନ୍ତଗଣ ସର୍ବଦା ଅବସ୍ଥାନ କରନ୍ତି, ପଣ୍ଡିତମାନେ ତାହାକୁ ଆଗ୍ରହଧର୍ମ ବୋଲି କହନ୍ତି । ୧୯ ।

ସେହି କର୍ମ ସାଧୁଗଣଙ୍କଠାରେ ନିକ୍ଷିପ୍ତ ହୋଇଅଛି, ଯାହା ସନାତନ ଧର୍ମ ବୋଲି ଉକ୍ତ ହୋଇଅଛି । ଯେଉଁ ବ୍ୟକ୍ତି ସର୍ବତୋଭାବରେ ସେହି ଧର୍ମ ଲାଭ କରି ପାରନ୍ତି, ସେ ଦୁର୍ଗତିପ୍ରାପ୍ତ ହୁଅନ୍ତି ନାହିଁ । ୨୦ ।

Digitized by srujanika@gmail.com

ଅତଏବ ଲୋକବୃନ୍ଦ ଧର୍ମପଥରେ ପଥିକ ହେବା ନିମିତ୍ତ ନିରନ୍ତର ସଂଯତ ହେବେ । କାରଣ, ଯେ ଯୋଗମାର୍ଗ ଅବଲମ୍ବନ କରନ୍ତି, ସେ ମୁକ୍ତ ହୋଇ ସର୍ବାପେକ୍ଷା ଶ୍ରେଷ୍ଠ ହୋଇ ଥାଆନ୍ତି । ୨୧ ।

ଧର୍ମମାର୍ଗାନୁସାରୀ ନର ଯେଉଁ ଶରୀରରେ ଯେକୌଣସି ରୂପରେ ଶୁଭକର୍ମ କରନ୍ତୁ ପଛକେ ବହୁକାଳ ବିଳମ୍ବରେ ସେ ସଂସାରରୁ ମୁକ୍ତ ହେବେ । ଜୀବ ଏହିରୂପେ ପୂର୍ବକୃତ କର୍ମ ନିରନ୍ତର ଭୋଗ କରେ ।

ଆତ୍ମା ଯାହାଦ୍ୱାରା ବିକୃତ ହୋଇ ଇହଲୋକରେ ଜୀବତ୍ୱପ୍ରାପ୍ତ ହୁଏ, ସେହି ସମସ୍ତ କର୍ମ ତାହାର କାରଣ । ୨୩ ।

ଅପିଚ ପୂର୍ବେ କିଏ ଆତ୍ମାର ଶରୀର ଗ୍ରହଣ କଳ୍ପନା କରିଅଛି ? ଏହିପରି ସଂଶୟ ଯଦି ଲୋକ ମଧ୍ୟରେ ଉପସ୍ଥିତ ହୁଏ, ତେବେ ତାହା ଆମ୍ଭେ ଅଶେଷରୂପେ କହୁଅଛୁଁ, ଶ୍ରବଣ କର । ୨୪ ।

ପୂର୍ବେ ସର୍ବଲୋକପିତାମହ ମାୟାଶବଳ ବ୍ରହ୍ମ ସର୍ବାଗ୍ରେ ସ୍ୱୟଂ ଶରୀର ଧାରଣ ପୂର୍ବକ ପରିଶେଷରେ ଅନ୍ୟାନ୍ୟ ଶରୀରଗଣଙ୍କ ଶରୀର କଳ୍ପନାକରି ଏହି ଚରାଚର ବିଶ୍ୱର ସୃଷ୍ଟି କରିଅଛନ୍ତି । ସେ ଦେହରେ ଅନ୍ତର୍ଯ୍ୟାମୀ ଓ ଜୀବର ବିବିଧ ଦେହପରିଗ୍ରହର ନିୟମ କରିଅଛନ୍ତି ।

ତଦନନ୍ତର ଯାହାଦ୍ୱାରା ଏହି ସମସ୍ତ ବିଶ୍ୱ ବ୍ୟାପ୍ତ ହୋଇ ରହିଅଛି, ଲୋକେ ଯାହାକୁ ଶ୍ରେଷ୍ଠ ବୋଲି ବୋଧ କରନ୍ତି, ଯେ ଶରୀରଗଣଙ୍କ ଅଭିବ୍ୟକ୍ତି ସ୍ଥାନ ଦେହାଦିର ଆକାର ସ୍ୱରୂପ, ସେହି ପ୍ରଧାନ ପ୍ରକୃତିର ସେ ସୃଷ୍ଟି କଲେ । ୨୬ ।

ଲୋକେ ସେହି ଜଡ଼ସ୍ୱଭାବା ପ୍ରକୃତିକୁ କ୍ଷର ବୋଲି କହନ୍ତି । ପରଂଶୁଦ୍ଧ ବ୍ରହ୍ମଚୈତନ୍ୟ ତହିଁରେ ପ୍ରତିବିମ୍ବିତ ହୋଇ ଜୀବ ଏବଂ ଈଶଭାବାପନ୍ନ ହେଲେ ତାହା ଅମୃତ ଅକ୍ଷର ବୋଲି ଉକ୍ତ ହୁଏ । ସେହି କ୍ଷର, ପ୍ରତି ପୁରୁଷରେ ମିଥୁନ ଭାବରେ ଅବସ୍ଥାନ କରନ୍ତି । ଏହିରୂପେ ପୁରାତନୀ ଶ୍ରୁତି ଅଛି ଯେ, ଶ୍ରୁତିଦ୍ରଷ୍ଟା ପ୍ରଜାପତି ସ୍ଥାବର ଓ ଜଙ୍ଗମ ସହ ସମସ୍ତ ପ୍ରାଣୀ, ଆକାଶାଦି ଭୂତସମୂହର ସୃଷ୍ଟି କରିଅଛନ୍ତି ।

Digitized by srujanika@gmail.com

ତଦନନ୍ତର ସେହି ପ୍ରଜାପତି ପିତାମହ ଶରୀରଗ୍ରହଣର କାଳ ଓ ପରିମାଣ ନିର୍ଦ୍ଦିଷ୍ଟ କରି ଭୂତଗଣ ମଧ୍ୟରେ ସୁର, ନର ଓ ତିର୍ଯ୍ୟକ୍ ପ୍ରଭୃତିରୂପେ ପରିବୃତ୍ତି ଏବଂ ଭୂତଗଣର ପୁନରାବୃତ୍ତିର ସୃଷ୍ଟି କଲେ । ୨୯ ।

ଯେଉଁପରି କୌଣସି ମେଧାବୀ ଜନ ଇହଜନ୍ମରେ ପରମାତ୍ମାଙ୍କ ସାକ୍ଷାତ୍କାର ହେତୁରୁ ପୂର୍ବଜନ୍ମର ବୃତ୍ତାନ୍ତ ଏବଂ ସଂସାରର ଅନ୍ତବର୍ତ୍ତୀର ବିଷୟ କହୁଥାଆନ୍ତି, ତଦ୍‌ବତ୍ ଆମ୍ଭେ ଜାତିସ୍ମର ହୋଇ ଯାହା କହିବୁଁ ସେହି ସମସ୍ତ ଯଥାବତ୍ ଉତ୍ପନ୍ନ ହେବ । ୩୦ ।

ଯେଉଁ ବ୍ୟକ୍ତି ସୁଖଦୁଃଖକୁ ଅନିତ୍ୟ, ଶରୀରକୁ ଅପବିତ୍ର ବସ୍ତୁର ସମଷ୍ଟି, ବିନାଶକୁ କର୍ମର ଫଳ ଓ ଯତ୍କିଞ୍ଚିତ୍ ସୁଖକୁ ଦୁଃଖ ବୋଲି ଜ୍ଞାନ କରନ୍ତି, ସେ ଅନାୟାସରେ ଘୋରତର ସଂସାରସାଗରରୁ ଉତ୍ତୀର୍ଣ୍ଣ ହୋଇ ପାରନ୍ତି । ୩୨ ।

ହେ ସତ୍ତମ ! ପ୍ରଧାନବିତ୍ ପୁରୁଷ ଜରା, ମରଣ ଓ ରୋଗଦ୍ୱାରା ଆକ୍ରାନ୍ତ ହୋଇ ଚେତନାବିଶିଷ୍ଟ ପ୍ରାଣିଗଣ ମଧ୍ୟରେ ଚୈତନ୍ୟର ଏକତ୍ୱ ଅବଲୋକନ କରି ପରମପଦ ଅନ୍ୱେଷଣ କଲେ ଯେଉଁପରି ନିର୍ବେଦ ପ୍ରାପ୍ତ ହୁଅନ୍ତି, ତାହାଙ୍କ ଉପଦେଶ ଯଥାତଥ୍ୟରୂପେ କହୁଅଛୁଁ ।

ହେ ବିପ୍ର ! ଶାଶ୍ୱତ ଅବ୍ୟୟ ବ୍ରହ୍ମଙ୍କ ବିଷୟରେ ଯେଉଁ ଉତ୍ତମ ଜ୍ଞାନ, ଆମ୍ଭେ ତାହା ତୁମ୍ଭଙ୍କୁ ଅଶେଷରୂପେ କହୁଅଛୁଁ, ଶ୍ରବଣକର । ୩୫ ।

---

## ଊନବିଂଶ ଅଧ୍ୟାୟ

ବ୍ରାହ୍ମଣ କହିଲେ—ଯେଉଁ ଜନ ପୂର୍ବତନ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଶରୀର ପରିତ୍ୟାଗ ପୂର୍ବକ ସମସ୍ତଙ୍କର ଏକମାତ୍ର ଅଧିଷ୍ଠାନଭୂତ ପରଂବ୍ରହ୍ମରେ ଲୀନ ହୋଇ ଅନ୍ୟ କୌଣସି ପ୍ରକାର ଚିନ୍ତା ନକରି ତୂଷ୍ଣୀମ୍ଭାବରେ ଅବସ୍ଥାନ କରନ୍ତି, ସେ ସଂସାରବନ୍ଧନରୁ ବିମୁକ୍ତ ହୁଅନ୍ତି । ୧ ।

ମନୁଷ୍ୟ ସମସ୍ତଙ୍କର ମିତ୍ର । ସର୍ବଂସହ, ଚିତ୍ତନିଗ୍ରହରେ ଅନୁରକ୍ତ, ଜିତେନ୍ଦ୍ରିୟ ହୋଇ, ଯାବତ୍‌କାଳ ଯୋଗ ସିଦ୍ଧ ନୁହେ, ତାବତ୍‌କାଳ

Digitized by srujanika@gmail.com

ତଦ୍‌ବିଷୟରେ ଦୈନ୍ୟ ବା ଦ୍ୱେଷବିହୀନ ଏବଂ ଜିତଚିତ୍ତ ହେଲେ ମୁକ୍ତ ହୁଏ । ୨ ।

ଯେଉଁ ମାନବ ସଂଯତ, ପବିତ୍ର, ଅହଙ୍କାର ଓ ଅଭିମାନଶୂନ୍ୟ ହୋଇ ସର୍ବଭୂତରେ ଆତ୍ମବତ୍ ଆଚରଣ କରେ, ସେ ସର୍ବତୋଭାବରେ ମୁକ୍ତ ହୁଏ । ୩ । ଯେଉଁ ବ୍ୟକ୍ତି ଜୀବନ-ମରଣ, ସୁଖ-ଦୁଃଖ, ଲାଭାଲାଭ ଏବଂ ପ୍ରିୟ ଓ ଦ୍ୱେଷ୍ୟ ଏହି ସମସ୍ତରେ ସମଭାବ ଜ୍ଞାନକରେ, ସେ ମୁକ୍ତ ହୁଏ ।୪। ଯେଉଁ ମନୁଷ୍ୟ ନିର୍ଦ୍ୱନ୍ଦ୍ୱ ଓ ନିଃସ୍ପୃହ ହୋଇ କାହା ଧନରେ ଅଭିଳାଷ ନକରେ ଏବଂ କାହାକୁ ଅବଜ୍ଞା ନକରେ, ସେ ସର୍ବ ପ୍ରକାରରେ ମୁକ୍ତିଲାଭ କରେ । ୫ । ମନୁଷ୍ୟ କୌଣସି ପ୍ରକାରରେ ଶତ୍ରୁହୀନ, ବନ୍ଧୁହୀନ, ଅନପତ୍ୟ, ଧର୍ମ ଅର୍ଥ ଓ କାମ ଏହି ତ୍ରିବର୍ଗବିହୀନ ଏବଂ ଆକାଂକ୍ଷାଶୂନ୍ୟ ହେଲେ ମୁକ୍ତ ହୁଏ । ୬ ।

ପୁରୁଷ, ଧର୍ମାଧର୍ମଶୂନ୍ୟ ଏକମାତ୍ର ପ୍ରାରବ୍ଧ କର୍ମର ପ୍ରାପକ ଶରୀରାରମ୍ଭକ ଧାତୁସମୂହର କ୍ଷୟ ହେତୁରୁ ପ୍ରଶାନ୍ତଚିତ୍ତ ଏବଂ ନିର୍ଦ୍ୱନ୍ଦ୍ୱ ହେଲେ ମୁକ୍ତ ହୁଏ । ୭ । ନିରାକାଂକ୍ଷ ସନ୍ନ୍ୟାସୀ ପୁରୁଷ ସଂସାରକୁ ଅନିତ୍ୟ, ଅସ୍ୱସ୍ଥ, ଅବଶ୍ୟ, ଅଚୈତନ୍ୟ ଏବଂ ଜନ୍ମ ମୃତ୍ୟୁ ଓ ଜରାଯୁକ୍ତ ଦର୍ଶନ କରେ । ବୈରାଗ୍ୟ ବୁଦ୍ଧିସମ୍ପନ୍ନ ଜନ ସର୍ବଦା ଆତ୍ମଦୋଷଦର୍ଶୀ ହୋଇ ଶୀଘ୍ର ଆତ୍ମାଙ୍କୁ ବନ୍ଧନରୁ ବିମୁକ୍ତ କରିଥାଏ । ୯ । ଯେଉଁ ଜନ ଗନ୍ଧ, ସ୍ପର୍ଶ, ରୂପ, ରସ, ଶବ୍ଦ ପରିଗ୍ରହଶୂନ୍ୟ ଅରୂପ ଅନଭିଜ୍ଞେୟ ଆତ୍ମାଙ୍କୁ ଦର୍ଶନ କରେ, ସେ ମୁକ୍ତ ହୁଏ । ୧୦ ।

ପୁରୁଷ ପାଞ୍ଚ ଭୌତିକ ସ୍ଥୂଳ ଏବଂ ସୂକ୍ଷ୍ମ ଓ କାରଣ ଶରୀରବିହୀନ, ନିର୍ଗୁଣ ଓ ସତ୍ତ୍ୱ-ରଜ-ତମୋରୂପରେ ବିଷୟଭୋକ୍ତା ପରମାତ୍ମାଙ୍କୁ ଦର୍ଶନକରି ମୁକ୍ତିଲାଭ କରେ । ୧୧ ।

ମନୁଷ୍ୟ ଜ୍ଞାନପୂର୍ବକ ଶାରୀର ଓ ମାନସିକ ସଂକଳ୍ପ ସକଳ ପରିହାର କରି ଇନ୍ଧନଶୂନ୍ୟ ଅନଳ ସଦୃଶ କ୍ରମେ କ୍ରମେ ନିର୍ବାଣଲାଭ କରେ । ୧୨ ।

ଯେଉଁ ମାନବ ସର୍ବ ସଂସ୍କାର ନିର୍ମୁକ୍ତ, ନିର୍ଦ୍ୱନ୍ଦ୍ୱ ଓ ନିଷ୍ପରିଗ୍ରହ ହୋଇ ତପସ୍ୟାଦ୍ୱାରା ଇନ୍ଦ୍ରିୟଗଣଙ୍କୁ ନିଗ୍ରହ କରେ, ସେ ମୁକ୍ତ ହୁଏ । ୧୩ ।

ପୁରୁଷ ସର୍ବପ୍ରକାର ସଂସ୍କାରବିହୀନ ହେଲେ, ଶାନ୍ତ ଅଚଳ ଅକ୍ଷର ନିତ୍ୟ ସନାତନ ପରମ ବ୍ରହ୍ମଙ୍କୁ ପ୍ରାପ୍ତ ହୁଏ । ୧୪ । ଯୋଗିଗଣ ଯୋଗଯୁକ୍ତ

Digitized by srujanika@gmail.com

ହୋଇ ଚିତ୍ତନିଗ୍ରହରୂପ ଉପାୟଦ୍ୱାରା ଦେହମଧ୍ୟରେ ଚିତ୍ତକୁ ଅନ୍ତର୍ମୁଖ କରି ଯେଉଁରୂପେ ନିତ୍ୟ ସିଦ୍ଧ ପରମାତ୍ମାଙ୍କୁ ଦର୍ଶନ କରନ୍ତି, ଅତଃପର ଆମ୍ଭେ ସେହି ଅତ୍ୟୁତ୍ତମ ଯୋଗଶାସ୍ତ୍ର ଏବଂ ତାହାଙ୍କ ଉପଦେଶ ଭୂମ୍ନିକଣ୍ଠରେ ଯଥାବତ୍ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କର ।

ହେ ବିପ୍ର ! ପୁରୁଷ, ଇନ୍ଦ୍ରିୟଗଣଙ୍କୁ ସ୍ୱସ୍ୱ ବିଷୟସମୂହରୁ ପ୍ରତ୍ୟାବର୍ତ୍ତିତକରି ଚିତ୍ତକୁ କ୍ଷେତ୍ରଜ୍ଞ ଜୀବାତ୍ମାରେ ଧାରଣା କରିବ, ତତ୍ପରେ ତୀବ୍ରତର ତପସ୍ୟା କରି ମୋକ୍ଷଯୋଗ ଆଚରଣ କରିବ । ମନସ୍ୱୀ ତପସ୍ୱୀ ସର୍ବଦା ତପୋନିଷ୍ଠ ହୋଇ ଯୋଗଶାସ୍ତ୍ରାଚରଣ କରି ମନଦ୍ୱାରା ଦେହମଧ୍ୟରେ ଆତ୍ମାକୁ ଦର୍ଶନ କରେ । ପରନ୍ତୁ ଯଦି ସେହି ସାଧୁ ତପସ୍ୱୀ ଏକାନ୍ତ ଚିତ୍ତରେ ଆତ୍ମାଙ୍କୁ ଦେହମଧ୍ୟରେ ଯୋଗ କରିବାକୁ ସମର୍ଥ ହୁଏ, ତେବେ ସେ ଦେହମଧ୍ୟରେ ଦେଖିପାରେ । ସଂଯତ, ସତତ ଯୋଗଯୁକ୍ତ, ଜିତଚିତ୍ତ, ଜିତେନ୍ଦ୍ରିୟ ପୁରୁଷ ସମ୍ୟକ୍‌ରୂପେ ପ୍ରଯୁକ୍ତ ହେଲେ ମନଦ୍ୱାରା ଆତ୍ମାଙ୍କୁ ଦର୍ଶନ କରେ ।

ଯେଉଁପରି ପୁରୁଷ, ସ୍ୱପ୍ନାବସ୍ଥାରେ କୌଣସି ଅଦୃଷ୍ଟଚର ପୁରୁଷଙ୍କୁ ଦର୍ଶନ କରି ପ୍ରବୁଦ୍ଧ ହୋଇ ପୁନଶ୍ଚ ତାହାଙ୍କୁ ଦର୍ଶନକଲେ ସେହି ପୁରୁଷ ଏହିପରି ବୋଧ କରେ, ତଦ୍‌ବତ୍ ସମାଧିସ୍ଥ ପୁରୁଷ ସମାଧି ସମୟରେ ବିଶ୍ୱରୂପ ଆତ୍ମାଙ୍କୁ ଦର୍ଶନ କରି ବ୍ୟୁତ୍ଥିତ ହୋଇ ତାହାଙ୍କୁ ବିଶ୍ୱାତ୍ମାରୂପେ ଦର୍ଶନ କରିଥାଏ ।

ଯେଉଁପରି କୌଣସି ନର, ମୁଞ୍ଜରୁ ଈଷୀକା ନିଷ୍କାଶିତ କରି ଲୋକଙ୍କୁ ପ୍ରଦର୍ଶନ କରେ, ତଦ୍‌ବତ୍ ଯୋଗୀ ଦେହରୁ ଆତ୍ମାଙ୍କୁ ନିଷ୍କାଶିତ କରି ଦର୍ଶନ କରିଥାଆନ୍ତି । ୨୨ ।

ପଣ୍ଡିତଗଣ ଶରୀରକୁ ମୁଞ୍ଜ ଏବଂ ଆତ୍ମନିଷ୍ଠ ଜଗଦାକାରରେ ଭାସମାନ ମାୟାକୁ ଈଷୀକା କହନ୍ତି । ୨୩ । ଯୋଗବିତ୍ ପଣ୍ଡିତଗଣ ଏହି ଅନୁତ୍ତମ ନିଦର୍ଶନ କରି ଥାଆନ୍ତି । ମନୁଷ୍ୟ ଦେହ ଧାରଣ କରି ଶରୀର ମଧ୍ୟରେ ଆତ୍ମାଙ୍କୁ ସମ୍ୟକ୍‌ରୂପେ ଦର୍ଶନ କଲେ, ଇହଲୋକରେ କୌଣସି ବ୍ୟକ୍ତି ତାହାଙ୍କର ପ୍ରଭୁ ହୋଇପାରେ ନାହିଁ । ଏମନ୍ତ କି ତ୍ରିଲୋକାଧିପତି ମଧ୍ୟ ତାହାଙ୍କର ଈଶ୍ୱର ହୋଇ ପାରନ୍ତି ନାହିଁ । ୨୪ ।

Digitized by srujanika@gmail.com

ସେହି ମନୁଷ୍ୟ ଇଚ୍ଛାକଲେ ଦେବ, ଗନ୍ଧର୍ବ ଓ ମନୁଷ୍ୟ ପ୍ରଭୃତି ଦେହ ଧାରଣ କରିବାକୁ ସମର୍ଥ ହୁଏ ଏବଂ ଜରା ଓ ମୃତ୍ୟୁକୁ ଅତିକ୍ରମ କରି ତହିଁରେ ଶୋକାର୍ତ୍ତ ବା ହୃଷ୍ଟ ହୁଏନାହିଁ ।୨୫। ବଶୀକୃତଚିତ୍ତ ମାନବ ଯୋଗଯୁକ୍ତ ହୋଇ ଦେବଗଣଙ୍କର ଦେବତ୍ୱ ବିଧାନ କରିବାକୁ ସମର୍ଥ ହୁଏ ଏବଂ ଅନିତ୍ୟ ଦେହ ପରିତ୍ୟାଗ କରି ନିତ୍ୟବ୍ରହ୍ମ ପ୍ରାପ୍ତ ହୋଇଥାଏ । ୨୭ । ପ୍ରାଣିଗଣ ବିନଷ୍ଟ ହେଲେ ତହିଁରେ ସେ ଭୀତ ହୁଏ ନାହିଁ, ପ୍ରାଣିଗଣ କ୍ଲିଷ୍ଟ ହେଲେ ସେ କ୍ଲିଷ୍ଟ ହୁଏ ନାହିଁ । ପ୍ରଶାନ୍ତଚିତ୍ତ ଯୁକ୍ତାତ୍ମା ନିସ୍ପୃହ ମାନବ ସଙ୍ଗ ଏବଂ ସ୍ନେହସମ୍ଭୂତ ଭୟଙ୍କର ଭୟ, ଶୋକ ଓ ଦୁଃଖଦ୍ୱାରା କଦାପି ବିଚଳିତ ହୁଏ ନାହିଁ । ୨୮ ।

ଶସ୍ତ୍ରସମୂହ ଏତାଦୃଶ ବ୍ୟକ୍ତିଙ୍କୁ ବେଧ କରିପାରନ୍ତି ନାହିଁ ଓ ମୃତ୍ୟୁ ତାହାଙ୍କୁ ଆକ୍ରମଣ କରିପାରେ ନାହିଁ । ଏହି ଜୀବ ଜଗତ, ଲୋକ ମଧ୍ୟରେ ତାହାଙ୍କ ଅପେକ୍ଷା ଅନ୍ୟ କୌଣସି ବ୍ୟକ୍ତିଙ୍କୁ ସୁଖୀ ବୋଲି ଗଣ୍ୟ କରେ ନାହିଁ । ୨୯ ।

ଯୋଗୀପୁରୁଷ ମନକୁ ଆତ୍ମାରେ ସମ୍ୟକ୍‌ରୂପେ ନିଯୁକ୍ତକରି ଅବସ୍ଥିତ କରନ୍ତି, ଏବଂ ଜରା ଓ ଦୁଃଖକୁ ବିଶେଷରୂପେ ନିବୃତ୍ତ କରି ସୁଖରେ ଶୟନ କରିଥାଆନ୍ତି । ୩୦ । ସେ ଇଚ୍ଛାନୁସାରେ ଏହି ମନୁଷ୍ୟ ଶରୀର ପରିତ୍ୟାଗ କରି ଅନ୍ୟାନ୍ୟ ସକଳ ଦେହ ଧାରଣ କରିପାରନ୍ତି । ପରନ୍ତୁ ଯେତେବେଳେ ସେ ଯୋଗବଳରେ ଐଶ୍ୱର୍ଯ୍ୟସମୂହ ଭୋଗ କରିବେ, ତେତେବେଳେ ସେ ତହିଁରୁ କଦାପି ବିରତ ହେବେ ନାହିଁ । ୩୧ । ଯେତେବେଳେ ସେ ମନକୁ ଆତ୍ମାରେ ସମ୍ୟକ୍‌ରୂପେ ଯୋଗକରି ଚିତ୍ତମଧ୍ୟରେ ପରମାତ୍ମାଙ୍କୁ ଦର୍ଶନ କରିବେ, ତେତେବେଳେ ସାକ୍ଷାତ୍ ଶତକ୍ରତୁଙ୍କ ଐଶ୍ୱର୍ଯ୍ୟ ସ୍ପୃହା କରିବେ ନାହିଁ ।

ପରନ୍ତୁ ପୁରୁଷ, ଧ୍ୟାନଶୀଳ ହୋଇ, ଯେଉଁ ପ୍ରକାରେ ଯୋଗପ୍ରାପ୍ତ ହୁଏ ତାହା ଶ୍ରବଣ କର ! ପୁରୁଷ, ବେଦାନ୍ତ ଶ୍ରବଣ ପୂର୍ବକ ଗୁରୁଙ୍କ ଉପଦିଷ୍ଟ ଉପଦେଶ ପର୍ଯ୍ୟାଲୋଚନା କରି ଦେହ ମଧ୍ୟରେ ବାସ କରିବେ । ମନକୁ ସେହି ଦେହର ବହିର୍ଦେଶରେ ନରଖି ଅଭ୍ୟନ୍ତରରେ ଥାଇ ମୂଳାଧାରାଦି ଅନ୍ୟତମ ଯେଉଁ କୌଣସି ଚକ୍ରରେ ବାସ କରିବେ, ବାହ୍ୟ ଓ ଅଭ୍ୟନ୍ତର ସହିତ ସେହି ଚକ୍ରରେ ମନକୁ ଧାରଣ କରି ରଖିବେ । ୩୪ ।

Digitized by srujanika@gmail.com

ଯେଉଁ ସମୟରେ ସେ ଚକ୍ର ମଧ୍ୟରେ ଥାଇ ସର୍ବାତ୍ମକ ବ୍ରହ୍ମଙ୍କୁ ଚିନ୍ତାକରିବେ, ସେହି ସମୟରେ ତାହାଙ୍କ ମନ କଦାପି ବହିର୍ମୁଖ ହୋଇ ପାରିବ ନାହିଁ । ନିର୍ଜନ ନିର୍ଘୋଷ ବନମଧ୍ୟରେ ଇନ୍ଦ୍ରିୟସମୂହକୁ ନିଗ୍ରହ କରି ଏକାଗ୍ର ହୋଇ ଦେହର ବାହ୍ୟ ଏବଂ ଅଭ୍ୟନ୍ତରରେ ପରିପୂର୍ଣ୍ଣ ବ୍ରହ୍ମଙ୍କୁ ଚିନ୍ତାକରିବେ । ୩୭ । ଏବଂ ଯୋଗର ସାଧନ ସ୍ୱରୂପ ଦନ୍ତ, ତାଳୁ, ଜିହ୍ୱା, ଗଳଦେଶ, ଗ୍ରୀବା, ହୃଦୟ ଓ ହୃଦୟବନ୍ଧ ନାଡ଼ୀସମୂହକୁ ଚିନ୍ତାକରିବେ, ଅର୍ଥାତ୍ ଦନ୍ତଦ୍ୱାରା ଖାଦ୍ୟସାମଗ୍ରୀ ସକଳ ଶୁଦ୍ଧ କରିବେ, ଜିହ୍ୱାକୁ ତାଳୁ ସହିତ ସଂଯୁକ୍ତ କରିବେ, ଗଳ ଓ ଗ୍ରୀବା ଦେଶରେ କ୍ଷୁଧା ପିପାସା ନିବୃତ୍ତି କରିବେ ଏବଂ ହୃଦୟ ଓ ହୃଦୟସ୍ଥିତ ନାଡ଼ୀସମୂହକୁ ପରିଷ୍କୃତ କରି ରଖିବେ ।

ହେ ମଧୁସୂଦନ ! ସେହି ମେଧାବୀ ଶିଷ୍ୟ ଆମ୍ଭଠାରୁ ଏହି ବାକ୍ୟ ଶ୍ରବଣ କରି ପୁନଶ୍ଚ ଆମ୍ଭଙ୍କୁ ଏହି ସୁଦୁର୍ବଚ ମୋକ୍ଷଧର୍ମର ବିଷୟ ପ୍ରଶ୍ନକଲେ । ୩୮ ।

ଶିଷ୍ୟ କହିଲେ—ହେ ଅନଘ ! କୋଷ୍ଠମଧ୍ୟରେ ଭୁକ୍ତ ଅନ୍ନ କେଉଁପରି ପରିପାକ ହୁଏ ? ତାହା କେଉଁ ପ୍ରକାରରେ ରସତ୍ୱ ଓ ଶୋଣିତତ୍ୱ ପ୍ରାପ୍ତ ହୁଏ, ଏବଂ କେଉଁ ପ୍ରକାରରେ ଅବା ତାହା ଶରୀରମାନଙ୍କ ଶରୀରସମୂହ, ମାଂସ, ମେଦ, ସ୍ନାୟୁ ଓ ଅସ୍ଥିମାନଙ୍କୁ ପୁଷ୍ଟକରେ ? ବର୍ଦ୍ଧମାନ ଅର୍ଥାତ୍ ବଳବାନ୍ ବ୍ୟକ୍ତିଙ୍କ ଶରୀରସମୂହ ଓ ବଳ କେଉଁପରି ବର୍ଦ୍ଧିତ ହୁଏ, ଏବଂ କେଉଁପରି ଦୁର୍ବଳ ବ୍ୟକ୍ତିମାନଙ୍କର ମଳରାଶି ପୃଥକ୍ ପୃଥକ୍ ଭାବରେ ନିର୍ଗତ ହୁଏ ?

ଏହି ପୁରୁଷ କେଉଁଠାରୁ ନିଶ୍ୱାସ ପ୍ରଶ୍ୱାସ କରନ୍ତି ଏବଂ ଏହି ଆତ୍ମା କେଉଁ ସ୍ଥାନ ଅବଲମ୍ବନ କରି ଦେହମଧ୍ୟରେ ଅବସ୍ଥିତ ହୁଅନ୍ତି ? ଜୀବ ନାଡ଼ୀ-ମାର୍ଗରେ ଚେଷ୍ଟମାନ ହୋଇ କେଉଁପରି ସୂକ୍ଷ୍ମ ଶରୀରକୁ ବହନ କରନ୍ତି ? ନାଡ଼ୀମାର୍ଗର ବର୍ଣ୍ଣ କି ପ୍ରକାର ଏବଂ ତାହାଦ୍ୱାରା ପୁନଶ୍ଚ କାଦୃଶ ଶରୀର ପ୍ରାପ୍ତ ହୋଇଥାଏ ? ହେ ଭଗବନ୍ ! ଆମ୍ଭ ନିକଟରେ ଏହା ଯଥାର୍ଥରୂପେ ବର୍ଣ୍ଣନ କରିବା ହେଉନ୍ତୁ ।

ହେ ମହାବାହୋ ମାଧବ ! ସେହି ବିପ୍ର ଆମ୍ଭଙ୍କୁ ଏହି ବିଷୟ ପ୍ରଶ୍ନ କଲାରୁ ଆମ୍ଭେ ତାହାଙ୍କୁ ଏହି ସମସ୍ତ ଯଥାଶ୍ରୁତ ବିଷୟ କହିଲୁଁ । ଯେଉଁପରି ପୁରୁଷ ସ୍ୱୀୟ ଧନକୁ ଗୃହଭାଣ୍ଡରେ ନିକ୍ଷେପ କରି ଗୃହରେ ପ୍ରବେଶ ପୂର୍ବକ ବିବେଚନାଦ୍ୱାରା

Digitized by srujanika@gmail.com

ଗ୍ରନ୍ଥି ଅନ୍ୱେଷଣ କରି ତାହା ପ୍ରାପ୍ତ ହୁଅନ୍ତି, ତଦ୍‌ବନ୍ତର ସ୍ୱୀୟ ଶରୀରରେ ମନକୁ ନିକ୍ଷେପ କରି ପ୍ରମାଦ ପରିତ୍ୟାଗ ପୂର୍ବକ ଅନିଶ୍ଚଳ ଇନ୍ଦ୍ରିୟଗଣଦ୍ୱାରା ସେହି ଶରୀର ମଧ୍ୟରେ ଆତ୍ମାଙ୍କୁ ଅନ୍ୱେଷଣ କରିବେ । ସର୍ବଦା ଏହିପରି ଉଦ୍‌ଯୁକ୍ତ ହୋଇ ପ୍ରୀତଚିତ୍ତରେ ଅନ୍ୱେଷଣ କଲେ, ମନୁଷ୍ୟ ଯାହାଙ୍କ ଦର୍ଶନରେ ପ୍ରଧାନବିତ୍ ହୁଅନ୍ତି, ଅଳ୍ପକାଳ ମଧ୍ୟରେ ସେହି ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି । ୪୭ ।

ପରମାତ୍ମା ଚକ୍ଷୁଦ୍ୱାରା ଗ୍ରାହ୍ୟ ନୁହନ୍ତି, ସେ କୌଣସି ଇନ୍ଦ୍ରିୟଦ୍ୱାରା ଗ୍ରାହ୍ୟ ହୁଅନ୍ତି ନାହିଁ, କେବଳ ମନୋରୂପ ପ୍ରଦୀପଦ୍ୱାରା ମନୁଷ୍ୟର ଦୃଶ୍ୟ ହୁଅନ୍ତି । ୪୮ । ସେ ସର୍ବଗ୍ରାହୀ, ସର୍ବସଗାମୀ, ସର୍ବଦର୍ଶୀ, ସର୍ବଶିର, ସର୍ବାନନ ଏବଂ ଶ୍ରୋତା; ସୁତରାଂ ସମସ୍ତ ବିଶ୍ୱ ଆବରଣ କରି ଅବସ୍ଥିତ ହୋଇ ଅଛନ୍ତି । ୪୯ ।

ସେ ଶରୀରରୁ ନିଷ୍କ୍ରାନ୍ତ ହେଲେ ତାହାଙ୍କୁ ଜୀବ ଦର୍ଶନ କରିପାରନ୍ତି । ଜୀବ ସର୍ବଲକ୍ଷଣାନ୍ୱିତ ସମସ୍ତ ବସ୍ତୁ ପରିତ୍ୟାଗ କରି ମନକୁ ସ୍ୱରୂପରେ ଧାରଣ କଲେ ଯେଉଁପରି ମନେ ମନେ ହାସ୍ୟ କରି ନିର୍ଗୁଣ ପରମ ବ୍ରହ୍ମଙ୍କୁ ଦର୍ଶନ କରି ଥାଆନ୍ତି, ଜୀବ ଏହିରୂପେ ଏହି ପରମାତ୍ମାଙ୍କୁ ଆଶ୍ରୟ କରି ତାଙ୍କଠାରେ ଲୟପ୍ରାପ୍ତ ହୁଅନ୍ତି । ହେ ଦ୍ୱିଜବର ! ତୁମ୍ଭ ନିକଟରେ ଆମ୍ଭେ ଏହି ରହସ୍ୟ ବିଷୟକୁ ଯଥାର୍ଥରୂପେ କୀର୍ତ୍ତନ କଲୁଁ । ଅନନ୍ତର ଆମ୍ଭେ ତୁମ୍ଭଙ୍କୁ ଅନୁମତି ଦାନ କରୁଅଛୁଁ, ତୁମ୍ଭେ ଯଥାସୁଖରେ ଗମନ କର, ଆମ୍ଭେ ତୁମ୍ଭଙ୍କୁ ସାଧନ କରାଇବୁଁ । ୫୨ ।

ହେ କୃଷ୍ଣ ! ମହାପ୍ରସୁ ଶିଷ୍ୟ ସେହି ମହାତପା ଶଂସିତବ୍ରତ ବିପ୍ର ଆମ୍ଭଠାରୁ ଏହି ବାକ୍ୟ ଶ୍ରବଣ କରି ଇଚ୍ଛାନୁସାରେ ଗମନ କଲେ । ୫୩ ।

ବାସୁଦେବ କହିଲେ—ହେ ପାର୍ଥ ! ମୋକ୍ଷଧର୍ମାବଲମ୍ବୀ ସେହି ଦ୍ୱିଜବର ଆମ୍ଭଙ୍କୁ ଏହି ସମସ୍ତ ବିଷୟ ସମ୍ୟକ୍‌ରୂପେ କହି ସେଠାରୁ ଅନ୍ତର୍ହିତ ହେଲେ । ୫୪ ।

ହେ ପାର୍ଥ ! ତୁମ୍ଭେ ଏକାଗ୍ରଚିତ୍ତରେ ଆମ୍ଭନିକଟରୁ ଥରେ ଏହି ବିଷୟ ତ ଶୁଣିଥିଲ; ତୁମ୍ଭେ ଯେ ସେହି ଯୁଦ୍ଧ ସମୟରେ ରଥାରୂଢ଼ ହୋଇ ଏହି ବିଷୟ ଶ୍ରବଣ କରିଥିଲ, ତାହା କି ତୁମ୍ଭର ସ୍ମରଣ ହେଉନାହିଁ ? ୫୫ ।

ହେ ପାର୍ଥ ! ଏହାଦ୍ୱାରା ଆମ୍ଭର ଏହିପରି ବିବେଚନା ହେଉଅଛି ଯେ, ଯେଉଁ ପଣ୍ଡିତ ପୁରୁଷ ବ୍ୟଗ୍ରଚିତ୍ତ, ତତ୍ତ୍ୱବିଦ୍ୟାବିହୀନ ଏବଂ ଅକୃତାତ୍ମା, ସେ ଏହା ସୁନ୍ଦରରୂପେ ଅବଗତ ହୋଇ ପାରନ୍ତି ନାହିଁ । ୫୬ ।

Digitized by srujanika@gmail.com

ହେ ଭରତଶ୍ରେଷ୍ଠ ପାର୍ଥ ! ଆମ୍ଭେ ତୁମ୍ଭଙ୍କୁ ଯାହା କହୁଅଛୁଁ, ତାହା ଦେବଗଣଙ୍କ ନିକଟରେ ଗୋପନୀୟ । ଇହଲୋକରେ ଏହାକୁ କେହି କଦାପି ଶ୍ରବଣ କରି ନାହାନ୍ତି । ହେ ଅନଘ ! ତୁମ୍ଭ ବ୍ୟତିରେକେ ଅନ୍ୟ କୌଣସି ମନୁଷ୍ୟ ଏହା ଶ୍ରବଣ କରିବାର ଉପଯୁକ୍ତ ନୁହନ୍ତି । ଯାହାଙ୍କର ଅନ୍ତରାତ୍ମା ଅତିଶୟ ବ୍ୟଗ୍ର ସେ ବ୍ୟକ୍ତି ଏହା ସୁନ୍ଦରରୂପେ ହୃଦୟଙ୍ଗମ କରିପାରନ୍ତି ନାହିଁ । ୫୮ ।

ହେ କୁନ୍ତୀନନ୍ଦନ ! ଯାଗଯଜ୍ଞାଦି କ୍ରିୟାନିଷ୍ଠ ମହାତ୍ମାମାନେ ଦେବ-ଲୋକକୁ ଗମନ କରନ୍ତି । ସେହି ଯାଗଯଜ୍ଞାଦି କ୍ରିୟାର ଉଚ୍ଛେଦ ସାଧନ ପୂର୍ବକ ଜ୍ଞାନମାର୍ଗ ଅବଲମ୍ବନ କରି ମୁକ୍ତିପ୍ରାପ୍ତ ହେବାର ଦେବଗଣଙ୍କ ଅଭିପ୍ରେତ ନୁହେ । ୫୯ । ମନୁଷ୍ୟ, ଦେହ ପରିତ୍ୟାଗ ପୂର୍ବକ ଯାହାଙ୍କ ହେତୁରୁ ଅମୃତତ୍ତ୍ୱ ଲାଭକରି ସର୍ବଦା ସୁଖଭୋଗ କରନ୍ତି, ସେହି ସନାତନ ପରମବ୍ରହ୍ମ ପରମଗତି ।

ହେ ପାର୍ଥ ! ସ୍ୱଧର୍ମନିରତ ବ୍ରହ୍ମଲୋକପରାୟଣ ବ୍ରାହ୍ମଣ ଏବଂ ବହୁଶ୍ରୁତ କ୍ଷତ୍ରିୟମାନଙ୍କ କଥା ଅବା କି କହିବା । ପାପଯୋନିଜ ପୁରୁଷମାନେ ଏବଂ ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ରଗଣ ଏହି ମୋକ୍ଷଧର୍ମକୁ ଅବଲମ୍ବନ କଲେ ସେମାନେ ମଧ୍ୟ ପରମଗତି ପ୍ରାପ୍ତ ହୁଅନ୍ତି । ୬୨ । ଯାହା ହେତୁରୁ ସିଦ୍ଧଫଳ ମୋକ୍ଷ ଓ ଦୁଃଖର ନିବୃତ୍ତି ହୁଏ, ଆମ୍ଭେ ସେହି ମୋକ୍ଷଧର୍ମ ସାଧନର ଉପାୟ ଏବଂ ଏତାଦୃଶ ହେତୁଯୁକ୍ତ ବାକ୍ୟ କହିଲୁଁ ।

ହେ ଭରତଶ୍ରେଷ୍ଠ ! ଏହା ଭିନ୍ନ ଅନ୍ୟ କିଛି ପରମ ସୁଖକର ନାହିଁ । ଯେଉଁ ସମସ୍ତ ବୁଦ୍ଧିଯୁକ୍ତ, ଶ୍ରଦ୍ଧାନ୍ୱିତ ଓ ପରାକ୍ରାନ୍ତ ମନୁଷ୍ୟ ଏହି ଉପାୟଦ୍ୱାରା ଇହଲୋକର ସାରଭୂତ ଧନାଦିକୁ ତୃଣାଦି ସଦୃଶ ପରିତ୍ୟାଗ କରନ୍ତି, ସେ ଅଚିରାତ୍ ପରମଗତି ପ୍ରାପ୍ତ ହୁଅନ୍ତି । ୬୪ । ହେ ପାର୍ଥ ! ଆମ୍ଭେ ତୁମ୍ଭଙ୍କୁ ଏହିକଥା କହୁଅଛୁଁ ଯେ, ଏହା ଭିନ୍ନ ଅନ୍ୟ କିଛି ନାହିଁ । କାରଣ, ଯେଉଁ ବ୍ୟକ୍ତି ଛଅମାସ ନିତ୍ୟ ଏଥିରେ ନିଯୁକ୍ତ ହୁଅନ୍ତି, ଅର୍ଥାତ୍ ଯୋଗସାଧନ କରନ୍ତି, ସେ ଯୋଗର ଫଳ ପ୍ରାପ୍ତ ହୁଅନ୍ତି । ୬୬ ।

---

Digitized by srujanika@gmail.com

# ବିଂଶ ଅଧ୍ୟାୟ

ବାସୁଦେବ କହିଲେ—ହେ ପାର୍ଥ ! ଏହି ପ୍ରଶ୍ନ ବିଷୟରେ ପଣ୍ଡିତମାନେ ଦମ୍ପତି ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୧ । କୌଣସି ବ୍ରାହ୍ମଣୀ ଜ୍ଞାନବିଜ୍ଞାନପାରଗ ସ୍ୱୀୟ ସ୍ୱାମିଙ୍କୁ ବିଜନ ପ୍ରଦେଶରେ ସମାସୀନ ଦେଖି କହିଲେ—ହେ ସ୍ୱାମିନ୍ ! ଆପଣ ଅଗ୍ନିହୋତ୍ରାଦି କର୍ମବିହୀନ, ମାଦୃଶୀ ଭାର୍ଯ୍ୟା ପ୍ରତି ନିର୍ଦ୍ଦୟ ଏବଂ ମହାମୂଢ଼ ଅନନ୍ୟଗତିଭଳିଆ ଅନଭିଜ୍ଞ । ଅତଏବ ଆମ୍ଭେ ଭବାଦୃଶ ପତିଙ୍କୁ ଆଶ୍ରୟକରି କେଉଁ ଲୋକକୁ ଗମନ କରିବୁଁ ? ଆମ୍ଭେ ଏହିପରି ଶୁଣିଅଛୁଁ ଯେ, ଭାର୍ଯ୍ୟା ପତିକୃତ ଲୋକ ପ୍ରାପ୍ତ ହୁଅନ୍ତି । ଆମ୍ଭେ ଆପଣଙ୍କୁ ପତିରୂପେ ପ୍ରାପ୍ତ ହୋଇ କେଉଁ ଗତି ଲଭ କରିବୁଁ ?

ପ୍ରଶାନ୍ତଚିତ୍ତ ବ୍ରାହ୍ମଣ ଭାର୍ଯ୍ୟାଙ୍କର ଏତାଦୃଶ ବାକ୍ୟ ଶ୍ରବଣ ପୂର୍ବକ ହାସ୍ୟକରି ତାହାଙ୍କୁ କହିଲେ—ହେ ସୁଭଗେ ! ପୁଣ୍ୟଶୀଳେ ! ଆମ୍ଭେ ତୁମ୍ଭର ଏହି ବାକ୍ୟ ପ୍ରତି ଅସୂୟା କରୁନାହୁଁ । ୫ । ଦୀକ୍ଷା ଓ ବ୍ରତାଦି ଗ୍ରାହ୍ୟ, ଦୃଶ୍ୟ ଓ ସତ୍ୟ ଇତ୍ୟାଦି ଯେଉଁ ସମସ୍ତ କର୍ମ ବିଦ୍ୟମାନ ଅଛି, କର୍ମନିରତ ବ୍ୟକ୍ତିଗଣ ଏହାକୁ କର୍ତ୍ତବ୍ୟକର୍ମ ବୋଲି ବ୍ୟବହାର କରନ୍ତି । ୬ ।

ପରନ୍ତୁ ଜ୍ଞାନହୀନ ନରଗଣ ଇହଲୋକରେ ଶାରୀରିକ ଆୟାସସାଧ୍ୟ କର୍ମଦ୍ୱାରା କେବଳ ଲୋକମାନଙ୍କୁ ମୋହିତ କରନ୍ତି, ଏକ ମୁହୂର୍ତ୍ତ ନିମିତ୍ତ ନୈଷ୍କର୍ମ୍ୟ ଲଭ କରିପାରନ୍ତି ନାହିଁ । ୭ । କର୍ମ, ମନ ଓ ବାକ୍ୟଦ୍ୱାରା ସଞ୍ଚିତ ଶୁଭାଶୁଭ, ଜନ୍ମ, ସ୍ଥିତିଭଙ୍ଗ ଏବଂ ନାନା ଯୋନି ଭ୍ରମଣରୂପେ ସକଳ କର୍ମ ସର୍ବଭୂତରେ ବିଦ୍ୟମାନ ରହିଅଛି । ଦୃଶ୍ୟ ଦ୍ରବ୍ୟ ସୋମ ଓ ଆଜ୍ୟାଦିବିଶିଷ୍ଟ କର୍ମମାର୍ଗ ସମସ୍ତ ଦୁର୍ଜନ ମନୁଜଗଣକର୍ତ୍ତୃକ ବିନଷ୍ଟ ହୁଏ ବୋଲି ଆମ୍ଭେ ସେହି ସମସ୍ତ କର୍ମମାର୍ଗରୁ ବିରତ ହୋଇ ସ୍ୱୀୟ ଶରୀରସ୍ଥ ଭ୍ରୂ ଓ ଘ୍ରାଣର ମଧ୍ୟବର୍ତ୍ତୀ ଅବିମୁକ୍ତାଖ୍ୟ ସ୍ଥାନ ଦର୍ଶନ କରିଥାଉଁ, ଯେଉଁ ସ୍ଥାନରେ ସେହି ଅଦ୍ୱୈତ ବ୍ରହ୍ମ ବିଦ୍ୟମାନ ଅଛନ୍ତି ଏବଂ ଯେଉଁ ସ୍ଥାନରେ ଇଡ଼ା ଓ ପିଙ୍ଗଳା ନାଡ଼ୀ ଅବସ୍ଥାନ କରେ, ସେହି ସ୍ଥାନରେ ବୁଦ୍ଧିପ୍ରେରକ ଧୀରବାୟୁ ଭୂତଗଣଙ୍କୁ ଧାରଣ କରି ସର୍ବଦା ସଞ୍ଚାର କରୁଥାଏ । ୧୦ ।

Digitized by srujanika@gmail.com

ବ୍ରହ୍ମାଦିଯୁକ୍ତ ଯୋଗିଗଣ ଏବଂ ସୁବ୍ରତ ପ୍ରଶାନ୍ତଚିତ୍ତ ଜିତେନ୍ଦ୍ରିୟ ବୁଦ୍ଧିମାନ୍ ମନୀଷୀସମୂହ ଯେଉଁ ବ୍ରହ୍ମଙ୍କ ଉପାସନା କରନ୍ତି, ସେହି ଅକ୍ଷର ବ୍ରହ୍ମଙ୍କୁ ଘ୍ରାଣଦ୍ୱାରା ଆଘ୍ରାଣ କରାଯାଏ ନାହିଁ, ଜିହ୍ୱାଦ୍ୱାରା ଆସ୍ୱାଦନ କରାଯାଏ ନାହିଁ, ତ୍ୱକ୍‌ଦ୍ୱାରା ସ୍ପର୍ଶ କରାଯାଏ ନାହିଁ । ତାହାଙ୍କୁ କେବଳ ମନଦ୍ୱାରା ଜାଣିବାକୁ ହୁଏ । ୧୨ । ସେ ଦର୍ଶନ ଓ ଶ୍ରବଣେନ୍ଦ୍ରିୟର ଅତୀତ, ଗନ୍ଧ ରୂପ ରସ ସ୍ପର୍ଶ ଶବ୍ଦ ଲକ୍ଷଣବର୍ଜ୍ଜିତ । ୧୩ ।

ପ୍ରାଣ, ଅପାନ, ସମାନ, ବ୍ୟାନ ଓ ଉଦାନ ପ୍ରଭୃତିର ସୃଷ୍ଟିବ୍ୟାପାର-ମାନେ ଯାହାଙ୍କଠାରୁ ପ୍ରବର୍ତ୍ତିତ ହୋଇ ଯାହାଙ୍କଠାରେ ପ୍ରତିଷ୍ଠିତ ହୋଇ ଥାଆନ୍ତି, ସେହି ପ୍ରାଣାଦି ବାୟୁସମୂହ ତାହାଙ୍କଠାରୁ ପ୍ରବର୍ତ୍ତିତ ହୋଇ ତାହାଙ୍କଠାରେ ପ୍ରବେଶ କରନ୍ତି । ପ୍ରାଣ ଏବଂ ଅପାନ ଦୁହେଁ ସମାନ ଓ ବ୍ୟାନମଧ୍ୟରେ ବିଚରଣ କରନ୍ତି । ୧୫ । ସେହି ଅପାନ-ବାୟୁ ସହିତ ପ୍ରାଣ ପ୍ରସୁପ୍ତ ଅର୍ଥାତ୍ ଭ୍ରୂ ଓ ଘ୍ରାଣ ନିରୁଦ୍ଧ ହେଲେ ସମାନ ଓ ବ୍ୟାନ ବିଲୀନ ହୁଏ ଏବଂ ଉଦାନ, ଅପାନ ଓ ପ୍ରାଣମଧ୍ୟରେ ଅବସ୍ଥାନ କରି ଉଭୟଙ୍କୁ ବ୍ୟାପିଥାଏ ବୋଲି ପ୍ରାଣ ଏବଂ ଅପାନ ଶୟନ ପୁରୁଷଙ୍କୁ ପରିତ୍ୟାଗ କରି ପାରନ୍ତି ନାହିଁ । ୧୬ । ପ୍ରାଣାଦିର ଆୟତତ୍ୱ ଓ ଚେଷ୍ଟା ଜନକତ୍ୱ ହେତୁରୁ ପଣ୍ଡିତମାନେ ତାହାକୁ ଉଦାନ ବୋଲି କହନ୍ତି । ସେହି ଏକମାତ୍ର ଉଦାନରେ ପ୍ରାଣାଦିର ଅର୍ଥାତ୍ ଜୀବୋପାଧିମାନଙ୍କର ଅନ୍ତର୍ଭାବ ହୁଏ । ବ୍ରହ୍ମାଦି ବିପ୍ରଗଣ ମଦ୍‌ଗତ ପରମାତ୍ମ ପ୍ରାପକ ତପସ୍ୟାର ନିଷ୍ଠପୂ କରିଥାଆନ୍ତି । ୧୭ ।

ପରସ୍ପର ଭକ୍ଷକ ଦେହଗତ ସେହି ପ୍ରାଣାଦି ବାୟୁସମୂହ ମଧ୍ୟରେ ସମାନ ବାୟୁର ଆବାସ ସ୍ଥାନ, ନାଭିମଣ୍ଡଳରେ ବୈଶ୍ୱାନର ନାମକ ଅଗ୍ନି ଅବସ୍ଥିତ କରନ୍ତି । ସେହି ଅଗ୍ନି ସପ୍ତଧା ଭିନ୍ନ ହୋଇ ତନ୍ମଧ୍ୟରେ ପ୍ରକାଶିତ ହୋଇଥାଆନ୍ତି । ୧୮ । ଘ୍ରାଣ, ଜିହ୍ୱା, ଚକ୍ଷୁ, ତ୍ୱକ୍, ଶ୍ରୋତ୍ର, ମନ ଓ ବୁଦ୍ଧି ଏହି ସାତଗୋଟି ସେହି ବୈଶ୍ୱାନର ଅଗ୍ନିଙ୍କ ଜିହ୍ୱା । ୧୯ । ଘ୍ରେୟ, ଦୃଶ୍ୟ, ପେୟ, ସ୍ପୃଶ୍ୟ ଶ୍ରାବ୍ୟ, ମନ୍ତବ୍ୟ ଓ ବୋଦ୍ଧବ୍ୟ ଏହି ସାତଗୋଟି ପରମ ଋତ୍ୱିକ୍ । ୨୧ ।

Digitized by srujanika@gmail.com

ହେ ସୁଭଗେ ! ଘ୍ରେୟ, ପେୟ, ଦୃଶ୍ୟ, ସ୍ପୃଶ୍ୟ, ଶ୍ରାବ୍ୟ, ମନ୍ତବ୍ୟ ଓ ବୋଦ୍ଧବ୍ୟ ଏହି ସାତଗୋଟି ବିଷୟକୁ ସର୍ବଦା ହବି ବୋଲି ବୋଧକର । ପୂର୍ବୋକ୍ତ ସପ୍ତବିଧ ବିଦ୍ୱାନ୍ ହୋତୃଗଣ, ସପ୍ତବିଧ ବ୍ରହ୍ମାଗ୍ନିରେ ଅର୍ଥାତ୍ ଘ୍ରାଣାଦ୍ୟଭିମାନୀ ଦେବତାମାନଙ୍କଠାରେ ସପ୍ତପ୍ରକାର ହବି ପ୍ରକ୍ଷେପ କରି ପୃଥିବ୍ୟାଦି ଉତ୍ପାଦନ କରନ୍ତି । ୨୩ ।

ପୃଥିବୀ, ବାୟୁ, ଆକାଶ, ସଲିଳ, ଅନଳ, ମନ ଓ ବୁଦ୍ଧି ଏହି ସାତଗୋଟି ଯୋନି ବୋଲି କୀର୍ତ୍ତିତ ହୋଇଅଛି । ୨୪ । ହବିର୍ଭୂତ ଗୁଣ ଘ୍ରେୟାଦି ସମସ୍ତ ବିଷୟ, ଅଗ୍ନିଜ ଗୁଣ ଗନ୍ଧାଦି, ଜ୍ଞାନରୂପ ବୁଦ୍ଧିବୃତ୍ତିରେ ପ୍ରବିଷ୍ଟ ହୋଇ ସଂସ୍କାରରୂପରେ ଚିତ୍ତମଧ୍ୟରେ ଅବସ୍ଥାନ କରି ସ୍ୱୀୟ ଯୋନିଭୂତ ଘ୍ରାଣାଦିରେ ଉତ୍ପନ୍ନ ହୁଏ ଏବଂ ପ୍ରଳୟ କାଳ ଉପସ୍ଥିତ ହେଲେ, ଅନ୍ତର୍ମଧ୍ୟରେ ଲୀନ ହୁଏ । ତଦନନ୍ତର ସେହି ଅନ୍ତର୍ବାସରୁ ଗନ୍ଧ, ଗନ୍ଧରୁ ରସ, ରସରୁ ରୂପ, ରୂପରୁ ସ୍ପର୍ଶ, ସ୍ପର୍ଶରୁ ଶବ୍ଦ, ଶବ୍ଦରୁ ମନ ଏବଂ ମନରୁ ବୁଦ୍ଧି ଉତ୍ପନ୍ନ ହୁଏ ।

ପଣ୍ଡିତଗଣ ଏହିପରି ସପ୍ତବିଧ ଜନ୍ମ ଅବଗତ ହୁଅନ୍ତି । ପୁରାତନ ପଣ୍ଡିତଗଣ ଏହିପ୍ରକାରରେ ଦେହରୁ ଘ୍ରାଣାଦିର ରୂପ ଗ୍ରହଣ କରନ୍ତି । ସକଳ ଲୋକ ପ୍ରମାଣ, ପ୍ରମେୟ ଓ ପ୍ରମାତା ଏହି ତ୍ରିବିଧ ପୂର୍ଣ୍ଣାହୁତି ଅର୍ଥାତ୍ ପୂର୍ଣ୍ଣପଙ୍କର ଜ୍ଞାପକ ଆହ୍ୱାନ ଦ୍ୱାରା ପରିପୂର୍ଣ୍ଣ ହୋଇ ନିଜ ତେଜଦ୍ୱାରା ପରିପୂର୍ଣ୍ଣ ହୋଇ ଥାଆନ୍ତି । ୨୮ ।

## ଏକବିଂଶତିତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ଭାମିନି ! ବିବେଚମାୟ ଦୃଷ୍ଟି ସୃଷ୍ଟି ବିଷୟରେ ପଣ୍ଡିତମାନେ ଦଶବିଧ ହୋତାଗଣଙ୍କ ବିଧାନ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି; ତୁମ୍ଭେ ଶ୍ରବଣ କର । ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା, ନାସିକା, ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ଏହି ଦଶଗୋଟି ହୋତା । ୨ । ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ବାକ୍ୟ, କ୍ରିୟା, ଗତି, ରେତ, ମୂତ୍ର ଓ ପୁରୀଷ-

Digitized by srujanika@gmail.com

ତ୍ୟାଗ ଏହି ଦଶଗୋଟି ହବି । ୩ । ଦିକ୍, ବାୟୁ, ରବି, ଚନ୍ଦ୍ର, ପୃଥିବୀ, ଅଗ୍ନି, ବିଷ୍ଣୁ, ଇନ୍ଦ୍ର, ପ୍ରଜାପତି ଓ ମିତ୍ର ଏହି ଦଶଗୋଟି ଅଗ୍ନି । ୪ ।

ହେ ଭାମିନି ! ପୂର୍ବୋକ୍ତ ଶ୍ରୋତ୍ରାଦି ଦଶ ଇନ୍ଦ୍ରିୟ ରୂପ ହୋତାଗଣ, ଇନ୍ଦ୍ରିୟଗଣଙ୍କ ଅଧିଷ୍ଠାତ୍ରୀ ଦେବତା ଦିକ୍ ପ୍ରଭୃତି ରୂପ ଦଶବିଧ ଅନଳରେ ହବନୀୟ ଶବ୍ଦାଦି ଦଶବିଧ ବିଷୟ ରୂପ ସମିଧସମୂହକୁ ଆହୁତି ପ୍ରଦାନ କରନ୍ତି । ୫ । ସେହି ଯଜ୍ଞରେ ଚିତ୍ତ ରୂପ ସ୍ରୁବଦ୍ୱାରା ଆଜ୍ୟରୂପ ଇନ୍ଦ୍ରିୟାର୍ଥ-ମାନଙ୍କୁ ଆହୁତି ପ୍ରଦାନ କରି ଦକ୍ଷିଣା ନିମିତ୍ତ ଅଗ୍ନିରେ ଚିତ୍ତରୂପ ସ୍ରୁବ ଓ ସୁକୃତ ଦୁଷ୍କୃତ ରୂପ ବିତ୍ତ ପ୍ରକ୍ଷେପ କଲେ କେବଳ ପବିତ୍ର ଉତ୍ତମ ଜ୍ଞାନ ଅବଶିଷ୍ଟ ଥାଏ । ଆମ୍ଭେମାନେ ଏହିପରି ଶୁଣିଅଛୁଁ ଯେ, ଏହି ବିଶ୍ୱ ସେହି ଜ୍ଞାନରୁ ପୃଥକ୍‌ଭୂତ ହୋଇ ଅବସ୍ଥିତି କରିଅଛି । ସମସ୍ତ ଜ୍ଞେୟ ବସ୍ତୁ ଚିତ୍ତ ଜ୍ଞାନ ସେହି ଚିତ୍ତକୁ କେବଳ ପ୍ରକାଶ କରେ, ତହିଁରେ ସଂସକ୍ତ ହୁଏ ନାହିଁ ।

ଜୀବ ରେତୋଜନ୍ୟ ସ୍ଥୂଳ ଶରୀରଧାରୀ ଷାଟ୍‌କୌଷିକ ଶରୀର ମଧ୍ୟରେ ସୂକ୍ଷ୍ମ ଶରୀରାଭିମାନୀ ଜୀବ ଗାର୍ହପତ୍ୟ ଏବଂ ତହିଁରୁ ଅନ୍ୟ ମନ ଆହବନୀୟ ନାମରେ ବିଖ୍ୟାତ ହୁଏ । ତହିଁରେ ହବି ପ୍ରକ୍ଷିପ୍ତ ହୋଇଥାଏ । ତହିଁରୁ ପ୍ରଥମତଃ ବାଚସ୍ପତି ବେଦ ଉତ୍ପନ୍ନ ହୁଏ । ତଦନନ୍ତର ମନ ଉତ୍ପନ୍ନ ହୋଇ ସେହି ବାଚସ୍ପତିଙ୍କୁ ପର୍ଯ୍ୟବେକ୍ଷଣ କରେ । ତଦନନ୍ତର ନୀଳ ପୀତାଦି ବର୍ଣ୍ଣବିହୀନ ରୂପ ଅର୍ଥାତ୍ ପ୍ରାଣବାୟୁ ଉତ୍ପନ୍ନ ହୋଇ ମନର ଅନୁଗମନ କରେ । ୯ ।

ବ୍ରାହ୍ମଣୀ କହିଲେ—ବାକ୍ୟ ଯଦି ମନଦ୍ୱାରା ଚିନ୍ତିତ ହେଲେ କଥିତ ହୁଏ, ତେବେ କେଉଁ ନିମିତ୍ତ ପ୍ରଥମତଃ ବାକ୍ୟ, ପଶ୍ଚାତ୍ ମନ ଉତ୍ପନ୍ନ ହେଲା ? କେଉଁ ପ୍ରମାଣାନୁସାରେ ପ୍ରାଣ ମନର ଅନୁଗାମୀ ହୁଏ ଏବଂ ସୁଷୁପ୍ତି ସମୟରେ ଉଦ୍ରିକ୍ତ ହୋଇ ବିଷୟ ଭୋଗ ନକରେ ଓ କିଏ ଅବା ତାହାର ଜ୍ଞାନଶକ୍ତିକି ଅପହରଣ କରେ ? ୧୦ ।

ବ୍ରାହ୍ମଣ କହିଲେ—ଅପାନବାୟୁ ପ୍ରାଣର ପ୍ରଭୁ ହୋଇ ସେହି ପ୍ରାଣକୁ ମନର ଅନୁଗାମୀ କରେ ବୋଲି, ପ୍ରାଣ ମନକୁ ଅପେକ୍ଷା କରେ । ଏହି ନିମିତ୍ତ ପଣ୍ଡିତଗଣ ପ୍ରାଣର ସେହି ଅପାନତା ଗତିକୁ ମନର ଗତି ବୋଲି କହନ୍ତି । ତୁମ୍ଭେ ଆମ୍ଭଙ୍କୁ ବାକ୍ୟ ଓ ମନ ବିଷୟରେ ଯେଉଁ ପ୍ରଶ୍ନକଲ, ଆମ୍ଭେ ତୁମ୍ଭଙ୍କୁ ସେହି ବାକ୍ୟ ଓ ମନର ସମ୍ବାଦ କହୁଅଛୁଁ, ଶ୍ରବଣ କର । ୧୩ ।

Digitized by srujanika@gmail.com

ଏକଦା ବାକ୍ୟ ଓ ମନ ଉଭୟେ ଭୂତାତ୍ମା ଜୀବଙ୍କ ନିକଟକୁ ଗମନ କରି ତାହାଙ୍କୁ କହିଲେ—ହେ ବିଭୋ ! ଆମ୍ଭ ଦୁହିଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ? ଆପଣ ତାହା କହି ଆମ୍ଭ ଦୁହିଙ୍କ ସଂଶୟ ଛେଦନ କରିବା ହେଉନ୍ତୁ । ୧୪ ।

ଭଗବାନ୍ ମନ ବାଗ୍‌ଦେବୀ ସରସ୍ୱତୀଙ୍କୁ କହିଲେ—ଆମ୍ଭେ ଶ୍ରେଷ୍ଠ । ତଦନନ୍ତର ବାଗ୍‌ଦେବୀ ତାହାଙ୍କୁ କହିଲେ ଯେ, ତୁମ୍ଭେ ଯାହା ଚିନ୍ତାକର, ଆମ୍ଭେ ତାହା ପ୍ରକାଶ କରୁଁ । ସୁତରାଂ ଆମ୍ଭେ ତୁମ୍ଭର କାମଧୂକ୍ । ଅତଏବ ଆମ୍ଭେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ । ୧୫ । ବାକ୍ୟ ଏବଂ ମନ ଏହିରୂପେ ପରସ୍ପର ବିରୋଧ କରୁଥିବା ସମୟରେ ମନ ବ୍ରାହ୍ମଣରୂପୀ ହୋଇ ଉଭୟଙ୍କର ବିଷୟ ବିଭାଗଦ୍ୱାରା ସମତା ସମ୍ପାଦନ କରି କହିଲେ ।

ବ୍ରାହ୍ମଣରୂପୀ ମନ କହିଲେ—ସ୍ଥାବର ବାହ୍ୟେନ୍ଦ୍ରିୟଗ୍ରାହ୍ୟ ବିଷୟ ଏବଂ ଜଙ୍ଗମ ଅତୀନ୍ଦ୍ରିୟ ସ୍ୱର୍ଗାଦି ବିଷୟ, ଉଭୟଙ୍କୁ ଆମ୍ଭ ମନ ବୋଲି ଜାଣ । ପରନ୍ତୁ ସ୍ଥାବର ଆମ୍ଭ ନିକଟରେ ଓ ଜଙ୍ଗମ ତୁମ୍ଭ ନିକଟରେ ବିଦ୍ୟମାନ ଥାଏ । ଅପିଚ ମନ୍ତ୍ର ବର୍ଣ୍ଣ ଏବଂ ସ୍ୱରଦ୍ୱାରା ପ୍ରକାଶିତ ସେହି ଜଙ୍ଗମ ହୋଇଥାଏ । ତନ୍ନିମିତ୍ତ ତୁମ୍ଭେ ମନ ଅପେକ୍ଷା ଶ୍ରେଷ୍ଠ ଅଟ । ୧୭ ।

ହେ ଶୋଭନେ ! ଯେତେବେଳେ ବାଗ୍‌ଦେବୀ ସ୍ୱୟଂ କାମଧୁକ୍ ହୋଇ ମନର ନିକଟକୁ ଆଗମନ କରନ୍ତି, ତେତେବେଳେ ମନ ଉଚ୍ଛ୍ୱାସ ପ୍ରାପ୍ତ ହୋଇ ବାକ୍ୟ କହନ୍ତି ।

ହେ ମହାଭାଗେ ! ବାଗ୍‌ଦେବୀ ପ୍ରାଣକର୍ତ୍ତୃକ ପ୍ରେରିତ ହୋଇ ମନୋବୃତ୍ତି-ବିଶେଷ ପ୍ରାଣ ଏବଂ ଅପାନର ଅନ୍ତରେ ନିତ୍ୟ ଅବସ୍ଥାନ କରିଥାଆନ୍ତି । ପରଂତୁ ଯେତେବେଳେ ସେ ପ୍ରାଣର ସାହାଯ୍ୟ ବ୍ୟତିରେକେ ଅତ୍ୟନ୍ତ ନୀଚ ହୁଅନ୍ତି, ତେତେବେଳେ ସେ ପ୍ରଜାପତିଙ୍କ ନିକଟରେ ପ୍ରବିଷ୍ଟ ହୋଇ, "ଭଗବନ୍ ! ଆପଣ ଆମ୍ଭଠାରେ ପ୍ରସନ୍ନ ହେଉନ୍ତୁ", ଏହି କଥା କହୁଥାଆନ୍ତି । ତଦନନ୍ତର ପ୍ରାଣ ବାକ୍ୟକୁ ଆପ୍ୟାୟିତ କରି ପ୍ରାଦୁର୍ଭୂତ ହେଲରୁ ବାଗ୍‌ଦେବୀ ପ୍ରାଣରୁ ଉଚ୍ଛ୍ୱାସ ପ୍ରାପ୍ତ ହୋଇ ମୌନାବଲମ୍ବନ କରିଥାଆନ୍ତି । ୨୦ ।

ଘୋଷିଣୀ ଓ ଅଘୋଷା ବାକ୍ ନିତ୍ୟ ପ୍ରବର୍ତ୍ତିତ ହୁଅନ୍ତି । ତନ୍ମଧ୍ୟରେ ଘୋଷିଣୀ ବାଗ୍‌ଦେବୀ ପ୍ରାଣର ଆପ୍ୟାୟନକୁ ଅପେକ୍ଷା କରନ୍ତି । ହଂସ

Digitized by srujanika@gmail.com

ମନ୍ତ୍ର ସ୍ୱରୂପା ଅଘୋଷା ବାଗ୍‌ଦେବୀ ପ୍ରାଣର ଆପ୍ୟାୟନ ଅପେକ୍ଷା କରନ୍ତି ନାହିଁ ବୋଲି ଘୋଷିଣୀ ଅପେକ୍ଷା ଶ୍ରେଷ୍ଠ । ଧେନୁ ଯେଉଁପରି ଉତ୍ତମ ରସ ପ୍ରସ୍ରବଣ କରନ୍ତି, ତଦ୍‌ବତ୍ ଉତ୍ତମ ଅକ୍ଷରଶାଳିନୀ ବ୍ରହ୍ମବାଦିନୀ ଘୋଷିଣୀ ବାଗ୍‌ଦେବୀ ସର୍ବଦା ଶାଶ୍ୱତ ମୋକ୍ଷ ଓ ସମସ୍ତ ଅର୍ଥ ପ୍ରକଟନ କରନ୍ତି ।

ହେ ଶୁଚିସ୍ମିତେ ! ଗୋରୂପା ବାଗ୍‌ଦେବୀ ଦିବ୍ୟ ଦେବତାଦି ଆକର୍ଷଣ ଏବଂ ଅଦିବ୍ୟ ବ୍ୟବହାରାଦି ପ୍ରକଟନ ରୂପ ଉଭୟବିଧ ପ୍ରଭାବଦ୍ୱାରା ପ୍ରକାଶିତା ହୁଅନ୍ତି । ସୂକ୍ଷ୍ମ ଓ ସ୍ୟନ୍ଦମାନ ଏହି ଉଭୟବିଧ ବାକ୍ୟର ଏହି ମାତ୍ର ଅନ୍ତର ବିବେଚନା କରିବାକୁ ହେବ । ୨୩ ।

ବ୍ରାହ୍ମଣୀ କହିଲେ—ବାକ୍ୟ ଉତ୍ପନ୍ନ ନହେଲେ ବିବକ୍ଷାକର୍ତ୍ତୃକ ପ୍ରେର୍ଯ୍ୟମାଣା ବାଙ୍ମୟୀ ସରସ୍ୱତୀ ଦେବୀ ତେତେବେଳେ କେଉଁପରି ଅବସ୍ଥାରେ ଅବସ୍ଥିତି କରନ୍ତି ? ୨୪ ।

ବ୍ରାହ୍ମଣ କହିଲେ—ସେହି ବାଗ୍‌ଦେବୀ ଶରୀର ମଧ୍ୟରେ ପ୍ରାଣବାୟୁର ସହଯୋଗରେ ପ୍ରାଦୁର୍ଭୂତ ହୋଇ ପ୍ରାଣରୁ ଅପାନକୁ ପ୍ରାପ୍ତ ହୁଅନ୍ତି । ତଦନନ୍ତର ଉଦାନଭୂତ ହୋଇ ଦେହ ବିସର୍ଜନ ପୂର୍ବକ ବ୍ୟାନ ସହିତ ସମସ୍ତ ଆକାଶ ଆବରଣ କରିଥାଆନ୍ତି । ୨୫ । ତଦନନ୍ତର ସେ ସମାନରେ ପ୍ରତିଷ୍ଠିତା ହୋଇ ପୂର୍ବବତ୍ ସମସ୍ତଙ୍କର ବିଦିତା ହୁଅନ୍ତି । ଉକ୍ତ କାରଣ ବଶତଃ ସ୍ଥାବରତ୍ୱ ହେତୁରୁ ମନ ବିଶିଷ୍ଟ ଏବଂ ଜଙ୍ଗମତ୍ୱ ହେତୁରୁ ବାଗ୍‌ଦେବୀ ବିଶିଷ୍ଟ ହୁଅନ୍ତି । ୨୬ ।

---

## ଦ୍ୱାବିଂଶତିତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ସୁଭଗେ ! ଏହି ବାକ୍ୟ ଏବଂ ମନର ସମାନ ପ୍ରଧାନତା ବିଷୟରେ ପଣ୍ଡିତଗଣ ଯେଉଁପରି ସପ୍ତହୋତାଙ୍କ ବିଧାନ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି, ତାହା ଶ୍ରବଣ କର । ୧ ।

ଘ୍ରାଣ, ଚକ୍ଷୁ, ଜିହ୍ୱା, ତ୍ୱକ୍, ଶ୍ରୋତ୍ର, ମନ ଓ ବୁଦ୍ଧି ଏହି ସାତଗୋଟି ହୋତା । ଏହିମାନେ ଭିନ୍ନ ଭିନ୍ନ ସ୍ଥାନରେ ପୃଥକ୍ ପୃଥକ୍ ଅବସ୍ଥାନ କରନ୍ତି ।

Digitized by srujanika@gmail.com

ହେ ଶୋଭନେ ! ଏହି ସପ୍ତହୋତା ସୂକ୍ଷ୍ମ ଅବକାଶରେ ଅବସ୍ଥାନ କରି ପରସ୍ପର ପରସ୍ପରଙ୍କୁ ଦର୍ଶନ କରନ୍ତି ନାହିଁ । ତୁମ୍ଭେ ଏହି ସ୍ୱଭାବସିଦ୍ଧ ସପ୍ତହୋତାଙ୍କୁ ବିଶେଷରୂପେ ଅବଗତ ହୁଅ । ୩ ।

ବ୍ରାହ୍ମଣୀ କହିଲେ—ଭଗବନ୍ ! ସେହି ସପ୍ତହୋତା ସୂକ୍ଷ୍ମ ଅବକାଶରେ ଅବସ୍ଥାନ କରି କି ନିମିତ୍ତ ପରସ୍ପର ପରସ୍ପରଙ୍କୁ ଦର୍ଶନ କରନ୍ତି ନାହିଁ, ଏବଂ ସେମାନଙ୍କର ସ୍ୱଭାବ କୀଦୃଶ ଅଟେ, ଏହା ଆପଣ ଆମ୍ଭଙ୍କୁ ବିସ୍ତାର କରି କହିବା ହେଉନ୍ତୁ । ୪ ।

ବ୍ରାହ୍ମଣ କହିଲେ—ଘ୍ରାଣାଦି ସପ୍ତହୋତାମାନଙ୍କର ନିଜ ନିଜ ଗୁଣ-ଗ୍ରହଣ ବିଷୟରେ ଅଭିଜ୍ଞତା ଏବଂ ପରକୀୟ ଗୁଣଗ୍ରହଣ ବିଷୟରେ ଅନଭିଜ୍ଞତା ଥିବାରୁ ଏମାନେ ପରସ୍ପର ପରସ୍ପରଙ୍କ ଗୁଣ କଦାପି ଅବଗତ ହୋଇପାରନ୍ତି ନାହିଁ । ୫ ।

ଜିହ୍ୱା, ଚକ୍ଷୁ, ଶ୍ରୋତ୍ର, ତ୍ୱକ୍, ମନ ଏବଂ ବୁଦ୍ଧି ଏମାନେ ଗନ୍ଧ ଗ୍ରହଣ କରନ୍ତି ନାହିଁ, କେବଳ ଘ୍ରାଣ ସେହି ସମସ୍ତ ଗନ୍ଧ ଗ୍ରହଣ କରେ । ୬ । ଘ୍ରାଣ, ଚକ୍ଷୁ, ଶ୍ରୋତ୍ର, ତ୍ୱକ୍, ମନ ଏବଂ ବୁଦ୍ଧି ଏହିମାନେ ସମସ୍ତ ପ୍ରକାର ରସ ଗ୍ରହଣ କରନ୍ତି ନାହିଁ । କେବଳ ଜିହ୍ୱା ସେହି ସମସ୍ତ ରସ ଅଧିଗତ ହୁଏ । ୭ । ଘ୍ରାଣ, ଜିହ୍ୱା, ଶ୍ରୋତ୍ର, ତ୍ୱକ୍, ମନ ଓ ବୁଦ୍ଧି ଏହିମାନେ ରୂପମାନଙ୍କୁ ଗ୍ରହଣ କରନ୍ତି ନାହିଁ । କେବଳ ଚକ୍ଷୁ ସେହି ରୂପ-ସମୂହକୁ ଗ୍ରହଣ କରେ । ୮ । ଘ୍ରାଣ, ଜିହ୍ୱା, ଚକ୍ଷୁ, ଶ୍ରୋତ୍ର, ମନ ଓ ବୁଦ୍ଧି ଏହିମାନେ ସ୍ପର୍ଶଗୁଣକୁ ଗ୍ରହଣ କରନ୍ତି ନାହିଁ । ତ୍ୱକ୍ କେବଳ ସ୍ପର୍ଶଗୁଣ ଗ୍ରହଣ କରେ । ୯ । ଘ୍ରାଣ, ଜିହ୍ୱା, ଚକ୍ଷୁ, ତ୍ୱକ୍, ମନ ଓ ବୁଦ୍ଧି ଏହିମାନେ ଶବ୍ଦଗୁଣ ଗ୍ରହଣ କରନ୍ତି ନାହିଁ । ଶ୍ରୋତ୍ର କେବଳ ସେହି ଶବ୍ଦଗୁଣ ଗ୍ରହଣ କରେ । ୧୦ । ଘ୍ରାଣ, ଜିହ୍ୱା, ଚକ୍ଷୁ, ତ୍ୱକ୍, ଶ୍ରୋତ୍ର ଏବଂ ବୁଦ୍ଧି ଏହିମାନେ ସଂଶୟଗୁଣକୁ ଗ୍ରହଣ କରନ୍ତି ନାହିଁ । ମନ କେବଳ ସଂଶୟଗୁଣକୁ ଗ୍ରହଣ କରେ । ୧୧ । ଘ୍ରାଣ, ଜିହ୍ୱା, ଚକ୍ଷୁ, ତ୍ୱକ୍, ଶ୍ରୋତ୍ର ଏବଂ ମନ ଏମାନେ ନିଶ୍ଚୟ ଗୁଣକୁ ଗ୍ରହଣ କରିପାରନ୍ତି ନାହିଁ । ବୁଦ୍ଧି କେବଳ ନିଶ୍ଚୟ ଗୁଣକୁ ଗ୍ରହଣ କରେ । ୧୨ ।

ହେ ଭାମିନି ! ଏହି ବିଷୟରେ ପଣ୍ଡିତଗଣ ମନ ଏବଂ ଇନ୍ଦ୍ରିୟଗଣଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି, ଶ୍ରବଣ କର । ୧୩ ।

Digitized by srujanika@gmail.com

ମନ କହିଲେ—ମଦ୍‌ଭିନ୍ନ ଘ୍ରାଣ ଗନ୍ଧକୁ, ଜିହ୍ଵା ରସକୁ, ଚକ୍ଷୁ ରୂପକୁ, ତ୍ଵକ୍ ସ୍ପର୍ଶକୁ, ଶ୍ରୋତ୍ର ଶବ୍ଦକୁ ଗ୍ରହଣ କରିବା ନିମିତ୍ତ କଦାପି ସମର୍ଥ ହୁଅନ୍ତି ନାହିଁ । ଅତଏବ ସର୍ବଭୂତ ମଧ୍ୟରେ ଆମ୍ଭେ କେବଳ ପ୍ରଧାନ ଏବଂ ନିତ୍ୟ ।୧୫। ଇନ୍ଦ୍ରିୟଗଣ ମତ୍‌କର୍ତ୍ତୃକ ବିହୀନ ହେଲେ, ଶୂନ୍ୟ ଗୃହ ଓ ଶାନ୍ତକିରଣ ଅନଳ ସଦୃଶ ପ୍ରକାଶ ପାଆନ୍ତି ନାହିଁ ।୧୬। ଜନ୍ତୁଗଣ ମଦ୍‌ବିରହିତ ହେଲେ, ଯତମାନ ଇନ୍ଦ୍ରିୟଗଣଦ୍ଵାରା ଆର୍ଦ୍ର ଏବଂ ଶୁଷ୍କକାଷ୍ଠ ସଦୃଶ ଗୁଣ ଓ ଅର୍ଥସମୂହକୁ ଗ୍ରହଣ କରି ପାରନ୍ତି ନାହିଁ ।୧୭।

ଇନ୍ଦ୍ରିୟଗଣ କହିଲେ—ହେ ଭଦ୍ରେ ! ତୁମ୍ଭେ ଯଦି ଆମ୍ଭମାନଙ୍କ ସାହାଯ୍ୟ ବ୍ୟତିରେକେ ସମସ୍ତ ବିଷୟ ଭୋଗ କରିବାକୁ ସମର୍ଥ ହୁଅନ୍ତ, ତେବେ ତୁମ୍ଭେ ଯାହା କହିଲ ତାହା ଯଥାର୍ଥ ବୋଲି ଆମ୍ଭେମାନେ ସ୍ଵୀକାର କରନ୍ତୁ । ଆମ୍ଭମାନଙ୍କ ଉପରେ ତୁମ୍ଭର ଯଦି ସମ୍ପୂର୍ଣ୍ଣ ପ୍ରଭୁତ୍ଵ ଥାଆନ୍ତା, ତେବେ ତୁମ୍ଭେ ଘ୍ରାଣଦ୍ଵାରା ରୂପଦର୍ଶନ, ଚକ୍ଷୁଦ୍ଵାରା ରସ ଆସ୍ଵାଦନ, ଶ୍ରୋତ୍ରଦ୍ଵାରା ଗନ୍ଧଗ୍ରହଣ, ଜିହ୍ଵାଦ୍ଵାରା ସ୍ପର୍ଶ ଅନୁଭବ, ତ୍ଵକ୍‌ଦ୍ଵାରା ଶବ୍ଦଗ୍ରହଣ ଏବଂ ବୁଦ୍ଧିଦ୍ଵାରା ସ୍ପର୍ଶ ଅନୁଭବ କରିବାକୁ ଯତ୍ନବାନ୍ ହୁଅନ୍ତ । ବଳବାନ୍ ବ୍ୟକ୍ତିଗଣ କଦାପି ନିୟମର ବଶୀଭୂତ ହୁଅନ୍ତି ନାହିଁ । ଦୁର୍ବଳ ବ୍ୟକ୍ତିମାନେ ନିୟମର ବଶୀଭୂତ ହୋଇଥାଆନ୍ତି । ତୁମ୍ଭେ ଯଦି ଆପଣାକୁ ବଳବାନ୍ ବୋଲି ବୋଧ କରୁଅଛ, ତେବେ ସପ୍ରତି ଅପୂର୍ବ ଭୋଗସମୂହ ସମ୍ଭୋଗ କରିବାର ତୁମ୍ଭର ଉଚିତ । ଆମ୍ଭମାନଙ୍କ ଉଚ୍ଛିଷ୍ଟ ଭୋଗ କରିବାର ତୁମ୍ଭର କଦାପି ଉଚିତ ନୁହେ । ଶିଷ୍ୟ ଯେଉଁପରି ଗୁରୁ ପ୍ରଦର୍ଶିତ ବେଦାର୍ଥର ଅନୁଗମନ କରନ୍ତି, ତଦ୍‌ବତ୍ ତୁମ୍ଭେ ନିଦ୍ରାବସ୍ଥାରେ ହେଉ ଅଥବା ଜାଗରଣ ଅବସ୍ଥାରେ ହେଉ ଆମ୍ଭମାନଙ୍କ ପ୍ରଦର୍ଶିତ ଅତୀତ ଓ ଅନାଗତ ବିଷୟବୃନ୍ଦ ସମ୍ଭୋଗ କରି ଥାଅ ।୨୫।

ବିମନାୟମାନ ସାମାନ୍ୟବୁଦ୍ଧି ଜୀବଗଣ କେବଳ ଆମ୍ଭମାନଙ୍କ ପ୍ରଭାବରେ ପ୍ରାଣ ଧାରଣ କରିଥାଆନ୍ତି । ଜନ୍ତୁଗଣ ସଂକଳ୍ପ ହେତୁରୁ ବହୁଳ ସ୍ଵପ୍ନ ମନନ ପୂର୍ବକ ତାହାର ଉପାସନା କରି ବିଭୁକ୍ଷାରେ ପୀଡ଼୍ୟମାନ ହୋଇ ବିଷୟରେ ଧାବମାନ ହୁଅନ୍ତି ।୨୭। ପ୍ରାଣିଗଣଦ୍ଵାରା ସ୍ଥାନଗୃହ ସଦୃଶ ବିଷୟରେ ନିବଦ୍ଧ ସଂକଳ୍ପ ଭୋଗସମୂହରେ ପ୍ରବେଶ କରି ଦାରୁକ୍ଷୟ ହେଲେ, ପ୍ରଜ୍ଵଳିତ ଅନଳ ଯେଉଁପରି ପ୍ରଶାନ୍ତ ହୁଏ, ତଦ୍‌ବତ୍ ପ୍ରାଣକ୍ଷୟ ହେଲେ, ଶାନ୍ତିପ୍ରାପ୍ତ

Digitized by srujanika@gmail.com

ହୁଅନ୍ତି । ୨୮ । ଇଚ୍ଛାନୁସାରେ ଆମ୍ଭମାନଙ୍କର ସ୍ୱୀୟ ସ୍ୱୀୟ ଗୁଣରେ ସଙ୍ଗ ହୁଏ । ପରନ୍ତୁ ପରସ୍ପର ଗୁଣର ଉପଲବ୍ଧି ହୁଏ ନାହିଁ । ଆମ୍ଭମାନଙ୍କ ବ୍ୟତିରେକେ ତୁମ୍ଭର ଉପଲବ୍ଧି ହୁଏ ନାହିଁ ଏବଂ ତୁମ୍ଭ ବ୍ୟତିରେକେ ଆମ୍ଭମାନଙ୍କର ହର୍ଷ ଉତ୍ପାଦନ ହୁଏ ନାହିଁ । ୨୯ ।



# ତ୍ରୟୋବିଂଶତିତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ସୁଭଗେ ! ଏହି ବିଷୟରେ ପଣ୍ଡିତଗଣ ପଞ୍ଚହୋତାମାନଙ୍କର ଯାଦୃଶ ବିଧାନ, ତତ୍‌ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୧ । ବୁଧଗଣ ପ୍ରାଣ, ଅପାନ, ଉଦାନ, ସମାନ ଏବଂ ବ୍ୟାନ ଏହି ପଞ୍ଚବାୟୁମାନଙ୍କୁ ପାଞ୍ଚଗୋଟି ହୋତା ବୋଲି ଜ୍ଞାନ କରନ୍ତି ଏବଂ ଏହିମାନଙ୍କର ପରମତତ୍ତ୍ୱ ଅବଗତ ହୁଅନ୍ତି । ୨ ।

ବ୍ରାହ୍ମଣୀ କହିଲେ—ଆମ୍ଭେ ପୂର୍ବେ ଆପଣଙ୍କ ନିକଟରୁ ସ୍ୱଭାବସିଦ୍ଧ ସପ୍ତହୋତାମାନଙ୍କ ବିବରଣ ବିଦିତ ହୋଇଅଛୁ । ସଂପ୍ରତି ପୁନଶ୍ଚ ପଞ୍ଚହୋତା ଓ ସେମାନଙ୍କ ପରମତତ୍ତ୍ୱ ଯେ କୀଦୃଶ ଅଟେ, ତାହା ବିସ୍ତାର କରି କହିବା ହେଉନ୍ତୁ । ୩ ।

ବ୍ରାହ୍ମଣ କହିଲେ—ବାୟୁ ପ୍ରାଣକର୍ତ୍ତୃକ ସଂଭୃତ ହେଲେ ଅପାନରୂପେ ପରିଣତ ହୁଏ । ତଦନନ୍ତର ଅପାନକର୍ତ୍ତୃକ ସଂଭୃତ ହେଲେ ବ୍ୟାନ, ବ୍ୟାନ-କର୍ତ୍ତୃକ ସଂଭୃତ ହେଲେ ଉଦାନ, ଏବଂ ଉଦାନକର୍ତ୍ତୃକ ସଂଭୃତ ହେଲେ ସମାନରୂପେ ପରିଣତ ହୁଏ । ୪ ।

ଏକଦା ସେହି ପ୍ରାଣାଦି ପଞ୍ଚବାୟୁ ଏକତ୍ରିତ ହୋଇ ପୂର୍ବଜାତ ପିତାମହ ବ୍ରହ୍ମାଙ୍କୁ ଏହିପରି ପ୍ରଶ୍ନ କରିଥିଲେ ଯେ, ବ୍ରହ୍ମନ୍ ! ଆମ୍ଭମାନଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ଆପଣ ତାହା କହିବା ହେଉନ୍ତୁ । ଆପଣ ଯାହାଙ୍କୁ ଶ୍ରେଷ୍ଠ କହିବେ, ସେ ଆମ୍ଭମାନଙ୍କର ଶ୍ରେଷ୍ଠ ହେବେ । ୬ ।

Digitized by srujanika@gmail.com

ବ୍ରହ୍ମା କହିଲେ—ହେ ବାୟୁଗଣ ! ପ୍ରାଣିଗଣଙ୍କ ଶରୀର ମଧ୍ୟରେ ଯେଉଁ ପ୍ରାଣର ପ୍ରଳୟ ହେଲେ ସକଳ ପ୍ରାଣ ପ୍ରଳୟପ୍ରାପ୍ତ ହୁଅନ୍ତି, ଏବଂ ଯେଉଁ ପ୍ରାଣରେ ସଞ୍ଚାର ହେଲେ ସମସ୍ତେ ପୁନଶ୍ଚ ପ୍ରକାଶିତ ହୁଅନ୍ତି, ସେହି ତୁମ୍ଭମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସମ୍ପ୍ରତି ତୁମ୍ଭେମାନେ ଅଭିଳାଷାନୁସାରେ ଯଥାସ୍ଥାନକୁ ଗମନ କର । ୭ ।

ପ୍ରାଣ କହିଲେ—ପ୍ରାଣିଗଣଙ୍କ ଶରୀର ମଧ୍ୟରେ ଆମ୍ଭର ପ୍ରଳୟ ହେଲେ ସକଳ ପ୍ରାଣିମାନଙ୍କର ପ୍ରଳୟ ହୁଏ । ଆମ୍ଭେ ସଞ୍ଚାର କଲେ ସମସ୍ତେ ପ୍ରକାଶିତ ହୁଅନ୍ତି । ଅତଏବ ଆମ୍ଭେ ଶ୍ରେଷ୍ଠ । ଆମ୍ଭେ ସମ୍ପ୍ରତି ବିଲୟପ୍ରାପ୍ତ ହେଉଅଛୁଁ, ତୁମ୍ଭେମାନେ ସମସ୍ତେ ଅବଲୋକନ କର । ୮ ।

ବ୍ରାହ୍ମଣ କହିଲେ—ହେ ଶୁଭେ ! ପ୍ରାଣ ବିଲୟପ୍ରାପ୍ତ ହୋଇ କିଛିକ୍ଷଣ ଉତ୍ତାରେ ପୁନଶ୍ଚ ସଞ୍ଚାର କଲାରୁ, ତାହାଙ୍କୁ ସମାନ ଓ ଉଦାନ କହିଲେ—ହେ ପ୍ରାଣ ! ତୁମ୍ଭେ ଆମ୍ଭମାନଙ୍କ ସଦୃଶ ଏହି ଶରୀର ମଧ୍ୟରେ ସର୍ବତ୍ର ବ୍ୟାପି ରହିବାକୁ ଅକ୍ଷମ ବୋଲି ଆମ୍ଭମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇପାରିବ ନାହିଁ । ଅପାନ ତୁମ୍ଭର ବଶବର୍ତ୍ତୀ ବୋଲି ତୁମ୍ଭେ ଅପାନଙ୍କ ପ୍ରଭୁ ହୋଇପାର । ପ୍ରାଣ ଏହି କଥା ଶୁଣି ପୁନଶ୍ଚ ସଞ୍ଚାର କଲାରୁ ଅପାନ ତାହାଙ୍କୁ କହିଲେ । ୧୦ ।

ଅପାନ କହିଲେ—ପ୍ରାଣିଗଣଙ୍କ ଶରୀର ମଧ୍ୟରେ ଆମ୍ଭର ପ୍ରଳୟ ହେଲେ ସମସ୍ତ ପ୍ରାଣୀ ପ୍ରଳୟପ୍ରାପ୍ତ ହୁଅନ୍ତି । ଆମ୍ଭେ ସଞ୍ଚାର କଲେ ସମସ୍ତେ ପୁନଶ୍ଚ ପ୍ରକାଶିତ ହୁଅନ୍ତି । ଅତଏବ ଆମ୍ଭେ ସମସ୍ତଙ୍କର ଶ୍ରେଷ୍ଠ । ଆମ୍ଭେ ପ୍ରଳୟପ୍ରାପ୍ତ ହେଉଅଛୁଁ, ତୁମ୍ଭେମାନେ ସମସ୍ତେ ଅବଲୋକନ କର । ୧୧ ।

ବ୍ରାହ୍ମଣ କହିଲେ—ତଦନନ୍ତର ବ୍ୟାନ ଓ ଉଦାନ ଅପାନଙ୍କୁ କହିଲେ ଯେ, ହେ ଅପାନ ! ତୁମ୍ଭେ ଆମ୍ଭମାନଙ୍କ ମଧ୍ୟରେ ଶ୍ରେଷ୍ଠ ନୁହ, ପ୍ରାଣ ତୁମ୍ଭର ବଶବର୍ତ୍ତୀ; ସୁତରାଂ ତୁମ୍ଭେ ପ୍ରାଣ ନିକଟରେ ଶ୍ରେଷ୍ଠ ହୋଇପାର । ୧୨ । ଅନନ୍ତର ଅପାନ ପ୍ରକାଶିତ ହେଲାରୁ ବ୍ୟାନ ତାହାଙ୍କୁ ପୁନଶ୍ଚ କହିଲେ ଯେ, ଆମ୍ଭେ ଯେଉଁ ନିମିତ୍ତ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ତାହା ଶ୍ରବଣ କର । ୧୩ । ଆମ୍ଭେ ପ୍ରାଣିଗଣଙ୍କ ଶରୀର ମଧ୍ୟରେ ପ୍ରଳୟପ୍ରାପ୍ତ ହେଲେ ସମସ୍ତ ପ୍ରାଣୀ ପ୍ରଳୟପ୍ରାପ୍ତ ହୁଅନ୍ତି, ଏବଂ ଆମ୍ଭେ ପ୍ରକାଶିତ ହେଲେ ସମସ୍ତେ ପ୍ରକାଶିତ

Digitized by srujanika@gmail.com

ହୁଅନ୍ତି । ଅତଏବ ଆମ୍ଭେ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ । ସଂପ୍ରତି ଆମ୍ଭେ ଲୀନ ହେଉଅଛୁଁ, ତୁମ୍ଭେମାନେ ଅବଲୋକନ କର । ୧୪ ।

ବ୍ରାହ୍ମଣ କହିଲେ—ଅନନ୍ତର ବ୍ୟାନ ପ୍ରଲୀନ ହୋଇ ପୁନଶ୍ଚ ପ୍ରକାଶିତ ହେଲାରୁ ପ୍ରାଣ, ଅପାନ, ଉଦାନ ଓ ସମାନ ତାହାଙ୍କୁ କହିଲେ ଯେ, ହେ ବ୍ୟାନ ! ତୁମ୍ଭେ ଆମ୍ଭମାନଙ୍କର ପ୍ରଭୁ ନୁହ, ପରନ୍ତୁ ସମାନ ତୁମ୍ଭର ବଶବର୍ତ୍ତୀ । ସୁତରାଂ ତୁମ୍ଭେ ତାହାଙ୍କ ପ୍ରଭୁ ହୁଅ ।

ବ୍ୟାନ ଏହା ଶୁଣି ପୁନଶ୍ଚ ପ୍ରକାଶିତ ହେଲାରୁ ସମାନ କହିଲେ ଯେ, ଆମ୍ଭେ ଯେଉଁ ନିମିତ୍ତ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ତାହା ତୁମ୍ଭେମାନେ ଶ୍ରବଣ କର । ୧୬ । ଆମ୍ଭେ ପ୍ରାଣିଗଣଙ୍କ ଶରୀର ମଧ୍ୟରେ ପ୍ରଲୀନ ହେଲେ ସମସ୍ତେ ପ୍ରଳୟପ୍ରାପ୍ତ ହୁଅନ୍ତି ଏବଂ ଆମ୍ଭେ ପ୍ରାଦୁର୍ଭୂତ ହେଲେ ସମସ୍ତେ ପ୍ରାଦୁର୍ଭୂତ ହୁଅନ୍ତି । ଅତଏବ ଆମ୍ଭେ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ । ସଂପ୍ରତି ଆମ୍ଭେ ପ୍ରଲୀନ ହେଉଅଛୁଁ, ତୁମ୍ଭେମାନେ ଅବଲୋକନ କର । ୧୭ ।

ତଦନନ୍ତର ସମାନ ପ୍ରଲୀନ ହୋଇ ପ୍ରକାଶିତ ହେଲାରୁ ଉଦାନ ତାହାଙ୍କୁ କହିଲେ ଯେ, ଆମ୍ଭେ ଯେଉଁ କାରଣରୁ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ, ତାହା ଶ୍ରବଣ କର । ୧୮ । ଆମ୍ଭେ ପ୍ରାଣିଗଣଙ୍କ ଶରୀର ମଧ୍ୟରେ ପ୍ରଲୀନ ହେଲେ ସମସ୍ତେ ପ୍ରଳୟପ୍ରାପ୍ତ ହୁଅନ୍ତି ଏବଂ ଆମ୍ଭେ ପ୍ରାଦୁର୍ଭୂତ ହେଲେ ସମସ୍ତେ ପୁନଶ୍ଚ ପ୍ରାଦୁର୍ଭୂତ ହୁଅନ୍ତି । ଅତଏବ ଆମ୍ଭେ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ । ସଂପ୍ରତି ଆମ୍ଭେ ପ୍ରଲୀନ ହେଉଅଛୁଁ ତୁମ୍ଭେମାନେ ଅବଲୋକନ କର । ୧୯ ।

ତଦନନ୍ତର ଉଦାନ ପ୍ରଲୀନ ହୋଇ ପୁନଶ୍ଚ ପ୍ରାଦୁର୍ଭୂତ ହେଲାରୁ ପ୍ରାଣ, ଅପାନ, ସମାନ ଓ ବ୍ୟାନ ତାହାଙ୍କୁ କହିଲେ ଯେ, ହେ ଉଦାନ ! ବ୍ୟାନ ତୁମ୍ଭର ବଶବର୍ତ୍ତୀ, ତୁମ୍ଭେ ବ୍ୟାନଙ୍କ ପ୍ରଭୁ, ଆମ୍ଭମାନଙ୍କ ପ୍ରଭୁ ନୁହ । ୨୦ ।

ବ୍ରାହ୍ମଣ କହିଲେ—ତଦନନ୍ତର ସେହି ପ୍ରଜାପତି ବ୍ରହ୍ମା ସମବେତ ସମସ୍ତ ବାୟୁମାନଙ୍କୁ କହିଲେ ଯେ, ତୁମ୍ଭେମାନେ ସମସ୍ତେ ସ୍ୱୀୟ ସ୍ୱୀୟ ବିଷୟରେ

Digitized by srujanika@gmail.com

ଶ୍ରେଷ୍ଠ, ଏବଂ ପରସ୍ପର ପରସ୍ପରଙ୍କ ଧର୍ମାବଲମ୍ବୀ । ପରନ୍ତୁ ପରସ୍ପର କେହି କାହା ଅପେକ୍ଷା ଶ୍ରେଷ୍ଠ ହୋଇପାରୁ ନାହିଁ । ଯେଉଁପରି ଏକ ପ୍ରାଣ ସ୍ଥିର ଓ ଅସ୍ଥିର ହୋଇ ଆତ୍ମାଙ୍କୁ ଅଧିକାର କରି ଉପାଧିଭେଦରେ ପଞ୍ଚବାୟୁ ରୂପରେ ପରିଣତ ହୁଏ, ତଦ୍‌ବତ୍ ଆମ୍ଭର ଏକ ଆତ୍ମା ଉପାଧିଭେଦରେ ବହୁରୂପୀ ହୋଇଥାଆନ୍ତି । ୨୩ । ତୁମ୍ଭେମାନେ ପରସ୍ପର ପରସ୍ପରଙ୍କର ସୁହୃଦ ହୋଇ ପରସ୍ପରଙ୍କୁ ଧାରଣ କର । ତାହାହେଲେ ତୁମ୍ଭମାନଙ୍କର ମଙ୍ଗଳ ହେବ । ସମ୍ପ୍ରତି ତୁମ୍ଭେମାନେ ପରସ୍ପର ବିରୋଧ ପରିହାର ପୂର୍ବକ ଗମନ କର । ତୁମ୍ଭମାନଙ୍କର ମଙ୍ଗଳ ହେଉ । ୨୪ ।

---

# ଚତୁର୍ବିଂଶତିତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ଏହି ବିଷୟରେ ପଣ୍ଡିତଗଣ ଦେବମତ ନାମକ ଋଷି ଓ ନାରଦଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୧ ।

ଦେବମତ କହିଲେ—ହେ ନାରଦ ! ଜାୟମାନ ଜନ୍ତୁର ଜନ୍ମଗ୍ରହଣ—ପ୍ରାଣ, ଅପାନ, ସମାନ, ବ୍ୟାନ ଓ ଉଦାନ ଏହି ପଞ୍ଚବାୟୁ ମଧ୍ୟରେ କେଉଁ ବାୟୁ ସର୍ବପ୍ରଥମରେ ତାହାଙ୍କ ଶରୀରରେ ସଞ୍ଚରିତ ହୁଅନ୍ତି ? ୨ ।

ନାରଦ କହିଲେ—ବ୍ରହ୍ମନ୍ ! ଶରୀର କୌଣସି କାରଣବିଶେଷଦ୍ୱାରା ଜଡ଼ରୂପେ ନିର୍ମିତ ଓ ଅନ୍ୟ କାରଣରେ ଆବିର୍ଭୂତ ହେଲେ ତନ୍ମଧ୍ୟରେ ସର୍ବପ୍ରଥମେ ପ୍ରାଣ ଓ ଅପାନ ବାୟୁ ସଞ୍ଚରିତ ହୁଅନ୍ତି । ଏହି ବାୟୁଦ୍ୱୟ ଦେବତା, ମନୁଷ୍ୟ ଓ ପଶୁପକ୍ଷୀ ପ୍ରଭୃତି ସମସ୍ତଙ୍କ ଶରୀରରେ ଅବସ୍ଥିତି କରନ୍ତି । ୩ ।

ଦେବମତ କହିଲେ—ଭଗବନ୍ ! କେଉଁ କାରଣଦ୍ୱାରା ଜଡ଼ ଦେହ ନିର୍ମିତ ହୁଏ ? ସେହି ଦେହ ନିର୍ମିତ ହେଲେ ତାହା ମଧ୍ୟରେ ଅନ୍ୟ କେଉଁ କାରଣର ଆବିର୍ଭାବ ହୁଏ ? ଏବଂ ପ୍ରାଣ ଓ ଅପାନବାୟୁ କେଉଁରୂପେ ସର୍ବପ୍ରଥମେ ଜଡ଼ ଦେହରେ ସଞ୍ଚାରିତ ହୁଅନ୍ତି ? ୪ ।

Digitized by srujanika@gmail.com

ନାରଦ କହିଲେ—ବ୍ରହ୍ମନ୍ ! ପରମାତ୍ମା ଦେହ ପରିଗ୍ରହ କରିବାକୁ ଅଭିଳାଷୀ ହେଲେ ତାହାଙ୍କ ସଙ୍କଳ୍ପ ପ୍ରଭାବରେ ଶୁକ୍ର-ଶୋଣିତରୂପ ପଞ୍ଚଭୂତ ଦ୍ୱାରା ଦେହର ସୃଷ୍ଟି ଓ ତନ୍ମଧ୍ୟରେ ଜୀବରୂପେ ପରମାତ୍ମାଙ୍କର ଆବିର୍ଭାବ ହୁଏ । ଶୁକ୍ର ଗର୍ଭକୋଷରେ ପ୍ରବିଷ୍ଟ ହେଲାମାତ୍ରେ ସର୍ବପ୍ରଥମରେ ପ୍ରାଣବାୟୁ ତହିଁରେ ସଞ୍ଚାରିତ ହୋଇ ତାହାକୁ ବିକୃତ କରନ୍ତି । ଶୁକ୍ର ପ୍ରାଣବାୟୁଦ୍ୱାରା ବିକୃତ ହେଲେ, ତହିଁରେ ଅପାନ ବାୟୁର ସଞ୍ଚାର ହୁଏ । ଏହିରୂପେ ଜଡ଼ ଦେହ ନିର୍ମିତ ହେଲେ ପରମାତ୍ମା ସେହି ଦେହ ଓ ତାହାର କାରଣରେ ନିର୍ଲିପ୍ତ ହୋଇ ସାକ୍ଷୀସ୍ୱରୂପ ଦେହ ମଧ୍ୟରେ ଅବସ୍ଥାନ କରନ୍ତି । ସମାନ ଓ ବ୍ୟାନ ବାୟୁର ପ୍ରଭାବରେ ଶୁକ୍ର-ଶୋଣିତ ସୃଷ୍ଟି ଓ କାମ ପ୍ରଭାବରେ ସେହି ପଦାର୍ଥଦ୍ୱୟର ଉଦ୍ରେକ ହୁଏ । ଏହି ଦୁଇ ପଦାର୍ଥ ଉଦ୍ରିକ୍ତ ହୋଇ ସ୍ଥୂଳ ଦେହର ସୃଷ୍ଟି କରନ୍ତି । ସ୍ଥୂଳ ଦେହର ସୃଷ୍ଟି ହେଲାରୁ ତନ୍ମଧ୍ୟରେ ପ୍ରାଣ ଓ ଅପାନ ବାୟୁର କ୍ରିୟାଦ୍ୱାରା ଜୀବର ଊର୍ଦ୍ଧ୍ୱଗତ ଓ ଅଧୋଗତ ଏବଂ ବ୍ୟାନ ଓ ସମାନ ବାୟୁ ପ୍ରଭାବରେ ତାହାର ତିର୍ଯ୍ୟକ୍ ଗତି ଓ ଭେଦବୁଦ୍ଧି ହୁଏ ।

ପରମାତ୍ମା ଅଗ୍ନିସ୍ୱରୂପ । ତହିଁରେ ସମସ୍ତ ଦେବଗଣ ପ୍ରତିଷ୍ଠିତ ହୁଅନ୍ତି । ବେଦ ତାହାଙ୍କର ଆଜ୍ଞା । ବେଦ ପ୍ରଭାବରେ ବ୍ରହ୍ମନିଷ୍ଠ ବ୍ୟକ୍ତିଙ୍କର ଅତି ଉତ୍କୃଷ୍ଟ ଜ୍ଞାନ ଜନ୍ମେ । ୧୦ । ତମ ଓ ରଜୋଗୁଣ ସେହି ଅଗ୍ନିସ୍ୱରୂପ ପରମାତ୍ମାଙ୍କର ଧୂମ ଓ ଭସ୍ମ ସଦୃଶ । ଜୀବଗଣ ସେହି ଅଗ୍ନିମୟ ପରମାତ୍ମାଙ୍କ ଠାରେ ଆହୁତିରୂପ ଅନ୍ନାଦି ଭୋଜ୍ୟଦ୍ରବ୍ୟ ପ୍ରଦାନ କରନ୍ତି । ସେହି ଅଗ୍ନିରୁ ସମସ୍ତ ଜନ୍ମେ । ପ୍ରାଣ ଓ ଅପାନ ହୁତାଶନରୂପୀ ପରମାତ୍ମାଙ୍କର ଦୁଇଗୋଟି ଆଜ୍ୟଭାଗ ସ୍ୱରୂପ । ସେ ବିଦ୍ୟା, ଅବିଦ୍ୟା, ଉତ୍ପତ୍ତି, ପ୍ରଳୟ ଓ କାର୍ଯ୍ୟକାରଣ ପ୍ରଭୃତି ଦ୍ୱନ୍ଦ୍ୱ ବିଷୟ ସମୂହରେ ନିର୍ଲିପ୍ତ ହୋଇ ଅବସ୍ଥାନ କରନ୍ତି । ସମାନ ଓ ବ୍ୟାନ ବୁଦ୍ଧିସତ୍ତ୍ୱରୁ ଉତ୍ପନ୍ନ ହୁଅନ୍ତି । ଏହା ଯାଗଶୀଳ ଋଷିଗଣଙ୍କର ଅନୁଭବସିଦ୍ଧ । ପ୍ରାଣ ଏବଂ ଅପାନ ଆଜ୍ୟଭାଗ । ସେହି ପ୍ରାଣ ଓ ଅପାନଙ୍କ ମଧ୍ୟରେ ପରମାତ୍ମା ରୂପ ହୁତାଶନ ବିଦ୍ୟମାନ ଥାଆନ୍ତି । ୧୨ ।

ବ୍ରାହ୍ମଣଗଣ ଉଦାନର ଏହି ହର୍ଷରୂପକୁ ପରମବ୍ରହ୍ମ ବୋଲି ଜ୍ଞାନ କରନ୍ତି । ପରନ୍ତୁ ଏହା ଯେ ଅଦ୍ୱୈତ ତାହା ଆମ୍ଭେ କହୁଅଛୁଁ, ତୁମ୍ଭେ ଆମ୍ଭ ନିକଟରୁ ଶ୍ରବଣ କର । ୧୩ ।

Digitized by srujanika@gmail.com

ବିଦ୍ୟା ଓ ଅବିଦ୍ୟା ଏହି ଦୁହେଁ ଅହୋରାତ୍ର ସ୍ୱରୂପ । ତନ୍ମଧ୍ୟରେ ସେହି ପରମାତ୍ମା ରୂପ ହୁତାଶନ ବିଦ୍ୟମାନ । ବ୍ରାହ୍ମଣଗଣ ଉଦାନର ଏହି ହର୍ଷରୂପକୁ ପରମବ୍ରହ୍ମ ବୋଲି ବୋଧ କରନ୍ତି । ୧୪ । (ସତ୍) କାର୍ଯ୍ୟ (ଅସତ୍) କାରଣ ରୂପ ଦ୍ୱନ୍ଦ୍ୱ । ଏତନ୍ମଧ୍ୟରେ ପରମାତ୍ମା ରୂପ ହୁତାଶନ ବିଦ୍ୟମାନ ଥାଆନ୍ତି । ବ୍ରାହ୍ମଣଗଣ ଉଦାନର ଏହି ହର୍ଷରୂପକୁ ପରମବ୍ରହ୍ମ ବୋଲି ଜ୍ଞାନ କରନ୍ତି । ୧୫ ।

ସେହି ଊର୍ଦ୍ଧ୍ୱ ବ୍ରହ୍ମ ଯେ ସଙ୍କଳ୍ପ ନାମକ ହେତୁଦ୍ୱାରା ସମାନ ଓ ବ୍ୟାନ ରୂପରେ ଆବିର୍ଭୂତ ହୁଅନ୍ତି, ସେହି ସଙ୍କଳ୍ପଦ୍ୱାରା ସମସ୍ତ କର୍ମ ବିସ୍ତୃତ ହୁଏ । ତୃଷ୍ଣାସ୍ଥ ସୁଷୁପ୍ତି ରୂପ ବ୍ରହ୍ମ ସମାନ ଏବଂ ବ୍ୟାନଦ୍ୱାରା ପୁନର୍ବାର ନିର୍ଣ୍ଣିତ ହୁଏ । ୧୬ । ଶାନ୍ତିନିମିତ୍ତ ସମାନ, ବ୍ୟାନ ଏବଂ ସନାତନ ବ୍ରହ୍ମ ଏହି ତିନିଗୋଟି ଏକମାତ୍ର ଶାନ୍ତ ଶବ୍ଦରେ ଉକ୍ତ ହୁଅନ୍ତି । ବ୍ରାହ୍ମଣଗଣ ଉଦାନର ଏହି ହର୍ଷରୂପକୁ ପରମବ୍ରହ୍ମ ବୋଲି ବୋଧକରନ୍ତି । ୧୭ ।

---

## ପଞ୍ଚବିଂଶତିତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ଭଦ୍ରେ ! ଏହି ବିଷୟରେ ପଣ୍ଡିତଗଣ ଋତୁହୋତ୍ରି ବିଧାନର ଯାଦୃଶ ବିଧି, ତତ୍ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ଆମ୍ଭେ ସେହି ସମସ୍ତର ବିଧାନ ବିଧିଅନୁସାରେ ବର୍ଣ୍ଣନ କରୁଅଛୁଁ, ତୁମ୍ଭେ ଆମ୍ଭ ନିକଟରୁ ସେହି ଅଦ୍ଭୁତ ରହସ୍ୟ ଶ୍ରବଣ କର ।

ହେ ଭାବିନି ! କର୍ତ୍ତା, କର୍ମ, କରଣ ଏବଂ ମୋକ୍ଷ ଏହି ଚାରିଗୋଟି ହୋତା । ଏହିମାନଙ୍କଦ୍ୱାରା ଏହି ଜଗତ ଆବୃତ ହୋଇ ରହିଅଛି । ୩ । ପୂର୍ବେ ଘ୍ରାଣାଦି ସମସ୍ତ ଯଦି ଦଶ ଓ ସପ୍ତହୋତା ମଧ୍ୟରେ ଉକ୍ତ ହୋଇ ଅଛନ୍ତି, ତଥାପି ସେମାନଙ୍କ ମଧ୍ୟରେ କିଏ କାହାର ହେତୁ, ତାହା କଥିତ ହୋଇନାହିଁ । ସମ୍ପ୍ରତି ଯୁକ୍ତିବଳ ଅବଲମ୍ବନ ପୂର୍ବକ ହେତୁସମୂହର ସାଧନ ଅଶେଷରୂପେ କହୁଅଛୁଁ, ତାହା ଶ୍ରବଣ କର ।

Digitized by srujanika@gmail.com

ଘ୍ରାଣ, ଜିହ୍ୱା, ଚକ୍ଷୁ, ତ୍ୱକ୍, ଶ୍ରୋତ୍ର, ମନ ଏବଂ ବୁଦ୍ଧି ଏହି ସାତଗୋଟିର ଗୁଣ ଅର୍ଥାତ୍ ଅଦ୍ଧିବିଦ୍ୟା, ଗନ୍ଧ, ରସ, ରୂପ, ଶବ୍ଦ, ସ୍ପର୍ଶ, ମନ୍ତବ୍ୟ ଏବଂ ବୋଦ୍ଧବ୍ୟ ଏହି ସାତଗୋଟିର ହେତୁ କର୍ମ । ଘ୍ରାଣ, ଭକ୍ଷୟିତା, ଦ୍ରଷ୍ଟା, ବକ୍ତା, ଶ୍ରୋତା, ମନ୍ତା ଏବଂ ବୋଦ୍ଧା ଏହି ସାତଗୋଟି କର୍ତ୍ତୃଭାବର ହେତୁ । ଏହି ଘ୍ରାଣ ପ୍ରଭୃତି ସାତଗୋଟି ଔପାଧିକ ରୂପ ଘ୍ରାତୃତ୍ୱାଦି ଧର୍ମବିଶିଷ୍ଟ ହୋଇ ସ୍ୱୀୟ ସ୍ୱୀୟ ଗନ୍ଧାଦି ଗୁଣ-ସମୂହକୁ ଭୋଗ କରନ୍ତି । ପରନ୍ତୁ ଗନ୍ଧାଦିର ପ୍ରମାଣ ଅସ୍ମତ୍ ଶବ୍ଦବାଚ୍ୟ । ଆତ୍ମେ ନିର୍ଗୁଣ ଓ ଅନନ୍ତ ଏବଂ ଘ୍ରାତାଦି ସମସ୍ତ ସ୍ୱୀୟ ସ୍ୱୀୟ ଉପାଧି ଓ ଘ୍ରାତୃତ୍ୱାଦି ଅଭିମାନ ପରିତ୍ୟାଗ ପୂର୍ବକ ଚିନ୍ମାତ୍ର ରୂପେ ଅବସ୍ଥିତ ହେଲେ ମୋକ୍ଷର ହେତୁ ହୁଅନ୍ତି । ୭ ।

ବୁଦ୍ଧିମାନ ତତ୍ତ୍ୱଜ୍ଞାନିମାନଙ୍କର ଘ୍ରାଣାଦି ଇନ୍ଦ୍ରିୟଗଣଙ୍କର ସ୍ୱୀୟ ସ୍ୱୀୟ ଅଧିଷ୍ଠାନ ଅଗ୍ନିବଦ୍ୟାଦି ସମସ୍ତ ଦେବତାଭୂତ ହୋଇ ନିୟମାନୁସାରେ ସର୍ବଦା ହେୟାଦି ବିଷୟସମୂହ ଭୋଗ କରନ୍ତି । ପୁରୁଷ ଯେଉଁପରି ଆପଣା ନିମିତ୍ତ ଅନ୍ନପାକ କରିଇ ମମତାଦ୍ୱାରା ନିହତ ହୁଅନ୍ତି, ତଦ୍‌ବତ୍ ଅଜ୍ଞ ବ୍ୟକ୍ତି ହେୟାଦି ବିଷୟଭୋଗରେ ଲିପ୍ତ ହୋଇ ମମତାଦ୍ୱାରା ବିନଷ୍ଟ ହୁଅନ୍ତି । ଅଭକ୍ଷ୍ୟ ଭକ୍ଷଣ ଏବଂ ମଦ୍ୟପାନ ପ୍ରଭୃତିର ବିଷୟ ସବୁ ଏତାଦୃଶ ବ୍ୟକ୍ତିଙ୍କୁ ବିନଷ୍ଟ କରନ୍ତି ଏବଂ କଦାଚିତ୍ ଏତାଦୃଶ ପୁରୁଷ ଅନ୍ନ ଅର୍ଥାତ୍ ହେୟାଦି ବିଷୟସମୂହକୁ ନଷ୍ଟକରେ । କଦାଚିତ୍ ଅବା ହେୟାଦି ବିଷୟସମୂହ ତାଦୃଶ ପୁରୁଷକୁ ନଷ୍ଟକରେ । ୧୦ ।

ଯେଉଁ ବିଦ୍ୱାନ୍ ଏହି ଅନ୍ନ ଅର୍ଥାତ୍ ହେୟାଦି ବିଷୟସବୁ ଭୋଗ କରନ୍ତି, ସେ ଈଶ୍ୱର ହୋଇ ପୁନଶ୍ଚ ତାହା ଉତ୍ପାଦନ କରନ୍ତି । ବାସ୍ତବିକ ସେ ଉକ୍ତ ଅନ୍ନରୁ ଉତ୍ପନ୍ନ ହୁଅନ୍ତି ନାହିଁ । କାରଣ, ସେ ଅନ୍ନରୁ ଉତ୍ପନ୍ନ ହେଲେ ତାହାଙ୍କଠାରେ କାର୍ଯ୍ୟକାରଣ ଭାବରେ ବୈପରୀତ୍ୟ ଘଟନ୍ତା । ମନ ଆଦି ଷଟ୍‌ଇନ୍ଦ୍ରିୟ ନିଗ୍ରହ ପୂର୍ବକ ଯାହା ମନଦ୍ୱାରା ଜ୍ଞାତ ହୁଏ, ଯାହା ବାକ୍ୟଦ୍ୱାରା ପ୍ରକାଶିତ ହୁଏ, ଯାହା ଶ୍ରୋତ୍ରଦ୍ୱାରା ଶ୍ରୁତ ହୁଏ, ଯାହା ଚକ୍ଷୁଦ୍ୱାରା ଦୃଷ୍ଟ ହୁଏ, ଯାହା ସ୍ପର୍ଶଦ୍ୱାରା ସ୍ପୃଷ୍ଟ ହୁଏ ଏବଂ ଯାହା ଘ୍ରାଣଦ୍ୱାରା ଘ୍ରାତ ହୁଏ, ତାହାସବୁ ହବି ଅର୍ଥାତ୍ ଅନ୍ନରୂପେ ପରିଗଣିତ ହୁଏ । ୧୩ ।

Digitized by srujanika@gmail.com

ଗୁଣବିଶିଷ୍ଟ ପାବକ କାରଣ ବ୍ରହ୍ମ ଆତ୍ମ ଶରୀର ମଧ୍ୟରେ ପ୍ରକାଶିତ ହୁଅନ୍ତି । ଯୋଗ ଆତ୍ମର ଯଜ୍ଞ, ଜ୍ଞାନବହ୍ନି, ଘ୍ରାଣସ୍ତୋତ୍ର, ଅପାନଶସ୍ତ୍ର ଏବଂ ସର୍ବସ୍ୱ ତ୍ୟାଗ ଦକ୍ଷିଣା । ୧୪ । ଯୋଗିମାନଙ୍କ କର୍ତ୍ତା (ଅହଂକାର), ଅନୁମନ୍ତା (ମନ) ଏବଂ ଆତ୍ମା (ବୁଦ୍ଧି) ଏହି ତିନଗୋଟି ବ୍ରହ୍ମ ହୋଇ, କ୍ରମଶଃ ହୋତା, ଅଧ୍ୱର୍ଯୁ ଏବଂ ଉଦ୍‌ଗାତା ହୁଅନ୍ତି ଏବଂ ସତ୍ୟବାକ୍ୟ ତାଙ୍କର ଶସ୍ତ୍ର ଓ କୈବଲ୍ୟ ଦକ୍ଷିଣା ଅଟେ । ନାରାୟଣବିତ୍ ବ୍ୟକ୍ତିଗଣ ଏହି ଯଜ୍ଞରେ ଋକ୍‌ପାଠ କରନ୍ତି ଏବଂ ନାରାୟଣଦେବଙ୍କ ଉଦ୍ଦେଶ୍ୟରେ ପୂର୍ବେ ଅନ୍ନ ବିଷୟ-ସମୂହ ପଶୁ ରୂପେ ପ୍ରଦାନ କରନ୍ତି ।

ହେ ଭୀରୁ ! ସେହି ଯଜ୍ଞରେ ଯୋଗିଗଣ ଯାହାଙ୍କ ଉଦ୍ଦେଶ୍ୟରେ ସମ୍ମାନ କରନ୍ତି ଏବଂ ଯାହାଙ୍କଠାରେ ଦ୍ରଷ୍ଟାରୂପେ ଯାହାଙ୍କ କୀର୍ତ୍ତନ କରନ୍ତି, ସେହି ସର୍ବାତ୍ମା ନାରାୟଣଦେବଙ୍କୁ ତୁମ୍ଭେ ଜ୍ଞାନ କର । ୧୭ ।

---

## ଷଡ଼ବିଂଶତିତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ଭାବିନି ! ଯେ ପ୍ରାଣିଗଣଙ୍କ ହୃଦୟ ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପେ ବାସ କରନ୍ତି, ସେହି ନାରାୟଣ ଦେବ କେବଳ ଶାସ୍ତା, ତଦ୍ଭିନ୍ନ ଅନ୍ୟ କେହି ଦ୍ୱିତୀୟ ଶାସ୍ତା ନାହାନ୍ତି । ଆମ୍ଭେ ତାହାଙ୍କ ବିଷୟ ତୁମ୍ଭଙ୍କୁ କହୁଅଛୁଁ ।

ଜଳରାଶି ଯେଉଁପରି ପ୍ରବଣ (ନୀଚ) ଭୂମିରେ ଗମନ କରେ, ଆମ୍ଭେ ତଦ୍‌ବତ୍ ସେହି ନାରାୟଣଦେବକର୍ତ୍ତୃକ ଯେଉଁପରି ନିଯୁକ୍ତ ହେଉ ତଦନୁସାରେ କର୍ମ କରୁଁ । ଯେ ଜୀବଗଣଙ୍କ ହୃଦୟ ମଧ୍ୟରେ ବାସ କରନ୍ତି, ସେହି ଏକମାତ୍ର ନାରାୟଣଦେବ ଗୁରୁ, ତଦ୍ଭିନ୍ନ ଅନ୍ୟ କେହି ଦ୍ୱିତୀୟ ଗୁରୁ ନାହାନ୍ତି । ଆମ୍ଭେ ତାହାଙ୍କ ବିଷୟ ତୁମ୍ଭଙ୍କୁ କହୁଅଛୁଁ । ସମସ୍ତେ ସେହି ଗୁରୁ-କର୍ତ୍ତୃକ ସର୍ବଦା ଶିକ୍ଷିତ ହେବେ । ଯେଉଁମାନେ ଲୋକଦ୍ୱେଷୀ ସେମାନେ ସମସ୍ତେ ସର୍ପସଦୃଶ । ଯେ ପ୍ରାଣିଗଣଙ୍କ ହୃଦୟକମଳରେ ଅବସ୍ଥିତି କରନ୍ତି, ସେହି ନାରାୟଣଦେବ କେବଳ ଏକମାତ୍ର ବନ୍ଧୁ । ତାହାଙ୍କ ବ୍ୟତିରେକେ ଅନ୍ୟ କେହି ଦ୍ୱିତୀୟ ବନ୍ଧୁ ନାହାନ୍ତି । ଆମ୍ଭେ ତାହାଙ୍କ ବିଷୟ ତୁମ୍ଭଙ୍କୁ

Digitized by srujanika@gmail.com

କହୁଅଛୁଁ । ହେ ପାର୍ଥ ! ବୁଦ୍ଧିମନ୍ତ ବାନ୍ଧବ ସପ୍ତର୍ଷିଗଣ ତତ୍‌କର୍ତ୍ତୃକ ଶିକ୍ଷିତ ହୋଇ ଗଗନମଣ୍ଡଳରେ ବିରାଜିତ ହେଉଅଛନ୍ତି । ୩ ।

ଯେ ସମସ୍ତ ଭୂତଗଣଙ୍କ ହୃଦୟପଦ୍ମରେ ଅବସ୍ଥାନ କରନ୍ତି, ସେହି ଏକମାତ୍ର ନାରାୟଣଦେବ ଶ୍ରୋତା, ତଭିନ୍ନ ଅନ୍ୟ କେହି ବିଶ୍ୱର ଶ୍ରୋତା ନାହାନ୍ତି । ଆମ୍ଭେ ତାହାଙ୍କ ବିଷୟ ତୁମ୍ଭଙ୍କୁ କହୁଅଛୁଁ । ଇନ୍ଦ୍ର ସେହି ଗୁରୁଙ୍କ ନିକଟରେ ନିରନ୍ତର ବାସକରି ସର୍ବଲୋକ ମଧ୍ୟରେ ଅମରତ୍ୱ ଲାଭକରି ଅଛନ୍ତି । ୪ ।

ଯେ ସମସ୍ତ ପ୍ରାଣିଗଣଙ୍କ ଅନ୍ତଃକରଣରେ ବାସ କରନ୍ତି, ସେହି ଏକମାତ୍ର ନାରାୟଣଦେବ ସ୍ରଷ୍ଟା, ତଭିନ୍ନ ଅନ୍ୟ କେହି ବିଶ୍ୱର ସ୍ରଷ୍ଟା ନାହାନ୍ତି । ଆମ୍ଭେ ତାହାଙ୍କ ବିଷୟ ତୁମ୍ଭଙ୍କୁ କହୁଅଛୁଁ । ସମସ୍ତେ ସେହି ଗୁରୁକର୍ତ୍ତୃକ ସର୍ବଦା ଶିକ୍ଷିତ ହେବେ । ଲୋକ ମଧ୍ୟରେ ଦୋଷବନ୍ତ ବ୍ୟକ୍ତିଗଣ ସର୍ପ ସଦୃଶ ପରିଗଣିତ ହୁଅନ୍ତି । ପନ୍ନଗ ଓ ଦେବର୍ଷିଗଣ ପ୍ରଜାପତିଙ୍କ ନିକଟରେ ଯାହା କହିଥିଲେ, ପଣ୍ଡିତମାନେ ଏହି ସ୍ଥଳରେ ସେହି ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୬ । ଦେବତା, ଋଷି, ନାଗ ଓ ଅସୁରକୁଳ ପ୍ରଜାପତିଙ୍କ ନିକଟକୁ ଗମନପୂର୍ବକ ସମାସୀନ ହୋଇ ତାହାଙ୍କୁ କହିଲେ ଯେ, ହେ ଭଗବନ୍ ! ଆପଣ ଆମ୍ଭମାନଙ୍କର ମଙ୍ଗଳଜନକ ବିଷୟ କହିବା ହେଉନ୍ତୁ । ୭ ।

ଭଗବାନ୍ ପ୍ରଜାପତି କୁଶଳଜିଜ୍ଞାସୁ ସେହି ଆଦିଦେବ । ତେବେ ଆପଣ ଆମ୍ଭ କାର୍ଯ୍ୟର ଅଶେଷ ଦୋଷ ନିର୍ଦ୍ଦେଶ କରି ପାରନ୍ତେ, କିନ୍ତୁ ଆମ୍ଭେ ସେପରି ଦୁଷ୍କର ପ୍ରତିଜ୍ଞା କରିନାହୁଁ । ଆମ୍ଭ ମତରେ ଯଥାସାଧ୍ୟ ପ୍ରାଣିଗଣଙ୍କର ହିଂସା ନକରିବା ପରମ ଧର୍ମ । ଆମ୍ଭେ କେବଳ ପ୍ରତ୍ୟକ୍ଷ ହିଂସାକୁ ଦୋଷାବହ ବୋଲି ନିର୍ଦ୍ଦେଶ କରୁଁ । ୮ ।

ଯାଜ୍ଞିକ କହିଲେ—ହେ ଦ୍ୱିଜ ! ଆପଣ ଯେ ଭୂମିର ଗନ୍ଧଗୁଣସବୁ ଭୋଜନ କରୁଅଛନ୍ତି, ସଲିଳର ରସଗୁଣସବୁ ପାନ କରୁଅଛନ୍ତି, ତେଜର ରୂପଗୁଣ ଦର୍ଶନ କରୁଅଛନ୍ତି, ବାୟୁର ସ୍ପର୍ଶଗୁଣ ସ୍ପର୍ଶନ କରୁଅଛନ୍ତି, ଆକାଶର ଶବ୍ଦଗୁଣ ଶ୍ରବଣ କରୁଅଛନ୍ତି ଏବଂ ମନଦ୍ୱାରା ଗମନ କରୁଅଛନ୍ତି, ଯଦି ଏହି

Digitized by srujanika@gmail.com

ସମସ୍ତ ଭୂତଙ୍କୁ ପ୍ରାଣ ବୋଲି ବୋଧ କରନ୍ତି, ତେବେ କପରି ଆପଣ ପ୍ରାଣ ଆଦାନରେ ନିବୃତ୍ତ ହେଲେ ?

ଆପଣ ତ ହିଂସାରେ ନିଯୁକ୍ତ ହୋଇ କାରଣ ଅଛନ୍ତି । ହିଂସାବିଧି ବ୍ୟତିରେକେ ଲୋକ ସଚେଷ୍ଟ ହୋଇପାରେ ନାହିଁ । ଅତଏବ ଆପଣ ଅହିଂସାକୁ କି ପ୍ରକାର ମନେ କରିଅଛନ୍ତି ? ୧୧ ।

ଯତି କହିଲେ—ଆତ୍ମାଙ୍କର କ୍ଷର ଏବଂ ଅକ୍ଷର ଏହି ଦ୍ୱିବିଧ ଅବସ୍ଥା ଅଛି । ତନ୍ମଧ୍ୟରେ ସଦ୍ଭାବ ଅର୍ଥାତ୍ ଉପାଧିବିହୀନ ସନାତନ ଆତ୍ମାଙ୍କୁ ପଣ୍ଡିତଗଣ ଅକ୍ଷର ବୋଲି ନିର୍ଦ୍ଦେଶ କରନ୍ତି ଏବଂ ସ୍ୱଭାବ ଅର୍ଥାତ୍ ଉପାଧିଯୁକ୍ତ ଆତ୍ମାଙ୍କୁ କ୍ଷର ବୋଲି ନିର୍ଦ୍ଦେଶ କରନ୍ତି । ୧୨ । ମାୟା ସହିତ ଅବସ୍ଥିତ ପ୍ରାଣ, ଜିହ୍ୱା, ମନ ଓ ସତ୍ତ୍ୱ ଏହିମାନେ ସଦ୍ଭାବ ବୋଲି ଉକ୍ତ ହୁଅନ୍ତି । ଆତ୍ମା ଏହି ସକଳ ଭାବରୁ ବିମୁକ୍ତ, ସୁତରାଂ ନିର୍ଦ୍ୱନ୍ଦ୍ୱ ଓ ଆଶାବର୍ଜିତ । ୧୩ । ଯେଉଁ ପୁରୁଷ ସର୍ବଭୂତରେ ସମଭାବ, ନିର୍ମମ, ଜିତାତ୍ମା, ସର୍ବତୋଭାବରେ ମୁକ୍ତ, ସେ କୌଣସିଠାରୁ ଭୟପ୍ରାପ୍ତ ହୁଅନ୍ତି ନାହିଁ । ୧୪ ।

ଯାଜ୍ଞିକ କହିଲେ—ହେ ବିଜ୍ଞବର ! ଆପଣଙ୍କ ମତ ଶ୍ରବଣ କରି ଆମ୍ଭଙ୍କୁ ଏହିପରି ଜଣାଯାଉଛି ଯେ, ଇହଲୋକରେ ସାଧୁଗଣଙ୍କ ସହିତ ସହବାସ କରିବାର କର୍ତ୍ତବ୍ୟ ।

ହେ ଭଗବନ୍ ଦ୍ୱିଜ ! ଆମ୍ଭେ ଭାଗବତ ବୁଦ୍ଧିଯୁକ୍ତ ହୋଇ କହୁଅଛୁଁ ଯେ, ଆମ୍ଭେ ମନ୍ତ୍ରକୃତ ବ୍ରତ କରିଅଛୁଁ, ଅତଏବ ଏଥିରେ ଆମ୍ଭର କୌଣସି ଅପରାଧ ନାହିଁ । ୧୬ ।

ବ୍ରାହ୍ମଣ କହିଲେ—ତଦନନ୍ତର ଯତି ଉପପତ୍ତି ଅନୁସାରେ ତୂଷ୍ଣୀମ୍ଭାବ ଅବଲମ୍ବନ କରି କହିଲେ, ଏବଂ ଯାଜ୍ଞିକ ମୋହବିହୀନ ହୋଇ ମହାଯଜ୍ଞ ପ୍ରବୃତ୍ତ କଲେ । ୧୭ । ବ୍ରାହ୍ମଣଗଣ ଏତାଦୃଶ ଅତିଶୟ ସୂକ୍ଷ୍ମ ମୋକ୍ଷ ବିଦିତ ହୋଇ ଅର୍ଥଦର୍ଶୀ କ୍ଷେତ୍ରଜ୍ଞଙ୍କ ସହିତ ଅବସ୍ଥାନ କରନ୍ତି । ୧୮ ।

Digitized by srujanika@gmail.com

# ସପ୍ତତ୍ରିଂଶତ୍ତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ପ୍ରିୟେ ! ଯେଉଁଠାରେ ସଂକଳ୍ପରୂପକ ଡାଉଁଶ ଓ ମଶାର ଆଧିକ୍ୟ, ଶୋକରୂପକ ତାପ, ହର୍ଷରୂପକ ଶୀତଳତା, ମୋହରୂପକ ଅନ୍ଧକାର ଏବଂ ଲୋଭ ଓ ବ୍ୟାଧିରୂପକ ସର୍ପ ବିଦ୍ୟମାନ, ଯେଉଁଠାରେ ବିଷୟମାନଙ୍କର ଏକମାତ୍ର ମାର୍ଗ, ଯାହାକୁ କି ଏକାକୀ ଅତିକ୍ରମ କରିବାକୁ ପଡ଼ିବ, ତଥା ଯେଉଁଠାରେ କାମ ଓ କ୍ରୋଧରୂପକ ଶତ୍ରୁ ବାଧା ଦେଉଛନ୍ତି, ସେହି ସଂସାରରୂପକ ଦୁର୍ଗମ ପଥକୁ ଅତିକ୍ରମ କରି ବର୍ତ୍ତମାନ ମୁଁ ବ୍ରହ୍ମରୂପକ ମହାରଣ୍ୟରେ ପ୍ରବିଷ୍ଟ ହୋଇଛି । ୨ ।

ବ୍ରାହ୍ମଣୀ କହିଲେ—ହେ ମହାପ୍ରାଜ୍ଞ ! ସେ ବନ କେଉଁଠାରେ ? ତହିଁରେ କେଉଁ କେଉଁ ବୃକ୍ଷ, ଗିରି, ପର୍ବତ ଓ ନଦୀ ବିଦ୍ୟମାନ ଓ ସେ ବନ କେତେ ଦୂରରେ ଅଛି ? ୩ ।

ବ୍ରାହ୍ମଣ କହିଲେ—ହେ ପ୍ରିୟେ ! ସେହି ବନରେ ଭେଦାଭେଦ ନାହିଁ ଓ ସେଠାରେ ଲୌକିକ ସୁଖ ଓ ଦୁଃଖର ମଧ୍ୟ ଅଭାବ । ୪ । ତା'ଠାରୁ ଅଧିକ ସାନ ଓ ବଡ଼ ତଥା ତା'ଠାରୁ ସୂକ୍ଷ୍ମତମ ମଧ୍ୟ ଅନ୍ୟ କୌଣସି ବସ୍ତୁ ନାହିଁ । ତା ସଦୃଶ ସୁଖ ମଧ୍ୟ ଆଉ କିଛି ନାହିଁ । ୫ । ସେହି ବନରେ ପ୍ରବିଷ୍ଟ ହେଲେ ଦ୍ୱିଜାତିମାନଙ୍କର ହର୍ଷ ଓ ଶୋକ ରହେ ନାହିଁ । ସେମାନେ କୌଣସି ପ୍ରାଣୀଙ୍କୁ ଭୟ କରନ୍ତି ନାହିଁ ତଥା କୌଣସି ପ୍ରାଣୀ ମଧ୍ୟ ତାଙ୍କୁ ଭୟ କରନ୍ତି ନାହିଁ । ସେହି ବନରେ ସାତଗୋଟି ବଡ଼ ବଡ଼ ବୃକ୍ଷ ବିଦ୍ୟମାନ । ସେହି ସପ୍ତବୃକ୍ଷର ସାତୋଟି ମାତ୍ର ଫଳ ଓ ସେହି ସାତୋଟି ଫଳର ଭୋକ୍ତା ମଧ୍ୟ ସପ୍ତ ଅତିଥି । ସେଠାରେ ସାତୋଟି ଆଶ୍ରମ, ସପ୍ତବିଧ ସମାଧି ଓ ସପ୍ତ ପ୍ରକାରର ଦୀକ୍ଷା ନିର୍ଦ୍ଦିଷ୍ଟ ଅଛି । ଏହା ହେଉଛି ସେ ବନର ସ୍ୱରୂପ । ୭ ।

ସେଠାକାର ବୃକ୍ଷ ପାଞ୍ଚ ରଙ୍ଗର ଦିବ୍ୟପୁଷ୍ପ ଓ ଫଳକୁ ସୃଷ୍ଟି କରି ବନର ଚାରିଆଡ଼େ ବ୍ୟାପ୍ତ ହୋଇଛନ୍ତି । ସେଠାରେ ଦ୍ୱିତୀୟ ପ୍ରକାରର ବୃକ୍ଷ ଦୁଇ ରଙ୍ଗର ପୁଷ୍ପ ଓ ଫଳକୁ ଉତ୍ପନ୍ନ କରି ବନର ଚାରିଆଡ଼େ ବ୍ୟାପ୍ତ ହୋଇଛନ୍ତି । ସେଠାରେ ତୃତୀୟ ପ୍ରକାରର ବୃକ୍ଷ ସୁଗନ୍ଧଯୁକ୍ତ ଦୁଇ ରଙ୍ଗର ପୁଷ୍ପ ଓ ଫଳକୁ ପ୍ରଦାନ କରି ବନର ଚାରିଆଡ଼େ ବ୍ୟାପ୍ତ ହୋଇଛନ୍ତି । ସେଠାରେ ଚତୁର୍ଥ ପ୍ରକାରର ବୃକ୍ଷ ସୁଗନ୍ଧଯୁକ୍ତ କେବଳ ଗୋଟିଏ ରଙ୍ଗର ପୁଷ୍ପ ଓ ଫଳକୁ ସୃଷ୍ଟି କରି ବନର ଚାରିଆଡ଼େ ବ୍ୟାପ୍ତ ହୋଇଛନ୍ତି । ୧୨ ।

ସେହି ବନରେ ଏକମାତ୍ର ଅଗ୍ନି ଶୁଦ୍ଧଚେତା ଜୀବ, ବ୍ରାହ୍ମଣ ଓ ପଞ୍ଚେନ୍ଦ୍ରିୟ ହେଉଛି ସମିଧ । ତା'ଦ୍ୱାରା ଯେଉଁ ମୋକ୍ଷ ମିଳେ, ସେ ସାତ

Digitized by srujanika@gmail.com

ପ୍ରକାରର । ସେ ଯଜ୍ଞଦୀକ୍ଷାର ଫଳ ଅବଶ୍ୟ ମିଳେ ଓ ସେ ଫଳ ହେଉଛି ଗୁଣ । ସପ୍ତ ଅତିଥି ସେହି ଫଳକୁ ଉପଭୋଗ କରନ୍ତି । ମହର୍ଷିଗଣ ସେହି ଯଜ୍ଞରେ ଆତିଥ୍ୟ ଗ୍ରହଣ କରନ୍ତି, ଓ ଆତିଥ୍ୟ ଗ୍ରହଣ କଲାପରେ ସେମାନଙ୍କର ଲୟ ହୁଏ । ପରେ ସେହି ବ୍ରହ୍ମରୂପକ ବନ ସୁଶୋଭିତ ହୁଏ । ସେଠାରେ ଜ୍ଞାନରୂପକ ବୃକ୍ଷରେ ମୋକ୍ଷରୂପକ ଫଳ ଓ ଶାନ୍ତିରୂପକ ଛାୟା ବିଦ୍ୟମାନ । ଜ୍ଞାନ ସେଠାରେ ଆଶ୍ରୟସ୍ଥଳ ଓ ତୃପ୍ତି ହେଉଛି ଜଳ । ସେ ବନରେ ଆତ୍ମାରୂପକ ସୂର୍ଯ୍ୟର ପ୍ରକାଶ ବିଦ୍ୟମାନ ଅଛି । ୧୫ ।

ଯେଉଁ ଶ୍ରେଷ୍ଠ ପୁରୁଷ ଏହି ବନର ଆଶ୍ରୟ ନିଅନ୍ତି, ସେମାନଙ୍କ ଭୟ ରହେ ନାହିଁ । ସେ ବନ ଚତୁର୍ଦ୍ଦିଗରେ ବ୍ୟାପ୍ତ ଓ ତାହାର ଅନ୍ତ ନାହିଁ । ସେଠାରେ ଲଜ୍ଜାନମ୍ରମୁଖୀ ସାତୋଟି ସ୍ତ୍ରୀ ନିବାସ କରନ୍ତି । ସେମାନେ ଚିନ୍ମୟ ପ୍ରକାଶର ଜନନୀ । ସେହି ବନବାସୀ ପ୍ରଜାଙ୍କଠାରୁ ଉତ୍ତମ ରସକୁ ସେପରି ଗ୍ରହଣ କରନ୍ତି, ଯେପରି ଅନିତ୍ୟତା ସତ୍ୟକୁ ଗ୍ରହଣ କରେ । ୧୭ । ସିଦ୍ଧ ସପ୍ତର୍ଷି ବଶିଷ୍ଠ ଆଦିଙ୍କ ସହ ସେଠାରେ ଲୀନ ହୁଅନ୍ତି ଓ ସେହିଠାରୁ ଉତ୍ପନ୍ନ ହୁଅନ୍ତି । ୧୮ । ଯଶ, ପ୍ରଭା, ଭଗ (ଐଶ୍ୱର୍ଯ୍ୟ), ବିଜୟ, ସିଦ୍ଧି (ଓଜ) ଓ ତେଜ ଏହି ସପ୍ତଜ୍ୟୋତି ଉପରୋକ୍ତ ଆତ୍ମାରୂପକ ସୂର୍ଯ୍ୟଙ୍କୁ ଅନୁସରଣ କରନ୍ତି । ସେହି ବ୍ରହ୍ମତତ୍ତ୍ୱରେ ଗିରି, ପର୍ବତ, ଝରଣା ଓ ନଦୀସବୁ ବିଦ୍ୟମାନ, ଯେ ବ୍ରହ୍ମସମ୍ଭବ ଜଳ ପ୍ରବାହ କରନ୍ତି । ୨୦ ।

ସେଠାରେ ନଦୀମାନଙ୍କର ସଙ୍ଗମ ହୃଦୟାକାଶରେ ଅତି ଗୂଢ଼ଭାବେ ହୁଏ । ଯେଉଁଠାରେ ଯୋଗରୂପ ଯଜ୍ଞର ବିସ୍ତାର ହୁଏ, ସେହି ସାକ୍ଷାତ୍ ପିତାମହଙ୍କ ସ୍ୱରୂପ । ଆତ୍ମଜ୍ଞାନତୃପ୍ତ ତାଙ୍କୁ ଲଭ କରେ । କ୍ଷୀଣାଶା, ଉତ୍ତମ ବ୍ରତାଭିଳାଷୀ ଓ ତପସ୍ୟାଦଗ୍ଧ-ପାପ ଯେଉଁମାନେ, ସେମାନେ ନିଜର ବୁଦ୍ଧିକୁ ଆତ୍ମନିଷ୍ଠ କରି ପରବ୍ରହ୍ମର ଉପାସନା କରନ୍ତି । ୨୨ । ବିଦ୍ୟାର ପ୍ରଭାବରୁ ବ୍ରହ୍ମରୂପ ବନର ସ୍ୱରୂପ ଜଣାଯାଏ । ଏହା ଜାଣିଥିବା ମନୁଷ୍ୟ ଏହି ବନରେ ପ୍ରବେଶ କରି ମନୋନିଗ୍ରହ ପୂର୍ବକ ବୁଦ୍ଧିକୁ ସ୍ଥିର କରେ । ଏପରି ଗୁଣଯୁକ୍ତ ଓ ପବିତ୍ର ବନକୁ ବ୍ରାହ୍ମଣମାନେ ଜାଣନ୍ତି । ତତ୍ତ୍ୱଦର୍ଶୀଙ୍କ ଉପଦେଶରେ ପ୍ରବୁଦ୍ଧ ଆତ୍ମଜ୍ଞାନୀ ପୁରୁଷ ଏହି ବ୍ରହ୍ମବନକୁ ଶାସ୍ତ୍ରଦ୍ୱାରା ଜାଣି ଶମ ଆଦି ସାଧନର ଅନୁଷ୍ଠାନରେ ଯତ୍ନବାନ୍ ହୁଏ । ୨୭ ।

---

Digitized by srujanika@gmail.com

# ଅଷ୍ଟାତ୍ରିଂଶତ୍ତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ମୁଁ ଗନ୍ଧକୁ ଆଘ୍ରାଣ କରୁନାହିଁ, ରସକୁ ଆସ୍ୱାଦନ କରୁନାହିଁ, ରୂପକୁ ଦେଖୁନାହିଁ, କୌଣସି ବସ୍ତୁକୁ ସ୍ପର୍ଶ କରୁନାହିଁ, ନାନାବିଧ ଶବ୍ଦକୁ ଶୁଣୁନାହିଁ ଓ କୌଣସି କାମନା ମଧ୍ୟ କରୁନାହିଁ । ୧ । ସ୍ୱଭାବ, ଅଭୀଷ୍ଟ ବସ୍ତୁର କାମନା ଓ ଦ୍ୱେଷ୍ୟ ବସ୍ତୁ ପ୍ରତି ଦ୍ୱେଷ କରେ । ଯେପରି ପ୍ରାଣ ଓ ଅପାନ, ସ୍ୱଭାବରୁ ପ୍ରାଣୀଙ୍କ ଦେହରେ ସ୍ଥିତ ହୋଇ ଅନ୍ନାଦି ପାଚନ କରେ, ସେହିପରି ସ୍ୱଭାବରୁ ରାଗ ଓ ଦ୍ୱେଷ ଉତ୍ପନ୍ନ ହୁଏ । ୨ ।

ବାହ୍ୟ ଇନ୍ଦ୍ରିୟ ଓ ବିଷୟରୁ ଭିନ୍ନ ଯେଉଁ ସ୍ୱପ୍ନ ଓ ସୁଷୁପ୍ତିର ବାସନାମୟ ଇନ୍ଦ୍ରିୟ ଓ ବିଷୟ, ତଥା ତହିଁରେ ଯେଉଁ ନିତ୍ୟଭାବ, ତା'ଠାରୁ ବିଲକ୍ଷଣ ଯେଉଁ ଭୂତାତ୍ମା ତାକୁ ଶରୀର ମଧ୍ୟରେ ଯୋଗୀମାନେ ଦେଖନ୍ତି । ସେହି ଭୂତାତ୍ମାସ୍ଥିତ ମୁଁ କୌଣସି ପ୍ରକାରର କାମ, କ୍ରୋଧ, ଜରା ଓ ମୃତ୍ୟୁଦ୍ୱାରା ଗ୍ରସ୍ତ ନୁହେଁ । ୩ । ମୁଁ କୌଣସି କାମନା କରୁନାହିଁ କି କୌଣସି ଦୋଷକୁ ମଧ୍ୟ ଦ୍ୱେଷ କରୁନାହିଁ । ମୁଁ କମଳପତ୍ରରେ ଜଳବିନ୍ଦୁ ସଦୃଶ ରାଗ-ଦ୍ୱେଷ-ଶୂନ୍ୟ ଅଟେ ।

ଯେଉଁ ଇନ୍ଦ୍ରିୟମାନଙ୍କର ସ୍ୱଭାବ ବହୁବିଧ, ସେହିମାନଙ୍କୁ ଦେଖିବା ପାଇଁ ଏହି ନିତ୍ୟସ୍ୱରୂପ ଆତ୍ମାପାଇଁ ସମସ୍ତ ଭୋଗ ଅନିତ୍ୟ ହୋଇଯାଏ । ଏଣୁ ଏହି ଭୋଗ ସମୁଦାୟ ସେହି ବିଦ୍ୱାନଙ୍କୁ କୌଣସି ପ୍ରକାର ଲିପ୍ତ କରି ପାରନ୍ତି ନାହିଁ, ଯେପରି ଆକାଶରେ ସୂର୍ଯ୍ୟର କିରଣ ସୂର୍ଯ୍ୟଙ୍କୁ ଲିପ୍ତ କରିପାରେ ନାହିଁ । ୫ ।

ହେ ଯଶସ୍ୱିନି ! ଏ ବିଷୟରେ ଅଧ୍ୱର୍ଯ୍ୟୁ ଓ ଯତିର ପ୍ରାଚୀନ ଇତିହାସ ଶୁଣ । କୌଣସି ଯଜ୍ଞରେ ପଶୁର ପ୍ରୋକ୍ଷଣ ହେଉଥିବା ଦେଖି ସେଠାରେ ବସିଥିବା କୌଣସି ଯତି ଅଧ୍ୱର୍ଯ୍ୟୁଙ୍କୁ କହିଲେ—'ଏହା ହିଂସା' (ପଶୁବଧରେ ପାପ ହେବ) । ଅଧ୍ୱର୍ଯ୍ୟୁ ଯତିଙ୍କୁ ଉତ୍ତର ଦେଲେ—ଏହି ଛାଗ ନଷ୍ଟ ହେଉ ନାହିଁ । ଯଦି ବେଦ ସତ୍ୟ, ତେବେ ଏହି ଜୀବର କଲ୍ୟାଣ ହେବ । ଏହି ଶରୀରର ପାର୍ଥିବ ଭାଗ ପୃଥିବୀରେ ଓ ଜଳୀୟ ଭାଗ ଜଳରେ ବିଲୀନ ହୋଇଯିବ । ନେତ୍ର ସୂର୍ଯ୍ୟରେ, କାନ ଦିଶାରେ, ପ୍ରାଣ ଆକାଶରେ ଲୟ ହେବ । ଶାସ୍ତ୍ରାନୁସାରେ ମୋର କୌଣସି ଦୋଷ ହେବ ନାହିଁ । ୧୦ ।

ଯତି କହିଲେ—ଯଦି ଏହି ଛାଗର ପ୍ରାଣବିୟୋଗରେ କଲ୍ୟାଣ ହେବ ବୋଲି ବୁଝିପାରୁଛ, ତେବେ ଏହି ଯଜ୍ଞ ଛାଗପାଇଁ ହେଉଛି, ତୁମ୍ଭର ଏହି ଯଜ୍ଞ ସହିତ ପ୍ରୟୋଜନ କ'ଣ ? ଏ ବିଷୟରେ ତୁମ୍ଭଙ୍କୁ ନିଜର ଭ୍ରାତା, ପିତା, ମାତା ଓ ସଖାର ଅନୁମତି ନେବା ଆବଶ୍ୟକ । ଏହି ପରାଧୀନ ପଶୁକୁ ନେଇ ଏହାର ମାତା, ପିତା ଆଦିଙ୍କଠାରୁ ଅନୁମତି ନିଅ । (ଅନ୍ୟଥା

Digitized by srujanika@gmail.com

ତୁମ୍ଭଙ୍କୁ ହିଂସାଜନ୍ୟ ଦୋଷ ଅବଶ୍ୟ ହେବ) । ପ୍ରଥମେ ଏହି ପଶୁକୁ ନେଇ ସେମାନଙ୍କଠାରୁ ଅନୁମତି ଆଣି ଏହାର ବଧର ବିଚାର କରିପାର । ତୁମ୍ଭେ ଏହି ଛାଗର ଇନ୍ଦ୍ରିୟଗଣଙ୍କୁ ତାଙ୍କର କାରଣରେ ବିଲୀନ କରିଦେଇଛ । ମୋ ମତରେ ନିଶ୍ଚେଷ୍ଟ ଶରୀର ମାତ୍ର ଅବଶିଷ୍ଟ ଅଛି । ୧୪ ।

ଏହି ଚେତନାଶୂନ୍ୟ ଶରୀର ଇନ୍ଧନତୁଲ୍ୟ । ଏହାଦ୍ୱାରା ପ୍ରାୟଶ୍ଚିତ୍ତ କାମନାରେ ଯଜ୍ଞକାରୀ ତୁମ୍ଭପାଇଁ ଇନ୍ଧନ ହେଉଛି ପଶୁ । ବୃଦ୍ଧଜନଙ୍କର ଉପଦେଶ ହିଂସାରହିତ କାର୍ଯ୍ୟ ହେଉଛି କର୍ତ୍ତବ୍ୟ । ମୁଁ ଏତିକି କହୁଛି ଯେ ପ୍ରତ୍ୟେକ ମନୁଷ୍ୟଙ୍କୁ ପ୍ରତିଜ୍ଞା କରିବା ଉଚିତ ଯେ, 'ମୁଁ ଅହିଂସା ପାଳନ କରିବି' । ନଚେତ୍ ତୁମ୍ଭଦ୍ୱାରା ଅନେକ ଦୋଷ ହୋଇଯିବ । କୌଣସି ପ୍ରାଣୀର ହିଂସା ନ କରିବା ହେଉଛି ଉତ୍ତମ । ଆମେ ପ୍ରତ୍ୟକ୍ଷ ଫଳର ସାଧକ, ପରୋକ୍ଷର ନୁହେଁ ।୧୮।

ଅଧ୍ୱର୍ଯ୍ୟୁ କହିଲେ—ହେ ଯତେ ! ପ୍ରତ୍ୟେକ ଭୂତରେ ପ୍ରାଣ ଅଛି, ଏହା ତ ତୁମେ ସ୍ୱୀକାର କରୁଛ । ତେବେ ମଧ୍ୟ ପୃଥିବୀର ଗନ୍ଧ, ଜଳର ରସ, ତେଜର ରୂପ, ବାୟୁର ଗୁଣ, ସ୍ପର୍ଶ ଓ ଆକାଶର ଶବ୍ଦଗୁଣର ଉପଭୋଗ କରୁଛ ଓ ମନଦ୍ୱାରା ମତିକୁ ବୁଝୁଛ । ଏଣେ କୌଣସି ପ୍ରାଣୀର ପ୍ରାଣ ନେବାରୁ ନିବୃତ୍ତ ହେଉଛ, ତେଣେ ଅନ୍ୟର ହିଂସା କରୁଛ । ହେ ଦ୍ୱିଜବର ! କୌଣସି ଚେଷ୍ଟା ହିଂସାଶୂନ୍ୟ ନୁହେଁ । ଏଣୁ ତୁମେ କିପରି ବୁଝୁଛ ଯେ, ତୁମେ ଅହିଂସା ପାଳନ କରୁଛ ବୋଲି । ୨୧ । ଯତି କହିଲେ—ଅକ୍ଷର ଓ କ୍ଷରରୂପରେ ଆତ୍ମା ଦୁଇପ୍ରକାର । ତ୍ରିକାଳ ସ୍ଥିତିଶୀଳକୁ ଅକ୍ଷର ଓ ବିନାଶଶୀଳକୁ କ୍ଷର କହନ୍ତି । ପ୍ରାଣ, ଜିହ୍ୱା, ମନ ଓ ରଜୋଗୁଣ ସହିତ ସତ୍ତ୍ୱଗୁଣ, ଏହିସବୁ ଭବଦ୍ୱାରା ମୁକ୍ତ ନିର୍ଦ୍ୱନ୍ଦ୍ୱ, ନିଷ୍କାମ, ପ୍ରାଣୀରେ ସମଭାବାପନ୍ନ, ମମତାଶୂନ୍ୟ, ଜିତାତ୍ମା ଓ ବନ୍ଧନମୁକ୍ତ ମନୁଷ୍ୟଙ୍କୁ କୌଣସି ଭୟ ହୁଏ ନାହିଁ ।୨୪। ଅଧ୍ୱର୍ଯ୍ୟୁ କହିଲେ—ହେ ବୁଦ୍ଧିମାନ୍ ଶ୍ରେଷ୍ଠ ଯତେ ! ଏହି ଜଗତରେ ଆପଣଙ୍କ ସଦୃଶ ସଜ୍ଜନଙ୍କସହ ବାସ କରିବା ଉଚିତ । ଆପଣଙ୍କ କଥାରେ ମୋତେ ପ୍ରତୀତ ହେଉଛି ଯେ, ମୁଁ ଜ୍ଞାନଯୁକ୍ତ ହୋଇ ବେଦପ୍ରତିପାଦିତ ଧର୍ମ ପାଳନ କରୁଅଛି । ୨୬ ।

ବ୍ରାହ୍ମଣ କହିଲେ—ହେ ପ୍ରିୟେ ! ଅଧ୍ୱର୍ଯ୍ୟୁଙ୍କ ଉକ୍ତିରେ ଯତି ମୌନ ହୋଇ ଆଉ କିଛି କହିଲେ ନାହିଁ । ଅଧ୍ୱର୍ଯ୍ୟୁ ମଧ୍ୟ ମହାଯଜ୍ଞରେ ଅଗ୍ରସର ହେଲେ । ବ୍ରାହ୍ମଣମାନେ ମୋକ୍ଷର ଏପରି ସୂକ୍ଷ୍ମରୂପ ବତାନ୍ତି ଓ ତତ୍ତ୍ୱଦର୍ଶୀ ପୁରୁଷ ଉପଦେଶାନୁସାରେ ମୋକ୍ଷକୁ ଜାଣି ତାହାର ଅନୁଷ୍ଠାନ କରନ୍ତି । ୨୮ ।

—0—

Digitized by srujanika@gmail.com

# ଏକୋନତ୍ରିଂଶ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ଭାବିନି ! ଏହି ବିଷୟରେ ପଣ୍ଡିତମାନେ କାର୍ତ୍ତବୀର୍ଯ୍ୟ ଅର୍ଜୁନ ସମୁଦ୍ରଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୧ । ଯେ ଶରାସନଦ୍ୱାରା ସସାଗରା ଧରଣୀକୁ ନିଃଶେଷରେ ଜୟ କରିଥିଲେ, ସେହି ସହସ୍ରବାହୁ କାର୍ତ୍ତବୀର୍ଯ୍ୟାର୍ଜୁନ ନାମରେ ବିଖ୍ୟାତ ରାଜା ଥିଲେ । ୨ । ଆମ୍ଭେମାନେ ଏହିପରି ଶୁଣିଅଛୁଁ ଯେ, ସେ କୌଣସି ସମୟରେ ନିଜ ତେଜରେ ଦର୍ପିତ ହୋଇ ସମୁଦ୍ର ସମୀପରେ ବିଚରଣ କରି ଶତ ଶରଦ୍ୱାରା ସମୁଦ୍ରଙ୍କୁ ସମାଚ୍ଛନ୍ନ କଲେ । ୩ ।

ସମୁଦ୍ର ତାହାଙ୍କୁ କୃତାଞ୍ଜଳିପୂର୍ବରେ ନମସ୍କାର କରି କହିଲେ—ହେ ବୀର ! ଆପଣ ଆମ୍ଭଙ୍କ ନାରାଚ ନିକ୍ଷେପ କରନ୍ତୁ ନାହିଁ । ଆମ୍ଭେ ଆପଣଙ୍କର କେଉଁ କାର୍ଯ୍ୟ କରିବୁଁ ତାହା ଆଦେଶ କରିବା ହେଉନ୍ତୁ । ୪ । ହେ ରାଜେନ୍ଦ୍ର ! ମଦାଶ୍ରିତ ପ୍ରାଣିଗଣ ଆପଣଙ୍କଦ୍ୱାରା ବିସୃଷ୍ଟ ମହାଶର-ସମୂହଦ୍ୱାରା ନିହତ ହେଉଅଛନ୍ତି । ହେ ବିଭୋ ! ଆପଣ ସେମାନଙ୍କୁ ଅଭୟ ପ୍ରଦାନ କରିବା ହେଉନ୍ତୁ । ୫ ।

ସହସ୍ରାର୍ଜୁନ କହିଲେ—ଯଦି ଯୁଦ୍ଧରେ ଆମ୍ଭ ସଦୃଶ କେହି ଶରାସନ-ଧାରୀ ଅଛନ୍ତି, ଏବଂ ସେ ଆମ୍ଭ ସହିତ ଯୁଦ୍ଧରେ ଅବସ୍ଥାନ କରିବାକୁ ସମର୍ଥ ହେବେ, ତେବେ ଆମ୍ଭଙ୍କୁ ତାହାଙ୍କ କଥା କହ । ୬ ।

ସମୁଦ୍ର କହିଲେ—ହେ ରାଜନ୍ ! ଆପଣ ଯଦି ମହର୍ଷି ଜମଦଗ୍ନିଙ୍କୁ ବିଶେଷରୂପେ ଅବଗତ ଅଛନ୍ତି, ତେବେ ତଦୀୟ ପୁତ୍ରଙ୍କ ନିକଟକୁ ଗମନ କରିବା ହେଉନ୍ତୁ । ସେ ଯଥାବିଧାନରେ ଆପଣଙ୍କ ଆତିଥ୍ୟ କରିବାକୁ ସମର୍ଥ ହେବେ । ୭ ।

ତଦନନ୍ତର ରାଜା କାର୍ତ୍ତବୀର୍ଯ୍ୟାର୍ଜୁନ ଅତିଶୟ କ୍ରୁଦ୍ଧ ହୋଇ ତାହାଙ୍କ ଆଶ୍ରମକୁ ଗମନ କରି ସେହି ପରଶୁରାମଙ୍କ ନିକଟରେ ଉପସ୍ଥିତ ହେଲେ । ୮ । ରାଜା ବନ୍ଧୁବର୍ଗଙ୍କ ସହିତ ମହାତ୍ମା ରାମଙ୍କ ପ୍ରତିକୂଳ କାର୍ଯ୍ୟକରି ତାହାଙ୍କର ଆୟାସ ଉତ୍ପାଦନ କଲେ । ୯ । ହେ କମଳଲୋଚନ ! ତେତେବେଳେ

Digitized by srujanika@gmail.com

ସେହି ଅମିତତେଜା ରାମଙ୍କର କ୍ରୋଧାନଳ ଶତ୍ରୁସୈନ୍ୟମାନଙ୍କୁ ଦଗ୍ଧକରି ପ୍ରଜ୍ୱଳିତ ହେଲା । ୧୦ ।

ତଦନନ୍ତର ରାମ ସହସା ପରଶୁ ଗ୍ରହଣ କରି, ବହୁଶାଖା ସମନ୍ୱିତ ତରୁ ସଦୃଶ ସେହି ସହସ୍ରବାହୁ କାର୍ତ୍ତବୀର୍ଯ୍ୟ ଅର୍ଜୁନଙ୍କୁ ଛେଦନ କଲେ । ୧୧ । ବାନ୍ଧବଗଣ ନିହତ ଏବଂ ପତିତ ରାଜାଙ୍କୁ ଅବଲୋକନ କରି ସମସ୍ତେ ସମବେତ ହୋଇ ଆସି ଏବଂ ଶକ୍ତି ଗ୍ରହଣପୂର୍ବକ ଭୃଗୁନନ୍ଦନ ରାମଙ୍କ ପ୍ରତି ଧାବମାନ ହେଲେ । ୧୨ । ପରଶୁରାମ ମଧ୍ୟ ସତ୍ୱର ଶରାସନ ଗ୍ରହଣ ପୂର୍ବକ ରଥରେ ଆରୋହଣ କରି ଶରବର୍ଷଣ ପୂର୍ବକ ନୃପତିଙ୍କ ସମସ୍ତ ବଳ ବ୍ୟଥିତ କଲେ । ୧୩ ।

ତଦନନ୍ତର କତିପୟ କ୍ଷତ୍ରିୟ ଜମଦଗ୍ନିନନ୍ଦନ ରାମଙ୍କ ଉପରେ ଭୀତ ହୋଇ, ସିଂହାର୍ଦ୍ଦିତ ମୃଗ ସଦୃଶ ଗିରିଗହ୍ୱରରେ ପ୍ରବିଷ୍ଟ ହେଲେ । ୧୪ । କ୍ରମେ କ୍ରମେ କ୍ଷତ୍ରିୟଗଣ ରାମଙ୍କ ଉପରେ ନିଜ ନିଜ ସମସ୍ତ ବିହିତ କର୍ମ ଅନୁଷ୍ଠାନ ନ କରିବାରୁ ସେମାନଙ୍କର ପୁତ୍ରଗଣ ବେଦର ଅଜ୍ଞାନ ବଶତଃ ଶୂଦ୍ରତ୍ୱ ପ୍ରାପ୍ତ ହେଲେ । ୧୫ । ଏହିରୂପେ କ୍ଷାତ୍ରଧର୍ମାବଲମ୍ବୀ ସେହି ଶବର ସହ ଦ୍ରାବିଡ଼, ଆଭୀର ଏବଂ ପୁଣ୍ଡ୍ର, ଏହିମାନେ ମଧ୍ୟ କ୍ଷାତ୍ରଧର୍ମ ଅନୁଷ୍ଠାନ ନ କରିବାରୁ ଶୂଦ୍ରତ୍ୱ ପ୍ରାପ୍ତ ହେଲେ । ୧୬ ।

ତଦନନ୍ତର ବ୍ରାହ୍ମଣଗଣକର୍ତ୍ତୃକ ହତବୀର ବିଧବା କ୍ଷତ୍ରିୟ ସ୍ତ୍ରୀମାନଙ୍କ-ଠାରୁ ଯେଉଁ ସମସ୍ତ କ୍ଷତ୍ରିୟ ସନ୍ତାନ ଉତ୍ପାଦିତ ହେଲେ, ଜମଦଗ୍ନିନନ୍ଦନ ରାମ ସେମାନଙ୍କୁ ମଧ୍ୟ ନିହତ କଲେ । ୧୭ ।

ରାମ ଏହିରୂପେ ଏକବିଂଶତି ବାର ସେହି ଯୁଦ୍ଧଯଜ୍ଞ ସମ୍ପନ୍ନ କଲାରୁ, ପରିଶେଷରେ ସର୍ବଜନ ପରିଶ୍ରୁତା ଅଶରୀରୀ ସେହି ଦୈବବାଣୀ ତାହାଙ୍କୁ କହିଲେ ଯେ, ହେ ରାମ ! ତୁମ୍ଭେ ବାରମ୍ବାର ଏହି କ୍ଷତ୍ରବନ୍ଧୁଗଣଙ୍କୁ ବିନଷ୍ଟ କରି କେଉଁ ଗୁଣ ଅବଲୋକନ କରୁଅଛ ? ହେ ତାତ ! ତୁମ୍ଭେ ଏହି ନିଷ୍ଠୁର କାର୍ଯ୍ୟରୁ ନିବୃତ୍ତ ହୁଅ ।

ତେତେବେଳେ ଋଚୀକ ପ୍ରଭୃତି ପିତାମହଗଣ ସେହି ମହାତ୍ମା ରାମଙ୍କୁ ନିବୃତ୍ତ କଲେ । ପରନ୍ତୁ ରାମ ପିତୃଶତ୍ରୁବଧରୁ କ୍ଷାନ୍ତ ନହୋଇ ଋଷିଗଣଙ୍କୁ

Digitized by srujanika@gmail.com

କହିଲେ—ହେ ପିତାମହଗଣ ! ଏହି ବିଷୟରେ ଆମ୍ଭଙ୍କୁ ନିବାରଣ କରିବାର ଆପଣମାନଙ୍କର ଅନୁଚିତ । ୨୧ ।

ପିତୃଗଣ କହିଲେ—ହେ ଯଜପ୍ରିପ୍ରବର ! ସେହି କ୍ଷାତ୍ରବନ୍ଧୁଗଣ ତୁମ୍ଭର ବଧଯୋଗ୍ୟ ନୁହନ୍ତି । ବିଶେଷତଃ ବ୍ରାହ୍ମଣ ହୋଇ କ୍ଷତ୍ରିୟ ବଧ କରିବାର ତୁମ୍ଭ ପକ୍ଷରେ ଯୁକ୍ତିଯୁକ୍ତ ନୁହେ । ୨୨ ।

—0—

# ତ୍ରିଂଶତ୍ତମାଧ୍ୟାୟ

ପିତୃଗଣ କହିଲେ—ହେ ଦ୍ୱିଜସତ୍ତମ ! ଏହି ଅହିଂସା ବିଷୟରେ ପଣ୍ଡିତଗଣ ଯେଉଁ ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି, ତାହା ଶ୍ରବଣ କରି ତୁମ୍ଭର ସେହିପରି କରିବାର ଉଚିତ । ୧ ।

ପୂର୍ବକାଳରେ ମହାତପସ୍ୱୀ ଧର୍ମଜ୍ଞ ସତ୍ୟବାଦୀ ଦୃଢ଼ବ୍ରତ ମହାତ୍ମା ଅଳର୍କ ନାମକ ଏକ ରାଜର୍ଷି ଥିଲେ । ୨ । ସେ ଶରାସନଦ୍ୱାରା ଏହି ସସାଗରା ଧରଣୀକୁ ଜୟକରି ଅତି ଦୁଷ୍କର କର୍ମକରି ସୂକ୍ଷ୍ମ ବିଷୟରେ ଚିତ୍ତ ସମାଧାନ କଲେ । ୩ ।

ହେ ମହାମତେ ! ସେ ଏକଦା ସ୍ୱୀୟ ସୁମହତ୍ କର୍ମସବୁ ପରିତ୍ୟାଗ ପୂର୍ବକ ବୃକ୍ଷମୂଳରେ ଉପବେଶନ କରି ସୂକ୍ଷ୍ମତମ ପରମବ୍ରହ୍ମଙ୍କ ଚିନ୍ତାକଲେ ।୪।

ଅଳର୍କ ମନେ ମନେ ଚିନ୍ତାକରି କହିଲେ ଯେ, ଆମ୍ଭ ମନର ବଳ ଅତିଶୟ ପ୍ରବଳ ହୋଇଅଛି । ଅତଏବ ମନକୁ ଜୟକଲେ ଆମ୍ଭର ନିତ୍ୟ ଜୟଲାଭ ହେବ । ସମ୍ପ୍ରତି ଆମ୍ଭେ ଇନ୍ଦ୍ରିୟ ବୈରିଦ୍ୱାରା ପରିବାରିତ ହୋଇଅଛୁଁ । ସେହି ବାହ୍ୟ ଇନ୍ଦ୍ରିୟ ବୈରିଗଣଙ୍କ ପ୍ରତି ହଠଯୋଗ ରୂପ ବାଣସମୂହ ନିକ୍ଷେପ କରିବୁଁ । ଯେତେବେଳେ ମନର ଚପଳତା ବଶତଃ ଏହି କର୍ମ, ମର୍ତ୍ତ୍ୟଗଣଙ୍କୁ ନିକ୍ଷେପ କରିବାକୁ ଇଚ୍ଛାକରେ, ତେତେବେଳେ ଆମ୍ଭେ ମନପ୍ରତି ହଠଯୋଗ ରୂପ ଏହି ସୁତୀକ୍ଷ୍ଣ ସାୟକସମୂହ ବିମୋଚନ କରିବୁଁ । ୬ ।

Digitized by srujanika@gmail.com

ମନ କହିଲେ—ହେ ଅଳର୍କ ! ଏହି ବାଣସମୂହ ଆମ୍ଭଙ୍କୁ କଦାପି ଭେଦ କରିପାରିବେ ନାହିଁ, ଏମାନେ ତୁମ୍ଭର ମର୍ମଭେଦ କରିବେ । ତାହାହେଲେ ତୁମ୍ଭେ ଭିନ୍ନମର୍ମା ହୋଇ ବିପଦ୍‌ଗ୍ରସ୍ତ ହେବ । ୭ । ଅତଏବ ଏହା ଭିନ୍ନ ଯେଉଁ ବାଣଦ୍ୱାରା ତୁମ୍ଭେ ଆମ୍ଭଙ୍କୁ ନିହତ କରିବ, ତାହାର ଅନୁସନ୍ଧାନ କର ।

ଅଳର୍କ ତାହା ଶୁଣି ଚିନ୍ତାକରି କହିଲେ ଯେ, ଘ୍ରାଣ ନାନାବିଧ ଗନ୍ଧ ଆଘ୍ରାଣ କରି ଗନ୍ଧକୁ ଆକାଂକ୍ଷା କରୁଥାଏ । ଅତଏବ ଆମ୍ଭେ ସେହି ଘ୍ରାଣପ୍ରତି ଏହି ଶାଣିତ ଶର ନିକ୍ଷେପ କରିବୁଁ । ୯ ।

ଘ୍ରାଣ କହିଲେ—ହେ ଅଳର୍କ ! ତୁମ୍ଭେ ଆମ୍ଭପ୍ରତି ଯେଉଁ ଶରସମୂହ ନିକ୍ଷେପ କରିବ, ଏହାସବୁ କଦାପି ଆମ୍ଭଙ୍କୁ ଭେଦ କରିପାରିବ ନାହିଁ । ପ୍ରତ୍ୟୁତ ଏହି ଶରସମୂହ ତୁମ୍ଭର ମର୍ମଭେଦ କରିବେ । ଅତଏବ ତୁମ୍ଭେ ଭିନ୍ନମର୍ମା ହୋଇ ମୃତ୍ୟୁମୁଖରେ ପତିତ ହେବ । ସୁତରାଂ ଏହା ଭିନ୍ନ ଯେଉଁ ବାଣଦ୍ୱାରା ତୁମ୍ଭେ ଆମ୍ଭଙ୍କୁ ନିପାତିତ କରିପାରିବ, କ୍ଷଣକାଳ ତାହା ଅନୁସନ୍ଧାନ କର ।

ଅଳର୍କ ସେହି ବାକ୍ୟ ଶ୍ରବଣ ପୂର୍ବକ ଚିନ୍ତାକରି କହିଲେ ଯେ, ଏହି ଜିହ୍ୱା ସମସ୍ତ ସ୍ୱାଦୁରସ ଭୋଜନ କରି ସେହି ରସକୁ ଆକାଂକ୍ଷା କରୁଅଛି । ଅତଏବ ଆମ୍ଭେ ଜିହ୍ୱାକୁ ଏହି ଶାଣିତ ଶରସମୂହ ନିକ୍ଷେପ କରିବୁଁ । ୧୨ ।

ଜିହ୍ୱା କହିଲେ—ହେ ଅଳର୍କ ! ତୁମ୍ଭେ ଆମ୍ଭପ୍ରତି ଯେଉଁ ଶରସମୂହ ନିକ୍ଷେପ କରିବାକୁ ଇଚ୍ଛା କରିଅଛ, ସେହି ଶରସମୂହ କଦାପି ଆମ୍ଭଙ୍କୁ ସ୍ପର୍ଶ କରିପାରିବେ ନାହିଁ । ପ୍ରତ୍ୟୁତ ତୁମ୍ଭର ମର୍ମଭେଦ କରି ତୁମ୍ଭଙ୍କୁ ନିହତ କରିବେ । ଅତଏବ ଏହା ଭିନ୍ନ ଯେଉଁ ବାଣଦ୍ୱାରା ତୁମ୍ଭେ ଆମ୍ଭଙ୍କୁ ବିନଷ୍ଟ କରିପାରିବ, ତାହାର ଅନୁସନ୍ଧାନ କର ।

ଅଳର୍କ ତାହା ଶ୍ରବଣ ପୂର୍ବକ କ୍ଷଣକାଳ ଚିନ୍ତାକରି କହିଲେ ଯେ, ତ୍ୱକ୍ ବିବିଧ ସ୍ପର୍ଶ ସ୍ପର୍ଶନ କରି ସେହି ସ୍ପର୍ଶସମୂହକୁ ଆକାଂକ୍ଷା କରେ । ଅତଏବ ଆମ୍ଭେ କଙ୍କପତ୍ର ସମନ୍ୱିତ ବିବିଧ ଶରଦ୍ୱାରା ତ୍ୱକ୍ ଇନ୍ଦ୍ରିୟକୁ ନିପାତିତ କରିବୁଁ । ୧୫ ।

Digitized by srujanika@gmail.com

ତ୍ୱକ୍ ଇନ୍ଦ୍ରିୟ କହିଲେ—ହେ ଅଳର୍କ ! ତୁମ୍ଭେ ଆମ୍ଭପ୍ରତି ଯେଉଁ ଶରସମୂହ ନିକ୍ଷେପ କରିବାକୁ ଇଚ୍ଛା କରିଅଛ, ଏମାନେ ଆମ୍ଭଙ୍କୁ କଦାପି ଭେଦ କରିପାରିବେ ନାହିଁ । ତୁମ୍ଭର ମର୍ମ ଭେଦକରି ତୁମ୍ଭଙ୍କୁ ବିନଷ୍ଟ କରିବେ । ୧୭ । ଅତଏବ ତୁମ୍ଭେ ଏହା ଭିନ୍ନ ଯେଉଁ ବାଣଦ୍ୱାରା ଆମ୍ଭଙ୍କୁ ବିନଷ୍ଟ କରିପାରିବ, ତାହାର ଅନୁସନ୍ଧାନ କର ।

ଅନନ୍ତର ଅଳର୍କ ସେହି ବାକ୍ୟ ଶ୍ରବଣ କରି କ୍ଷଣକାଳ ଚିନ୍ତାକରି କହିଲେ ଯେ, ଶ୍ରୋତ୍ର ବିବିଧ ଶବ୍ଦ ଶ୍ରବଣ କରି ତାହାକୁ ଆକାଂକ୍ଷା କରୁଅଛି । ଅତଏବ ଆମ୍ଭେ ଏହି ଶାଣିତ ଶରସମୂହ ଶ୍ରୋତ୍ରପ୍ରତି ନିକ୍ଷେପ କରିବୁଁ । ୧୮ ।

ଶ୍ରୋତ୍ର କହିଲେ—ହେ ଅଳର୍କ ! ତୁମ୍ଭେ ଆମ୍ଭପ୍ରତି ଯେଉଁ ଶରସମୂହ ନିକ୍ଷେପ କରିବାକୁ ଇଚ୍ଛା କରିଅଛ, ସେହି ସମସ୍ତ ଶର ଆମ୍ଭଙ୍କୁ କଦାପି ଭେଦ କରିପାରିବେ ନାହିଁ । ପ୍ରତ୍ୟୁତ ତୁମ୍ଭର ମର୍ମଭେଦ କରି ତୁମ୍ଭର ଜୀବନ ନାଶ କରିବେ । ଅତଏବ ତୁମ୍ଭେ ଏହା ଭିନ୍ନ ଯେଉଁ ବାଣଦ୍ୱାରା ଆମ୍ଭଙ୍କୁ ବିନଷ୍ଟ କରିବ, ତାହା ଅନୁସନ୍ଧାନ କର ।

ଅଳର୍କ ସେହି କଥା ଶୁଣି କ୍ଷଣକାଳ ଚିନ୍ତାକରି କହିଲେ ଯେ, ଚକ୍ଷୁ ବହୁବିଧ ରୂପ ଅବଲୋକନ କରି ସେହି ରୂପମାନଙ୍କୁ ଆକାଂକ୍ଷା କରୁଅଛି । ଅତଏବ ଏହି ଶାଣିତ ଶରନିକରଦ୍ୱାରା ସେହି ଚକ୍ଷୁକୁ ନିହତ କରିବୁଁ । ୨୧ ।

ଚକ୍ଷୁ କହିଲେ—ହେ ଅଳର୍କ ! ତୁମ୍ଭେ ଏହି ବାଣଦ୍ୱାରା କଦାପି ଆମ୍ଭଙ୍କୁ ନିହତ କରିପାରିବ ନାହିଁ । ବରଂ ଏହି ଶର ତୁମ୍ଭର ମର୍ମଭେଦ କରି ତୁମ୍ଭଙ୍କୁ ନିପାତିତ କରିବ । ଅତଏବ ତୁମ୍ଭେ ଏତଦ୍‌ଭିନ୍ନ ଯେଉଁ ବାଣଦ୍ୱାରା ଆମ୍ଭଙ୍କୁ ବିନଷ୍ଟ କରିପାରିବ, ସେହି ବାଣର ଅନୁସନ୍ଧାନ କର ।

ଅନନ୍ତର ଅଳର୍କ ସେହି ବାକ୍ୟ ଶ୍ରବଣ କରି କ୍ଷଣକାଳ ଚିନ୍ତାକରି କହିଲେ—ଏହି ବୁଦ୍ଧି ପ୍ରଜ୍ଞାଦ୍ୱାରା ବହୁବିଧ ନିଷ୍ଠା ସମ୍ପାଦନ କରନ୍ତି । ଅତଏବ ଆମ୍ଭେ ଏହି ଶାଣିତ ଶରସମୂହ ସେହି ବୁଦ୍ଧିଙ୍କ ପ୍ରତି ନିକ୍ଷେପ କରିବୁଁ । ୨୪ ।

ବୁଦ୍ଧି କହିଲେ—ହେ ଅଳର୍କ ! ତୁମ୍ଭେ ଏହି ଶରଦ୍ୱାରା ଆମ୍ଭଙ୍କୁ କଦାପି ବିନଷ୍ଟ କରିପାରିବ ନାହିଁ । ପ୍ରତ୍ୟୁତ ଏହି ଶର ତୁମ୍ଭର ମର୍ମଭେଦ କରି

Digitized by srujanika@gmail.com

ତୁମ୍ଭଙ୍କୁ ନିହତ କରିବ । ଅତଏବ ଆମ୍ଭ ବିନାଶ ନିମିତ୍ତ ତୁମ୍ଭର ଯଦି ଅଭିଳାଷ ଅଛି, ତେବେ ଏହା ଭିନ୍ନ ଅନ୍ୟ କୌଣସି ବାଣର ଅନୁସନ୍ଧାନ କର । ୨୫ ।

ବ୍ରାହ୍ମଣ କହିଲେ—ତଦନନ୍ତର ଅଳର୍କ ସେହି ସ୍ଥାନରେ ଘୋରତର ଦୁଷ୍କର ତପସ୍ୟା କରି ବଳପୂର୍ବକ ପୂର୍ବୋକ୍ତ ସପ୍ତଇନ୍ଦ୍ରିୟଗଣଙ୍କପ୍ରତି ବାଣ ନିକ୍ଷେପ କରିପାରିଲେ ନାହିଁ ।

ହେ ଦ୍ୱିଜବର ! ତଦନନ୍ତର ପ୍ରାଜ୍ଞସତ୍ତମ ପ୍ରଭୁ ଅଳର୍କ ସମାହିତ-ଚିତ୍ତରେ ବହୁକାଳ ଚିନ୍ତାକରି ପରମ ଶ୍ରେୟଲାଭ କରିନପାରି ଏକମନରେ ନିଶ୍ଚଳ ଭାବରେ ଯୋଗମାର୍ଗ ଅବଲମ୍ବନ ପୂର୍ବକ ଏହି ବାଣରେ ସତ୍ୱର ସେହି ଇନ୍ଦ୍ରିୟଗଣଙ୍କୁ ନିହତ କଲେ ଏବଂ ଯୋଗବଳରେ ପରମାତ୍ମାଙ୍କଠାରେ ପ୍ରବିଷ୍ଟ ହୋଇ ପରମସିଦ୍ଧି ପ୍ରାପ୍ତ ହେଲେ । ୨୯ ।

ଅନନ୍ତର ରାଜର୍ଷି ଅଳର୍କ ବିସ୍ମିତ ହୋଇ ଏହି ଗାଥା ଗାନକଲେ ଯେ, ଓଃ କି କଷ୍ଟ ଉପସ୍ଥିତ ହେଲା ! କାରଣ, ପୂର୍ବେ ଆମ୍ଭେ ଭୋଗତୃଷ୍ଣାରେ ଆକ୍ରାନ୍ତ ହୋଇ ସେହି ବାହ୍ୟବସ୍ତୁ ରାଜ୍ୟାଦିର ଉପାସନାରେ ନିଯୁକ୍ତ ଥିଲୁଁ । ଅତଃପର ଆମ୍ଭେ ନିଶ୍ଚୟ ଜାଣିଲୁଁ ଯେ, ଯୋଗ ଅପେକ୍ଷା ଅନ୍ୟ କିଛି ପରମ ସୁଖକର ନାହିଁ । ୩୧ ।

ହେ ରାମ ! ତୁମ୍ଭେ ଏହା ବିଶେଷରୂପେ ଜାଣି ଏବଂ କ୍ଷତ୍ରିୟବଧରୁ ନିବୃତ୍ତ ହୋଇ ଘୋରତର ତପସ୍ୟାର ଅନୁଷ୍ଠାନ କର । ତାହାହେଲେ ତୁମ୍ଭେ ଶ୍ରେୟୋଲାଭ କରିପାରିବ । ୩୨ । ମହାଭାଗ ଜମଦଗ୍ନିନନ୍ଦନ ରାମ ପିତାମହଗଣଙ୍କଠାରୁ ଏହି ବାକ୍ୟ ଶ୍ରବଣ କରି ଅତି କଠୋର ତପସ୍ୟା ଅନୁଷ୍ଠାନ ପୂର୍ବକ ଦୁର୍ଗମ ସିଦ୍ଧି ଲାଭକଲେ । ୩୩ ।

---

Digitized by srujanika@gmail.com

# ଏକତ୍ରିଂଶତ୍ତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ପ୍ରିୟେ ! ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣ ମନୁଷ୍ୟମାନଙ୍କର ଶତ୍ରୁ ବୋଲି ନିର୍ଦ୍ଦେଶ ହୋଇଅଛନ୍ତି । ଏହି ତିନି ଗୁଣ ବୃତ୍ତିଭେଦରେ ନଅପ୍ରକାର ହୁଅନ୍ତି । ଯଥା—ପ୍ରହର୍ଷ, ପ୍ରୀତି ଓ ଆନନ୍ଦ ଏହି ତିନିଗୋଟି ସତ୍ତ୍ୱଗୁଣର ବୃତ୍ତି; ବିଷୟବାସନା, କ୍ରୋଧ ଓ ଦ୍ୱେଷାଭିନିବେଶ ଏହି ତିନିଗୋଟି ରଜୋଗୁଣର ବୃତ୍ତି; ଶ୍ରମ, ତନ୍ଦ୍ରା ଓ ମୋହ ଏହି ତିନିଗୋଟି ତମୋଗୁଣର ବୃତ୍ତି । ୨ । ଧୃତିମାନ୍ ଜିତେନ୍ଦ୍ରିୟ ପ୍ରଶାନ୍ତଚିତ୍ତ ପୁରୁଷ ଏହି ସମସ୍ତଙ୍କୁ ଛେଦନ କରି ତନ୍ଦ୍ରାବିହୀନ ହୋଇ ଶରସମୂହଦ୍ୱାରା ଶତ୍ରୁଗଣଙ୍କୁ ଜୟ କରିବାକୁ ଉଦ୍ୟତ ହେବେ । ୩ ।

ପୂର୍ବକାଳରେ ପ୍ରଶାନ୍ତଚିତ୍ତ ନରପତି ଅମ୍ବରୀଷ ଯେଉଁ ଗାଥା ଗାନ କରିଥିଲେ, ପୁରାବିତ୍ ପଣ୍ଡିତଗଣ ଏହି ବିଷୟରେ ସେହି ଗାଥା କୀର୍ତ୍ତନ କରନ୍ତି । ୪ । ଶମଗୁଣ ଅନ୍ତର୍ହିତ ଏବଂ ରଜୋଗୁଣ ସମ୍ୟକ୍‌ରୂପେ ଉଦିତ ହେବାରୁ ମହାଯଶା ରାଜା ଅମ୍ବରୀଷ ସହସା ରାଜ୍ୟଗ୍ରହଣ କଲେ । ୫ ।

ତଦନନ୍ତର ସେ ଆତ୍ମୀୟ ରଜୋଗୁଣର ନିଗ୍ରହ କରି ଶମଗୁଣର ସମ୍ମାନନା କରି ମହର୍ଷି ସିଦ୍ଧିଲାଭ ପୂର୍ବକ ଏହି ଗାଥା ଗାନ କରିଥିଲେ । ୬ । ଆମ୍ଭେ ସମସ୍ତ ଶତ୍ରୁଗଣଙ୍କୁ ଜୟ ଏବଂ ଦୋଷସମୂହକୁ ବିନାଶ କରିଅଛୁଁ । କିନ୍ତୁ ଅବଶ୍ୟ ବଧ ଗୋଟିଏ ମହାନ୍ ଦୋଷ ରହିଅଛି । ତାହା ନଷ୍ଟ କରିପାରିନାହୁଁ । ୭ । ମାନବ ଏହି ନିମିତ୍ତ ଏହି ଜନ୍ମରେ ପ୍ରଯୁକ୍ତ ହୋଇ ବିତୃଷ୍ଣତା ଲାଭ କରିପାରନ୍ତି ନାହିଁ । କେବଳ ତୃଷ୍ଣାର୍ତ୍ତ ହୋଇ ଅବୋଧ ସଦୃଶ ନୀଚକର୍ମରେ ଧାବମାନ ହେଉଥାଆନ୍ତି । ୮ ।

ଇହଲୋକରେ ମନୁଷ୍ୟ ଯତ୍‌କର୍ତ୍ତୃକ ପ୍ରଯୁକ୍ତ ହୋଇ ଅକାର୍ଯ୍ୟର ସେବା କରନ୍ତି, ସେହି ଲୋଭକୁ ତୀକ୍ଷ୍ଣ ଅସିଦ୍ୱାରା ନିହତ କର । ୯ । କାରଣ, ଲୋଭ ହେତୁରୁ ତୃଷ୍ଣା ଉତ୍ପନ୍ନ ହୁଏ ଏବଂ ତହିଁରୁ ଚିନ୍ତା ପ୍ରବୃତ୍ତ ହୁଏ । ମନୁଷ୍ୟ ଲିପ୍‌ସମାନ ହୋଇ ପ୍ରଚୁର ପରିମାଣରେ ରାଜସ ଗୁଣସମୂହକୁ ଲାଭ କରନ୍ତି । ରାଜସ ଗୁଣ ଅଧିକାର କରି ପଶ୍ଚାତ୍ ଭୂୟିଷ୍ଠ ତାମସ ଗୁଣ ପ୍ରାପ୍ତ ହୁଅନ୍ତି । ୧୦ ।

Digitized by srujanika@gmail.com

ଦେହବନ୍ଧନ ସେହି ଗୁଣସହିତ ମିଳିତ ହେଲେ, ପୁରୁଷ ବାରମ୍ବାର ଜନ୍ମଗ୍ରହଣ କରି କର୍ମାକାଂକ୍ଷୀ ହୁଅନ୍ତି ଏବଂ ଜନ୍ମ କ୍ଷୟହେଲେ ଭିନ୍ନ ଏବଂ ବକ୍ଷିପ୍ତଦେହ ହୋଇ ଜନ୍ମସହିତ ପୁନଶ୍ଚ ମୃତ୍ୟୁପ୍ରାପ୍ତ ହେଉଥାଆନ୍ତି । ୧୧ । ଅତଏବ ସମ୍ୟକ୍‌ରୂପେ ପର୍ଯ୍ୟାଲୋଚନା କରି ଲୋଭକୁ ଦେହ ମଧ୍ୟରେ ନିଗ୍ରହ କରି ରାଜ୍ୟଇଚ୍ଛା କରିବା ବିଧେୟ । ଆତ୍ମା କେବଳ ରାଜା, ଅନ୍ୟ କେହି ନୁହନ୍ତି, ଏହି କଥା ଯଥାର୍ଥରୂପେ ବିଦିତ ହେବା ବିଧେୟ । ୧୨ । ଲୋଭନିଗ୍ରହକାରୀ ଯଶସ୍ୱୀ ରାଜା ଅମ୍ବରୀଷ ଅଧିରାଜଙ୍କୁ ଉପଲକ୍ଷ୍ୟ କରି ଏହି ଗାଥା ଗାନ କରିଥିଲେ । ୧୩ ।

---

# ଦ୍ୱାତ୍ରିଂଶତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ଭାବିନି ! ଏହି ଲୋଭନିଗ୍ରହ ବିଷୟରେ ପଣ୍ଡିତମାନେ ବ୍ରାହ୍ମଣ ଓ ଜନକଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୧ । ରାଜା ଜନକ କୌଣସି ଅପରାଧି-ବ୍ରାହ୍ମଣଙ୍କୁ ଅନୁଶାସନ କରିବା ନିମିତ୍ତ କହିଲେ ଯେ, ତୁମ୍ଭେ ଆମ୍ଭ ରାଜ୍ୟରେ ବାସ କରିପାରିବ ନାହିଁ ।

ବ୍ରାହ୍ମଣ ରାଜାଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି କହିଲେ— ହେ ରାଜନ୍ ! ଯେଉଁ ଯେଉଁ ସ୍ଥାନ ଆପଣଙ୍କର ବଶବର୍ତ୍ତୀ, ସେହି ସେହି ସ୍ଥାନମାନଙ୍କ ନାମ ଆପଣ ଆମ୍ଭଙ୍କୁ କହିବା ହେଉନ୍ତୁ । ୩ ।

ହେ ବିଭୋ ! ମହୀପତେ ! ଆମ୍ଭେ ଆପଣଙ୍କ ଆଦେଶାନୁସାରେ ଅନ୍ୟ ରାଜାଙ୍କ ରାଜ୍ୟରେ ବାସକରି ଶାସ୍ତ୍ରାନୁସାରେ ଭବଦୀୟ ବାକ୍ୟ ପ୍ରତିପାଳିତ କରିବାକୁ ଇଚ୍ଛା କରୁଅଛୁଁ । ୪ । ତେତେବେଳେ ରାଜା ଯଶସ୍ୱୀ ବ୍ରାହ୍ମଣଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣକରି ବାରମ୍ବାର ଉଷ୍ଣ ନିଶ୍ୱାସ ପରିତ୍ୟାଗ ପୂର୍ବକ କିଛି ଉତ୍ତର କରିପାରିଲେ ନାହିଁ । ୫ । ଅମିତତେଜା ରାଜା ଜନକ ସମାସୀନ ହୋଇ ଚିନ୍ତାରେ ନିମଗ୍ନ ହେଲେ ଓ ରାହୁଗ୍ରସ୍ତ ଦିବାକରଙ୍କ ସଦୃଶ ସହସା ମୋହଗ୍ରସ୍ତ ହେଲେ । ୬ । ଅନନ୍ତର ରାଜା କିୟତ୍କାଳ ଆଶ୍ୱାସିତ

Digitized by srujanika@gmail.com

ହୋଇ ମୁହୂର୍ତ୍ତକାଳ ମଧ୍ୟରେ ମୋହବର୍ଜିତ ହେଲେ ଏବଂ ଉତ୍ଥିତ ହୋଇ ସେହି ବ୍ରାହ୍ମଣଙ୍କୁ କହିଲେ । ୭ ।

ଜନକ କହିଲେ—ହେ ଦ୍ୱିଜୋତ୍ତମ ! ଯଦି ଏହି ପୁରୁଷପରମ୍ପରାଗତ ରାଜ୍ୟ ଆମ୍ଭର ବଶୀଭୂତ ହୋଇ ରହିଅଛି, ତଥାପି ଆମ୍ଭେ ବିଶେଷ ବିବେଚନା କରି ଦେଖିଲୁଁ, ପୃଥିବୀସ୍ଥ କୌଣସି ପଦାର୍ଥରେ ଆମ୍ଭର ସମ୍ପୂର୍ଣ୍ଣ ଅଧିକାର ନାହିଁ । ଆମ୍ଭେ ପ୍ରଥମେ ସମୁଦାୟ ପୃଥିବୀରେ, ତତ୍ପରେ ମିଥିଳା ନଗରୀରେ ଓ ପରିଶେଷରେ ସ୍ୱୀୟ ପ୍ରଜାମଣ୍ଡଳୀ ମଧ୍ୟରେ ଆପଣାର ଅଧିକାର ଅନ୍ୱେଷଣ କଲୁଁ, କିନ୍ତୁ କୌଣସି ପଦାର୍ଥରେ ଆମ୍ଭର ସମ୍ପୂର୍ଣ୍ଣ ସତ୍ତ୍ୱ ପ୍ରତୀତ ହେଲାନାହିଁ । ଏହିରୂପେ ଆମ୍ଭେ କୌଣସି ପଦାର୍ଥରେ ଆପଣାର ଅଧିକାର ନଥିବାର ଦେଖି ମୋହରେ ଆକ୍ରାନ୍ତ ହୋଇଥିଲୁଁ ।

ସମ୍ପ୍ରତି ଆମ୍ଭର ମୋହ ନିର୍ମୁକ୍ତ ହେବାରୁ ଆମ୍ଭେ ନିଶ୍ଚୟ ବୁଝିପାରୁଅଛୁଁ ଯେ, କୌଣସି ପଦାର୍ଥରେ ଆମ୍ଭର ଅଧିକାର ନାହିଁ, ଅଥବା ଆମ୍ଭେ ସମସ୍ତ ପଦାର୍ଥରେ ଅଧିକାରୀ । ଆମ୍ଭର ଆତ୍ମା ମଧ୍ୟ ଆମ୍ଭର ନୁହେ, ଅଥଚ ସମୁଦାୟ ପୃଥିବୀ ଆମ୍ଭର । ଫଳତଃ ଇହଲୋକରେ ସକଳ ବସ୍ତୁରେ ସମସ୍ତଙ୍କର ସମାନ ଅଧିକାର ବିଦ୍ୟମାନ ହୋଇ ରହିଅଛି । ଅତଏବ ଆପଣ ନିରୁଦ୍‌ବେଗରେ ଯଥେଚ୍ଛା ସ୍ଥାନକୁ ଗମନ କରିବା ହେଉନ୍ତୁ, ଏବଂ ଯାହା ଇଚ୍ଛାହୁଏ ତାହା ଭୋଗ କରନ୍ତୁ । ୧୨ ।

ବ୍ରାହ୍ମଣ କହିଲେ—ହେ ରାଜନ୍ ! ପିତୃ ପୈତାମହ ରାଜ୍ୟ ଏବଂ ଜନପଦ ବଶୀଭୂତ ଥାଇ ସୁଦ୍ଧା ଆପଣ କେଉଁ ବୁଦ୍ଧି ଅବଲମ୍ବନକରି ତାହାର ମମତା ପରିତ୍ୟାଗ କଲେ ? ଏବଂ କେଉଁ ବୁଦ୍ଧି ଆଶ୍ରୟକରି ଅବା ସମସ୍ତ ବିଷୟ ଆମ୍ଭର ଏବଂ ଆମ୍ଭର ନୁହେ, ଏହିପରି ବିବେଚନା କଲେ ? ୧୪ ।

ଜନକ କହିଲେ—ଇହଲୋକରେ ଆଢ୍ୟତ୍ୱ ଏବଂ ଦରିଦ୍ରତ୍ୱ ପ୍ରଭୃତି ସମସ୍ତ ଅବସ୍ଥା ନଶ୍ୱର, ଆମ୍ଭେ ଏହା ସର୍ବକର୍ମରେ ବିଦିତ ଅଛୁଁ । ଏହି ନିମିତ୍ତ ଏହା ଯେ ଆମ୍ଭର ହେବ, ଏପରି ବୋଧ କରୁନାହୁଁ । ଏହି ବିଷୟ ଓ ଏହି ଧନ କାହାର ନୁହେ, ଏହି ବେଦବାକ୍ୟାନୁସାରେ ଆମ୍ଭେ ଏହାକୁ ଆମ୍ଭର ବୋଲି ବୋଧ କରୁନାହୁଁ । ୧୫ । ଏହି ବୁଦ୍ଧି ଅବଲମ୍ବନ କରି ଆମ୍ଭେ ମମତାଶୂନ୍ୟ

Digitized by srujanika@gmail.com

ହୋଇଅଛୁଁ, ଏବଂ ଯେଉଁ ବୁଦ୍ଧି ଆଶ୍ରୟକରି ଆମ୍ଭେ ସମସ୍ତ ବିଷୟ ଆମ୍ଭର ବୋଲି କହୁଅଛୁଁ, ତାହା ଶ୍ରବଣ କରିବା ହେଉନ୍ତୁ ।

ଆମ୍ଭେ ଆପଣା ନିମିତ୍ତ ଘ୍ରାଣଗତ ଗନ୍ଧ ଆଘ୍ରାଣ କରୁନାହୁଁ, ତନ୍ନିମିତ୍ତ ଏହି ଭୂମି ମତ୍କର୍ତ୍ତୃକ ପରିତ୍ୟକ୍ତା ହୋଇ ନିରନ୍ତର ଆମ୍ଭର ବଶବର୍ତ୍ତିନୀ ହୋଇ ଅବସ୍ଥାନ କରିଅଛନ୍ତି । ଆମ୍ଭେ ଆସ୍ୟଗତ ରସକୁ ପାନ କରିବା ନିମିତ୍ତ ଇଚ୍ଛା କରୁନାହୁଁ ବୋଲି ସଲିଳ ମତ୍କର୍ତ୍ତୃକ ନିର୍ଜିତ ହୋଇ ନିତ୍ୟ ଆମ୍ଭର ବଶବର୍ତ୍ତୀ ହୋଇ ଅବସ୍ଥାନ କରିଅଛି । ଆମ୍ଭେ ଆପଣାନିମିତ୍ତ ଚକ୍ଷୁର ଜ୍ୟୋତି-ରୂପକୁ ଗ୍ରହଣ କରିବା ନିମିତ୍ତ ଇଚ୍ଛା କରୁନାହୁଁ ବୋଲି ଜ୍ୟୋତି ମତ୍କର୍ତ୍ତୃକ ନିର୍ଜିତ ହୋଇ ନିତ୍ୟ ଆମ୍ଭର ବଶବର୍ତ୍ତୀ ହୋଇଅଛି । ୨୦ । ଆମ୍ଭେ ଆପଣା ନିମିତ୍ତ ତ୍ୱଗିନ୍ଦ୍ରିୟଦ୍ୱାରା ସ୍ପର୍ଶକୁ ସ୍ପର୍ଶକରିବା ନିମିତ୍ତ ଇଚ୍ଛାକରୁ ନାହୁଁ ବୋଲି ବାୟୁ ମତ୍କର୍ତ୍ତୃକ ନିର୍ଜିତ ହୋଇ ନିତ୍ୟ ଆମ୍ଭର ବଶବର୍ତ୍ତୀ ହୋଇ ରହିଅଛି । ୨୧ । ଆମ୍ଭେ ଆପଣା ନିମିତ୍ତ ଅନ୍ତରସ୍ଥିତ ମନକୁ ମନନ କରିବାକୁ ଇଚ୍ଛା କରୁନାହୁଁ ବୋଲି ମନ ମତ୍କର୍ତ୍ତୃକ ନିର୍ଜିତ ହୋଇ ନିରନ୍ତର ଆମ୍ଭର ବଶବର୍ତ୍ତୀ ହୋଇ ରହିଅଛି । ୨୩ । ଆମ୍ଭେ ଦେବତା, ପିତୃ, ଭୂତ ଓ ଅତିଥିଗଣଙ୍କ ତୁଷ୍ଟି ନିମିତ୍ତ ସମସ୍ତ ଦ୍ରବ୍ୟାଦିର ଆୟୋଜନ କରିଥାଉଁ । ୨୪ ।

ଅନନ୍ତର ବ୍ରାହ୍ମଣ ଜନକଙ୍କୁ ହାସକରି ପୁନଶ୍ଚ କହିଲେ—ଆମ୍ଭେ ଅଦ୍ୟ ତୁମ୍ଭଙ୍କୁ ଜାଣିବା ଇଚ୍ଛାରେ ଆଗମନ କରିଅଛୁଁ । ଆମ୍ଭେ ଧର୍ମଦେବ । ସମ୍ପ୍ରତି ନିଶ୍ଚୟ ଜାଣିଲୁଁ ଯେ, ତୁମ୍ଭେ ଏହି ସତ୍ତ୍ୱରୂପ ନେମିଦ୍ୱାରା ନିରୁଦ୍ଧ ରଥସ୍ୱରୂପ ଅନିବର୍ତ୍ତୀ ଦୁର୍ବାର ବ୍ରହ୍ମଲାଭର ପ୍ରଧାନ ପ୍ରବର୍ତ୍ତକ ହୋଇଅଛ । ୨୬ ।

---

# ତ୍ରୟସ୍ତ୍ରିଂଶତ୍ତମ ଅଧ୍ୟାୟ

ବ୍ରାହ୍ମଣ କହିଲେ—ହେ ଭୀରୁ ! ତୁମ୍ଭେ ନିଜବୁଦ୍ଧି ଅନୁସାରେ ଆମ୍ଭଙ୍କୁ ଯେଉଁ ପ୍ରକାର ମନେ କରି ତର୍ଜନ କରୁଅଛ, ଆମ୍ଭେ ଲୋକମଧ୍ୟରେ ତାଦୃଶ ବିଚରଣ କରୁନାହୁଁ । ଆମ୍ଭେ ବନଗୃହସ୍ଥ, ଗୃହୀ, ବ୍ରତପରାୟଣ, ବ୍ରାହ୍ମଣ, ଜୀବନ୍ମୁକ୍ତ ।

Digitized by srujanika@gmail.com

ହେ ଶୋଭନେ ! ତୁମ୍ଭେ ଆମ୍ଭଙ୍କୁ ଯେଉଁପରି ଦର୍ଶନ କରୁଅଛ, ଆମ୍ଭେ ସେପରି ନୋହୁଁ । ଏହି ସଂସାରରେ ଯାହା କିଛି ଶୁଭ ଅଶୁଭ ଦେଖୁଅଛ ତତ୍ସମୁଦାୟ ମଦନ୍ତରିକ ବ୍ୟାପ୍ତ ହୋଇ ରହିଅଛି । ୨ ।

ଏହି ଲୋକ ମଧ୍ୟରେ ସ୍ଥାବର ଜଙ୍ଗମ ପ୍ରଭୃତି ଯେତେ ଜନ୍ତୁ ଅଛନ୍ତି, ଦାରୁ ଦାହକରି ପାବକ ସଦୃଶ ଆମ୍ଭେ ସେମାନଙ୍କର ଅନ୍ତକ ସ୍ୱରୂପ ଅଟୁଁ । ଆମ୍ଭ ବୁଦ୍ଧି କି ସ୍ୱର୍ଗ, କି ମର୍ତ୍ତ୍ୟ ସବୁସ୍ଥାନକୁ ଆମ୍ଭର ରାଜ୍ୟ ବୋଲି ସ୍ଥିର କରିଅଛି । ଫଳତଃ ବୁଦ୍ଧି ଆମ୍ଭର ଧନ ସ୍ୱରୂପ । ୪ ।

ବ୍ରହ୍ମଜ୍ଞାନମାନଙ୍କ ମଧ୍ୟରେ କି ଗୃହସ୍ଥ, କି ବାନପ୍ରସ୍ଥ, କି ସନ୍ନ୍ୟାସୀ, କି ଭିକ୍ଷୁ, ଯେ ଯେଉଁ ଆଶ୍ରମରେ ଅବସ୍ଥାନ କରନ୍ତୁ ପଛକେ ସମସ୍ତଙ୍କର ବ୍ରହ୍ମପ୍ରାପ୍ତିର ପଥ ଏକପ୍ରକାର ଅଟେ । ୫ । ସେମାନେ ଭିନ୍ନ ଭିନ୍ନ ପ୍ରକାର ଲିଙ୍ଗ ଧାରଣ କରି ଏକମାତ୍ର ବୁଦ୍ଧିର ଉପାସନା କରିଥାଆନ୍ତି । ସେହି ସମସ୍ତଙ୍କ ବୁଦ୍ଧି ଶାନ୍ତ ଗୁଣଯୁକ୍ତ । ୬ ।

ପୃଥିବୀସ୍ଥ ନଦୀସମୂହ ଯେଉଁପରି ଭିନ୍ନ ଭିନ୍ନ ଦିଗରେ ଗମନ କଲେ ସୁଦ୍ଧା ଏକମାତ୍ର ସାଗରରେ ନିପତିତ ହୁଅନ୍ତି, ତଦ୍ବତ୍ ବ୍ରହ୍ମବେତ୍ତାମାନଙ୍କ ମଧ୍ୟରେ ଯେ ଯେଉଁ ପ୍ରକାର ଆଚରଣ କରନ୍ତୁ ପଛକେ ପରିଶେଷରେ ସମସ୍ତେ ଏକମାତ୍ର ଜ୍ଞାନପଥରେ ସମୁପସ୍ଥିତ ହୁଅନ୍ତି । କେବଳ ବୁଦ୍ଧି ମନୁଷ୍ୟମାନଙ୍କୁ ଏହି ପଥରେ ସମାନୀତ କରେ । ଶରୀରଦ୍ୱାରା ଏହି ପଥରେ କଦାପି ଗମନ କରାଯାଏ ନାହିଁ । ଉତ୍ପତ୍ତିକ୍ଷୟଶୀଳ କର୍ମ କର୍ମନିବନ୍ଧନ ଶରୀର ହୁଏ ।

ହେ ସୁଭଗେ ! ସମ୍ପ୍ରତି ଆମ୍ଭର ଏହି ସମସ୍ତ ଉପଦେଶ ବାକ୍ୟ ହୃଦୟରେ ଧାରଣ କଲେ ତୁମ୍ଭେ କଦାପି ପରଲୋକ ନିମିତ୍ତ ଭୀତ ହେବନାହିଁ । ତୁମ୍ଭେ ଚରମରେ ଅନାୟାସରେ ଆମ୍ଭ ଆତ୍ମାରେ ଲୀନ ହୋଇ ମୁକ୍ତିଲାଭ କରିବ । ୮ ।

Digitized by srujanika@gmail.com

# ଚତୁଃତ୍ରିଂଶତ୍ତମ ଅଧ୍ୟାୟ

ବ୍ରାହ୍ମଣ ଏହିପରି ବ୍ରାହ୍ମଣୀଙ୍କୁ ଆଶ୍ୱାସ ବାକ୍ୟ ପ୍ରଦାନ କଲାରୁ ବ୍ରାହ୍ମଣୀ ତାହାଙ୍କୁ ସମ୍ବୋଧନ ପୂର୍ବକ କହିଲେ—ହେ ନାଥ ! ଆପଣ ସଂକ୍ଷେପରେ ଯେଉଁପରି ସୁବିସ୍ତୀର୍ଣ୍ଣ ଜ୍ଞାନଗର୍ଭ ଉପଦେଶ ପ୍ରଦାନ କଲେ, ଏହା ହୃଦୟଙ୍ଗମ କରିବାର ଅଳ୍ପବୁଦ୍ଧି ଓ ଅକୃତାତ୍ମା ବ୍ୟକ୍ତିଗଣଙ୍କର ଅତିଶୟ ଦୁଃସାଧ୍ୟ । ସୁତରାଂ ଆମ୍ଭ ବୁଦ୍ଧି କଦାପି ଏହାର ମର୍ମ ଗ୍ରହଣ ବିଷୟରେ ସମର୍ଥ ହେଉ ନାହିଁ । କେଉଁ ଉପାୟରେ ଆପଣଙ୍କ ସଦୃଶ ଜ୍ଞାନାତ୍ମକ ବୁଦ୍ଧି ଲାଭ କରାଯାଏ ଏବଂ ଏତାଦୃଶୀ ବୃଦ୍ଧି କେଉଁ କାରଣରୁ ଉତ୍ପନ୍ନ ହୁଏ, ତାହା ଶ୍ରବଣକରିବା ନିମିତ୍ତ ଆମ୍ଭର ଅତିଶୟ ବାସନା ହେଉଅଛି । ଅତଏବ ସଂପ୍ରତି ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨ ।

ବ୍ରାହ୍ମଣ କହିଲେ—ହେ ପ୍ରିୟେ ! ବୁଦ୍ଧି ପ୍ରଥମ ଅରଣୀ କାଷ୍ଠ, ଏବଂ ଗୁରୁ ଦ୍ୱିତୀୟ ଅରଣୀ କାଷ୍ଠସ୍ୱରୂପ । ବେଦାନ୍ତ ଶ୍ରବଣ ଓ ମାନନଦ୍ୱାରା ଏହି ଉଭୟ କାଷ୍ଠ ମନ୍ଥିତ ହେଲେ ଏହି କାଷ୍ଠଦ୍ୱୟରୁ ଜ୍ଞାନାଗ୍ନିର ଉଦ୍ଭବ ହୁଏ ।୩।

ବ୍ରାହ୍ମଣୀ କହିଲେ—ହେ ନାଥ ! ଜୀବ ବ୍ରହ୍ମଙ୍କର ଅଧୀନ; ତେବେ ଲୋକମାନେ କେଉଁପରି ଜୀବଙ୍କୁ ବ୍ରହ୍ମ ବୋଲି ନିର୍ଦ୍ଦେଶ କରନ୍ତି ? ୪ ।

ବ୍ରାହ୍ମଣ କହିଲେ—ହେ ପ୍ରିୟେ ! ଦେହୀ ନିର୍ଗୁଣ ଓ ଦେହପରିଶୂନ୍ୟ । କେବଳ ଭ୍ରାନ୍ତବୁଦ୍ଧି ବ୍ୟକ୍ତିଗଣ ଭ୍ରମବଶତଃ ତାହାଙ୍କୁ ସଗୁଣ ଓ ଦେହଯୁକ୍ତ ବୋଲି ଗଣନା କରନ୍ତି । ଯାହାଦ୍ୱାରା ଭ୍ରମ ଦୂର ହୁଏ ଏବଂ ଜୀବଙ୍କୁ ବ୍ରହ୍ମ ବୋଲି ଜାଣିବାକୁ ହୁଏ, ସଂପ୍ରତି ଆମ୍ଭେ ସେହି ଉପାୟ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର । ୫ ।

କର୍ମନିରତ ବ୍ୟକ୍ତିମାନେ ଭ୍ରମବଶତଃ ଆତ୍ମାଙ୍କୁ ଅଙ୍ଗବାନ୍ ବୋଲି ଜ୍ଞାନ କରନ୍ତି । କିନ୍ତୁ ଭ୍ରମର ଯେଉଁପରି ପୁଷ୍ପର ଉପରିଭାଗରେ ଭ୍ରମଣ କରୁ କରୁ ତନ୍ମଧ୍ୟସ୍ଥିତ ମଧୁକୁ ଲକ୍ଷ୍ୟକରେ, ତଦ୍‌ବତ୍ ଯୋଗିମାନେ ଶ୍ରବଣ ମନନାଦି ଉପାୟଦ୍ୱାରା ଶରୀରସ୍ଥିତ ଆତ୍ମାଙ୍କୁ ପୃଥକ୍‌ଭାବରେ ଲକ୍ଷ୍ୟ କରନ୍ତି । ଯେଉଁ ମହାତ୍ମାମାନେ ମୋକ୍ଷଧର୍ମରେ ପ୍ରବୃତ୍ତ ହୋଇଅଛନ୍ତି, ସେମାନଙ୍କ

Digitized by srujanika@gmail.com

ପକ୍ଷରେ କର୍ମିମାନଙ୍କ ସଦୃଶ କୌଣସି ବିଷୟର ବିଧି ଅବା ନିଷେଧର ବ୍ୟବସ୍ଥା ନାହିଁ ।

ଇହଲୋକରେ ସାଧ୍ୟାନୁସାରେ ପୃଥିବୀ ପ୍ରଭୃତି ଯେତେ ପ୍ରକାର ବ୍ୟକ୍ତ ଓ ଅବ୍ୟକ୍ତ ପଦାର୍ଥ ଜ୍ଞାତ ହୁଏ, ତତ୍‌ସମୁଦାୟ ଅବଗତ ହେବା କର୍ତ୍ତବ୍ୟ । ପୃଥିବୀ ପ୍ରଭୃତି ସମସ୍ତ ପଦାର୍ଥ ଉତ୍ତମରୂପେ ଅବଗତ ହୋଇ ପରିଶେଷରେ ଯେଉଁ ପଦାର୍ଥ ଏହି ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠ ବୋଲି ବୋଧ ହେବ, ସେ ପରମବ୍ରହ୍ମ । ଶମ ଦମ ପ୍ରଭୃତିଙ୍କ ଅଭ୍ୟାସ ହେତୁରୁ ସେହି ପରମପଦାର୍ଥଙ୍କର ସାକ୍ଷାତ୍କାର ହୁଏ । ୯ ।

ଶ୍ରୀ ଭଗବାନ୍ କହିଲେ—ହେ ଅର୍ଜୁନ ! ବ୍ରାହ୍ମଣ ଏହିରୂପେ ତତ୍ତ୍ୱଜ୍ଞାନର ଉପଦେଶ ପ୍ରଦାନ କଲାରୁ ବ୍ରାହ୍ମଣୀଙ୍କର କର୍ମୋପାଧି ଅଜ୍ଞାନ ତିରୋହିତ ହୋଇ ବ୍ରହ୍ମଜ୍ଞାନ ଆବିର୍ଭୂତ ହେଲା । ୧୦ ।

ଅର୍ଜୁନ କହିଲେ—ହେ କୃଷ୍ଣ ! ଯେଉଁ ବ୍ରାହ୍ମଣ ଓ ବ୍ରାହ୍ମଣୀ ଏହିରୂପେ ସିଦ୍ଧିଲାଭ କରିଅଛନ୍ତି, ସେହି ଦୁହେଁ ସମ୍ପ୍ରତି କେଉଁ ସ୍ଥାନରେ ଅବସ୍ଥାନ କରିଅଛନ୍ତି ତାହା କୀର୍ତ୍ତନ କରିବା ହେଉନ୍ତୁ । ୧୧ ।

ଶ୍ରୀ ଭଗବାନ୍ କହିଲେ—ହେ ଅର୍ଜୁନ ! ଆମ୍ଭର ମନ ବ୍ରାହ୍ମଣ, ବୁଦ୍ଧି ବ୍ରାହ୍ମଣୀ ଏବଂ ଆମ୍ଭେ କ୍ଷେତ୍ରଜ୍ଞ ବୋଲି ଜାଣ । ୧୨ ।

---

# ପଞ୍ଚତ୍ରିଂଶତ୍ତମ ଅଧ୍ୟାୟ

ଅର୍ଜୁନ କହିଲେ—ହେ କୃଷ୍ଣ ! ସମ୍ପ୍ରତି ତୁମ୍ଭର ପ୍ରସାଦ ବଳରେ ସୂକ୍ଷ୍ମ ବିଷୟ ଅବଗତ ହେବାକୁ ଆମ୍ଭର ଅତ୍ୟନ୍ତ ଅଭିଳାଷ ହେଉଅଛି । ଅତଏବ ତୁମ୍ଭେ ଯଥାର୍ଥରୂପେ ଆମ୍ଭ ନିକଟରେ ପରମବ୍ରହ୍ମଙ୍କ ସ୍ୱରୂପ କୀର୍ତ୍ତନ କର । ୧ ।

ବାସୁଦେବ କହିଲେ—ହେ ଧନଞ୍ଜୟ ! ଆମ୍ଭେ ଏହି ଉପଲକ୍ଷରେ ମୋକ୍ଷସଂଯୁକ୍ତ ଗୁରୁଶିଷ୍ୟ ସମ୍ବାଦ ନାମକ ଏକ ପୁରାତନ ଇତିହାସ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର ।

Digitized by srujanika@gmail.com

ହେ ପରଂତପ ! କୌଣସି ମେଧାବୀ ଶିଷ୍ୟ ସମାହିତ ଶଂସିତବ୍ରତ ବ୍ରହ୍ମନିଷ୍ଠ ଆଚାର୍ଯ୍ୟଙ୍କୁ ପ୍ରଶ୍ନକଲେ—ହେ ପ୍ରଭୋ ! ଏହି ଭୁବନ ମଧ୍ୟରେ ଆମ୍ଭ ପକ୍ଷରେ କଏ ଶ୍ରେୟସ୍କର, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ଆମ୍ଭେ ମୋକ୍ଷପରାୟଣ ହୋଇ ଆପଣଙ୍କର ଶରଣାଗତ ହୋଇଅଛୁଁ । ଆମ୍ଭେ ଅବନତମସ୍ତକରେ ଆପଣଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ଯେ, ଆମ୍ଭ ଜିଜ୍ଞାସ୍ୟ ବିଷୟର ଯଥାର୍ଥ ଉତ୍ତର କରିବା ହେଉନ୍ତୁ । ୪ ।

ହେ ପାର୍ଥ ! ଶିଷ୍ୟ ଏହିପରି କହିବାରୁ ଗୁରୁ ତାହାଙ୍କୁ କହିଲେ—ହେ ଦ୍ୱିଜ ! ଯହିଁରେ ତୁମ୍ଭର ସଂଶୟ ଜନ୍ମିଅଛି, ସେହି ସମସ୍ତ ତୁମ୍ଭଙ୍କୁ କହିବୁଁ । ୫ ।

ହେ ମହାମତେ ! ଗୁରୁବତ୍ସଳ ଶିଷ୍ୟ ଗୁରୁଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅଞ୍ଜଳିବନ୍ଧନ ପୂର୍ବକ ଯାହା ପ୍ରଶ୍ନ କରିଥିଲେ, ତାହା ଶ୍ରବଣ କର । ୬ ।

ଶିଷ୍ୟ କହିଲେ—ହେ ବିପ୍ର ! ଆମ୍ଭେ କେଉଁଠାରୁ ଉତ୍ପନ୍ନ ହୋଇଅଛୁ ? ଆପଣ କେଉଁଠାରୁ ଉତ୍ପନ୍ନ ହୋଇଅଛନ୍ତି ? ଚରାଚର ସ୍ଥାବର ପ୍ରଭୃତି ଭୂତସମୂହ କେଉଁଠାରୁ ଉତ୍ପନ୍ନ ହୋଇଅଛନ୍ତି ? ସେମାନେ କାହାଦ୍ୱାରା ଜୀବିତ ଥାଆନ୍ତି ? ସେମାନଙ୍କର ପରମାୟୁ ସଂଖ୍ୟା କେତେ ? ସତ୍ୟ ଓ ତପସ୍ୟା କେଉଁ ପଦାର୍ଥ ? ଏବଂ ପଣ୍ଡିତଗଣକର୍ତ୍ତୃକ କେଉଁ ଗୁଣସମୂହ କୀର୍ତ୍ତିତ ହୋଇଅଛି ? ଏହି ସମସ୍ତ ଆମ୍ଭଙ୍କୁ ସତ୍ୟକରି କହିବା ହେଉନ୍ତୁ । ୮ ।

ହେ ସୁବ୍ରତ ! କେଉଁ ପଥ ଶୁଭକର ? ସୁଖ କଏ, ଦୁଷ୍କୃତ କଏ, ଏହି ସମସ୍ତ ପ୍ରଶ୍ନ ଯଥାତଥ୍ୟରୂପେ କହିବା ହେଉନ୍ତୁ । ହେ ବିପ୍ରର୍ଷେ ! ଆପଣଙ୍କ ବ୍ୟତିରେକେ ଅନ୍ୟ କେହି ଏହି ପ୍ରଶ୍ନର ତତ୍ତ୍ୱରୂପେ ଉତ୍ତର କହିବାକୁ ସମର୍ଥ ନୁହନ୍ତି । ୧୦ । ଅତଏବ ହେ ଧାର୍ମିକପ୍ରବର ! ଆପଣ ଏହା ବିସ୍ତାରକରି କହିବା ହେଉନ୍ତୁ । ଏହି ବିଷୟରେ ଆମ୍ଭର କୌତୂହଳ ଜନ୍ମିଅଛି । ଲୋକମଧ୍ୟରେ ଆପଣ ମୋକ୍ଷଧର୍ମାର୍ଥକୁଶଳ ବୋଲି ପରିଗଣିତ ହୋଇ ଅଛନ୍ତି । ୧୧ । ଆପଣଙ୍କ ବ୍ୟତିରେକେ ସର୍ବସଂଶୟଚ୍ଛେତ୍ତା ଅନ୍ୟ କେହି ନାହାନ୍ତି । ଆମ୍ଭେମାନେ ସଂସାରଭୀରୁ, ଅଥଚ ମୋକ୍ଷାଭିଳାଷୀ । ୧୨ ।

Digitized by srujanika@gmail.com

ବାସୁଦେବ କହିଲେ—ହେ ଅରିଦମନ କୁରୁକୁଳପ୍ରବର ପାର୍ଥ ! ଧୃତବ୍ରତ ମେଧାବୀ ଗୁରୁ, ସେହି ଜିଜ୍ଞାସୁ, ସଦ୍‌ଗୁଣସମ୍ପନ୍ନ, ପ୍ରତିପନ୍ନ, ଶାନ୍ତ ଦାନ୍ତ, ପ୍ରିୟ, ଶୁଶ୍ରୂଷାସ୍ୱରୂପ ଅନୁଗତ, ଯତି, ବ୍ରହ୍ମଗୃହୀ ଶିଷ୍ୟଙ୍କ ପ୍ରଶ୍ନସମୂହର ଉତ୍ତର ପ୍ରକୃତରୂପେ କହିଲେ । ୧୪ । ଗୁରୁ କହିଲେ—ତୁମ୍ଭେ ବେଦବିଦ୍ୟା ଆଶ୍ରୟକରି ଯାହା ପ୍ରଶ୍ନକଲ, ବ୍ରହ୍ମା ଋଷିସମୂହଦ୍ୱାରା ସେବିତ ହୋଇ ଅବାଧିତ ଅର୍ଥର ବିସ୍ତୃତିଯୁକ୍ତ ଏହି ବାକ୍ୟ କହିଲେ । ୧୫ ।

ଯେଉଁ ବ୍ୟକ୍ତି ନିଷ୍ଠାପୂର୍ବକ ବିଷୟ ଉତ୍ତମଜ୍ଞାନ ପରମବ୍ରହ୍ମ, ସନ୍ନ୍ୟାସ ରୂପ ଉତ୍କୃଷ୍ଟ ତପସ୍ୟା, ବାଧାବିହୀନ ଜ୍ଞାନତତ୍ତ୍ୱ ଏବଂ ସର୍ବଭୂତସ୍ଥ ଆତ୍ମାଙ୍କୁ ଜାଣିପାରନ୍ତି, ସେ ସର୍ବପ୍ରକାର କାମନା ଭୋଗ କରିବାକୁ ସମର୍ଥ ହୁଅନ୍ତି । ଯେଉଁ ବିଦ୍ୱାନ୍ ମାନବ ଜାତସ୍ୱଭାବା ଅବିଦ୍ୟା ଏବଂ ଚିନ୍ମୟ ପରମାତ୍ମାଙ୍କ ସହବାସ, ପୃଥକ୍ ବାସ, ଏକତ୍ୱ ଏବଂ ନାନାତ୍ୱ ଦର୍ଶନ କରନ୍ତି, ସେ ଦୁଃଖଭୋଗରୁ ମୁକ୍ତ ହୁଅନ୍ତି । ୧୭ ।

ଯେ କୌଣସି ବିଷୟ କାମନା ଏବଂ ବିଷୟରେ ଅଭିମାନ ନ କରନ୍ତି, ସେ ଇହଲୋକରେ ଥାଇ ଅର୍ଥାତ୍ ସେହି ଶରୀରରେ ମୁକ୍ତ ହୁଅନ୍ତି । ୧୮ । ଯେଉଁ ଜନ ନିର୍ମମ ଓ ଅହଂକାରଶୂନ୍ୟ ହୋଇ ପ୍ରଧାନ ମାୟା, ସତ୍ତ୍ୱାଦି ଗୁଣସମୂହ ଏବଂ ସର୍ବଭୂତର ଉତ୍ପତ୍ତି କାରଣ ଅବଗତ ହୋଇ ପାରନ୍ତି, ସେ ମୁକ୍ତିଲାଭ ବିଷୟରେ ସମର୍ଥ ହୁଅନ୍ତି । ଏହି ବିଷୟରେ ଆଉ ସଂଶୟ ନାହିଁ । ୧୯ ।

ଅବ୍ୟକ୍ତ ଅଜ୍ଞାନ ଯାହାଙ୍କର ମୂଳ, ବୁଦ୍ଧିସ୍କନ୍ଧ, ଅହଂକାରପଲ୍ଲବ, ଇନ୍ଦ୍ରିୟଗଣ କୋଟରସ୍ଥ ପତ୍ରାଙ୍କୁର, ବିଷୟାଦି ସୂକ୍ଷ୍ମ ପଞ୍ଚମହାଭୂତ ପୁଷ୍ପ-କୋରକ ଏବଂ ସ୍ଥୂଳ କାର୍ଯ୍ୟସମୂହ ଯାହାଙ୍କର ଉପଶାଖା, ପ୍ରତ୍ୟକ୍ଷ ସର୍ବଦା ପତନଶୀଳ ପତ୍ର, କର୍ମରୂପ ପୁଷ୍ପ ଏବଂ ସୁଖଦୁଃଖ ରୂପ ଫଳସମନ୍ୱିତ ସର୍ବଜୀବର ଉପଜୀବ୍ୟ ସଂସାରବୃକ୍ଷର ବୀଜଭୂତ, ଏହି ସନାତନ ବ୍ରହ୍ମଙ୍କୁ ବିଶେଷରୂପେ ଅବଗତ ହୋଇ ଜ୍ଞାନରୂପ ଅସିଦ୍ୱାରା ଏହି ବୃକ୍ଷର ଅବ୍ୟକ୍ତାଦି ରୂପ ମୂଳ ପ୍ରଭୃତି ଶାଖାପ୍ରଶାଖାସମୂହ ଛେଦନ କରି ଅମୃତତ୍ୱ ଲାଭକରି ଜନ୍ମ-ମୃତ୍ୟୁ ପରିହାର କରିବାକୁ ସମର୍ଥ ହୁଅନ୍ତି । ୨୨ ।

Digitized by srujanika@gmail.com

ହେ ମହାପ୍ରାଜ୍ଞ ! ପୂର୍ବେ ମନୀଷୀ ମହର୍ଷିସମୂହ ସମବେତ ହୋଇ ନିଜ ନିଜ ବୁଦ୍ଧି ଅନୁସାରେ ଯେଉଁ ବିଷୟ ପରସ୍ପର ପ୍ରଶ୍ନକରି ସେହି ଶରୀରରେ ମୁକ୍ତ ହୋଇଥିଲେ, ସିଦ୍ଧସମୂହଙ୍କ ପରିଜ୍ଞାତ ବର୍ତ୍ତମାନ, ଭୂତ, ଭବିଷ୍ୟତ୍, ଧର୍ମ, କାମ ଓ ଅର୍ଥର ନିଶ୍ଚୟ ସମନ୍ୱିତ ସେହି ଅତି ଉତ୍କୃଷ୍ଟ ସନାତନ ମୋକ୍ଷପଦ ଆମ୍ଭେ ଅଦ୍ୟ ତୁମ୍ଭଙ୍କୁ କହୁଅଛୁଁ ।

ପୂର୍ବେ ପ୍ରଜାପତି ଭରଦ୍ୱାଜ, ଗୌତମ, ଭୃଗୁନନ୍ଦନ ଜମଦଗ୍ନି, ବଶିଷ୍ଠ, କାଶ୍ୟପ, ବିଶ୍ୱାମିତ୍ର ଓ ଅତ୍ରି ପ୍ରଭୃତି ଦ୍ୱିଜଗଣ ସମସ୍ତ ମାର୍ଗ ପରିଭ୍ରମଣ କରି ନିଜ ନିଜ କର୍ମଦ୍ୱାରା ପରିଶ୍ରାନ୍ତ ହୋଇ ଅଙ୍ଗିରାଙ୍କ ପୁତ୍ର ବୃଦ୍ଧ ବୃହସ୍ପତିଙ୍କୁ ଅଗ୍ରରେ କରି ବ୍ରହ୍ମଭବନକୁ ଗମନ ପୂର୍ବକ କଳୁଷଶୂନ୍ୟ ବ୍ରହ୍ମାଙ୍କୁ ଦର୍ଶନ କଲେ । ୨୭ ।

ତଦନନ୍ତର ମହର୍ଷିଗଣ ସୁଖାସୀନ ସେହି ମହାତ୍ମା ବ୍ରହ୍ମାଙ୍କୁ ପ୍ରଣାମକରି ବିନୀତ ଭାବରେ ତାହାଙ୍କୁ ମୁକ୍ତିର ବିଷୟ ଏହିରୂପେ ପ୍ରଶ୍ନ କଲେ— ହେ ବ୍ରହ୍ମନ୍ ! ସାଧୁବୃନ୍ଦ କେଉଁ ପ୍ରକାର କର୍ମ କରିବେ ? କେଉଁପରି ପାପରୁ ମୁକ୍ତହେବେ ? ଆମ୍ଭମାନଙ୍କର କେଉଁ ପଥସବୁ ମଙ୍ଗଳଜନକ ? ସତ୍ୟ କିଏ ? ଦୁଷ୍କୃତ କିଏ ? ସମସ୍ତ କର୍ମର ଦକ୍ଷିଣ ଓ ଉତ୍ତର ଏହି ଉଭୟ ମାର୍ଗ କିଏ ? ପ୍ରଳୟ କାହାକୁ କହନ୍ତି ? ଅପବର୍ଗ ଏବଂ ଭୂତଗଣର ଉତ୍ପତ୍ତି ଓ ବିନାଶ କାହାକୁ କହନ୍ତି ? ଏହି ସମସ୍ତ ଆମ୍ଭମାନଙ୍କୁ ବିସ୍ତାର କରି କହିବା ହେଉନ୍ତୁ । ସେହି ପିତାମହ ବ୍ରହ୍ମା ଶିଷ୍ୟ ମୁନିଗଣଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣକରି ସେମାନଙ୍କୁ ଯାହା କହିଥିଲେ, ଆମ୍ଭେ ତୁମ୍ଭଙ୍କୁ କହୁଅଛୁଁ, ଶ୍ରବଣକର । ୩୧ ।

ବ୍ରହ୍ମା କହିଲେ—ହେ ସୁବ୍ରତ ଦ୍ୱିଜଗଣ ! ତୁମ୍ଭେମାନେ ଏହା ନିଶ୍ଚୟ ଜାଣିବ ଯେ, ସତ୍ୟ ଅର୍ଥାତ୍ ତ୍ରିକାଳାବସ୍ଥାୟୀ ବ୍ରହ୍ମାଙ୍କଠାରୁ ଅବ୍ୟକ୍ତ ପ୍ରଭୃତି ଭୂତସମୂହ, ଆକାଶାଦି ସ୍ଥାବରସମୂହ ଏବଂ ଜରାୟୁଜ ପ୍ରଭୃତି ଚରସମୂହ ଉତ୍ପନ୍ନ ହୋଇ ତପୋରୂପ କର୍ମଦ୍ୱାରା ଜୀବିତ ଥାଆନ୍ତି । ପରନ୍ତୁ ଯେତେବେଳେ ସେମାନେ ନିଜ ଯୋନିଭୂତ ବ୍ରହ୍ମପଥକୁ ଅତିକ୍ରମ କରନ୍ତି, ତେତେବେଳେ ସେମାନେ ସ୍ଥାନଚ୍ୟୁତ ହୋଇ କେବଳ ସ୍ୱୀୟ କର୍ମମାର୍ଗରେ ଅବସ୍ଥିତ ଥାଆନ୍ତି । ୩୨ ।

Digitized by srujanika@gmail.com

ବ୍ୟାବହାରିକ ଗୁଣଯୁକ୍ତ ସତ୍ତା ପାଞ୍ଚଗୋଟି ଅଟନ୍ତି । ପରନ୍ତୁ ଏକମାତ୍ର ବ୍ରହ୍ମ ଈଶ୍ୱର ସତ୍ୟ, ତପ ଅର୍ଥାତ୍ ଧର୍ମ ସତ୍ୟ, ପ୍ରଜାପତି ଜୀବ ସତ୍ୟ, ସତ୍ତାରୁ ଉଦ୍ଭୂତ ଭୂତସମୂହ ସତ୍ୟ ଏବଂ ଭୂତମୟ ଜଗତ୍ ସତ୍ୟ । ଏହି ନିମିତ୍ତ ସତ୍ୟାଶ୍ରିତ, କ୍ରୋଧସନ୍ତାପବିହୀନ, ନିୟମିତଭାଗ୍ୟ ଏବଂ ନିୟତ ଯୋଗପରାୟଣ ବିପ୍ରଗଣ ଧର୍ମର ସେତୁ ଅଟନ୍ତି । ୩୫ । ଯେଉଁମାନେ ପରସ୍ପର ଭୟବଶତଃ ନିଜ ଧର୍ମ ଅତିକ୍ରମ ନ କରନ୍ତି, ସେହି ବିଦ୍ୟାବନ୍ତ ଧର୍ମସେତୁ ପ୍ରବର୍ତ୍ତକ ଓ ଶାଶ୍ୱତ ଲୋକ ଶାନ୍ତକ ବିପ୍ରଗଣଙ୍କ ବିଷୟ ଆମ୍ଭେ ତୁମ୍ଭମାନଙ୍କୁ କହୁଅଛୁଁ । ୩୬ ।

ହେ ଦ୍ୱିଜବୃନ୍ଦ ! ମହର୍ଷିଗଣ ଚତୁଷ୍ପାଦ ଏକମାତ୍ର ଯେଉଁ ଧର୍ମଙ୍କୁ ନିତ୍ୟ ବୋଲି କହନ୍ତି, ସେହି ଧର୍ମ, ଅର୍ଥ, କାମ ଓ ମୋକ୍ଷପ୍ରଦ ଚତୁର୍ବିଦ୍ୟା, ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ଏବଂ ବ୍ରହ୍ମଚର୍ଯ୍ୟ ପ୍ରଭୃତି ଚତୁରାଶ୍ରମ ପୃଥକ୍‌ରୂପେ କହୁଅଛୁଁ ।

ହେ ମହାଭାଗଗଣ ! ପୂର୍ବେ ମହର୍ଷିଗଣ ବ୍ରହ୍ମପ୍ରାପ୍ତି ନିମିତ୍ତ ନିରନ୍ତର ଇହଲୋକରେ ଯେଉଁ ପଥରେ ଗମନ କରନ୍ତି, ସେହି ମୋକ୍ଷ ଓ ମଙ୍ଗଳଜନକ ଦୁର୍ବିଜ୍ଞେୟ ପରମ ପଥ ସର୍ବତୋଭାବରେ ଆମ୍ଭେ ତୁମ୍ଭମାନଙ୍କୁ କହୁଅଛୁଁ, ତୁମ୍ଭେମାନେ ଶ୍ରବଣକର । ୩୯ ।

ପଣ୍ଡିତମାନେ ବ୍ରହ୍ମଚର୍ଯ୍ୟ ଆଶ୍ରମକୁ ପ୍ରଥମ ପଦ, ଗାର୍ହସ୍ଥ୍ୟ ଆଶ୍ରମକୁ ଦ୍ୱିତୀୟ ପଦ, ବାନପ୍ରସ୍ଥ ଆଶ୍ରମକୁ ତୃତୀୟ ପଦ ଏବଂ ପରମାତ୍ମ ପ୍ରାପକ ସମସ୍ତଙ୍କର ବିଜ୍ଞେୟ ସନ୍ନ୍ୟାସ ଆଶ୍ରମକୁ ଚତୁର୍ଥ ପରମପଦ ବୋଲି କହନ୍ତି । ୪୦ । ଜୀବ ଯାବତ୍‌କାଳ ଆଧ୍ୟାତ୍ମିକ ସନ୍ନ୍ୟାସଧର୍ମ ଅବଲମ୍ବନ ପୂର୍ବକ ପରମାତ୍ମାଙ୍କ ସାକ୍ଷାତ୍‌କାର କରି ନ ପାରନ୍ତି, ତାବତ୍‌କାଳ ଜ୍ୟୋତିଃ, ଆକାଶ, ଆଦିତ୍ୟ, ବାୟୁ, ଇନ୍ଦ୍ର ଏବଂ ପ୍ରଜାପତି ପ୍ରଭୃତି ବିଶ୍ୱଦର୍ଶନ କରିଥାଆନ୍ତି । ଅନିଳଫଳମୂଳାଶୀ ବନବାସୀ ମୁନିଗଣଙ୍କର ଅଧ୍ୟାତ୍ମଦର୍ଶନର ଉପାୟ ପ୍ରଥମରେ କହୁଅଛୁଁ, ତାହା ଶ୍ରବଣକର । ୪୨ ।

ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ଦ୍ୱିଜାତିଙ୍କର ବାନପ୍ରସ୍ଥ ଆଶ୍ରମ ବିହିତ ଅଟେ । ଅପର ସମସ୍ତ ବର୍ଣ୍ଣଙ୍କର କେବଳ ଗାର୍ହସ୍ଥ୍ୟ ଆଶ୍ରମ ଅବଲମ୍ବନ କରିବାର ବିଧେୟ । ପଣ୍ଡିତଗଣ ଶ୍ରଦ୍ଧା ଅର୍ଥାତ୍ ଆସ୍ତିକ୍ୟ ବୁଦ୍ଧିକି ଧର୍ମର

Digitized by srujanika@gmail.com

ମୁଖ୍ୟ ଲକ୍ଷଣ କହନ୍ତି । ଏହା ଜ୍ଞାନୀମାନଙ୍କର ଦେବଯାନ ମାର୍ଗ ପ୍ରାପ୍ତିର ପଥ ବୋଲି କୀର୍ତ୍ତିତ ହୋଇଅଛି । ସମସ୍ତ ସାଧୁଗଣ ସ୍ୱୀୟ ସ୍ୱୀୟ କର୍ମଦ୍ୱାରା ଧର୍ମର ସେତୁସ୍ୱରୂପ ସେହି ପଥରେ ଗମନ କରନ୍ତି । ଯେଉଁ ଶଂସିତ-ବ୍ରତ ଜନ ଏହି ସମସ୍ତ ମଧ୍ୟରେ ଏକମାତ୍ର ଧର୍ମଙ୍କୁ ଅବଲମ୍ବନ କରନ୍ତି, ସେ କାଳକ୍ରମେ ସର୍ବଦା ପ୍ରାଣିଗଣଙ୍କର ଉତ୍ପତ୍ତି ଓ ବିନାଶ ଦର୍ଶନ କରନ୍ତି ।୪୫।

ଏଥିଉତ୍ତାରେ ଯୁକ୍ତି ଅନୁସାରେ ବୁଦ୍ଧିସ୍ଥ ବର୍ତ୍ତମାନ ତତ୍ତ୍ୱସମୂହ ଭାଗକ୍ରମେ ଯଥାତଥରୂପେ କହୁଅଛୁଁ, ଶ୍ରବଣ କର । ୪୬ ।

ମହାନ୍ ଆତ୍ମା, ଅବ୍ୟକ୍ତ ପ୍ରକୃତି, ଅହଂକାର, ଶ୍ରୋତ୍ରାଦି ଦଶ ଇନ୍ଦ୍ରିୟ, ଅବୟବାଦି ପଞ୍ଚମହାଭୂତ ଏବଂ ଶବ୍ଦାଦି ପଞ୍ଚବିଶେଷ ଗୁଣ, ଏମାନେ ସନାତନ ସୃଷ୍ଟି । ଯେଉଁ ଜନ ଏହି ପଞ୍ଚବିଂଶତି ତତ୍ତ୍ୱର ଉତ୍ପତ୍ତି ଓ ବିନାଶ ଉତ୍ତମରୂପେ ଅବଗତ ହୋଇପାରନ୍ତି, ସେହି ଧୀର ସର୍ବଭୂତରେ ମୋହ-ପ୍ରାପ୍ତ ହୁଅନ୍ତି ନାହିଁ । ୪୧ । ଅପିଚ ଯେଉଁ ଜନ ପଞ୍ଚବିଂଶତି ତତ୍ତ୍ୱ, ତତ୍ତ୍ୱାଦି ଗୁଣ ଏବଂ ସମସ୍ତ ଦେବଗଣଙ୍କୁ ସର୍ବତୋଭାବରେ ଯଥାତଥରୂପେ ବିଦିତ ହୁଅନ୍ତି, ସେ ନିଷ୍ପାପ ହୋଇ ବନ୍ଧ ବିମୋଚନ କରି ନିର୍ମଳ ଲୋକସମୂହ ପ୍ରାପ୍ତ ହୁଅନ୍ତି ।



# ଷଟ୍‌ତ୍ରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ସେହି ତତ୍ତ୍ୱସମୂହ ମଧ୍ୟରେ ଯାହା ତ୍ରିଗୁଣାତ୍ମକ, ସର୍ବକାର୍ଯ୍ୟବ୍ୟାପୀ, ଅବିନାଶୀ ଓ ଅଚଞ୍ଚଳ, ସେହି ଅନୁଦ୍ରିକ୍ତ ଅବ୍ୟକ୍ତ ପ୍ରକୃତି ଉଦ୍ରିକ୍ତ ହୋଇ ନବଦ୍ୱାରଯୁକ୍ତ ପଞ୍ଚଧାତୁମୟ ପୁର ରୂପେ ପରିଣତ ହୁଏ ଜାଣ । ୧ । ଯହିଁରେ ଜୀବାତ୍ମା ବିଷୟଭୋଗ ବାସନାଦ୍ୱାରା ଯେଉଁମାନଙ୍କ କର୍ତ୍ତୃକ ପରିକ୍ଷିପ୍ତ ହୁଅନ୍ତି, ଏବଂ ମନଦ୍ୱାରା ସଂକଳ୍ପ ବିଷୟସମୂହ ପ୍ରକଟିତ ହୁଏ, ସେହି ଏକାଦଶ ଇନ୍ଦ୍ରିୟଯୁକ୍ତ ବୁଦ୍ଧି ସ୍ୱାମିକ ପୁର ମଧ୍ୟରେ ପରଂବ୍ରହ୍ମ ଅଧିଷ୍ଠିତ ହୋଇ ଏକାଦଶ ଭାଗରେ ବିଭକ୍ତ ହୁଅନ୍ତି । ୨ ।

ଧର୍ମପ୍ରାବଲ୍ୟ ହିଂସାଶୂନ୍ୟ ଶୁକ୍ଳ, ହିଂସାପ୍ରାବଲ୍ୟ କୃଷ୍ଣ, ଏବଂ ହିଂସାଯୁକ୍ତ ପ୍ରବୃତ୍ତି ଧର୍ମପ୍ରାବଲ୍ୟ ଶୁକ୍ଳ, କୃଷ୍ଣ ଏହି ତିନଗୋଟି ସେହି ପୁରସ୍ଥିତ ଚଉନାଡ଼ିର

Digitized by srujanika@gmail.com

ସ୍ରୋତ । ଏହି ସ୍ରୋତସମୂହ ତ୍ରିଗୁଣାତ୍ମକ ସଂସ୍କାର ରୂପ ତିନିଗୋଟି ନାଡ଼ୀଦ୍ୱାରା ବାରମ୍ବାର ଆପ୍ୟାୟିତ ଏବଂ ନାଡ଼ୀସମୂହ ବାରମ୍ବାର ବର୍ଦ୍ଧିତ ହେଉଥାଏ ।

ପଣ୍ଡିତଗଣ ସତ୍ତ୍ୱ, ରଜ ଏବଂ ତମ ଏହି ତିନିଗୋଟିକୁ ଗୁଣ ବୋଲି କହନ୍ତି । ଏହି ତିନିଗୋଟି ଗୁଣ ପରସ୍ପର ଅନୁଜୀବ୍ୟ ଅବଲମ୍ବନ କରି ମିଥୁନଭାବ ପ୍ରାପ୍ତହୋଇ ପରସ୍ପରର କାର୍ଯ୍ୟ ଉତ୍ପାଦନ କରନ୍ତି, ପରସ୍ପରର ଅନୁବର୍ତ୍ତୀ ହୋଇ ପରସ୍ପରର ଆଶ୍ରୟ ହୁଅନ୍ତି, ଏବଂ ତେଜ, ଅପ୍ ଓ ଅନ୍ନ ଏହି ତ୍ରିବୃତ୍ତକରଣ ସଦୃଶ ପରସ୍ପର ମିଳିତ ହୋଇ ପଞ୍ଚଭୂତ ଓ ଭୌତିକ ରୂପେ ପରିଣତ ହୁଅନ୍ତି । ୫ ।

ତମୋଗୁଣର ଅଭିଭାବକ ସତ୍ତ୍ୱ, ସତ୍ତ୍ୱଗୁଣର ଅଭିଭାବକ ରଜ, ରଜୋଗୁଣର ଅଭିଭାବକ ସତ୍ତ୍ୱ, ସତ୍ତ୍ୱଗୁଣର ଅଭିଭାବକ ତମ । ଅର୍ଥାତ୍, ତମୋଗୁଣ ଉଦ୍ରିକ୍ତ ହେଲେ ସତ୍ତ୍ୱଗୁଣ ଅନ୍ତର୍ହିତ ହୁଏ, ସତ୍ତ୍ୱଗୁଣ ଉଦ୍ରିକ୍ତ ହେଲେ ରଜ ଏବଂ ରଜ ଓ ତମୋଗୁଣ ଉଦ୍ରିକ୍ତ ହେଲେ ସତ୍ତ୍ୱ ଅନ୍ତର୍ହିତ ହୁଏ ।

ଯେଉଁ ସ୍ଥଳରେ ତମୋଗୁଣ ଅନ୍ତର୍ହିତ ହୁଏ, ସେହି ସ୍ଥଳରେ ରଜୋଗୁଣ ପ୍ରବର୍ତ୍ତିତ ହୋଇଥାଏ ଓ ଯେଉଁ ସ୍ଥଳରେ ରଜୋଗୁଣ ତିରୋହିତ ହୁଏ, ସେହି ସ୍ଥଳରେ ସତ୍ତ୍ୱଗୁଣ ପ୍ରବର୍ତ୍ତିତ ହୋଇଥାଏ । ପାପକର୍ମରେ ନିରତ ଅଧର୍ମ ଲକ୍ଷଣ ମୋହ ନାମକ ନୈଶାତ୍ମକ ତମକୁ ତ୍ରିଗୁଣାତ୍ମକ ବୋଲି ଜାଣିବ ।

ପଣ୍ଡିତଗଣ ସର୍ବଭୂତରେ ପ୍ରବୃତ୍ତି, ଉତ୍ପତ୍ତି ଲକ୍ଷଣ, ଦୃଶ୍ୟ-ବୈପରୀତ୍ୟ-କାରକ ରଜୋଗୁଣକୁ ପ୍ରକୃତ୍ୟାତ୍ମକ ବୋଲି କହନ୍ତି, ଏବଂ ସର୍ବଭୂତରେ ପ୍ରକାଶମାନ ଧର୍ମଜ୍ଞାନାଦି ରୂପ ଶ୍ରଦ୍ଧାନତା ଏତାଦୃଶ ପୌଷ୍ଟିକ ସାତ୍ତ୍ୱିକ ଗୁଣ ସାଧୁମାନଙ୍କର ଅଭିମତ । ସତ୍ତ୍ୱାଦି ଗୁଣସମୂହର ସମାସ ଏବଂ ବ୍ୟାସଯୁକ୍ତ କାର୍ଯ୍ୟ ସ୍ୱରୂପ ସମସ୍ତ ତତ୍ତ୍ୱ ହେତୁଦ୍ୱାରା ଯଥାର୍ଥରୂପେ କଥିତ ହେଉଅଛି, ତୁମ୍ଭେମାନେ ତାହା ଶ୍ରବଣ କର । ୧୧ ।

ସମ୍ମୋହ, ଅଜ୍ଞାନ, ଅତ୍ୟାଗ, କର୍ମସମୂହର ଅବିନିର୍ଣ୍ଣୟ, ନିଦ୍ରା, ସ୍ତମ୍ଭ, ଭୟ, ଲୋଭ, ଶୋକ, ସୁକୃତ, ଦୂଷଣ, ଅସ୍ମୃତି, ଅବିପାକ, ନାସ୍ତିକତା,

Digitized by srujanika@gmail.com

ଭିନ୍ନବୃତ୍ତିତା ଅର୍ଥାତ୍ ଯୁକ୍ତାଯୁକ୍ତ ପରୀକ୍ଷାର ଅଭାବ, ନିର୍ବିଶେଷତ୍ୱ, ଅନ୍ଧତ୍ୱ (ସମସ୍ତ ଇନ୍ଦ୍ରିୟମାନଙ୍କର ଅଯଥାବତ୍ ଜ୍ଞାନ), ଜଘନ୍ୟ ଅର୍ଥାତ୍ ଚଣ୍ଡାଳାଦି ଗୁଣବୃତ୍ତିତ୍ୱ, ଅକୃତେ କୃତମାନିତ୍ୱ, ଅଜ୍ଞାନେ ଜ୍ଞାନଶାଳିତ୍ୱ, ଅମୈତ୍ରୀ-କୃତତା, ବିବିଧ ବିପ୍ରୀୟଭାବିତ୍ୱ, ଅଶ୍ରଦ୍ଧା, ମୂଢ଼ ଭାବନା, ଅନାର୍ଜବ ଅସଙ୍ଗତତ୍ୱ, ପାପକାରିତ୍ୱ, ଅଚେତନତ୍ୱ, ଗୁରୁତ୍ୱ ଅର୍ଥାତ୍ ଆଳସ୍ୟ ବଶତଃ ଜଡ଼ତା, ସନ୍ନଭାବତ୍ୱ ଅର୍ଥାତ୍ ବେଦ ପ୍ରଭୃତିଙ୍କଠାରେ ନଷ୍ଟଭକ୍ତିତ୍ୱ, ଅଜିତେନ୍ଦ୍ରିୟତ୍ୱ ଏବଂ ନୀଚ କର୍ମାନୁରାଗିତା, ଏହାସବୁ ତାମସ ଗୁଣ ବୋଲି କୀର୍ତ୍ତିତ ହୋଇଅଛି ।

ଇହଲୋକରେ ଭାବସଙ୍କ୍ଳିତ ଅନ୍ୟାନ୍ୟ ଯେଉଁ ସମସ୍ତ ଭାବ ବିହିତ ହୋଇଅଛି, ତାମସ ଗୁଣସମୂହ ସେହି ସେହି ଭାବରେ ନିୟମାନୁସାରେ ଉପସ୍ଥିତ ଥାଏ । ନିତ୍ୟ ଦେବ ବ୍ରାହ୍ମଣଗଣଙ୍କ ପରିବାଦ କଥା, ଏବଂ ନିନ୍ଦା, ଅତ୍ୟାଗ, ଅଭିମାନ, ମୋହ, ମନ୍ୟୁ, ଅକ୍ଷମା, ସମସ୍ତଙ୍କର ଶୁଭପ୍ରତି ଦ୍ୱେଷ, ବୃଥା ଆରମ୍ଭ, ବୃଥା ଦାନ, ବୃଥା ଭକ୍ଷଣ, ଅତିବାଦ, ଅତିତିକ୍ଷା, ମାତ୍ସର୍ଯ୍ୟ, ଅଭିମାନିତା ଏବଂ ଅଶ୍ରଦ୍ଧଧାନତା ଏହି ସମସ୍ତ ତାମସ ବୃତ୍ତି ବୋଲି ଉକ୍ତ ହୋଇଅଛି । ୨୦ ।

ଇହଲୋକରେ ଏବଂବିଧ ଯେଉଁ ସମସ୍ତ ପାପକର୍ମା ମର୍ଯ୍ୟାଦାବିହୀନ ମନୁଷ୍ୟ ଅଛନ୍ତି, ସେମାନେ ତାମସ ବୋଲି କଥିତ ହୁଅନ୍ତି । ୨୧ । ସେହି ପାପକର୍ମା ତାମସ ମନୁଷ୍ୟମାନଙ୍କର ନିଯୁତ ଯୋନିସମୂହ ପ୍ରକୃଷ୍ଟରୂପେ କହିବା ।

ସେମାନେ ଅଧଃପତନ ନିମିତ୍ତ ତିର୍ଯ୍ୟକ୍ ଯୋନିରେ ଗମନ କରନ୍ତି । ପାପକର୍ମୀ ତାମସଗଣ ତମସାଚ୍ଛନ୍ନ ହୋଇ କ୍ରମଶଃ ସ୍ଥାବର, ପଶୁ, ବାହନ, କ୍ରବ୍ୟାଦ, ଦନ୍ଦଶୂକ, କୃମି, କୀଟ, ବିହଙ୍ଗମ, ଅଣ୍ଡଜ, ଚତୁଷ୍ପଦ ଜନ୍ତୁ, ଉନ୍ମତ୍ତ, ବଧିର, ମୂକ, ପାପରୋଗୀ, ସ୍ୱକୃତ କର୍ମର ଲକ୍ଷଣସମ୍ପନ୍ନ, ଦୁର୍ବୃତ୍ତ ଏବଂ ଅଧୋଗାମୀ, ଏହିମାନେ ତାମସଯୋନିସମ୍ଭୂତ ବୋଲି କଥିତ ହୋଇଅଛନ୍ତି । ୨୫ ।

ଅତଃପର ସେମାନଙ୍କର ଉତ୍କର୍ଷ ଉଦ୍ରେକ ଏବଂ ସେମାନେ ପୁଣ୍ୟକର୍ମା ହୋଇ ଯେଉଁ ପ୍ରକାର ସୁକୃତ ଲୋକସମୂହ ଲାଭକରି ପାରନ୍ତି, ତାହା କହିବା । ୨୬ ।

Digitized by srujanika@gmail.com

ଏହିରୂପେ ବୈଦିକ ଶ୍ରୁତି ଅଛି ଯେ, ସ୍ୱକର୍ମନିରତ ଶୁଭାକାଂକ୍ଷୀ ବ୍ରାହ୍ମଣ-ଗଣଙ୍କ ମଧ୍ୟରେ ଯେଉଁମାନେ ଅଗ୍ନିହୋତ୍ରାଦି କର୍ମ ହିଂସାଯୁକ୍ତ ହୋଇ ତିର୍ଯ୍ୟକ୍ ସ୍ଥାବରାଦି ଯୋନି ପ୍ରାପ୍ତହୁଅନ୍ତି, ସେହିମାନେ ବୈଦିକ ସଂସ୍କାରଦ୍ୱାରା ସ୍ଥାବରାଦି ଯୋନିଚ୍ୟୁତ ହୋଇ ଯଜ୍ଞସହକାରରେ ସଲୋକତା ଅର୍ଥାତ୍ ବ୍ରାହ୍ମଣତ୍ୱ ଜାତି ଲାଭ କରି ଊର୍ଦ୍ଧ୍ୱ ଦେବଲୋକ ସ୍ୱର୍ଗକୁ ଗମନ କରନ୍ତି । ୨୮ । ତିର୍ଯ୍ୟକ୍ ସ୍ଥାବରାଦି ଯୋନିସମ୍ଭୂତ ତାମସଗଣ ସ୍ୱୀୟ କର୍ମରେ ବିବୃଦ୍ଧ ହୋଇ ପୁନରାବୃତ୍ତ ଧର୍ମ ଗ୍ରହଣ କରି ଇହଲୋକରେ ମନୁଷ୍ୟଯୋନି ପ୍ରାପ୍ତ ହୁଅନ୍ତି । ୨୯ । ଚଣ୍ଡାଳ, ମୂକ ଓ ଚୂଚୁକ ପ୍ରଭୃତି ନରଗଣ ପାପଯୋନି ପ୍ରାପ୍ତହୋଇ ପର୍ଯ୍ୟାୟକ୍ରମେ ଉତ୍ତରୋତ୍ତର ଉତ୍କୃଷ୍ଟ ବର୍ଣ୍ଣସମୂହ ପ୍ରାପ୍ତ ହୁଅନ୍ତି । ୩୦ ।

ଅନ୍ୟାନ୍ୟ ସମସ୍ତ ତାମସଗଣ ଶୂଦ୍ରଯୋନି ଅତିକ୍ରମ କରି ତମୋଗୁଣର ସ୍ରୋତରେ ଗମନକରି ତାମସ ଗୁଣରେ ବର୍ତ୍ତମାନ ଥାଆନ୍ତି । କାମରେ ଯେଉଁ ଅଭିସଙ୍ଗ ଅର୍ଥାତ୍ ଆସକ୍ତି, ତାହା ମହାମୋହ ବୋଲି ବିଖ୍ୟାତ ହୋଇଅଛି । ସୁଖାଭିଳାଷୀ ଋଷି, ମୁନି ଓ ଦେବଗଣ ଏହି ମହାମୋହରେ ମୁଗ୍ଧହୋଇ ଥାଆନ୍ତି । କ୍ରୋଧ ନାମକ ମୋହ, ମହାମୋହ ତାମିସ୍ର, ମରଣ, ଅନ୍ଧତାମିସ୍ର ଏବଂ କ୍ରୋଧ ଏହିସବୁ ତମୋରୂପରେ କୀର୍ତ୍ତିତ ହୋଇଅଛନ୍ତି ।

ହେ ବିପ୍ରଗଣ ! ବର୍ଣ୍ଣ, ଗୁଣ, ଯୋନି ଓ ତତ୍ତ୍ୱ ଅନୁସାରେ ସର୍ବପ୍ରକାର ତମ ତୁମ୍ଭମାନଙ୍କ ନିକଟରେ ଯଥାବିଧି କୀର୍ତ୍ତନ କଲୁଁ । ୩୪ । ପରନ୍ତୁ କେଉଁ ବ୍ୟକ୍ତି ଏହା ଉତ୍ତମରୂପେ ବୋଧକରିବେ ଏବଂ କେଉଁ ବ୍ୟକ୍ତି ଅବା ଉତ୍ତମରୂପେ ଦର୍ଶନ କରିବେ ? ଯେଉଁ ବ୍ୟକ୍ତି ଅତତ୍ତ୍ୱରେ ତତ୍ତ୍ୱଦର୍ଶୀ ହୁଅନ୍ତି, ତାହାଙ୍କଠାରେ ତମୋଗୁଣର ପ୍ରକୃତ ଲକ୍ଷଣ ଲକ୍ଷିତ ହୋଇଥାଏ । ବହୁବିଧ ତମୋଗୁଣ କୀର୍ତ୍ତିତ ହେଲା ଏବଂ ପରାବରତମ ଯଥାବତ୍ ଉକ୍ତ ହେଲା । ଯେଉଁ ଜନ ଏହି ଗୁଣସମୂହକୁ ପ୍ରକୃତରୂପେ ଜାଣିପାରନ୍ତି, ସେ ସମସ୍ତ ତାମସ ଗୁଣରୁ ମୁକ୍ତ ହୁଅନ୍ତି । ୩୭ ।

---

## ସପ୍ତତ୍ରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ହେ ଦ୍ୱିଜସତ୍ତମଗଣ ! ତୁମ୍ଭମାନଙ୍କୁ ରଜୋଗୁଣର ବୃତ୍ତି ଯଥାରୂପେ କହୁଅଛୁଁ, ଶ୍ରବଣକର । ୧ । ସନ୍ତାପ, ରୂପ, ଆୟାସ, ସୁଖ,

Digitized by srujanika@gmail.com

ଦୁଃଖ, ଶ୍ରମ, ଆତପ, ଐଶ୍ୱର୍ଯ୍ୟ, ବିଗ୍ରହ, ସନ୍ଧି, ହେତୁବାଦ, ରତି, କ୍ଷମା, ବଳ, ଶୌର୍ଯ୍ୟ, ମଦ, ରୋଷ, ବ୍ୟାୟାମ, କଳହ, ଈର୍ଷ୍ୟା, ଇଚ୍ଛା, ଈପ୍ସା, ପୈଶୁନ୍ୟ, ଯୁଦ୍ଧ, ଅତିଶୟ ମମତା, ପରିପାଳନ, ବଧ, ବନ୍ଧନ, କ୍ଳେଶ, କ୍ରୟ, ବିକ୍ରୟ, କର୍ତ୍ତନକର, ଛେଦନକର, ଭେଦକର ।

ଏହି କଥା କହି ପୁଣି କହିଲେ—ପରମର୍ମଚ୍ଛେଦନ, ଉଗ୍ର, ଦାରୁଣ ଆକ୍ରୋଶ, ପରଚ୍ଛିଦ୍ରାନୁସରଣ, ଇହଲୋକ ଓ ପରଲୋକର ଚିନ୍ତା, ମତ୍ସରତା, ପରିବାର ପୋଷଣ, ମିଥ୍ୟାବାକ୍ୟ ପ୍ରୟୋଗ, ଲାଭ ପ୍ରତ୍ୟାଶାରେ ଦାନ, ବିଷୟାନୁରାଗ, ପରିଭୂଷଣ ଅର୍ଥାତ୍ ଧିକ୍କାର ବଚନ, ନିନ୍ଦା, ସ୍ତୁତି, ପ୍ରଶଂସା, ପ୍ରତାପ, ପରିଧର୍ଷଣ ଅର୍ଥାତ୍ ଆକ୍ରମଣ, ପରିଚର୍ଯ୍ୟା, ଶୁଶ୍ରୂଷା, ସେବାତୃଷ୍ଣା, ବ୍ୟପାଶ୍ରୟ, ବ୍ୟୂହନୀତି, ପ୍ରମାଦ, ପରିବାଦ, ପରିଗ୍ରହ, ଲୋକ ମଧ୍ୟରେ ନରନାରୀ ଭୂତଦ୍ରବ୍ୟ ଏବଂ ଆଶ୍ରୟସମୂହଙ୍କଠାରେ ଯେଉଁସବୁ ସଂସ୍କାର ପ୍ରବର୍ତ୍ତିତ ହୁଏ ସେହି ସଂସ୍କାର, ସନ୍ତାପ, ଅପ୍ରତ୍ୟୟ ଅର୍ଥାତ୍ ଅବିଶ୍ୱାସ, ବ୍ରତ, ନିୟମ, ଆଶୀର୍ଯୁକ୍ତ ବିବିଧ ପୌର୍ତ୍ତ କର୍ମ ଅର୍ଥାତ୍ ପୁଷ୍କରିଣୀ ପ୍ରତିଷ୍ଠାଦି ଫଳଜନକ କାର୍ଯ୍ୟ, ସ୍ୱାହାକାର, ନମସ୍କାର, ସ୍ୱଧାକାର, ବଷଟ୍କାର, ଯାଜନ, ଅଧ୍ୟାପନ, ଯଜନ, ଅଧ୍ୟୟନ, ଦାନ, ପ୍ରତିଗ୍ରହ, ପ୍ରାୟଶ୍ଚିତ୍ତ, ମାଙ୍ଗଳ୍ୟ କର୍ମ ଏହା ଆମ୍ଭର; ଏତାଦୃଶ ସ୍ନେହଗୁଣସମୁଦ୍ଭବ ବିଷୟାଭିଳାଷ, ଅନିଷ୍ଟାଚରଣ, ମାୟା, ପ୍ରବଞ୍ଚନା, ଗୌରବ, ଚୌର୍ଯ୍ୟ, ହିଂସା, ନିନ୍ଦା, ପରିତାପ, ରାତ୍ରିଜାଗରଣ, ଦମ୍ଭ, ଦର୍ପ, ଅନୁରାଗ, ଭକ୍ତି, ପ୍ରୀତି, ପ୍ରମୋଦ, ଅକ୍ଷକ୍ରୀଡ଼ା, ଅଖ୍ୟାତି, ସ୍ତ୍ରୈଣ ଓ ନୃତ୍ୟଗୀତ ପ୍ରଭୃତିରେ ଆସକ୍ତି— ଏହି ସମସ୍ତ ରଜୋଗୁଣର ବୃତ୍ତି ବୋଲି ପରିକୀର୍ତ୍ତିତ ହୋଇଅଛି । ୧୪ ।

ରଜୋଗୁଣାବଲମ୍ବୀ ନରଗଣ ପୃଥିବୀରେ ବର୍ତ୍ତମାନ, ଭୂତ ଓ ଭବିଷ୍ୟତ୍ ବିଷୟ ସମସ୍ତ ଚିନ୍ତାକରନ୍ତି । ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗରେ ନିତ୍ୟ ନିରତ ହୁଅନ୍ତି । ୧୫ । ସେମାନେ କାମବୃତ୍ତି ଅବଲମ୍ବନପୂର୍ବକ ସର୍ବପ୍ରକାର କାମ ଓ ସମୃଦ୍ଧି ସହକାରରେ ପ୍ରମୋଦିତ ହୁଅନ୍ତି, ଏବଂ ସେମାନେ ଊର୍ଦ୍ଧ୍ୱଗାମୀ ହେବାକୁ ସମର୍ଥ ହୁଅନ୍ତି । ଅପିଚ ସେମାନେ ଇହଲୋକରେ ବାରମ୍ବାର ଜନ୍ମଗ୍ରହଣ କରି ଐହିକ ଓ ଜନ୍ମାନ୍ତରୀୟ କୁଶଳ ଆକାଂକ୍ଷା କରି ଅତିଶୟ ଆନନ୍ଦିତ ହୁଅନ୍ତି ଏବଂ ହର୍ଷ ସହକାରରେ ଦାନ, ପ୍ରତିଗ୍ରହ, ତର୍ପଣ

Digitized by srujanika@gmail.com

ଓ ହୋମ କରିଥାନ୍ତି । ୧୭ । ହେ ଦ୍ୱିଜଗଣ ! ବହୁବିଧ ରଜୋଗୁଣ ଓ ରଜୋଗୁଣ ବୃତ୍ତି ତୁମ୍ଭମାନଙ୍କ ନିକଟରେ କୀର୍ତ୍ତିତ ହେଲା । ପରନ୍ତୁ ଯେଉଁ ଜନ ଏହି ଗୁଣ ପ୍ରକୃତରୂପେ ଅବଗତ ହୋଇପାରନ୍ତି, ସେ ସର୍ବପ୍ରକାର ରଜୋଗୁଣରୁ ମୁକ୍ତ ହୁଅନ୍ତି ।

---

# ଅଷ୍ଟତ୍ରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ହେ ଦ୍ୱିଜଗଣ ! ଅତଃପର ଇହଲୋକରେ ସର୍ବଭୂତ-ହିତକର ସାଧୁଗଣଙ୍କର ଅନିନ୍ଦିତ ଧର୍ମ ସ୍ୱରୂପ, ଅନୁତ୍ତମ ତୃତୀୟ ସତ୍ତ୍ୱଗୁଣ ତୁମ୍ଭମାନଙ୍କୁ କହୁଅଛୁଁ, ଶ୍ରବଣ କର । ୧ ।

ଆନନ୍ଦ, ପ୍ରୀତି, ଉନ୍ନତି, ପ୍ରାକାଶ୍ୟ, ସୁଖ, ଅକାର୍ପଣ୍ୟ ଅର୍ଥାତ୍ ବଦାନ୍ୟତା, ଅସଂରମ୍ଭ ଅର୍ଥାତ୍ ନିର୍ଭୟତ୍ତ୍ୱ, ସନ୍ତୋଷ, ଶ୍ରଦ୍ଧା, କ୍ଷମା, ଧୃତି, ଅହିଂସା, ସମତା, ସତ୍ୟ, ସରଳତା, ଅକ୍ରୋଧ, ଅନସୂୟା, ଶୌଚ, ଦାକ୍ଷିଣ୍ୟ ଏବଂ ପରାକ୍ରମ ଏହି ସମସ୍ତ ସତ୍ତ୍ୱଗୁଣ । ୩ ।

ଯେଉଁ ବ୍ୟକ୍ତି ଶାସ୍ତ୍ରୀୟ ଜ୍ଞାନ, ବୃତ୍ତି, ସେବା ଏବଂ ଶ୍ରମ ଏହା ସବୁ ବ୍ୟର୍ଥ ବୋଧକରି ଯୋଗଧର୍ମ ଅବଲମ୍ବନ କରନ୍ତି, ସେ ପରଲୋକରେ ପରମପଦ ପ୍ରାପ୍ତ ହୁଅନ୍ତି । ୪ ।

ନିର୍ମମ, ନିରହଂକାର, ନିରାକାଂକ୍ଷା, ସର୍ବତ୍ର ସମବୁଦ୍ଧି, ଏବଂ ଅକାମ ସାଧୁମାନଙ୍କର ସନାତନ ଧର୍ମ । ୫ । ବିସ୍ରମ୍ଭ, ଲଜ୍ଜା, ତିତିକ୍ଷା, ତ୍ୟାଗ, ଶୌଚ, ଅତନ୍ଦ୍ରିତା, ଆନୃଶଂସ୍ୟ, ଅସଂମୋହ, ସର୍ବଭୂତରେ ଦୟା, ଅପୈଶୁନ୍ୟ, ହର୍ଷ, ତୁଷ୍ଟି, ବିସ୍ମୟ, ବିନୟ, ସାଧୁବୃତ୍ତିତା, ଶାନ୍ତକର୍ମରେ ଶୁଦ୍ଧି, ଶୁଭବୁଦ୍ଧି, ବିମୋଚନର ଉପେକ୍ଷା, ବ୍ରହ୍ମଚର୍ଯ୍ୟ, ସର୍ବସ୍ୱ ପରିତ୍ୟାଗ, ନିର୍ମମତା, ନିରାକାଂକ୍ଷିତ୍ୱ ଏବଂ ଅପରିକ୍ଷିତ ଧର୍ମିତା ଏହାସବୁ ସତ୍ତ୍ୱଗୁଣର ବୃତ୍ତି । ୮ ।

ଇହଲୋକରେ ଯେଉଁ ସମସ୍ତ ସତ୍ତ୍ୱଗୁଣାବଲମ୍ବୀ ଧୀର ବ୍ରାହ୍ମଣଗଣ ଦାନ, ଯଜ୍ଞ, ଅଧ୍ୟୟନ, ବ୍ରତ, ପ୍ରତିଗ୍ରହ, ଧର୍ମ ଏବଂ ତପସ୍ୟା ଏହାସବୁ

Digitized by srujanika@gmail.com

ମିଥ୍ୟାଜ୍ଞାନ କରି ବ୍ରହ୍ମଯୋନିରେ ଅବସ୍ଥାନ କରନ୍ତି, ସେମାନେ ସାଧୁଦର୍ଶୀ ହୁଅନ୍ତି । ୧୦ । ସାଧୁଦର୍ଶୀ ନରଗଣ ରାଜସ ଓ ତାମସ ପାପକର୍ମସମୂହ ପରିହାର ପୂର୍ବକ ନିଃଶୋକ ହୋଇ ସ୍ୱର୍ଗକୁ ଗମନ କରି ନାନାବିଧ ଶରୀର ନିର୍ମାଣ କରନ୍ତି । ୧୧ । ସେହି ମହାତ୍ମାମାନେ ତ୍ରିଦିବନିବାସୀ ଦେବଗଣଙ୍କ ସଦୃଶ ଅଣିମାଦି ଐଶ୍ୱର୍ଯ୍ୟସମୂହ ଲାଭ କରି ମନକୁ ବହୁବିଧ ଆକାରରେ ବିକୃତ କରନ୍ତି । ୧୨ । ଊର୍ଦ୍ଧ୍ୱଗାମୀ ଦେବଗଣ ବୈକାରିକ ବୋଲି ବିଖ୍ୟାତ ହୋଇଅଛନ୍ତି । ସେମାନେ ପ୍ରକୃତ ଅର୍ଥାତ୍ ଭୋଗଜ ସଂସ୍କାରଦ୍ୱାରା ପୁନର୍ବାର ଭୋଗ କରିବା ନିମିତ୍ତ ଚିତ୍ତକୁ ବିକୃତ କରି ସ୍ୱର୍ଗଗାମୀ ହୋଇ ଯାହା ଯାହା ଇଚ୍ଛାକରନ୍ତି, ସେହି ସମସ୍ତ ସଂକଳ୍ପିତ ବିଷୟ ଲାଭ କରନ୍ତି ଏବଂ ଅନ୍ୟକୁ ଦାନ କରନ୍ତି । .

ହେ ଦ୍ୱିଜେନ୍ଦ୍ରଗଣ ! ତୁମ୍ଭମାନଙ୍କ ନିକଟରେ ଏହି ଯେଉଁ ସାତ୍ତ୍ୱିକୀ ବୃତ୍ତି କଥିତ ହେଲା, ନରଗଣ ଏହା ବିଶେଷରୂପେ ବିଦିତ ହେଲେ ଅଭିଳଷିତ ବିଷୟ ଲାଭ କରିପାରନ୍ତି । ଆମ୍ଭେ ସାତ୍ତ୍ୱିକଗୁଣ, ସତ୍ତ୍ୱଗୁଣର ବୃତ୍ତି ବିଶେଷ କରି ତୁମ୍ଭମାନଙ୍କୁ କହିଲୁଁ । ଯେଉଁ ଜନ ଏହି ଗୁଣ ଓ ଗୁଣ-ବୃତ୍ତି ସମୂହ ଜାଣିପାରନ୍ତି, ସେ ସର୍ବଦା ସତ୍ତ୍ୱଗୁଣସମୂହ ଭୋଗକରି ତହିଁରେ ଲିପ୍ତ ହୋଇ ନଥାଆନ୍ତି । ୧୫ ।

---

## ଏକୋନଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ସମସ୍ତ ଗୁଣ ପୃଥକ୍‌ରୂପେ ବୋଲିଯାଇ ନପାରେ । ସତ୍ତ୍ୱ, ରଜ ଓ ତମ ଏହି ତିନିଗୋଟି ଗୁଣ ଅବିଚ୍ଛିନ୍ନରୂପେ ଲୋକମାନଙ୍କ ନୟନଗୋଚର ହୁଅନ୍ତି । ୧ ।

ପରସ୍ପର ପରସ୍ପରର ଆଶ୍ରୟ ଓ ଅନୁରାଗର ଭାଜନ ହୁଅନ୍ତି । ଯେଉଁ ସ୍ଥାନରେ ସତ୍ତ୍ୱ ବିଦ୍ୟମାନ ଥାଏ, ସେହି ସ୍ଥାନରେ ରଜୋଗୁଣ ପ୍ରବୃତ୍ତ ହୁଏ, ଏବଂ ଯାବତ୍ ତମ ଓ ସତ୍ତ୍ୱ ପ୍ରକାଶିତ ହୁଏ, ତାବତ୍ ରଜ ପ୍ରକାଶିତ ହେଉଥାଏ । ସହିତ ସ୍ୱଭାବ ଏବଂ ବ୍ୟବହାରସମ୍ପନ୍ନ ସତ୍ତ୍ୱାଦି ଗୁଣସମୂହ

Digitized by srujanika@gmail.com

ମିଳିତ ହୋଇ ଲୋକ ବ୍ୟବହାର ସମ୍ପାଦନ କରନ୍ତି ଏବଂ ହେତୁ ଓ ଅହେତୁ ସହିତ ବୈଷମ୍ୟଭାବରେ ଅବସ୍ଥାନ କରନ୍ତି ।

ଅନ୍ୟୋଽନ୍ୟାଶ୍ରିତ ସେହି ସତ୍ତ୍ୱାଦି ଗୁଣସମୂହର ପରସ୍ପର ଉଦ୍‌ବୋଧକ ସାମଗ୍ରୀ ନଥିଲେ ଯେଉଁପରି ସେମାନଙ୍କର ଅନ୍ୟୂନତା ଓ ଅନଧିକତା ଅର୍ଥାତ୍ ସମସ୍ତଙ୍କର ରୂପ ସମାନ ହୁଏ, ତାହା କହିବା । ପରନ୍ତୁ ଯେଉଁ ସ୍ଥଳରେ ତମୋଗୁଣ ଅତିରିକ୍ତ ଏବଂ ତିର୍ଯ୍ୟକ୍ ଭାବଗତ ହୁଏ, ସେହି ସ୍ଥଳରେ ରଜୋଗୁଣ ଅଳ୍ପ ଏବଂ ସତ୍ତ୍ୱଗୁଣ ଅଳ୍ପତର ହୁଏ, ଏହା ଜାଣିବ । ୬ । ଯେଉଁ ସ୍ଥାନରେ ରଜୋଗୁଣ ଉଦ୍ରିକ୍ତ ଏବଂ ମଧ୍ୟସ୍ରୋତୋଗତ ହୁଏ, ସେହି ସ୍ଥାନରେ ତମୋଗୁଣ ଅଳ୍ପ ଏବଂ ସତ୍ତ୍ୱଗୁଣ ଅଳ୍ପତର ହୋଇଥାଏ, ଏହା ବୋଧ କରିବ । ୭ । ଯେଉଁ ସମୟରେ ସତ୍ତ୍ୱଗୁଣ ଉଦ୍ରିକ୍ତ ଏବଂ ଊର୍ଦ୍ଧ୍ୱ-ସ୍ରୋତୋଗତ ହୁଏ, ସେତେବେଳେ ତମୋଗୁଣ ଅଳ୍ପ ଏବଂ ରଜୋଗୁଣ ଅଳ୍ପତର ହୁଏ ବୋଲି ଜ୍ଞାନ କରିବ । ୮ ।

ସତ୍ତ୍ୱ ଇନ୍ଦ୍ରିୟଗଣର ଅହଂକାର ସମ୍ବନ୍ଧୀ ଯୋନି, ସତ୍ତ୍ୱ ଇନ୍ଦ୍ରିୟଦ୍ୱାରା ଶବ୍ଦାଦି ପ୍ରକାଶ କରେ । ଅତଏବ ସତ୍ତ୍ୱ ଅପେକ୍ଷା ଅନ୍ୟ କିଛି ଉତ୍କୃଷ୍ଟ ଧର୍ମ ନାହିଁ । ୯ । ସତ୍ତ୍ୱଗୁଣାବଲମ୍ବୀ ନରଗଣ ଊର୍ଦ୍ଧ୍ୱଗାମୀ, ରଜୋଗୁଣାବଲମ୍ବୀ ଜନ ମଧ୍ୟଗାମୀ ଏବଂ ଜଘନ୍ୟ ତମୋଗୁଣାବଲମ୍ବୀ ଜନଗଣ ଅଧୋଗାମୀ ହୁଅନ୍ତି । ୧୦ । ଶୂଦ୍ରମାନଙ୍କଠାରେ ତମୋଗୁଣ, କ୍ଷତ୍ରିୟମାନଙ୍କଠାରେ ରଜୋଗୁଣ ଏବଂ ବ୍ରାହ୍ମଣଗଣଙ୍କଠାରେ ଅତିଉତ୍ତମ ସତ୍ତ୍ୱଗୁଣ ବିଦ୍ୟମାନ ଥାଏ । ଏହିରୂପେ ସତ୍ତ୍ୱାଦି ଗୁଣତ୍ରୟ ତିନିବର୍ଣ୍ଣରେ ପ୍ରବର୍ତ୍ତିତ ହୋଇଅଛି । ୧୧ ।

ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣଙ୍କୁ ଆମ୍ଭେମାନେ ପୃଥକ୍ ବୋଲି ଜାଣୁଁ । ପରନ୍ତୁ ଏମାନେ ଦୂରରୁ ମିଳିତ ଏବଂ ସଂଘଶୃଙ୍ଖଳରୂପେ ଦୃଷ୍ଟ ହୁଅନ୍ତି । ୧୨ । ସୂର୍ଯ୍ୟ ଉଦିତ ହେଲେ କୁକର୍ମୀଗୃହୀ ଚୋରି ନରଗଣ ଭୀତ ହୁଅନ୍ତି ଏବଂ ଦୁଃଖଭାଗୀ ପଥିକକୁଳ ଉଷ୍ଣ ନିଶ୍ୱାସ ପରିତ୍ୟାଗ ପୂର୍ବକ ପରିତାପିତ ହୁଅନ୍ତି । ୧୩ ।

ସୂର୍ଯ୍ୟ ସଦୃଶ ସ୍ୱପ୍ରକାଶ ସତ୍ତ୍ୱଗୁଣ କୁକର୍ମୀଗୃହୀ ଅର୍ଥାତ୍ ତସ୍କରଗଣଙ୍କର ଭୟସ୍ୱରୂପ ତମୋଗୁଣ ବୋଲି କୀର୍ତ୍ତିତ ହୋଇଅଛି । ୧୪ । ପ୍ରକାଶାତ୍ମକ

Digitized by srujanika@gmail.com

ଆଦିସତ୍ତ୍ୱ, ସନ୍ତାପ ରଜ ଏବଂ ସର୍ବସମ୍ବନ୍ଧୀ ଗାହ୍ନ କେତୁ ତମୋଗୁଣ ବୋଲି କର୍ତ୍ତିତ ହୋଇଅଛି । ୧୫ ।

ଏହିରୂପ ସମସ୍ତ ଜ୍ୟୋତି ପଦାର୍ଥରେ ସତ୍ତ୍ୱାଦି ଗୁଣତ୍ରୟ ପର୍ଯ୍ୟାୟକ୍ରମେ ପ୍ରବୃତ୍ତ ଏବଂ ନିବୃତ୍ତ ହୋଇଥାଏ । ପରନ୍ତୁ ସ୍ଥାବର ପଦାର୍ଥ ସମୂହରେ ତମ ତିର୍ଯ୍ୟକ୍‌ଭାବ ଅର୍ଥାତ୍‌ ଆଧିକ୍ୟ ପ୍ରାପ୍ତହୁଏ, ରମଣୀୟତ୍ୱାଦି ରୂପ ରଜ ବିବର୍ତ୍ତିତ ହୁଏ, ଏବଂ ସତ୍ତ୍ୱ ସ୍ନେହଭାବ ଅର୍ଥାତ୍ ପ୍ରକାଶରୂପେ ଅବସ୍ଥିତ ଥାଏ । ମଧୁର ପ୍ରଭୃତି ରସ ସେମାନଙ୍କର ତମୋଗୁଣ ଏବଂ ସ୍ନେହ ପଦାର୍ଥ ସେମାନଙ୍କର ରଜୋଗୁଣ ଏବଂ ସ୍ନେହ ପଦାର୍ଥ ସେମାନଙ୍କର ସତ୍ତ୍ୱଗୁଣ ବୋଲି କଥିତ ହୁଏ । ୧୭ ।

ଦିବା, ରାତ୍ରି, ମାସ, ଅର୍ଦ୍ଧମାସ, ବର୍ଷ, ଋତୁ, ସନ୍ଧି, ଦାନ, ଯଜ୍ଞ, ଲୋକ, ଦେବତା, ବିଦ୍ୟା, ଗତି, ବର୍ତ୍ତମାନ ପ୍ରଭୃତି କାଳ, ଧର୍ମାଦି ବର୍ଗ ଏବଂ ପ୍ରାଣାଦି ବାୟୁ ଏହି ସମସ୍ତଙ୍କୁ ତ୍ରିଗୁଣାତ୍ମକ ବୋଲି ଜାଣିବ । ଇହଲୋକରେ ଯାହାକିଛି ବସ୍ତୁ ବିଦ୍ୟମାନ ଅଛି, ତାହାସବୁ ତ୍ରିଗୁଣାତ୍ମକ । ଗୁଣତ୍ରୟ ପର୍ଯ୍ୟାୟକ୍ରମେ ସମସ୍ତ ବସ୍ତୁରେ ପ୍ରବର୍ତ୍ତିତ ହୋଇ ରହିଅଛି । ସତ୍ତ୍ୱ, ରଜ ଓ ତମ ଏହି ଗୁଣତ୍ରୟ ଅବ୍ୟକ୍ତରୂପେ ନିତ୍ୟ ପ୍ରବର୍ତ୍ତିତ ଥାଆନ୍ତି । ଏହି ଗୁଣଙ୍କୁ ସ୍ୱର୍ଗ ସନାତନ ବୋଲି ଜାଣିବ । ୨୨ ।

ତମ, ଅବ୍ୟକ୍ତ, ଶିବ, ଧାମ, ରଜ, ଯୋନି, ସନାତନ, ପ୍ରକୃତି, ବିକାର, ପ୍ରଳୟ, ପ୍ରଧାନ, ଉତ୍ପତ୍ତି, ବିନାଶ, ଅନୁଦ୍ରିକ୍ତ, ଅନ୍ୟୂନ, ଅକମ୍ପ, ଅଚଳ, ଧ୍ରୁବ, ସତ୍‌, ଅସତ୍‌, ଅବ୍ୟକ୍ତ ଓ ତ୍ରିଗୁଣ ଏହି ସମସ୍ତଙ୍କୁ ଅଧ୍ୟାତ୍ମ ଚିନ୍ତକ ନରଗଣ ଅବ୍ୟକ୍ତଙ୍କ ନାମଧେୟ ବୋଲି ଜାଣିବେ । ୨୪ ।

ଯେଉଁ ଜନ ଅବ୍ୟକ୍ତଙ୍କ ନାମ, ଗୁଣ ଏବଂ ଗତି ଏହି ସମସ୍ତ ଯଥାର୍ଥରୂପେ ଜାଣି ପାରନ୍ତି, ସେହି ବିଭାଗତତ୍ତ୍ୱଜ୍ଞ ମନୁଷ୍ୟ ମୁକ୍ତ ଓ ନିରାମୟ ହୋଇ ସର୍ବପ୍ରକାର ଗୁଣରୁ ମୁକ୍ତ ହୁଅନ୍ତି । ୨୫ ।

—0—

Digitized by srujanika@gmail.com

# ଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ପ୍ରଥମତଃ ଅବ୍ୟକ୍ତରୁ ମହାମତି ମହାତ୍ମା ମହତ୍ତତ୍ତ୍ୱଙ୍କର ଉତ୍ପତ୍ତି ହୁଏ । ଏହି ମହତ୍ତତ୍ତ୍ୱଙ୍କୁ ସମୁଦାୟ ସୃଷ୍ଟିର ଆଦି ସୃଷ୍ଟି ବୋଲି କୁହାଯାଏ । ୧ । ମହାତ୍ମା ମହାନ୍ ଅର୍ଥାତ୍ ମହତ୍ତତ୍ତ୍ୱ, ମହାନ୍ ମତି, ଆତ୍ମା, ବିଷ୍ଣୁ, ଜିଷ୍ଣୁ, ଶମ୍ଭୁ, ବୁଦ୍ଧି, ପ୍ରଜ୍ଞା, ଉପଲବ୍ଧି, ଖ୍ୟାତି, ଧୃତି ଓ ସ୍ମୃତି ପ୍ରଭୃତି ପର୍ଯ୍ୟାୟବାଚକ ଶବ୍ଦଦ୍ୱାରା ବିଖ୍ୟାତ ହୁଅନ୍ତି । ଯେଉଁ ବିଦ୍ୱାନ୍ ବ୍ରାହ୍ମଣ ସେହି ମହତ୍ତତ୍ତ୍ୱଙ୍କୁ ଅବଗତ ହୁଅନ୍ତି, ସେ କଦାପି ମୋହଗ୍ରସ୍ତ ହୁଅନ୍ତି ନାହିଁ । ୩ ।

ସେହି ମହତ୍ତତ୍ତ୍ୱଙ୍କର ହସ୍ତ, ପାଦ, ଚକ୍ଷୁ, ମସ୍ତକ, ମୁଖ ଓ କର୍ଣ୍ଣ ସର୍ବତ୍ର ବିଦ୍ୟମାନ ରହିଅଛି, ଏବଂ ସେ ସମୁଦାୟ ଜଗତ୍‌ବ୍ୟାପି ଅବସ୍ଥାନ କରିଅଛନ୍ତି । ୪ । ସେହି ମହା ପ୍ରଭାବସମ୍ପନ୍ନ ପୁରୁଷ ସମସ୍ତଙ୍କ ହୃଦୟରେ ନିହିତ ଅଛନ୍ତି । ସେ ଅଣିମା, ଲଘିମା, ପ୍ରାପ୍ତି, ଈଶାନ, ଅବ୍ୟୟ ଓ ଜ୍ୟୋତି-ସ୍ୱରୂପ । ୫ ।

ଇହଲୋକରେ ଯେଉଁମାନେ ବୁଦ୍ଧିମାନ୍, ସଦ୍‌ଭାବନିରତ, ଧ୍ୟାନପରାୟଣ, ଯୋଗୀ, ସତ୍ୟସନ୍ଧ, ଜିତେନ୍ଦ୍ରିୟ, ଜ୍ଞାନବାନ୍, ଲୋଭହୀନ, କ୍ରୋଧଶୂନ୍ୟ, ପ୍ରସନ୍ନଚିତ୍ତ, ଧୀରପ୍ରକୃତି ଏବଂ ମମତା ଓ ଅହଂକାର ପରିଶୂନ୍ୟ, ସେହିମାନେ କେବଳ ସେହି ମହତ୍ତତ୍ତ୍ୱଙ୍କଠାରେ ବିଲୀନ ହୁଅନ୍ତି, ଏବଂ ଯେ ସେହି ମହାତ୍ମାଙ୍କର ପବିତ୍ରମୟ ଉତ୍ତମ ଗତିକୁ ଅବଗତ ହୋଇ ପାରନ୍ତି, ସେ ସେହି ମହତ୍ତତ୍ତ୍ୱଙ୍କୁ ପ୍ରାପ୍ତ ହୁଅନ୍ତି । ୮ ।

ପୃଥିବୀ, ବାୟୁ, ଆକାଶ, ଜଳ ଏବଂ ଜ୍ୟୋତି ଏହି ପାଞ୍ଚ ମହାଭୂତ ଅହଂକାରରୁ ଉତ୍ପନ୍ନ ହୋଇ ଅଛନ୍ତି । ୯ । ଭୂତସମୂହ ସେହି ପଞ୍ଚମହାଭୂତରୁ ଉତ୍ପନ୍ନ ହୋଇ ଶବ୍ଦ, ସ୍ପର୍ଶ, ରୂପ, ରସ ଏବଂ ଗନ୍ଧ, ଏହି ସମସ୍ତ କ୍ରିୟାଗୁଣରେ ଯୁକ୍ତ ହୁଅନ୍ତି । ୧୦ ।

ହେ ଧୀରଗଣ ! ସେହି ମହାଭୂତଙ୍କ ବିନାଶ, ଅନ୍ତ ଏବଂ ପ୍ରଳୟକାଳ ଉପସ୍ଥିତ ହେଲେ, ପ୍ରାଣିଗଣଙ୍କର ଅତିଶୟ ଭୟ ଉତ୍ପନ୍ନ ହୁଏ । ୧୧ । ସେହି ମହାବୀର ମହାନ୍ ଧୀର ସର୍ବଲୋକରେ ମୋହପ୍ରାପ୍ତ ହୁଅନ୍ତି ନାହିଁ । ସେହି

Digitized by srujanika@gmail.com

ସ୍ୱୟଂଭୂ ବିଷ୍ଣୁ ଆଦି ସୃଷ୍ଟିରେ ପ୍ରଭୁ ହୁଅନ୍ତି । ୧୨ । ଯେଉଁ ବ୍ୟକ୍ତି ମହାଶୟ, ବିଶ୍ୱରୂପ, ହିରଣ୍ମୟ, ବୁଦ୍ଧିମାନ୍ ଜନମାନଙ୍କର ପରମଗତି, ପୁରାଣ, ପରମପୁରୁଷ ପ୍ରଭୁଙ୍କୁ ଏହିରୂପେ ଅବଗତ ହୁଅନ୍ତି, ସେହି ବୁଦ୍ଧିମାନ୍ ଜନ ବୁଦ୍ଧିକୁ ଅତିକ୍ରମ କରି ଅବସ୍ଥିତ ହୁଅନ୍ତି । ୧୩ ।

---

# ଏକଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ପୂର୍ବେ ଯେଉଁ ମହାନ୍ ଅର୍ଥାତ୍ ମହତ୍ତତ୍ତ୍ୱ ଉତ୍ପନ୍ନ ହୋଇଅଛନ୍ତି, ସେ ଅହଂ ଏହିପରି ଅଭିମାନ କରି ଅହଂକାର ଓ ଦ୍ୱିତୀୟ ସର୍ଗ ବୋଲି କଥିତ ହୁଅନ୍ତି । ୧ ।

ସେହି ଅହଂକାର ସର୍ବଭୂତର ଆଦି ବିକୃତ ମହତ୍ତ୍ୱରୁ ଉତ୍ପନ୍ନ ଅର୍ଥାତ୍ ବୈକାରିକ ନାମରେ ଖ୍ୟାତ ତେଜୋବିକାର, ଚେତନା ପୁରୁଷ ଏବଂ ପ୍ରଜାପତିରୂପେ ଜନ୍ମଗ୍ରହଣ କରିଅଛନ୍ତି । ସେ ଇନ୍ଦ୍ରିୟ ଓ ମନର ଉତ୍ପତ୍ତି ସ୍ଥାନ, ତ୍ରିଲୋକ କର୍ତ୍ତା । ସେ ସମସ୍ତ ବସ୍ତୁରେ ଅହଂ ଏହିପରି ଅଭିମାନ କରି ଅହଂକାର ବୋଲି କଥିତ ହୁଅନ୍ତି । ଅଧ୍ୟାତ୍ମଜ୍ଞାନଦ୍ୱାରା ପରିତୃପ୍ତ, ପରମାତ୍ମ ଚିନ୍ତକ ସ୍ୱାଧ୍ୟାୟ ଯଜ୍ଞଦ୍ୱାରା ସିଦ୍ଧ ମୁନିଗଣଙ୍କର ଏହା ସନାତନ ଲୋକ । ୪ ।

ଅହଂକାରଦ୍ୱାରା ଶବ୍ଦାଦି ଗୁଣବେତ୍ତା ପୁରୁଷଙ୍କର ଆଦିଭୂତ ବିକୃତ ମହତ୍ତ୍ୱରୁ ଉତ୍ପନ୍ନ ହୁଅନ୍ତି । ସେହି ଭୂତକର୍ତ୍ତା ଅହଂକାର ବିୟଦାଦି ଭୂତସମୂହର ସୃଷ୍ଟି କରି ନିଜ ତେଜଦ୍ୱାରା ଏହି ସମସ୍ତ ସଂସାରକୁ ରଞ୍ଜିତ କରନ୍ତି ଓ ବିଶେଷରୂପେ ଚେଷ୍ଟିତ କରନ୍ତି । ୫ ।

---

# ଦ୍ୱିଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ପୃଥିବୀ, ବାୟୁ, ଆକାଶ, ଜଳ ଏବଂ ଜ୍ୟୋତି ଏହି ପଞ୍ଚ ମହାଭୂତ ଅହଂକାରରୁ ଉତ୍ପନ୍ନ ହୋଇଅଛନ୍ତି । ୧।

Digitized by srujanika@gmail.com

ମନୁଷ୍ୟାଦି ଭୂତସମୂହ ନିମିତ୍ତ ଭୂତରେ ମୁଗ୍ଧ ହୁଅନ୍ତି । ହେ ଧୀରଗଣ ! ମହାଭୂତର ବିନାଶ ଏବଂ ପ୍ରଳୟ କାଳ ଉପସ୍ଥିତ ହେଲେ ସମସ୍ତ ପ୍ରାଣିଗଣଙ୍କର ମହାଭୟ ଉପସ୍ଥିତ ହୁଏ । ୩ ।

ଯେଉଁ ଭୂତ ଯହିଁରୁ ଉତ୍ପନ୍ନ ହୁଏ, ସେହି ଭୂତ ତହିଁରେ ଲୀନ ହୁଏ, ଏବଂ ସେମାନେ ଅନୁଲୋମ କ୍ରମେ ଉତ୍ତରୋତ୍ତର ଉତ୍ପନ୍ନ ଏବଂ ପ୍ରତିଲୋମ କ୍ରମେ ଲୀନ ହୁଅନ୍ତି । ତଦନନ୍ତର ଯେତେବେଳେ ସ୍ଥାବରଜଙ୍ଗମାତ୍ମକ ଭୂତସମୂହ ପ୍ରଲୀନ ହୁଅନ୍ତି, ସେତେବେଳେ ଧୀରବର ସ୍ମରଣଶକ୍ତିଯୁକ୍ତ ନରଗଣ କଦାପି ଲୀନ ହୁଅନ୍ତି ନାହିଁ । ୫ ।

ସେମାନେ ସୂକ୍ଷ୍ମ ଶରୀର ଧାରଣ ପୂର୍ବକ ବ୍ରହ୍ମଲୋକରେ ଅବସ୍ଥାନ କରନ୍ତି । ଶବ୍ଦାଦି ବିଷୟସମୂହ ସୂକ୍ଷ୍ମ, ଏହି ନିମିତ୍ତ ପ୍ରଳୟ କାଳରେ ସେମାନଙ୍କର ଧ୍ୱଂସ ହୁଏ ନାହିଁ । ସୁତରାଂ ସେମାନଙ୍କୁ ନିତ୍ୟ ଓ ସମସ୍ତ ସ୍ଥୂଳପଦାର୍ଥମାନଙ୍କୁ ଅନିତ୍ୟ ବୋଲି ନିର୍ଦ୍ଦେଶ କରାଯାଏ । ୭ । ଲୋଭଜନକ କର୍ମରୁ ସମ୍ଭୂତ, ନିର୍ବିଶେଷରେ ଅକିଂଚନ, ମାଂସରକ୍ତସଂଯୁକ୍ତ, ଦୀନ ଅର୍ଥାତ୍ କ୍ଷୁଧାଦି ଦ୍ୱାରା ଉପଦ୍ରୁତ, କୃପଣ ଜୀବ ଅନନ୍ୟୋପଜୀବୀ ବହିରାତ୍ମା ଅର୍ଥାତ୍ ସ୍ଥୂଳଶରୀର-ସମୂହ ଅନିତ୍ୟ ବୋଲି ଜାଣିବ ।

ପ୍ରାଣାଦି ପଞ୍ଚବାୟୁ ଏବଂ ବାକ୍ୟ, ମନ ଓ ବୁଦ୍ଧି ଏହି ଆଠଗୋଟି ଉପାଧିରୂପେ ଅନ୍ତରାତ୍ମାଙ୍କର ସମ୍ବନ୍ଧ ହୋଇ ଜଗଦାକାରରେ ପ୍ରକାଶମାନ ହୁଅନ୍ତି । ୯ ।

ଯାହାଙ୍କର ତ୍ୱକ୍, ଘ୍ରାଣ, ଶ୍ରୋତ୍ର, ଚକ୍ଷୁ, ରସନା ଏବଂ ବାକ୍ୟ ଏହି ସମସ୍ତ ସଂଯତ ମନ ବିଶୁଦ୍ଧ ବୁଦ୍ଧି ଅବ୍ୟଭିଚାରିଣୀ ହୁଏ ଏବଂ ଏହି ଆଠଗୋଟି ଅଗ୍ନିସ୍ୱରୂପ ହୋଇ ଯାହାଙ୍କ ଚିତ୍ତକୁ ସର୍ବଦା ଦଗ୍ଧ ନକରନ୍ତି, ସେହି ବିଦ୍ୱାନ୍ ଜନ ସର୍ବାଧିକ ଶୁଭକର ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ।

ହେ ଦ୍ୱିଜଗଣ ! ଯେଉଁମାନେ ଅହଂକାରରୁ ଉତ୍ପନ୍ନ ହୋଇଅଛନ୍ତି, ଯେଉଁମାନଙ୍କୁ ପଣ୍ଡିତଗଣ ଏକାଦଶ ଇନ୍ଦ୍ରିୟ ବୋଲି କହନ୍ତି, ଆମ୍ଭେ ତୁମ୍ଭମାନଙ୍କୁ ସେହି ଏକାଦଶ ଇନ୍ଦ୍ରିୟମାନଙ୍କ ବିଷୟ ବିଶେଷ କରି କହୁଅଛୁଁ, ଶ୍ରବଣ କର । ୧୨ ।

Digitized by srujanika@gmail.com

ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା, ନାସିକା, ଚରଣ, ହସ୍ତ, ପାୟୁ, ଉପସ୍ଥ, ବାକ୍ୟ ଏବଂ ମନ ଏହି ଏକାଦଶ ଇନ୍ଦ୍ରିୟ ଗ୍ରାମ । ପ୍ରଥମତଃ ଏହି ଇନ୍ଦ୍ରିୟ ଗ୍ରାମ ବଶୀଭୂତ କରିପାରିଲେ ପୂର୍ଣ୍ଣବ୍ରହ୍ମ ପ୍ରକାଶିତ ହୁଅନ୍ତି । ୧୪ । ପଣ୍ଡିତଗଣ ବୁଦ୍ଧିଯୁକ୍ତ ଶ୍ରୋତ୍ର ପ୍ରଭୃତି ପାଞ୍ଚଗୋଟି ଇନ୍ଦ୍ରିୟମାନଙ୍କୁ ଜ୍ଞାନେନ୍ଦ୍ରିୟ ଏବଂ କର୍ମଯୁକ୍ତ ବାକ୍ ପ୍ରଭୃତି ପାଞ୍ଚଗୋଟି ଇନ୍ଦ୍ରିୟମାନଙ୍କୁ କର୍ମେନ୍ଦ୍ରିୟ ବୋଲି କହନ୍ତି । ପରନ୍ତୁ ଉଭୟବିଧ ଇନ୍ଦ୍ରିୟମାନଙ୍କଠାରେ ଅନୁଗତ ମନକୁ ଏକାଦଶ ଏବଂ ବୁଦ୍ଧିକୁ ଦ୍ୱାଦଶ ବୋଲି ଜାଣିବ । ୧୬ । ଯଥାକ୍ରମରେ ଏହି ଏକାଦଶ ଇନ୍ଦ୍ରିୟ କଥିତ ହେଲେ । ପଣ୍ଡିତଗଣ ଏହି ଏକାଦଶ ଇନ୍ଦ୍ରିୟମାନଙ୍କୁ ବିଶେଷରୂପେ ବିଦିତ ହୋଇ କୃତକୃତ୍ୟ ହୁଅନ୍ତି । ୧୭ ।

ହେ ଦ୍ୱିଜଗଣ ! ଅତଃପର ଆମ୍ଭେ ସମସ୍ତ ଇନ୍ଦ୍ରିୟ, ଆକାଶାଦି ବିବିଧ ଭୂତ, ସେମାନଙ୍କ ଅଧ୍ୟାତ୍ମ, ଅଧିଭୂତ ଓ ଅଧିଦୈବତ ସମସ୍ତ ତତ୍ତ୍ୱମାନଙ୍କୁ ବିଶେଷରୂପେ କହୁଅଛୁଁ, ଶ୍ରବଣ କର ।

ଆକାଶ ପ୍ରଥମ ଭୂତ । ତହିଁରେ ଶ୍ରୋତ୍ର ଅଧ୍ୟାତ୍ମ, ଶବ୍ଦ ଅଧିଭୂତ, ଦିକ୍ ଅଧିଦୈବତ ବୋଲି କଥିତ ହୋଇଅଛି । ବାୟୁ ଦ୍ୱିତୀୟ ଭୂତ । ତହିଁରେ ତ୍ୱକ୍ ଅଧ୍ୟାତ୍ମ, ସ୍ପ୍ରଷ୍ଟବ୍ୟ ଅଧିଭୂତ, ବିଦ୍ୟୁତ୍ ଅଧିଦୈବତ ବୋଲି ଉକ୍ତ ହୋଇଅଛି । ଅଗ୍ନି ତୃତୀୟ ଭୂତ । ତହିଁରେ ଚକ୍ଷୁ ଅଧ୍ୟାତ୍ମ । ୨୦ । ରୂପ ଅଧିଭୂତ, ସୂର୍ଯ୍ୟ ଅଧିଦୈବତ ବୋଲି କଥିତ ହୋଇଅଛି । ସଲିଳ ଚତୁର୍ଥ ଭୂତ । ତହିଁରେ ଜିହ୍ୱା ଅଧ୍ୟାତ୍ମ, ରସ ଅଧିଭୂତ, ଚନ୍ଦ୍ର ଅଧିଦୈବତ ରୂପେ ପରିଗଣିତ ହୋଇଅଛନ୍ତି । ପୃଥିବୀ ପଞ୍ଚମ ଭୂତ । ତହିଁରେ ଘ୍ରାଣ, ଅଧ୍ୟାତ୍ମ, ଗନ୍ଧ ଅଧିଭୂତ, ବାୟୁ ଅଧିଦୈବତ ବୋଲି ଉକ୍ତ ହୋଇଅଛି ।

ଅତଃପର ପଞ୍ଚଭୂତର ଅନ୍ତର୍ଗତ ଅଧ୍ୟାତ୍ମ, ଅଧିଭୂତ ଓ ଅଧିଦୈବତ ଏହି ତିନଗୋଟିରେ ଯେଉଁ ବିଧି ବିହିତ ହୋଇଅଛି, ସେହି ବିଧିସମସ୍ତ କର୍ମେନ୍ଦ୍ରିୟମାନଙ୍କୁ କହୁଅଛୁଁ, ଶ୍ରବଣ କର ।

ତତ୍ତ୍ୱଦର୍ଶୀ ପଣ୍ଡିତଗଣ ପାଦଦ୍ୱୟଙ୍କୁ ଅଧ୍ୟାତ୍ମ, ତହିଁରେ ଗନ୍ତବ୍ୟ ସ୍ଥାନକୁ ଅଧିଭୂତ ଓ ବିଷ୍ଣୁଙ୍କୁ ଅଧିଦୈବତ ବୋଲି କହନ୍ତି । ପାୟୁ ଅଧ୍ୟାତ୍ମ, ପୁରୀଷ ପରିତ୍ୟାଗ ଏହାର ଅଧିଭୂତ ଓ ମିତ୍ର ଅଧିଦୈବତ । ସର୍ବଭୂତରସଜନକ

Digitized by srujanika@gmail.com

ଉପସ୍ଥ ଅଧ୍ୟାତ୍ମ, ଶୁକ୍ର ଅଧିଭୂତ ଏବଂ ପ୍ରଜାପତି ଅଧିଦେବତାରୂପେ ପରିକୀର୍ତ୍ତିତ ହୋଇଅଛନ୍ତି । ହସ୍ତଦ୍ୱୟ ଅଧ୍ୟାତ୍ମ, କର୍ମ ଅଧିଭୂତ ଓ ଇନ୍ଦ୍ର ଅଧିଦୈବତ ବୋଲି ଅଧ୍ୟାତ୍ମବିତ୍ ଜନଗଣ କହନ୍ତି । ବାକ୍ୟରୂପ ବୈଶ୍ୱଦେବୀ ଅଧ୍ୟାତ୍ମ, ତନ୍ମଧ୍ୟରେ ବକ୍ତବ୍ୟ ବିଷୟ ଅଧିଭୂତ, ବହ୍ନି ଅଧିଦୈବତ ବୋଲି କଥିତ ହୋଇଅଛନ୍ତି ।

ପଣ୍ଡିତମାନେ ପଞ୍ଚଭୂତାତ୍ମକାରକ ମନକୁ ଅଧ୍ୟାତ୍ମ, ତନ୍ମଧ୍ୟରେ ସଂକଳ୍ପକୁ ଅଧିଭୂତ ଓ ଚନ୍ଦ୍ରମାଙ୍କୁ ଅଧିଦୈବତ ବୋଲି କହନ୍ତି । ସର୍ବସଂସାରକାରକ ଅହଂକାର ଅଧ୍ୟାତ୍ମ, ତନ୍ମଧ୍ୟରେ ଅଭିମାନ ଅଧିଭୂତ ଓ ରୁଦ୍ର ଅଧିଦୈବତ ବୋଲି କଥିତ ହୋଇଅଛନ୍ତି । ପଣ୍ଡିତଗଣ ଷଡ଼ିନ୍ଦ୍ରିୟଗ୍ରହଣୀ ବୁଦ୍ଧିକୁ ଅଧ୍ୟାତ୍ମ ବୋଲି କହନ୍ତି । ୩୧ । ତନ୍ମଧ୍ୟରେ ମନ୍ତବ୍ୟ ବିଷୟ ଅଧିଭୂତ, ବ୍ରହ୍ମା ଅଧିଦୈବତ ବୋଲି କଥିତ ହୁଅନ୍ତି ।

ପ୍ରାଣିଗଣଙ୍କର ଜଳ, ସ୍ଥଳ ଓ ଆକାଶ ଏହି ତ୍ରିବିଧ ସ୍ଥାନ, ଏହା ଭିନ୍ନ ଅନ୍ୟ ଚତୁର୍ଥ ସ୍ଥାନ ଉପଲବ୍ଧ ହୁଏ ନାହିଁ । ୩୨ ।

ସମସ୍ତ ଭୂତଗଣଙ୍କର ଅଣ୍ଡଜ, ଉଦ୍ଭିଜ୍ଜ, ସ୍ୱେଦଜ ଓ ଜରାୟୁଜ ଏହି ଚତୁର୍ବିଧ ଜନ୍ମ ଲକ୍ଷିତ ହୁଏ । ଏହି ଚତୁଃପ୍ରକାର ଜୀବ ମଧ୍ୟରେ ପକ୍ଷୀ ଓ ସରୀସୃପଗଣଙ୍କୁ ଅଣ୍ଡଜ ବୋଲି ଜାଣିବ । ଏହିରୂପେ କୃମି ପ୍ରଭୃତି ଜଘନ୍ୟ ଜନ୍ତୁଗଣ ସ୍ୱେଦଜ ଓ ଜଘନ୍ୟ ବୋଲି ଉକ୍ତ ହୋଇଅଛନ୍ତି । ଏହା ଦ୍ୱିତୀୟ ଜନ୍ମ । କାଳର ପର୍ଯ୍ୟାୟ ବଶତଃ ଯେଉଁ ସମସ୍ତ ପ୍ରାଣିଗଣ ପୃଥିବୀ ଭେଦକରି ଉତ୍ପନ୍ନ ହୁଅନ୍ତି, ଦ୍ୱିଜବରଗଣ ସେମାନଙ୍କୁ ଉଦ୍ଭିଜ୍ଜ ବୋଲି କହନ୍ତି ।

ହେ ସତ୍ତମଗଣ ! ଦ୍ୱିପଦ, ବହୁପାଦ ଜୀବ ଗତିବିଶିଷ୍ଟ, ଜରାୟୁଜ ପ୍ରାଣିଗଣ ବିକୃତ ବୋଲି ଉକ୍ତ ହୋଇଅଛନ୍ତି ।

ସନାତନ ବ୍ରହ୍ମୋପଲବ୍ଧି ସ୍ଥାନ ଦ୍ୱିବିଧ ବୋଲି ଜାଣିବ । ୩୮ । ଅର୍ଥାତ୍ ବ୍ରାହ୍ମଣ ଦୁଇପ୍ରକାର—ତପସ୍ୱୀ ଓ ଯାଜ୍ଞିକ । ପଣ୍ଡିତମାନଙ୍କର ଏହିରୂପ ମତ ଯେ, ସେମାନେ ପୁଣ୍ୟକର୍ମକୁ ତପସ୍ୟା ବୋଲି କହନ୍ତି ।

କର୍ମ ନାନାବିଧ । ତନ୍ମଧ୍ୟରେ ଯଜ୍ଞ ଓ ଦାନକୁ ପ୍ରଧାନ ବୋଲି ଜାଣିବ ।

Digitized by srujanika@gmail.com

ହେ ଦ୍ୱିଜେନ୍ଦ୍ରଗଣ ! ବୃଦ୍ଧମାନଙ୍କର ଏହିରୂପ ଅନୁଶାସନ ଅଛି ଯେ, ବ୍ରାହ୍ମଣଙ୍କର ବେଦାଧ୍ୟୟନ ପୁଣ୍ୟକର୍ମ। ଯେଉଁ ବ୍ୟକ୍ତି ଏହା ବିଧିବତ୍ ବିଦିତ ହୁଅନ୍ତି, ସେହି ଉପଯୁକ୍ତ ହୁଅନ୍ତି ଏବଂ ଏହା ମଧ୍ୟ ଜାଣିବ ଯେ, ସେହି ବ୍ୟକ୍ତି ସର୍ବପାପରୁ ମୁକ୍ତିଲାଭ କରନ୍ତି । ଆମ୍ଭେ ତୁମ୍ଭମାନଙ୍କୁ ଏହି ଅଧ୍ୟାତ୍ମବିଧି ଯଥାର୍ଥରୂପେ କହିଲୁଁ । ୪୫ ।

ହେ ଧର୍ମଜ୍ଞଗଣ ! ଇହଲୋକରେ ଜ୍ଞାନବାନ୍ ବ୍ୟକ୍ତିମାନେ ଏହି ଅଧ୍ୟାତ୍ମବିଧିର ଜ୍ଞାନଲାଭ କରନ୍ତି ବୋଲି ସେମାନେ ଇନ୍ଦ୍ରିୟ, ଇନ୍ଦ୍ରିୟାର୍ଥ ଓ ପଞ୍ଚମହାଭୂତ ଏହି ସମସ୍ତ ସନ୍ଧାନ କରି ସମାନମାତ୍ରାରେ ଅବସ୍ଥାନ କରନ୍ତି । ୪୬ । ମନ ସର୍ବତୋଭାବରେ କ୍ଷୀଣ ହେଲେ, ଯେଉଁ ମନୁଷ୍ୟ ନିର୍ବିକଳ୍ପ ସୁଖ ଅନୁଭବ କରନ୍ତି, ତାହାଙ୍କର ପୁତ୍ରକଳତ୍ରପରି ସଙ୍ଗଜନ୍ୟ ସଂସାରସୁଖ ଅଭିଳଷିତ ହୁଏ ନାହିଁ । ପରନ୍ତୁ ଯେଉଁ ବିଦ୍ୱାନ୍‌ଜନମାନଙ୍କ ବୁଦ୍ଧି ଆତ୍ମାନୁଭବସଂଯୁକ୍ତ, ସେମାନଙ୍କର ତାହା ସୁଖରୂପେ ସମ୍ମତ ହୁଏ । ୪୭ ।

ଅତଃପର ମନର ସୂକ୍ଷ୍ମଭାବକାରୀ ନିବୃତ୍ତି ତୁମ୍ଭମାନଙ୍କୁ କହୁଅଛୁଁ । ବ୍ରାହ୍ମଣାଦି ସମସ୍ତ ପ୍ରାଣିଗଣ ମୃଦୁ ଏବଂ କଠିନ ଯୋଗଦ୍ୱାରା ନିବୃତ୍ତି ସାଧନ କରିବାକୁ ଯତ୍ନବାନ୍ ହେବେ । ଶୌର୍ଯ୍ୟାଦି ଗୁଣାଗୁଣଯୁକ୍ତ ଅଭିମାନଶୂନ୍ୟ ଏକାନ୍ତ ବାସ, ଅବିଚ୍ଛିନ୍ନ ଏକପଦ ଅର୍ଥାତ୍ ସର୍ବସୁଖ-ଗର୍ଭସୁଖକୁ ପଣ୍ଡିତଗଣ ବ୍ରାହ୍ମଣମାନଙ୍କର ବୃତ୍ତି ବୋଲି କହନ୍ତି । ୪୯ । ନିଜ ଅଙ୍ଗ ସଂକୋଚକାରୀ କୂର୍ମ ସଦୃଶ ଯେଉଁ ବିଦ୍ୱାନ୍ ଜନ ସମସ୍ତ କାମନାମାନଙ୍କୁ ସଂପୂର୍ଣ୍ଣରୂପେ ସଂହାର କରି ରଜୋବିହୀନ ହୁଅନ୍ତି, ସେ ସର୍ବତୋଭାବରେ ମୁକ୍ତ ହୋଇ ସର୍ବଦା ସୁଖଭୋଗ କରୁଥାଆନ୍ତି । ୫୦ ।

ଯେଉଁ ସମାହିତଚିତ୍ତ ଜନ ଦେହ ମଧ୍ୟରେ ସମସ୍ତ କାମନାମାନଙ୍କୁ ସଂଯତ କରି ସଂସାରବାସନାମାନଙ୍କୁ କ୍ଷୟ କରନ୍ତି, ସେ ସକଳ ପ୍ରାଣିଗଣଙ୍କର ସୁହୃଦ୍ ଓ ମିତ୍ର ହୋଇ ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି । ୫୧ । ବିଷୟାଭିଳାଷୀ ଇନ୍ଦ୍ରିୟଗଣଙ୍କର ନିରୋଧ ଏବଂ ଜନପଦତ୍ୟାଗ ହେତୁରୁ ମୁନିଗଣଙ୍କର ଅଧ୍ୟାତ୍ମ ଅଗ୍ନି ପ୍ରଜ୍ୱଳିତ ହୁଏ । ୫୨ । ଅଗ୍ନି ଯେଉଁପରି ଇନ୍ଧନଦ୍ୱାରା ପ୍ରଜ୍ୱଳିତ ହୋଇ ମହାଜ୍ୟୋତି ରୂପେ ପ୍ରକାଶିତ ହୁଏ, ତଦ୍‌ବତ୍ ଇନ୍ଦ୍ରିୟନିରୋଧବଶତଃ ପରମାତ୍ମା ପ୍ରକାଶିତ ହୁଅନ୍ତି । ୫୩ ।

Digitized by srujanika@gmail.com

ଯେତେବେଳେ ପ୍ରସନ୍ନଚିତ୍ତ ପୁରୁଷ ନିଜ ହୃଦୟରେ ସମସ୍ତ ଭୂତଗଣଙ୍କୁ ଅବଲୋକନ କରନ୍ତି, ତେତେବେଳେ ସେ ଅତିଶୟ ସୂକ୍ଷ୍ମ, ଅନୁତ୍ତମ ଜ୍ୟୋତି ପ୍ରାପ୍ତ ହୁଅନ୍ତି । ୫୪ ।

ମନୁଷ୍ୟର ପାଞ୍ଚଭୌତିକ ସ୍ଥୂଳ ଦେହରେ ଅଗ୍ନି ବର୍ଣ୍ଣ ରୂପରେ, ସଲିଳ ରକ୍ତସ୍ରୋତାଦି ପ୍ରବାହ ରୂପରେ, ବାୟୁ ତ୍ୱକ୍ ରୂପରେ, ପୃଥିବୀ ଅସ୍ଥି ଓ ମାଂସାଦି ରୂପରେ ଏବଂ ଆକାଶ ଶ୍ରବଣ ରୂପରେ ଅବସ୍ଥାନ କରେ । ଏହି ଦେହରେ ବେଗ, ଶୋକ, ପାଞ୍ଚ ଇନ୍ଦ୍ରିୟର ସ୍ରୋତ, ନବଦ୍ୱାର, ତ୍ରିଗୁଣ ଓ ତିନି ଧାତୁ ସର୍ବଦା ବିଦ୍ୟମାନ ଥାଏ ।

ଜୀବାତ୍ମା ଓ ପରମାତ୍ମା ଏହି ଦୁହେଁ ସ୍ଥୂଳ ଶରୀର ଅଧିଷ୍ଠାତ୍ରୀ ଦେବତା, ଏବଂ ଏହା ବିନଶ୍ୱର ବୁଦ୍ଧିର ଅଧୀନ, ବ୍ୟାଧିସମାକ୍ରାନ୍ତ ଓ ମଳିନ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଅମରଗଣସମ୍ବଳିତ ସମସ୍ତ ଭୁବନର ଉତ୍ପତ୍ତି, ବିନାଶ ଓ ବୋଧର କାରଣ ସ୍ୱରୂପ କାଳଚକ୍ର ଏହି ଶରୀର ଉଦ୍ଦେଶ୍ୟରେ ନିରନ୍ତର ପରିଭ୍ରମଣ କରୁଅଛି । ୫୮ ।

ମନୁଷ୍ୟ ଏହି ଶରୀରାନ୍ତର୍ଗତ ଇନ୍ଦ୍ରିୟସମୂହକୁ ରୁଦ୍ଧ କରିପାରିଲେ ଅପରିହାର୍ଯ୍ୟ କାମ, କ୍ରୋଧ, ଭୟ, ଲୋଭ, ଅଭିଦ୍ରୋହ ଓ ମିଥ୍ୟା ପ୍ରଭୃତି ପରିତ୍ୟାଗ କରିବାକୁ ସମର୍ଥ ହୁଅନ୍ତି । ଯେଉଁ ବ୍ୟକ୍ତି ଏହି ପାଞ୍ଚଭୌତିକ ସ୍ଥୂଳ ଦେହର ଅଭିମାନ ପରିତ୍ୟାଗ କରନ୍ତି, ସେ ହୃଦୟାକାଶରେ ପରମବ୍ରହ୍ମଙ୍କର ସାକ୍ଷାତ୍କାର ଲାଭ କରନ୍ତି । ୬୧ ।

ଯେଉଁ ବ୍ୟକ୍ତି ପଞ୍ଚେନ୍ଦ୍ରିୟ ରୂପ ମହାକୂଳଯୁକ୍ତ ମନୋବେଗ ରୂପ ଜଳରାଶି ଦ୍ୱାରା ସମାକୀର୍ଣ୍ଣ ମୋହହ୍ରଦସମ୍ବଳିତ ଭୟଙ୍କର ଦେହନଦୀ ଉତ୍ତୀର୍ଣ୍ଣ ହୋଇ କାମକ୍ରୋଧକୁ ପରାଜୟ କରିପାରନ୍ତି, ସେ ସର୍ବଦୋଷରୁ ବିମୁକ୍ତ ହୋଇ ପରଂବ୍ରହ୍ମଙ୍କ ସାକ୍ଷାତ୍କାର ଲାଭରେ ସମର୍ଥ ହୁଅନ୍ତି । ଯୋଗଶୀଳ ବ୍ୟକ୍ତି ହୃଦପଦ୍ମରେ ମନକୁ ସଂସ୍ଥାପିତ କରି ପରମାତ୍ମାଙ୍କୁ ଦର୍ଶନ କରନ୍ତି । ସର୍ବଜ୍ଞ, ସର୍ବଭୂତର ସମଦର୍ଶୀ ପୁରୁଷ ସ୍ୱୀୟ ଶରୀରରେ ପରମାତ୍ମାଙ୍କୁ ଲାଭ କରନ୍ତି, ଏବଂ ଏକ ଓ ବହୁରୂପରେ ବିକୃତ ହୁଅନ୍ତି । ଯେଉଁପରି ଗୋଟିଏ ଦୀପରୁ ଶତଦୀପ ପ୍ରକାଶିତ ହୁଏ, ତଦ୍‌ବତ୍ ଯୋଗୀ ପୁରୁଷ ସଙ୍କଳ୍ପମାତ୍ରେ ସ୍ୱୀୟ ଶରୀରରୁ ଶତ ଶରୀରର ଉତ୍ପାଦନ କରିପାରନ୍ତି ।

Digitized by srujanika@gmail.com

ସେ ବିଷ୍ଣୁ, ମିତ୍ର, ବରୁଣ, ଅଗ୍ନି, ପ୍ରଜାପତି, ଧାତା, ବିଧାତା, ସର୍ବତୋମୁଖ, ପ୍ରଭୁ, ସର୍ବଭୂତର ହୃଦୟ ଓ ପରମାତ୍ମାରୂପେ ପ୍ରକାଶିତ ହୁଅନ୍ତି । ୬୬ । ବିପ୍ର, ସୁର, ଅସୁର, ଯକ୍ଷ, ପିଶାଚ, ପିତୃ, ପକ୍ଷୀ, ରାକ୍ଷସ, ଭୂତ ଓ ମହର୍ଷିଗଣ ତାହାଙ୍କୁ ସର୍ବଦା ସ୍ତବ କରନ୍ତି । ୬୭ ।

---

# ତ୍ରିଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ରଜୋଗୁଣପ୍ରଧାନ ରାଜନ୍ୟ କ୍ଷତ୍ରିୟ ମନୁଷ୍ୟମାନଙ୍କର ଅଧିପତି, କୁଞ୍ଜର ବାହନମାନଙ୍କର, ସିଂହ ଅରଣ୍ୟବାସିମାନଙ୍କର, ମେଷ ପଶୁମାନଙ୍କର, ସର୍ପ ବିଳବାସିମାନଙ୍କର, ଗୋବୃଷଭ ଗୋସମୂହର, ପୁରୁଷ ସ୍ତ୍ରୀବୃନ୍ଦର, ବଟ, ଅଶ୍ୱତ୍ଥ, ଜମ୍ବୁ, ଶାଲ୍ମଳୀ, ଶିଂଶପା, ମେଷଶୃଙ୍ଗୀ ଏବଂ କୀଚକବେଣୁ ଏହିମାନେ ବୃକ୍ଷମାନଙ୍କର, ହିମବାନ୍ ପାରିପାତ୍ର, ସହ୍ୟ, ତ୍ରିକୂଟବାନ୍ ବିନ୍ଧ୍ୟ, ଶ୍ୱେତ, ନୀଳ, ଭାସ, କୋଷ୍ଠବାନ୍, ଗୁରୁସ୍କନ୍ଧ, ମହେନ୍ଦ୍ର ଓ ମାଲ୍ୟବାନ୍ ଏହିମାନେ ପର୍ବତମାନଙ୍କର, ସୂର୍ଯ୍ୟ ଗ୍ରହମାନଙ୍କର, ଚନ୍ଦ୍ର ନକ୍ଷତ୍ରସମୂହର, ଯମ ପିତୃଗଣଙ୍କର, ସାଗର ସରିତସମୂହର, ବରୁଣ ଜଳରାଶିର, ଇନ୍ଦ୍ର ମରୁଦ୍‌ଗଣଙ୍କର, ଅର୍କ ଉଷ୍ଣସମୂହର, ଇନ୍ଦୁ ଜ୍ୟୋତିଃ-ସମୂହର, ଅଗ୍ନି ଭୂତସମୂହର, ବୃହସ୍ପତି ବ୍ରାହ୍ମଣମାନଙ୍କର, ସୋମ ଓଷଧି-ସମୂହର, ବିଷ୍ଣୁ ବଳବାନ୍‌ମାନଙ୍କର, ତ୍ୱଷ୍ଟା ରୂପସମୂହର, ଶିବ ପଶୁଗଣଙ୍କର, ଯଜ୍ଞ ଦୀକ୍ଷିତ ଓ ଦେବତାମାନଙ୍କର, ଉଦୀଚ ଦିକ୍‌ସମୂହର, ସୋମ ବିପ୍ରଗଣଙ୍କର, କୁବେର ରତ୍ନବୃନ୍ଦର, ପୁରନ୍ଦର ଦେବତାମାନଙ୍କର, ପ୍ରଜାପତି ପ୍ରଜାପୁଞ୍ଜର ଏବଂ ବ୍ରହ୍ମମୟ ମହାନ୍ ଆମ୍ଭେ ସମସ୍ତ ଭୂତଗଣଙ୍କର ଅଧିପତି । ବିଷ୍ଣୁ ଏବଂ ଆମ୍ଭ ବ୍ୟତିରେକେ ଅନ୍ୟ କେହି ଭୂତ ନାହାନ୍ତି । ୧୨ ।

ବ୍ରହ୍ମମୟ ମହାବିଷ୍ଣୁ ସମସ୍ତ ଭୂତଗଣଙ୍କର ରାଜାଧିରାଜ, ଏବଂ ଅକୃତ-କର୍ତ୍ତା ହରି ନର ପ୍ରଭୃତିଙ୍କର ଐଶ୍ୱର୍ଯ୍ୟ ବୋଲି ଜାଣିବ । ୧୩ । ସେହି ନର, କିଂନର, ଯକ୍ଷ, ଗନ୍ଧର୍ବ, ଉରଗ, ରକ୍ଷ, ଦେବ, ଦାନବ ଓ ନାଗ ଏହି ସମସ୍ତଙ୍କର ଈଶ୍ୱର । ୧୪ । କାମୁକମାନଙ୍କ ଅନୁଗତ ସ୍ତ୍ରୀଗଣ ମଧ୍ୟରେ ମାହେଶ୍ୱରୀ ମହାଦେବୀ ପାର୍ବତୀ ବାମଲୋଚନା ବୋଲି କଥିତ ହୋଇ-

Digitized by srujanika@gmail.com

ଅଛନ୍ତି । ୧୫ । ନାରୀଗଣଙ୍କ ମଧ୍ୟରେ ଉମାଦେବୀ ଶ୍ରେଷ୍ଠ । ସମସ୍ତ ପ୍ରୀତି ସୁଖମଧ୍ୟରେ ଅପ୍‌ସରାସମୂହଙ୍କୁ ଶ୍ରେଷ୍ଠ ବୋଲି ଜାଣିବ । ୧୬ ।

ହେ ଦ୍ୱିଜେନ୍ଦ୍ରଗଣ ! ଧର୍ମକାମ ନୃପତି ଏବଂ ବ୍ରାହ୍ମଣଗଣ ଧର୍ମର ସେତୁ ସ୍ୱରୂପ, ଅତଏବ ରାଜା ବ୍ରାହ୍ମଣମାନଙ୍କର ରକ୍ଷଣ ବିଷୟରେ ଯତ୍ନବାନ୍ ହେବେ । ୧୭ । ଯେଉଁ ରାଜଗଣଙ୍କ ରାଜ୍ୟରେ ସାଧୁବୃନ୍ଦ ଅବସନ୍ନ ହୁଅନ୍ତି, ସେହି ନୃପତିସମୂହ ସ୍ୱକୀୟ ସମସ୍ତ ଗୁଣସମୂହରେ ହୀନ ହୋଇ ପରଲୋକରେ ଉନ୍ମାର୍ଗଗାମୀ ହୁଅନ୍ତି । ୧୮ । ଯେଉଁ ସମସ୍ତ ରାଜଗଣଙ୍କ ରାଜ୍ୟରେ ସାଧୁମାନଙ୍କର ସର୍ବତୋଭାବରେ ରକ୍ଷିତ ହୁଅନ୍ତି, ସେହି ନରପତିଗଣ ଇହଲୋକରେ ଅତିଶୟ ଆନନ୍ଦ ଅନୁଭବ କରି ପରଲୋକରେ ପରମ ସୁଖଭୋଗୀ ହୁଅନ୍ତି ।୧୯। ଅତଏବ, ହେ ଦ୍ୱିଜବରଗଣ ! ତୁମ୍ଭେମାନେ ଏହା ନିଶ୍ଚୟ ଜାଣିବ ଯେ, ମହାତ୍ମା ବିଦ୍ୱାନ୍ ନରଗଣ ବିଶ୍ୱସଂସାରର ଐଶ୍ୱର୍ଯ୍ୟ ପ୍ରାପ୍ତ ହୁଅନ୍ତି ।

ହେ ବିପ୍ରଗଣ ! ଅତଃପର ଆମ୍ଭେ ତୁମ୍ଭମାନଙ୍କୁ ଧର୍ମ ପ୍ରଭୃତିର ଲକ୍ଷଣ କହୁଅଛୁଁ । ୨୦ । ଧର୍ମର ଲକ୍ଷଣ ଅହିଂସା, ଅଧର୍ମର ଲକ୍ଷଣ ହିଂସା । ଦେବତାମାନଙ୍କ ଲକ୍ଷଣ ପ୍ରକାଶ, ନରଗଣଙ୍କ ଲକ୍ଷଣ କର୍ମ, ଆକାଶର ଲକ୍ଷଣ ଶବ୍ଦ, ବାୟୁର ଲକ୍ଷଣ ସ୍ପର୍ଶ, ଜ୍ୟୋତିର ଲକ୍ଷଣ ରୂପ, ଜଳର ଲକ୍ଷଣ ରସ, ସର୍ବଧାରିଣୀ ପୃଥିବୀଙ୍କ ଲକ୍ଷଣ ଗନ୍ଧ, ସ୍ୱର ଓ ବ୍ୟଞ୍ଜନ ସଂସ୍କାରବତୀ ଭାରତୀଙ୍କ ଲକ୍ଷଣ ଶବ୍ଦ । ୨୩ ।

ମନର ଲକ୍ଷଣ ସଂଶୟାତ୍ମିକା ଚିନ୍ତା, ବୁଦ୍ଧିର ଲକ୍ଷଣ ନିଶ୍ଚୟାତ୍ମିକା ଚିନ୍ତା । ଏହି ଶରୀରରେ ମନଦ୍ୱାରା ଯେଉଁ ସମସ୍ତ ବିଷୟ ଚିନ୍ତିତ ହୁଏ, ତାହାସବୁ ବୁଦ୍ଧି ନିଶ୍ଚୟ କରେ । ୨୫ । ଏହି ନିମିତ୍ତ ବୁଦ୍ଧି ନିଶ୍ଚୟଦ୍ୱାରା ଲକ୍ଷିତା ହୁଏ, ଏଥିରେ ଅଉ ସଂଶୟ ନାହିଁ । ମନର ଲକ୍ଷଣ ଧ୍ୟାନ, ସାଧୁର ଲକ୍ଷଣ ଅବ୍ୟକ୍ତ, ଯୋଗର ଲକ୍ଷଣ ପ୍ରବୃତ୍ତି, ଜ୍ଞାନର ଲକ୍ଷଣ ସନ୍ନ୍ୟାସ । ଏହି ନିମିତ୍ତ ବୁଦ୍ଧିମାନ୍ ଜନ ଜ୍ଞାନକୁ ପୁରୋବର୍ତ୍ତୀ କରି ସନ୍ନ୍ୟାସ ଅବଲମ୍ବନ କରିବେ । ୨୬ । ସନ୍ନ୍ୟାସୀ ପୁରୁଷ ଜ୍ଞାନଯୁକ୍ତ ହେଲେ ଦ୍ୱନ୍ଦ୍ୱାତୀତ ହୋଇ ଅଜ୍ଞାନ, ମୃତ୍ୟୁ ଏବଂ ଜରାକୁ ଅତିକ୍ରମ କରି ପରମଗତି ପ୍ରାପ୍ତ ହୁଅନ୍ତି । ୨୭ ।

Digitized by srujanika@gmail.com

ହେ ଦ୍ୱିଜେନ୍ଦ୍ରଗଣ ! ଆମ୍ଭେ ତୁମ୍ଭମାନଙ୍କୁ ଯଥାବିଧି ଧର୍ମ ଓ ଲକ୍ଷଣ ପ୍ରଭୃତି କହିଲୁଁ । ଅତଃପର ଭୂତ ଏବଂ ଇନ୍ଦ୍ରିୟାଦିଙ୍କ ଗୁଣଗ୍ରାହକମାନଙ୍କୁ ସମ୍ୟକ୍‌ରୂପେ କହୁଅଛୁଁ, ଶ୍ରବଣ କର । ୨୮ ।

ଘ୍ରାଣ ପାର୍ଥିବ ଗୁଣ ଗନ୍ଧକୁ ଗ୍ରହଣ କରେ । ଘ୍ରାଣସ୍ଥିତ ବାୟୁ ସେହି ଗନ୍ଧ-ଗ୍ରହଣରେ ଅନୁକୂଳତା କରେ । ୨୯ । ଜିହ୍ୱା ଜଳର ଗୁଣ ରସକୁ ଗ୍ରହଣ କରେ । ଜିହ୍ୱାସ୍ଥିତ ସୋମରସ ସେହି ରସଗ୍ରହଣ ବିଷୟରେ ଅନୁକୂଳତା କରନ୍ତି । ୩୦ । ଚକ୍ଷୁ ଜ୍ୟୋତିର ଗୁଣ ରୂପକୁ ଗ୍ରହଣ କରେ । ଚକ୍ଷୁସ୍ଥିତ ଆଦିତ୍ୟ ସେହି ରୂପଗ୍ରହଣ ବିଷୟରେ ସହାୟତା କରନ୍ତି । ୩୧ । ତ୍ୱକ୍ ବାୟୁ ଗୁଣ ସ୍ପର୍ଶକୁ ଗ୍ରହଣ କରେ । ସେହି ତ୍ୱକ୍‌ସ୍ଥିତ ବାୟୁ ସ୍ପର୍ଶଜ୍ଞାନର ସାଧକ ହୁଏ । ୩୨ । ଶ୍ରୋତ୍ର ଆକାଶର ଗୁଣ ଶବ୍ଦକୁ ଗ୍ରହଣ କରେ । ଶ୍ରୋତ୍ରସ୍ଥିତ ଦିକ୍‌ସମୂହ ଶବ୍ଦଜ୍ଞାନର ଅନୁକୂଳତା କରେ । ୩୩ । ପ୍ରଜ୍ଞା ମନର ଗୁଣ ଚିନ୍ତାକୁ ଗ୍ରହଣ କରେ । ହୃଦୟସ୍ଥିତ ସାରଭୂତ ଚେତନା ଚିନ୍ତା ଗ୍ରହଣ ବିଷୟରେ ଅନୁକୂଳତା କରେ । ୩୪ ।

ଭୂତ ଓ ଇନ୍ଦ୍ରିୟଗଣ ଯେଉଁପରି କରଣାନ୍ତରଦ୍ୱାରା ଗୃହୀତ ହୁଅନ୍ତି, ତଦ୍‌ବତ୍ ବୁଦ୍ଧି ସ୍ୱରୂପ ଅଧ୍ୟବସାୟଦ୍ୱାରା ଏବଂ ମହାନ୍ ସ୍ୱରୂପ ଜ୍ଞାନଦ୍ୱାରା ଗୃହୀତ ହୁଏ । ପରନ୍ତୁ ସ୍ୱ ସ୍ୱ ରୂପ ନିଶ୍ଚୟରୂପ ଲିଙ୍ଗଦ୍ୱାରା ବୁଦ୍ଧି ଏବଂ ସ୍ୱ ରୂପ ଅସନ୍ଦିଗ୍ଧ ଅସ୍ତିତ୍ୱ ଜ୍ଞାନରୂପ ଲିଙ୍ଗଦ୍ୱାରା ମହାନ୍ ବ୍ୟକ୍ତରୂପେ ଗୃହୀତ ହେଲେ ସୁଦ୍ଧା ବସ୍ତୁତଃ ତାହାର ବ୍ୟକ୍ତରୂପରେ ପ୍ରତୀତି ହୁଏ ନାହିଁ । ଏହି ନିମିତ୍ତ ନିତ୍ୟ ନିର୍ଗୁଣାତ୍ମକ କ୍ଷେତ୍ରଜ୍ଞ କୌଣସି ପ୍ରକାର ଲିଙ୍ଗଦ୍ୱାରା ଗୃହୀତ ହୁଅନ୍ତି ନାହିଁ ବୋଲି ସେ ଅଲିଙ୍ଗ ଓ କେବଳ ଉପଲବ୍ଧି ସ୍ୱରୂପ । ୩୫ ।

କ୍ଷେତ୍ର ଲିଙ୍ଗସ୍ଥ ଅର୍ଥାତ୍ ସ୍ଥୂଳ ଓ ସୂକ୍ଷ୍ମ ଶରୀରରେ ଅବସ୍ଥିତ ସତ୍ତ୍ୱାଦି ଗୁଣର ଉତ୍ପତ୍ତି ଓ ବିନାଶର ହେତୁଭୂତ ଅବ୍ୟକ୍ତଙ୍କୁ ଆମ୍ଭେ ସତତ ବିଲୀନ ରୂପେ ଦର୍ଶନ, ଜ୍ଞାନ ଏବଂ ଶ୍ରବଣ କରୁଁ । ୩୬ । ପୁରୁଷ ସେହି ଅବ୍ୟକ୍ତଙ୍କ ସହିତ କ୍ଷେତ୍ରକୁ ଜାଣନ୍ତି ବୋଲି ପଣ୍ଡିତଗଣ ତାହାଙ୍କୁ କ୍ଷେତ୍ରଜ୍ଞ ବୋଲି କହନ୍ତି । ସେହି କ୍ଷେତ୍ରଜ୍ଞ ପୁରୁଷ ଉତ୍ପତ୍ତି, ସ୍ଥିତି ଓ ଧ୍ୱଂସବିଶିଷ୍ଟ ସୃଜ୍ୟମାନ ଅଚେତନ ଗୁଣବୃତ୍ତି ଅର୍ଥାତ୍ ପ୍ରକାଶ, ପ୍ରବୃତ୍ତି ଓ ମୋହାଦି ଦର୍ଶନ କରନ୍ତି । ୩୮ । ଗୁଣନିକରର କୂଟସ୍ଥ ପରମାତ୍ମାକର୍ତ୍ତୃକ ବାରମ୍ବାର ସୃଷ୍ଟ ହୋଇ ତାହାଙ୍କୁ

Digitized by srujanika@gmail.com

ଜାଣିପାରନ୍ତି ନାହିଁ । ଗୁଣ ଓ ଗୁଣଭୂତ ଅର୍ଥାତ୍ ଭୋଗ୍ୟବସ୍ତୁ ଅପେକ୍ଷା ଶ୍ରେଷ୍ଠ ସେହି କୂଟସ୍ଥ ଆତ୍ମାଙ୍କୁ କେହି ଲବ୍ଧକରି ପାରନ୍ତି ନାହିଁ । ପରନ୍ତୁ କ୍ଷେତ୍ରଜ୍ଞ ତାହାଙ୍କୁ ଲାଭ କରିପାରନ୍ତି । ୪୦ ।

ସେହି କାରଣରୁ ଧର୍ମଜ୍ଞ ଜନ ଇହଲୋକରେ ଗୁଣ ଓ ସତ୍ତ୍ୱକୁ ପରିତ୍ୟାଗ କରି କ୍ଷୀଣଦୋଷ ଓ ଗୁଣାତୀତ ହୋଇ କ୍ଷେତ୍ରଜ୍ଞଙ୍କରେ ପ୍ରବେଶ କରିବେ । କାରଣ, କ୍ଷେତ୍ରଜ୍ଞ ନିର୍ଦ୍ୱନ୍ଦ୍ୱ, ନିର୍ନମସ୍କାର ଓ ସ୍ୱାହାକାରବର୍ଜିତ, ଅଚଳ, ଅନିକେତ ଏବଂ ପରମ ବିଭୁ । ୪୨ ।

---

# ଚତୁଶ୍ଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ହେ ଦ୍ୱିଜେନ୍ଦ୍ରଗଣ ! ଯାହା ଜନ୍ମାଦିବିଶିଷ୍ଟ, ଗ୍ରହଣୋପାୟ-ସମନ୍ୱିତ ଏବଂ ନାମ ଓ ଲକ୍ଷଣଯୁକ୍ତ, ତାହାସବୁ ଆମ୍ଭେ ତୁମ୍ଭମାନଙ୍କୁ ଯଥାତଥରୂପେ କହୁଅଛୁଁ, ଶ୍ରବଣ କର । ପ୍ରଥମେ ଦିବସ, ତତ୍ପରେ ରାତ୍ରି, ତଦନନ୍ତର ଶୁକ୍ଲାଦି ମାସ, ତତ୍ପରେ ଶ୍ରବଣାଦି ନକ୍ଷତ୍ର ଏବଂ ତତ୍ପରେ ଶିଶିରାଦି ଋତୁବୃନ୍ଦ ପ୍ରାଦୁର୍ଭୂତ ହୁଅନ୍ତି । ୨ ।

ଗନ୍ଧମାନଙ୍କର ଆଦି ଭୂମି, ରସମାନଙ୍କ ଆଦି ସଲିଳ, ରୂପମାନଙ୍କ ଆଦି ଜ୍ୟୋତିର୍ମୟ ସୂର୍ଯ୍ୟ, ସ୍ପର୍ଶସମୂହର ଆଦି ବାୟୁ, ଶବ୍ଦର ଆଦି ଆକାଶ । ଏହା ଭୂତକୃତ ଗୁଣ ବୋଲି କଥିତ ହୋଇଅଛି । ଅତଃପର ଆମ୍ଭେ ତୁମ୍ଭମାନଙ୍କୁ ଭୂତସମୂହର ଆଦି ଉତ୍ତମରୂପେ କହୁଅଛୁଁ, ଶ୍ରବଣ କର । ୪ ।

ଜ୍ୟୋତିଃସମୂହର ଆଦି ଆଦିତ୍ୟ, ଜରାୟୁଜାଦି ଭୂତଗଣଙ୍କର ଆଦି ଜଠରାଗ୍ନି, ସମସ୍ତ ବିଦ୍ୟାସମୂହର ଆଦି ସାବିତ୍ରୀ, ଦେବତାମାନଙ୍କ ଆଦି ପ୍ରଜାପତି, ବେଦସମୂହର ଆଦି ଓଁକାର, ବାକ୍ୟବୃନ୍ଦର ଆଦି ପ୍ରାଣ । ଇହଲୋକରେ ଯାହା ବ୍ରାହ୍ମଣାଦି ବର୍ଣ୍ଣବୃନ୍ଦର ନିତ୍ୟ ଉପାସନା ନିମିତ୍ତ ହୁଏ, ତାହା ସାବିତ୍ରୀ ନାମରେ ଖ୍ୟାତ । ୬ ।

ଛନ୍ଦସମୂହର ଆଦି ଗାୟତ୍ରୀ, ପଶୁଗଣଙ୍କ ଆଦି ଅଜ, ଚତୁଷ୍ପଦ ଜନ୍ତୁମାନଙ୍କ ଆଦି ଗୌ, ମନୁଷ୍ୟମାନଙ୍କ ଆଦି ଦ୍ୱିଜାତିଗଣ, ପତତ୍ରିମାନଙ୍କ

Digitized by srujanika@gmail.com

ଆଦି ଶ୍ୟେନ, ଯଜ୍ଞବୃନ୍ଦର ଆଦି ହୁତ, ସମସ୍ତ ସରୀସୃପମାନଙ୍କ ଆଦି ସର୍ପ, ଯୁଗମାନଙ୍କର ଆଦି ସତ୍ୟ, ରତ୍ନସମୂହର ଆଦି ହିରଣ୍ୟ, ଔଷଧିମାନଙ୍କ ଆଦି ଯବ । ୯ । ଭକ୍ଷ୍ୟ ଓ ଭୋଜ୍ୟଦ୍ରବ୍ୟମାନଙ୍କ ମଧ୍ୟରେ ଅନ୍ନ ଉତ୍ତମ ବୋଲି ପରିଗଣିତ ହୁଏ । ସମସ୍ତ ପେୟଦ୍ରବ୍ୟ ମଧ୍ୟରେ ଜଳ ଉତ୍ତମ । ୧୦ । ସମସ୍ତ ସ୍ଥାବର ଭୂତଗଣ ମଧ୍ୟରେ ବ୍ରାହ୍ମଣ ଶରୀର ସଦୃଶ ସର୍ବଦା ପବିତ୍ର ପ୍ଲକ୍ଷ ଅଶ୍ୱତ୍ଥ ବୃକ୍ଷ ପ୍ରଥମ । ଆମ୍ଭେ ସମସ୍ତ ପ୍ରଜାପତିଙ୍କ ଅଗ୍ରଜ, ସ୍ୱୟମ୍ଭୂ ଅଚିନ୍ତ୍ୟାତ୍ମା ବିଷ୍ଣୁ ଆମ୍ଭ ଅଗ୍ରଜ । ୧୨ । ମେରୁ ପର୍ବତମାନଙ୍କ ଅଗ୍ରଜ, ଦିକ୍‌ସମୂହର ପ୍ରଥମ ପୂର୍ବ, ନଦୀବୃନ୍ଦ ମଧ୍ୟରେ ତ୍ରିପଥଗାମିନୀ ଗଙ୍ଗା ଅଗ୍ରଜା, ସମସ୍ତ ସରୋବର ଓ ଉଦପାନମାନଙ୍କ ମଧ୍ୟରେ ସାଗର ଅଗ୍ରଜ । ୧୪ । ଦେବ, ଦାନବ, ଭୂତ, ପିଶାଚ, ଉରଗ, ରକ୍ଷ, ନର, କିନ୍ନର ଓ ଯକ୍ଷ ଏହି ସମସ୍ତଙ୍କ ପ୍ରଭୁ ଈଶ୍ୱର । ୧୫ । ବ୍ରହ୍ମମୟ ମହାବିଷ୍ଣୁ ବିଶ୍ୱସଂସାରର ଆଦି । କାରଣ, ଏହି ତ୍ରୈଲୋକ୍ୟ ମଧ୍ୟରେ ତାହାଙ୍କ ଅପେକ୍ଷା ଅନ୍ୟ କେହି ଶ୍ରେଷ୍ଠତର ଭୂତ ନାହାନ୍ତି । ୧୬ ।

ସମସ୍ତ ଆଶ୍ରମ ମଧ୍ୟରେ ଗାର୍ହସ୍ଥ୍ୟ ଉତ୍ତମ, ଏହି ବିଷୟରେ ସଂଶୟ ନାହିଁ । ପ୍ରକୃତି ସମୁଦାୟ ଲୋକର ଆଦି ଓ ଅନ୍ତସ୍ୱରୂପ । ସୂର୍ଯ୍ୟଙ୍କ ଉଦୟ, କାଳରାତ୍ରିରେ ସୁଖ ଦୁଃଖର, ଦୁଃଖ ସୁଖର, କ୍ଷୟ ସଞ୍ଚିତ ବସ୍ତୁର, ପତନ ଉନ୍ନତ ବସ୍ତୁର, ବିୟୋଗ ସଂଯୋଗର ଏବଂ ମରଣ ଜୀବିତକାଳର ଅନ୍ତ ।୧୯। ସମସ୍ତ କୃତବସ୍ତୁ ବିନାଶାନ୍ତ । ଇହଲୋକରେ କି ସ୍ଥାବର, କି ଜଙ୍ଗମ କୌଣସି ବସ୍ତୁ ଚିରସ୍ଥାୟୀ ନୁହେ । ସମସ୍ତ ଉତ୍ପନ୍ନ ପଦାର୍ଥର ଧ୍ୱଂସ ହେବ । ୨୦ ।

ଦାନ, ଯଜ୍ଞ, ତପସ୍ୟା, ବ୍ରତ ଓ ନିୟମ ଏହି ସମସ୍ତଙ୍କ ଫଳ କାଳକ୍ରମରେ ଧ୍ୱଂସ ହୋଇଯାଏ, କିନ୍ତୁ ଜ୍ଞାନର କଦାପି ଧ୍ୱଂସ ହୁଏ ନାହିଁ । ସେହି କାରଣରୁ ଜିତେନ୍ଦ୍ରିୟ ପ୍ରଶାନ୍ତଚିତ୍ତ ନିର୍ମମ ନିରହଂକାର ଜନ କେବଳ ଜ୍ଞାନଦ୍ୱାରା ସମସ୍ତ ପାପରୁ ମୁକ୍ତ ହୁଅନ୍ତି । ୨୨ ।

---

Digitized by srujanika@gmail.com

# ପଞ୍ଚଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ହେ ଦ୍ୱିଜେନ୍ଦ୍ରଗଣ ! ଯାହାର ବୁଦ୍ଧି ସାରସ୍ୱରୂପ, ମନ ସ୍ତମ୍ଭସ୍ୱରୂପ, ଇନ୍ଦ୍ରିୟଗ୍ରାମ ବନ୍ଧନର ରଜ୍ଜୁସ୍ୱରୂପ, ଯାହା ପଞ୍ଚଭୂତ ସମୂହାତ୍ମକ, ନିବେଶ ଯାହାର ନେମିସ୍ୱରୂପ, ଯାହା ଜରା ଓ ଶୋକଦ୍ୱାରା ସମାବିଷ୍ଟ, ବ୍ୟାଧି ଏବଂ ବ୍ୟସନର ଉତ୍ପତ୍ତିସ୍ଥାନଭୂତ, ଦେଶ ଓ କାଳ ସହିତ ବିଚରଣକାରୀ, ବ୍ୟାୟାମଜନ୍ୟ ଶ୍ରମ ଯାହାର ଶବ୍ଦ, ଅହୋରାତ୍ର ଯାହାର ପରିଚାଳକ, ଶୀତ ଏବଂ ଉଷ୍ଣ ଯାହାର ପରିମଣ୍ଡଳ, ସୁଖ ଓ ଦୁଃଖ ଯାହାର ସନ୍ଧି, କ୍ଷୁଧା ଓ ପିପାସା ଯାହାର ଅନ୍ତଃପ୍ରବିଷ୍ଟ ଅର, ଛାୟା ଏବଂ ଆତପ ଯାହାର ଉତ୍ଖାତକ, ଯାହା ନିମେଷ ଏବଂ ଉନ୍ମେଷଦ୍ୱାରା ଆକୁଳ, ଭୟଙ୍କର ମୋହରୂପ ଜଳଦ୍ୱାରା ଆକୀର୍ଣ୍ଣ, ସର୍ବଦା ଗମନଶୀଳ, ଅଚେତନ ଜଡ଼ସ୍ୱରୂପ, ମାସାଦି କାଳଦ୍ୱାରା ପରିମିତ, ନାନାପ୍ରକାର ଊର୍ଦ୍ଧ୍ୱ, ମଧ୍ୟ ଓ ଅଧୋଲୋକ-ସଂଗୃହୀ, ତମୋଗୁଣଦ୍ୱାରା ଜ୍ଞାନ ଓ କର୍ମର ନିରୋଧରୂପ ମାଳିନ୍ୟଯୁକ୍ତ, ରଜୋଗୁଣଦ୍ୱାରା ବିହିତ ଓ ନିଷିଦ୍ଧ କର୍ମରେ ପ୍ରବୃତ୍ତ, ମହାନ୍ ଅହଙ୍କାରଦ୍ୱାରା ପ୍ରଦୀପ୍ତ, ସତ୍ତ୍ୱାଦି ଗୁଣସମୂହର ଅବସ୍ଥିତି, ଇଷ୍ଟାଲାଭଜନ୍ୟ ପରମ ତାପମାନ, ଯାହାର ବନ୍ଧନପୂର୍ଣ୍ଣିକା କ୍ରିୟାକାରଣଯୁକ୍ତ, ରାଗ ଯାହାର ଆୟତ୍ତ, ଲୋଭ ଏବଂ ତୃଷ୍ଣା ଯାହାର ନିମ୍ନ ଓ ଉନ୍ନତ, ଯାହା ମାୟାସମ୍ଭୂତ ଭୟ ଓ ମୋହରେ ପରିବୃତ, ଭୂତଗଣଙ୍କ ସଂମୋହକାରକ, ବାହ୍ୟ ସୁଖ, ଆନନ୍ଦ ଓ ପ୍ରୀତିସହକାରରେ ବିଚରଣକାରୀ, କାମ ଓ କ୍ରୋଧ ଯାହାର ମୂଳ, ମହଦାଦି ବିଶେଷ ସବୁ ଯାହାର ଅନ୍ତ, ଅନିରୁଦ୍ଧ ଭାବରେ ସଂସରଣଶୀଳ, ସଂସାରର କାରଣ ଅବ୍ୟୟସ୍ୱରୂପ, ମନସଦୃଶ ବେଗଶାଳୀ ଏବଂ ଅତିଶୟ ମନୋହର ଏତାଦୃଶ ଚକ୍ର ପ୍ରବର୍ତ୍ତିତ ହେଉଅଛି । ୯ । ମାନଅପମାନାଦି ଦ୍ୱନ୍ଦ୍ୱଯୁକ୍ତ ଅଚେତନ ଏହି କାଳଚକ୍ର ସୁରପୁରସହ ଭୁବନକୁ ନିର୍ମାଣ କରେ, ସଂହାର କରେ ଓ ପ୍ରବୋଧିତ କରେ । ୧୦ ।

ଯେଉଁ ଜନ ଏହି କାଳଚକ୍ରର ପ୍ରବୃତ୍ତି ଏବଂ ନିବୃତ୍ତି ବିଷୟକୁ ଯଥାତଥ-ରୂପେ ଅବଗତ ହୁଅନ୍ତି, ସେ ପ୍ରାଣିଗଣଙ୍କ ମଧ୍ୟରେ ମୁଗ୍ଧ ହୁଅନ୍ତି ନାହିଁ । ପ୍ରତ୍ୟୁତ ସେ ସମସ୍ତ ଦ୍ୱନ୍ଦ୍ୱବର୍ଜିତ, ସର୍ବ ସଂସ୍କାର ଓ ସର୍ବ ପାପରୁ ବିମୁକ୍ତ

Digitized by srujanika@gmail.com

ହୋଇ ପରମଗତି ଲାଭ କରନ୍ତି । ଗୃହସ୍ଥ, ବ୍ରହ୍ମଚାରୀ, ବାନପ୍ରସ୍ଥ ଓ ଭିକ୍ଷୁକ ଏହି ଚାରିଗୋଟି ଆଶ୍ରମ ଗାର୍ହସ୍ଥ୍ୟମୂଳକ ବୋଲି କଥିତ ହୋଇଅଛି । ୧୩ ।

ଇହଲୋକରେ ଯେ କୌଣସି ବିଧି ନିଷେଧ କି ଶାସ୍ତ୍ର ପରିକୀର୍ତ୍ତିତ ହୋଇଅଛି, ତାହାର ଅନୁଗମନ କରିବାର ଶ୍ରେୟ । ଏହି କାର୍ଯ୍ୟ ସନାତନ ବୋଲି ଜାଣିବ । ୧୪ । ଗୁଣବିଶିଷ୍ଟ ଜାତିରେ ଉତ୍ପନ୍ନ ତତ୍ତ୍ୱବିତ୍ ଜନ ପ୍ରଥମତଃ ସ୍ୱଜାତିଉକ୍ତ ସଂସ୍କାରଦ୍ୱାରା ସଂସ୍କୃତ ହୋଇ ବ୍ରତସମୂହର ଯଥାବିଧି ଅନୁଷ୍ଠାନ କରି ଗୁ ରୁକୁଳରୁ ପ୍ରତ୍ୟାଗମନ କରିବେ । ୧୫ ।

ତଦନନ୍ତର ଇହଲୋକରେ ସନ୍ତତ ସ୍ୱଦାରନିରତ, ଶିଷ୍ଟାଚାରସମନ୍ୱିତ, ଜିତେନ୍ଦ୍ରିୟ ଓ ଶ୍ରଦ୍ଧାବାନ୍ ହୋଇ ପଞ୍ଚମହାଯଜ୍ଞଦ୍ୱାରା ଅର୍ଚ୍ଚନା କରିବେ । ୧୬ । ଦେବତା ଓ ଅତିଥିଗଣଙ୍କ ଭୁକ୍ତାବଶିଷ୍ଟ ଭୋଜନ କରିବେ, ବେଦକର୍ମରେ ନିରତ ହେବେ ଏବଂ ଶକ୍ତି ଅନୁସାରେ ଯଥାସୁଖରେ ଯଜ୍ଞ ଓ ଦାନକର୍ମରେ ନିଯୁକ୍ତ ହେବେ । ୧୭ । ମନନଶୀଳ ମାନବ ପାଣି, ପାଦ, ନେତ୍ର, ବାକ୍ୟ ଏବଂ ଅଙ୍ଗଚାଳନ କରିବେ ନାହିଁ । ଏହା ଶିଷ୍ଟ ପୁରୁଷମାନଙ୍କ ଲକ୍ଷଣ । ୧୮ ।

ଅପିଚ ନିତ୍ୟ ଯଜ୍ଞୋପବୀତ ଓ ଶୁକ୍ଳବସ୍ତ୍ର ପରିଧାନ କରିବେ, ପବିତ୍ର ବ୍ରତର ଅନୁଷ୍ଠାନ କରିବେ, ଏବଂ ଯମ ଓ ଦାନରେ ନିରତ ହୋଇ ସର୍ବଦା ଶିଷ୍ଟପୁରୁଷମାନଙ୍କ ସହିତ ସହବାସ କରିବେ । ୧୯ । ମୈତ୍ର ମାନବ ଶିଷ୍ଟାଚାର ସମନ୍ୱିତ ହୋଇ ଉଦର ଓ ଶିଶ୍ନ ସଂଯତ କରି ଜଳପୂର୍ଣ୍ଣ କମଣ୍ଡଳୁ ଓ ବେଣୁଯଷ୍ଟି ଧାରଣ କରିବେ । ୨୦ । ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନ, ଦାନ ଏବଂ ପ୍ରତିଗ୍ରହ ଏହି ଷଡ଼୍‌ବିଧ ବୃତ୍ତି ଆଚରଣ କରିବେ । ୨୧ ।

ହେ ଦ୍ୱିଜେନ୍ଦ୍ରଗଣ ! ଯାଜନ, ଅଧ୍ୟାପନ ଓ ଶୁଦ୍ଧ ପ୍ରତିଗ୍ରହ ଏହି ତିନିଗୋଟି କର୍ମ ବ୍ରାହ୍ମଣମାନଙ୍କର ଜୀବିକା ବୋଲି ଜ୍ଞାନକର । ଧର୍ମଜ୍ଞ ଦାନ୍ତ ମୈତ୍ର କ୍ଷମାଯୁକ୍ତ ସର୍ବଭୂତରେ ସମଦର୍ଶୀ ମନନଶୀଳ ମାନବ ଅବଶିଷ୍ଟ ଦାନ, ଅଧ୍ୟୟନ ଓ ଯଜ୍ଞ ଏହି ତିନିଗୋଟି ଧର୍ମଯୁକ୍ତ କର୍ମରେ ଅସାବଧାନ ହେବେ ନାହିଁ । ପବିତ୍ରଚିତ୍ତ ଶଂସିତବ୍ରତ ଗୃହସ୍ଥ ବିପ୍ର ଶକ୍ତିଅନୁସାରେ ଏହି ସମସ୍ତ କାର୍ଯ୍ୟ ଯଥାନିୟମରେ ସମ୍ପାଦନ କରି ତହିଁରେ ନିଯୁକ୍ତ ହେଲେ ସ୍ୱର୍ଗ ଜୟ କରିବାକୁ ସମର୍ଥ ହୁଅନ୍ତି । ୨୫ ।

---

Digitized by srujanika@gmail.com

# ଷଟ୍‌ଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ବ୍ରହ୍ମଚାରୀ ବ୍ୟକ୍ତି ପୂର୍ବୋକ୍ତ ଏତାଦୃଶ ମାର୍ଗ ଅନୁସାରେ ଯଥାବିଧି ଓ ଯଥାଶକ୍ତି ଅଧ୍ୟୟନ କରିବେ । ସ୍ୱଧର୍ମନିରତ, ଜିତେନ୍ଦ୍ରିୟ, ଗୁରୁଙ୍କର ପ୍ରିୟ ଓ ହିତକାରୀ, ସତ୍ୟଧର୍ମପରାୟଣ, ପବିତ୍ରଚିତ୍ତ, ହବିଷ୍ୟ ଓ ଭିକ୍ଷାଅନ୍ନଭୋଜୀ, ସ୍ଥାନାସନବିହାରୀ ବିଦ୍ୱାନ୍ ମନନଶୀଳ ମାନବ ଗୁରୁଙ୍କଠାରୁ ସମ୍ୟକ୍‌ରୂପେ ଅନୁଜ୍ଞାତ ହୋଇ ପ୍ରସନ୍ନଚିତ୍ତରେ ଅନ୍ନଭୋଜନ କରିବେ । ୩ ।

ଶୁଚିସମାହିତ ହୋଇ ବିଲ୍ୱ ବା ପଳାଶଦଣ୍ଡ ଧାରଣକରି ଦୁଇ ସମୟରେ ଅଗ୍ନିଙ୍କୁ ଆହୁତି ପ୍ରଦାନ କରିବେ । ୪ । କାଷାୟ ବା ରକ୍ତବର୍ଣ୍ଣ କ୍ଷୌମ ଓ କାର୍ପାସିକ ବସ୍ତ୍ର ଅଥବା ମୃଗାଜିନ ପରିଧାନ କରିବେ । କଟିଦେଶରେ ଶରମୁଞ୍ଜ ବିନିର୍ମିତ ମେଖଳା ଓ ମସ୍ତକରେ ଜଟା ଧାରଣ କରି ନିତ୍ୟ ଉଦକସମନ୍ୱିତ, ଯଜ୍ଞୋପବୀତଧାରୀ, ସ୍ୱାଧ୍ୟାୟୀ, ଅଲୁବ୍ଧ ଓ ନିୟତବ୍ରତ ହୋଇ ପବିତ୍ର ଜଳଦ୍ୱାରା ସର୍ବଦା ଦେବଗଣଙ୍କର ତର୍ପଣ କରିବେ । କାରଣ, ସଂଯତ ବ୍ରହ୍ମଚାରୀ ହୋଇ ବିଶୁଦ୍ଧ ଭାବରେ ଏହିରୂପେ ଆଚରଣ କଲେ ପ୍ରଶଂସିତ ହୁଅନ୍ତି । ୭ ।

ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀ ସମାହିତ ହୋଇ ଏହିରୂପେ ଯୁକ୍ତ ହେଲେ, ସ୍ୱର୍ଗଜୟ ବିଷୟରେ ସମର୍ଥ ହୁଅନ୍ତି ଏବଂ ପରମପଦ ଆଶ୍ରୟ କରି ଜାତି ମଧ୍ୟରେ ସଞ୍ଚରଣ କରନ୍ତି ନାହିଁ । ବ୍ରହ୍ମଚର୍ଯ୍ୟବିଶିଷ୍ଟ ମନନଶୀଳନର ସର୍ବସଂସ୍କାରଦ୍ୱାରା ସଂସ୍କୃତ ଏବଂ ସ୍ୱଗ୍ରାମରୁ ନିଷ୍କ୍ରାନ୍ତ ହୋଇ ପ୍ରବ୍ରଜ୍ୟା ଅବଲମ୍ବନ କରି ଅରଣ୍ୟ ମଧ୍ୟରେ ବାସ କରିବେ । ୯ । ଚର୍ମ ଓ ବଲ୍‌କଲ ପରିଧାରୀ ହୋଇ ସାୟଂକାଳ ଓ ପ୍ରାତଃକାଳରେ ଆଚମନ କରିବେ ଏବଂ ନିତ୍ୟ ଅରଣ୍ୟଚାରୀ ହୋଇ ପୁନଶ୍ଚ ଗ୍ରାମରେ ପ୍ରବିଷ୍ଟ ହେବେ ନାହିଁ । ୧୦ ।

ଫଳ, ପତ୍ର, କ୍ଷୁଦ୍ର ମୂଳ ଏବଂ ଶ୍ୟାମାକଦ୍ୱାରା ଜୀବିକା ନିର୍ବାହ କରି ଯଥାକାଳରେ ଉପସ୍ଥିତ ଅତିଥିମାନଙ୍କୁ ଅର୍ଚ୍ଚନାକରି ସେମାନଙ୍କୁ ଆଶ୍ରୟ ପ୍ରଦାନ କରିବେ । ୧୧ । ଦୀକ୍ଷା ଅନୁସାରେ ଅତନ୍ଦ୍ରିତ ହୋଇ ଉପସ୍ଥିତ ଜଳ, ବାୟୁ ଏବଂ ବନ୍ୟ ଫଳମୂଳାଦି ସବୁ କ୍ରମାନ୍ୱୟରେ ଭୋଜନ କରିବେ । ବନବାସୀ ମୁନି ନିତ୍ୟ ଅତନ୍ଦ୍ରିତ ହୋଇ ଫଳମୂଳ ଭିକ୍ଷାଦ୍ୱାରା ସମାଗତ ଅତିଥିଙ୍କୁ ଅର୍ଚ୍ଚନା

Digitized by srujanika@gmail.com

କରିବେ ଏବଂ ଭିକ୍ଷାଦ୍ୱାରା ଯାହା ଭକ୍ଷ୍ୟ ଉପାର୍ଜିତ ହେବ, ତାହାର କିୟଦଂଶ ତାହାଙ୍କୁ ଭିକ୍ଷା ପ୍ରଦାନ କରିବେ । ୧୩ । ସର୍ବଦା ବାଗ୍‌ଦତ୍ତ ଏବଂ ମନୋମଧ୍ୟରେ ଈର୍ଷାବିହୀନ ହୋଇ ଦେବତାମାନଙ୍କର ଆଶ୍ରୟ ଓ ଆଶୀର୍ବାଦ ଲାଭ କରି ଦେବତା ଓ ଅତିଥିପୂଜା ପୂର୍ବକ ପ୍ରକୃଷ୍ଟ ଭୋଜନ କରିବେ । ୧୪ ।

ବାନପ୍ରସ୍ଥ ଜନ ଦାନ୍ତ, ମୈତ୍ର, କ୍ଷମାଯୁକ୍ତ, ସତ୍ୟଧର୍ମପରାୟଣ, ସ୍ୱାଧ୍ୟାୟ-ଶୀଳ, କେଶଶ୍ମଶ୍ରୁଧାରୀ ହୋମକାରୀ, ପବିତ୍ର ଦେହଧାରୀ, ଦକ୍ଷ, ଅରଣ୍ୟନିରତ, ସମାହିତଚିତ୍ତ ଏବଂ ଜିତେନ୍ଦ୍ରିୟ ଏତାଦୃଶ ଗୁଣଯୁକ୍ତ ହେଲେ ସ୍ୱର୍ଗଜୟ କରନ୍ତି । ୧୬ ।

ଗୃହସ୍ଥ, ବ୍ରହ୍ମଚାରୀ ଓ ବାନପ୍ରସ୍ଥ ବ୍ୟକ୍ତିମାନଙ୍କ ମଧ୍ୟରେ ଯେ ମୋକ୍ଷମାର୍ଗ ଅବଲମ୍ବନ କରିବାକୁ ଅଭିଳାଷୀ ହୁଅନ୍ତି, ସେ ଉତ୍ତମ ବୃତ୍ତି ଆଶ୍ରୟ କରିବେ । ୧୭ । ସର୍ବଭୂତର ସୁଖଦାୟକ, ମୈତ୍ର, ସର୍ବଇନ୍ଦ୍ରିୟଦମନକାରୀ, ମନନଶୀଳ ମାନବାଦି ସର୍ବଭୂତର ଅଭୟ ପ୍ରଦାନ କରି ନୈଷ୍କର୍ମ୍ୟ ଆଚରଣ କରିବେ । ୧୮ ।

ଭିକ୍ଷୁକ ମାନବ ଅଗ୍ନିହୋତ୍ରୀୟ ବହ୍ନି ପ୍ରଜ୍ୱଳିତ କରି ହୋମକାର୍ଯ୍ୟ ସାଧନ ପୂର୍ବକ ଧୂମରହିତ ଅଗ୍ନିହୋମ ଏବଂ ଜାନପଦବୃନ୍ଦର ଭୋଜନ-କାର୍ଯ୍ୟ ସମ୍ପାଦିତ ହୁଅନ୍ତେ ଅଯାଚିତ, ଅସଂକ୍ଳୃପ୍ତ ଓ ଯଦୃଚ୍ଛା ଲବ୍‌ଧ ଭୋଜ୍ୟବସ୍ତୁ ଭିକ୍ଷାରୂପେ ଗ୍ରହଣ କରିବେ । ୧୯ ।

ମୋକ୍ଷବିତ୍ ମାନବ ଶରାବ ସମ୍ପାତ ସମ୍ପନ୍ନ ହେବା ପର୍ଯ୍ୟନ୍ତ ଭିକ୍ଷା ଲାଭ କରିବାକୁ ଅଭିଳାଷୀ ହେବେ ଏବଂ ଲାଭରେ ହୃଷ୍ଟ ଓ ଅଲାଭରେ ଅସନ୍ତୁଷ୍ଟ ହେବେ ନାହିଁ । ଜୀବନଯାତ୍ରା ନିର୍ବାହାର୍ଥୀ ଭିକ୍ଷୁକ ସମାହିତ ହୋଇ କାଳ ଅପେକ୍ଷା କରି ଭିକ୍ଷା କରିବାକୁ ପ୍ରବୃତ୍ତ ହେବେ । ପରନ୍ତୁ ସାଧାରଣ ଲାଭ ଗ୍ରହଣ କରିବାକୁ ଇଚ୍ଛା କରିବେ ନାହିଁ, ଏବଂ କୌଣସି ବ୍ୟକ୍ତିକର୍ତ୍ତୃକ ସମାଦୃତ ହୋଇ ଭୋଜନ କରିବେ ନାହିଁ । କାରଣ, ଭିକ୍ଷୁକ ସମାଦର ସହକାରେ ଭିକ୍ଷାଲାଭ କଲେ ନିନ୍ଦାର ଭାଜନ ହୁଅନ୍ତି । ଭିକ୍ଷୁକ ତିକ୍ତ, କଟୁ ଓ କଷାୟ ଖାଦ୍ୟସବୁ ଭୋଜନ କରିବେ । ୨୨ । ମଧୁରରସଯୁକ୍ତ ଭକ୍ଷ୍ୟ ବସ୍ତୁ-ସମୂହର ଆସ୍ୱାଦ ଗ୍ରହଣ ନକରି କେବଳ ପ୍ରାଣଧାରଣ ନିମିତ୍ତ ଭୋଜନ

Digitized by srujanika@gmail.com

କରିବେ । ୨୩ । ମୋକ୍ଷବନ୍ତ ଜନ ପ୍ରାଣିଗଣଙ୍କୁ ରୁଦ୍ଧ ନକରି ବୃତ୍ତିଲାଭ କରିବାକୁ ଅଭିଳାଷୀ ହେବେ, ଏବଂ ଭିକ୍ଷାରେ ପ୍ରବୃତ୍ତ ହୋଇ ଅନ୍ୟ ଅନ୍ନ ଗ୍ରହଣ କରିବାକୁ କଦାପି ବାସନା କରିବେ ନାହିଁ । ୨୪ ।

ଭିକ୍ଷୁକ କଦାପି ଧର୍ମ ନଷ୍ଟ କରିବେ ନାହିଁ, ରଜୋଗୁଣବିରହିତ ହୋଇ ମୁକ୍ତିମାର୍ଗରେ ବିଚରଣ କରିବେ । ଆଶ୍ରୟ ନିମିତ୍ତ ଶୂନ୍ୟାଗାର, ଅରଣ୍ୟ, ବୃକ୍ଷମୂଳ, ନଦୀ ଓ ପର୍ବତଗୁହା ଅବଲମ୍ବନ କରିବେ । ଗ୍ରୀଷ୍ମକାଳରେ ଗୋଟିଏ ରାତ୍ରି ଗ୍ରାମରେ ବାସ କରିବେ । ୨୬ ।

ସୂର୍ଯ୍ୟ ଉଦିତ ହୋଇ ପଥ ପ୍ରକାଶ କଲେ କୀଟସଦୃଶ ପୃଥିବୀରେ ବିଚରଣ କରିବେ । ପ୍ରାଣିଗଣଙ୍କ ପ୍ରତି ଦୟା ପ୍ରକାଶ ପୂର୍ବକ ସମସ୍ତ ପର୍ଯ୍ୟବେକ୍ଷଣ କରି ପୃଥିବୀ ପର୍ଯ୍ୟଟନ କରିବେ । କୌଣସି ବସ୍ତୁ ସଞ୍ଚୟ କରିବେ ନାହିଁ, ଏବଂ ସ୍ନେହବାସ ବର୍ଜନ କରିବେ । ମୋକ୍ଷବନ୍ତ ମାନବ ନିତ୍ୟ ପବିତ୍ର ଜଳଦ୍ୱାରା କାର୍ଯ୍ୟ କରିବେ ଏବଂ ସନ୍ତତ ଉଦ୍ଧୃତ ସଲିଳଦ୍ୱାରା ଆଚମନ କରିବେ ।

ପୁରୁଷ ଇନ୍ଦ୍ରିୟନିଗ୍ରହ ପୂର୍ବକ ଅହିଂସା, ବ୍ରହ୍ମଚର୍ଯ୍ୟ, ସତ୍ୟ, ସରଳତା, ଅକ୍ରୋଧ, ଅନସୂୟା, ଦମ ଓ ଅପୈଶୁନ୍ୟ ଏହି ଅଷ୍ଟବିଧ ବ୍ରତରେ ନିଯୁକ୍ତ ହୋଇ ନିତ୍ୟ ପାପ, ଶଠତା ଏବଂ କୁଟିଳତାବିହୀନ ବୃତ୍ତି ଆଚରଣ କରିବେ । ଗ୍ରାମକୁ ଆଗମନ ପୂର୍ବକ ନିସ୍ପୃହ ହୋଇ ଭୋଜ୍ୟ ପ୍ରାର୍ଥନା କରିବେ, ଏବଂ କେବଳ ପ୍ରାଣଯାତ୍ରା ନିର୍ବାହ ନିମିତ୍ତ ଭୋଜନ କରିବେ, ଧର୍ମଲବ୍ଧ ବସ୍ତୁ ଭୋଗ କରିବେ । କଦାପି କାମର ଅନୁବର୍ତ୍ତୀ ହେବେ ନାହିଁ ଏବଂ ଗ୍ରାସାଚ୍ଛାଦନର ଉପଯୁକ୍ତ ଭିନ୍ନ ଅତିରିକ୍ତ ବସ୍ତୁ କଦାପି ଗ୍ରହଣ କରିବେ ନାହିଁ ।

ଆହାରର ଉପଯୁକ୍ତ ସାମଗ୍ରୀ ପ୍ରତିଗ୍ରହ କରିବେ, ଅତିରିକ୍ତ ଗ୍ରହଣ କରିବେ ନାହିଁ । ୩୩ । ପରନିକଟରୁ ପ୍ରତିଗ୍ରହ କରିବେ ନାହିଁ ଏବଂ ପରକୁ ଦାନ କରିବେ ନାହିଁ । ପ୍ରାଣିଗଣ ଦୈନ୍ୟବଶତଃ ସମସ୍ତଙ୍କୁ ବିଭାଗ କରି ଯାହା ଦାନ କରିବେ, ପଣ୍ଡିତ ଭିକ୍ଷୁକ ଅଯାଚିତ ହୋଇ ସେହି ପରସ୍ୱ ଗ୍ରହଣ କରିବେ ନାହିଁ । କାର୍ଯ୍ୟଶାଳୀ ଜନ କୌଣସି ବିଷୟ ଥରେ ଭୋଗ

Digitized by srujanika@gmail.com

କରି ପୁନଶ୍ଚ ତାହା ସ୍ପୃହା କରିବେ ନାହିଁ । ଉପସ୍ଥିତ ମୃତ୍ତିକା, ଜଳ, ଅନ୍ନ, ପତ୍ର, ପୁଷ୍ପ ଓ ଫଳ ଏହାସବୁ ଅନାବୃତ ଥିଲେ ଗ୍ରହଣ କରିବେ, ଆବୃତ ହୋଇଥିଲେ ଗ୍ରହଣ କରିବେ ନାହିଁ । ୩୬ ।

ଶିଳ୍ପବୃତ୍ତିଦ୍ୱାରା ଜୀବିକା ନିର୍ବାହ କରିବେ ନାହିଁ, ହିରଣ୍ୟ କାମନା କରିବେ ନାହିଁ, କାହାର ଦ୍ୱେଷ୍ଟା ବା ଉପଦ୍ୱେଷ୍ଟା ହେବେ ନାହିଁ, କେବଳ ଅଳଙ୍କାରବର୍ଜିତ ହୋଇ ଅବସ୍ଥାନ କରିବେ । ୩୭। ଅଯାଚିତ ବୃତ୍ତି ଅବଲମ୍ବନ ପୂର୍ବକ ସମସ୍ତ ବିଷୟରେ ଅନାସକ୍ତ ହୋଇ ଶ୍ରଦ୍ଧାପୂତ ବସ୍ତୁ-ସମୂହ ଭୋଜନ କରିବେ । ନିମିତ୍ତ ସବୁ ବର୍ଜନ କରିବେ ଏବଂ ପ୍ରାଣିଗଣଙ୍କ ଅଜ୍ଞାତରୂପେ ଅବସ୍ଥାନ କରିବେ । ୩୮ । ଆଶୀର୍ବାଦଯୁକ୍ତ, ଯେଉଁ ସମସ୍ତ କର୍ମ ହିଂସାଯୁକ୍ତ ଏବଂ ଲୋକସଂଗ୍ରହ, ଏହାସବୁ ସ୍ୱୟଂ କରିବେ ନାହିଁ ଓ ଅନ୍ୟଦ୍ୱାରା କରାଇବେ ନାହିଁ । ୩୯ ।

ସମସ୍ତ ଭାବ ଅତିକ୍ରମ କରି ଦଣ୍ଡକମଣ୍ଡଳୁ ପ୍ରଭୃତି ଭିକ୍ଷୁକଗଣଙ୍କ ଉପକରଣ-ସାମଗ୍ରୀ ସବୁ ଅଳ୍ପ ପରିମାଣରେ ଗ୍ରହଣ କରି ପରିଭ୍ରମଣ କରିବେ ଏବଂ ଚରାଚର ସମସ୍ତ ପ୍ରାଣିଗଣଙ୍କ ପ୍ରତି ସମଦର୍ଶୀ ହେବେ । ୪୦ ।

ଯେଉଁ ବ୍ୟକ୍ତି ଅପର କୌଣସି ଲୋକଙ୍କୁ ଉତ୍ତେଜିତ ନକରନ୍ତି ଏବଂ ସ୍ୱୟଂ କାହା ନିକଟରୁ ଉଦ୍‌ବିଗ୍ନ ନହୋଇ ସମସ୍ତଙ୍କର ବିଶ୍ୱାସଭାଜନ ହୁଅନ୍ତି, ସେ ଉତ୍ତମ ମୋକ୍ଷବିତ୍ ବୋଲି କଥିତ ହୁଅନ୍ତି । ୪୧ । ତାଦୃଶ ମୋକ୍ଷବିତ୍ ଜନ କାଳାକାଂକ୍ଷୀ ଓ ସମାହିତ ହୋଇ ଅନାଗତ ଓ ଅତୀତ ବିଷୟର ଅନୁଧ୍ୟାନ କରିବେ ନାହିଁ, ଏବଂ ବର୍ତ୍ତମାନ ବିଷୟ ଉପେକ୍ଷା କରିବେ । ୪୨ ।

ଚକ୍ଷୁ, ମନ ଏବଂ ବାକ୍ୟଦ୍ୱାରା କୌଣସି ପ୍ରକାର ଦୋଷ କରିବେ ନାହିଁ ଏବଂ ପ୍ରତ୍ୟକ୍ଷ ବା ପରୋକ୍ଷ କୌଣସି ଦୁଷ୍ଟ ବିଷୟର ଆଚରଣ କରିବେ ନାହିଁ । ୪୩ ।

ସର୍ବତତ୍ତ୍ୱଜ୍ଞ ଭିକ୍ଷୁକ ଜନ ଅଙ୍ଗସଂକୋଚକାରୀ କୂର୍ମ ସଦୃଶ ଇନ୍ଦ୍ରିୟଗଣଙ୍କୁ ସଂକୁଚିତ କରି ଇନ୍ଦ୍ରିୟ, ମନ ଏବଂ ବୁଦ୍ଧିକୁ କ୍ଷୀଣକରି ନିରୀହ, ନିର୍ଦ୍ୱନ୍ଦ୍ୱ, ନିର୍ନମସ୍କାର, ନିଃସ୍ୱାହାକାର, ନିର୍ମମ, ନିରହଂକାର, ଯୋଗକ୍ଷେମ-

Digitized by srujanika@gmail.com

ବର୍ଜ୍ଜିତ, ନିରାଶୀ, ନିର୍ଗୁଣ, ନିରାସକ୍ତ, ନିରାଶ୍ରମ, ଆତ୍ମବାନ୍, ଶାନ୍ତ, ଆତ୍ମସଙ୍ଗୀ ଓ ତତ୍ତ୍ୱଜ୍ଞ ହେଲେ ନିଶ୍ଚୟ ମୁକ୍ତ ହୁଅନ୍ତି । ୪୭ ।

ଯେଉଁମାନେ ପାଣି, ପାଦ, ପୃଷ୍ଠ, ଶିର, ଉଦର, ଗୁଣ ଓ କର୍ମବର୍ଜ୍ଜିତ, ନିର୍ମଳ, ଅଦ୍ୱିତୀୟ, ଅବିନାଶୀ, ଗନ୍ଧ ରସ ସ୍ପର୍ଶ ରୂପ ଓ ଶବ୍ଦବର୍ଜ୍ଜିତ, ଅନୁଗମ୍ୟ, ଅନାସକ୍ତ, ଅମୀମାଂସ୍ୟ, ନିଶ୍ଚିନ୍ତ, ଅବ୍ୟୟ, ଧ୍ରୁବ୍ୟ, ଗୃହସ୍ଥ ଓ ସର୍ବଭୂତସ୍ଥ ସେହି ଆତ୍ମାଙ୍କୁ ଦର୍ଶନ କରନ୍ତି, ସେମାନେ ମୃତ ହୁଅନ୍ତି ନାହିଁ । ୪୯ ।

ସେହି ପରମାତ୍ମା ବୁଦ୍ଧି, ଇନ୍ଦ୍ରିୟ, ଦେବତା, ବେଦ, ଯଜ୍ଞ, ତପସ୍ୟା, ବ୍ରତ ଓ ଲୋକସମୂହର ଅଗୋଚର । ୫୦ । ଜ୍ଞାନୀଗଣଙ୍କର ଦଣ୍ଡକମଣ୍ଡଳୁ ପ୍ରଭୃତି ଚିହ୍ନସମୂହ ଗ୍ରହଣ କରିବାର ଅବିଧେୟ ବୋଲି ଅଲିଙ୍ଗ ଧର୍ମଜ୍ଞ ଜନ ଧର୍ମତତ୍ତ୍ୱ ଆଚରଣ କରିବେ । ୫୧ । ଗୃହରେ ଧର୍ମାଶ୍ରିତ ବିଦ୍ୱାନ୍ ଜନ ବିଜ୍ଞାନ ଚରିତ ବିଷୟ ଆଚରଣ କରିବେ ଏବଂ ଅମୂଢ଼ ହୋଇ ମୂଢ଼ରୂପରେ ଦୂଷିତ ନକରି ଧର୍ମ ଆଚରଣ କରିବେ । ୫୨ ।

ତଦନନ୍ତର ଯେଉଁପରି ସର୍ବଦା ଧର୍ମର ନିନ୍ଦା ନହୁଏ, ଭିକ୍ଷୁକ ତାଦୃଶ ବୃତ୍ତି ଅବଲମ୍ବନ କରି ସାଧୁମାନଙ୍କ ଧର୍ମକୁ ନିନ୍ଦା ନକରି ଧର୍ମାଚରଣ କରିବେ । ୫୩ । ଯେ ଏତାଦୃଶ ବୃତ୍ତିସମ୍ପନ୍ନ ହୁଅନ୍ତି, ସେ ଉତ୍ତମ ମୁନି ବୋଲି କଥିତ ହୁଅନ୍ତି । ସେହି ମୁନି ଇନ୍ଦ୍ରିୟ, ଇନ୍ଦ୍ରିୟାର୍ଥ, ପଞ୍ଚମହାଭୂତ, ମନ, ବୁଦ୍ଧି, ଅବ୍ୟକ୍ତ ଓ ପୁରୁଷ ଏହି ସମସ୍ତ ପ୍ରକୃଷ୍ଟରୂପେ ସଂଖ୍ୟା କରି ତତ୍ତ୍ୱ-ସମୂହର ଯଥାବିଧି ନିଶ୍ଚୟ କରିବେ । ତତ୍ତ୍ୱବିତ୍ ମୁନି ଏହି ତତ୍ତ୍ୱସମୂହର ପରିସଂଖ୍ୟା କଲେ ସର୍ବବନ୍ଧନରୁ ମୁକ୍ତହୋଇ ସ୍ୱର୍ଗପ୍ରାପ୍ତ ହୁଅନ୍ତି । ୫୭ ।

ଅତଃପର ନିର୍ଜନ ସ୍ଥାନ ଅବଲମ୍ବନ କରି ଧ୍ୟାନକଲେ ଆକାଶଗାମୀ ବାୟୁସଦୃଶ ନିରାଶ୍ରୟ ଓ ସର୍ବସଙ୍ଗରୁ ନିର୍ମୁକ୍ତ ହୋଇ ମୁକ୍ତ ଏବଂ କ୍ଷୀଣକୋଷ ଓ ନିରାତଙ୍କ ହୋଇ ପରମବ୍ରହ୍ମ ପ୍ରାପ୍ତ ହୁଅନ୍ତି । ୫୮ ।

—0—

Digitized by srujanika@gmail.com

# ସପ୍ତଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ନିଶ୍ଚିତବାଦୀ ବୃଦ୍ଧଗଣ ସନ୍ନ୍ୟାସକୁ ତପସ୍ୟା ବୋଲି କହନ୍ତି ଏବଂ ବ୍ରହ୍ମଯୋନିସ୍ଥ ବ୍ରାହ୍ମଣଗଣ ଜ୍ଞାନକୁ ପରମବ୍ରହ୍ମ ବୋଲି ବୋଧ କରନ୍ତି । ୧ । ରଜୋଗୁଣରହିତ ନିର୍ମଳଚିତ୍ତ ପବିତ୍ରସ୍ୱଭାବ ଧୀରଗଣ ଜ୍ଞାନ ଏବଂ ତପସ୍ୟାଦ୍ୱାରା ଅତିଦୂରସ୍ଥିତ ବେଦବିଦ୍ୟାର ଆଶ୍ରୟ ନିର୍ଦ୍ୱନ୍ଦ୍ୱ, ନିର୍ଗୁଣ, ନିତ୍ୟ, ଅଚିନ୍ତ୍ୟଗୁଣ, ଅନୁତ୍ତମ ସେହି ପରମବ୍ରହ୍ମଙ୍କୁ ଦର୍ଶନ କରନ୍ତି । ୩ ।

ସନ୍ନ୍ୟାସନିରତ ବ୍ରହ୍ମବିତ୍ ବ୍ୟକ୍ତିଗଣ ତପସ୍ୟା ଓ ଜ୍ଞାନଦ୍ୱାରା ପରମେଶ୍ୱରଙ୍କ ମଙ୍ଗଳମୟ ପଥରେ ଗମନ କରନ୍ତି । ପଣ୍ଡିତଗଣ ତପସ୍ୟାକୁ ପ୍ରଦୀପ ଏବଂ ଆଚାରକୁ ଧର୍ମସାଧକ ବୋଲି କହନ୍ତି । ପରନ୍ତୁ ସନ୍ନ୍ୟାସକୁ ଉତ୍ତମ ତପସ୍ୟା ଏବଂ ଜ୍ଞାନକୁ ସର୍ବୋତ୍କୃଷ୍ଟ ବୋଲି ବୋଧ କରନ୍ତି । ୫ ।

ଯେଉଁ ବ୍ୟକ୍ତି ତତ୍ତ୍ୱ ବିନିଶ୍ଚିତ କରି ନିରାଧାର ଓ ବାଧାହୀନ ଜ୍ଞାନସ୍ୱରୂପ ସର୍ବଭୂତସ୍ଥ ଆତ୍ମାକୁ ଜାଣିପାରନ୍ତି, ସେ ସର୍ବତ୍ର ଗମନ କରନ୍ତି । ୬ । ଯେଉଁ ବିଦ୍ୱାନ୍ ଜନ ଆତ୍ମାଙ୍କ ସହିବାସ ନିବାସ ଏକତ୍ୱ ଓ ନାନାତ୍ୱ ଅବଲୋକନ କରନ୍ତି, ସେ ଦୁଃଖରୁ ବିମୁକ୍ତ ହୁଅନ୍ତି । ୭ । ଯେଉଁ ଜନ ଇହଲୋକରେ ବିଦ୍ୟମାନ ଥାଇ କୌଣସି ବିଷୟକୁ କାମନା ନକରନ୍ତି ଓ କାହାକୁ ଅବଜ୍ଞା ନକରନ୍ତି, ସେ ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି । ୮ । ଯେଉଁ ଜନ ବିଧିଗୁଣ, ତତ୍ତ୍ୱ ଓ ସର୍ବଭୂତର ପ୍ରଧାନକୁ ଅବଗତ ହୋଇ ଅହଂକାର ଓ ମମତାବିହୀନ ହୁଅନ୍ତି, ସେ ନିଶ୍ଚୟ ମୁକ୍ତ ହୁଅନ୍ତି । ୯ । ନିର୍ଦ୍ୱନ୍ଦ୍ୱ, ନିର୍ନମସ୍କାର, ନିଃସ୍ୱଧାକାର ପୁରୁଷ ଶାନ୍ତିଗୁଣଦ୍ୱାରା ସମସ୍ତ ଗୁଣମୟ ଶୁଭାଶୁଭ କର୍ମ ଓ ସତ୍ୟମିଥ୍ୟାଦ୍ୱୟ ପରିହାର କଲେ ଅବଶ୍ୟ ମୁକ୍ତ ହୁଅନ୍ତି । ୧୦ ।

ଅବ୍ୟକ୍ତ ଯାହାଙ୍କର ମୂଳ, ବୁଦ୍ଧି ଯାହାଙ୍କର ମହାସ୍କନ୍ଧ, ଅହଂକାର ଯାହାଙ୍କର ବିଟପ, ଇନ୍ଦ୍ରିୟଗଣ ଯାହାଙ୍କର ଅଙ୍କୁର ଓ କୋଟର, ମହାଭୂତ ଯାହାଙ୍କର ବିସ୍ତାରବିଶେଷ, ଯତିବୃନ୍ଦ ଯାହାଙ୍କର ଶାଖା, ସତତ ପତ୍ରପୁଷ୍ପ ଓ ଶୁଭାଶୁଭ ରୂପ ଫଳୋଦୟସମନ୍ୱିତ ସନାତନ ବ୍ରହ୍ମବୃକ୍ଷ ସମସ୍ତ ଭୂତଗଣଙ୍କର ଆଜୀବ୍ୟ ଅଟନ୍ତି । ଜ୍ଞାନବାନ୍ ଜନ ତତ୍ତ୍ୱଜ୍ଞାନ ରୂପ ଅସିଦ୍ୱାରା ଏତାଦୃଶ ବ୍ରହ୍ମବୃକ୍ଷ ଛେଦ ଓ ଭେଦ କରି ଜନ୍ମ, ମୃତ୍ୟୁ, ଜରା ଓ ଉଦୟ

Digitized by srujanika@gmail.com

ସମନ୍ୱିତ ସଙ୍ଗମୟ ପାଶସମୂହ ଛେଦନ କରି ନିର୍ମମ ଓ ନିରହଂକାର ହୋଇଲେ ନିଶ୍ଚୟ ମୁକ୍ତ ହୁଅନ୍ତି । ୧୫ ।

ଜୀବ ଏବଂ ଈଶ୍ୱର ଏହି ଦୁଇଗୋଟି ପକ୍ଷୀ ନିତ୍ୟସଖା । ତାହାଙ୍କର ଉପାଧିହୟ ଅଥବା ପ୍ରତିବିମ୍ବ ରୂପରେ ଦୃଶ୍ୟ ଯେ ପୃଥକ୍, ସେ ଚେତନାଶାଳୀ ବୋଲି କଥିତ ହୁଅନ୍ତି । ୧୬ । ଅଚେତନ ସତ୍ତ୍ୱଣ ଅହଂବୁଦ୍ଧି ଗମ୍ୟ । ଯେଉଁ ଜୀବ ପ୍ରାଣିସଂଖ୍ୟାରୁ ବିମୁକ୍ତ ହୋଇ ବୁଦ୍ଧିର ଅଜ୍ଞାତ ବସ୍ତୁକୁ ଚେତନାଯୁକ୍ତ କରନ୍ତି, ସେହି କ୍ଷେତ୍ରଜ୍ଞ ନାମକ ଅନ୍ତରାତ୍ମା ସମସ୍ତ ବୁଦ୍ଧିର ସାକ୍ଷୀ ଅଟନ୍ତି । ସେ ଗୁଣଦ୍ୱାରା ଗୁମ୍ଫିତ ହୋଇଲେ ସର୍ବଦୋଷରେ ଦୂଷିତ ହୁଅନ୍ତି, ଏବଂ ଗୁଣାତୀତ ହୋଇଲେ ସର୍ବପାପରୁ ବିମୁକ୍ତ ହୁଅନ୍ତି । ୧୭ ।



# ଅଷ୍ଟଚତ୍ୱାରିଂଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—କତିପୟ ଜନ ବୃକ୍ଷ ଓ ବନରୂପ ଜଗତକୁ ବ୍ରହ୍ମମୟ ବୋଲି ନିର୍ଦ୍ଦେଶ କରନ୍ତି । କେହିମାନେ ମଧ୍ୟ ବ୍ରହ୍ମଙ୍କୁ ଅବ୍ୟକ୍ତ ନିର୍ବିକାର ପରମାତ୍ମା ବୋଲି କହନ୍ତି । ଏବଂ କେହି କେହି ପ୍ରକୃତିକୁ ଏହି ସମସ୍ତ ବିଶ୍ୱର ଉତ୍ପତ୍ତି ଓ ଲୟ-କାରଣ ବୋଲି କହନ୍ତି । ଯାହାଙ୍କର ମୃତ୍ୟୁ ସମୟରେ ନିଶ୍ୱାସପତନ ମାତ୍ରେ କାଳ ପରମାତ୍ମାଙ୍କ ସହିତ ଜୀବାତ୍ମାଙ୍କର ଅଭେଦ ଜ୍ଞାନ ଜନ୍ମେ, ସେ ହୃଦୟ ମଧ୍ୟରେ ପରମାତ୍ମାଙ୍କ ସାକ୍ଷାତ୍‌କାରଗତ ମୁକ୍ତି ଲଭ କରନ୍ତି ।

ଯଦି କେହି ନିମେଷକାଳ ମାତ୍ର ଦେହ ମଧ୍ୟରେ ଆତ୍ମାଙ୍କୁ ସଂଯତ କରି ପାରନ୍ତି, ତେବେ ସେ ପରମାତ୍ମାଙ୍କ ପ୍ରସାଦରେ ପଣ୍ଡିତମାନଙ୍କର ଅକ୍ଷୟ ପରମଗତି ପ୍ରାପ୍ତ ହୁଅନ୍ତି । ୩ । ଯଦି କେହି ଦଶ ବା ଦ୍ୱାଦଶବାର ପ୍ରାଣାୟାମ କରି ପ୍ରାଣକୁ ପୁନଃ ପୁନଃ ସଂଯତ କରିବାକୁ କ୍ଷମ ହୁଅନ୍ତି, ତେବେ ସେ ଚତୁର୍ବିଂଶ ଅବ୍ୟକ୍ତାତୀତ ପଞ୍ଚବିଂଶ ପୁରୁଷଙ୍କୁ ପ୍ରାପ୍ତ ହୁଅନ୍ତି । ୪ ।

ଏହିରୂପେ ପୁରୁଷ ପ୍ରଥମତଃ ପ୍ରସନ୍ନଚିତ୍ତ ହୋଇ ଯାହା ଅଭିଳାଷ କରିବେ, ତାହା ଲଭ କରି ପାରିବେ । ପରନ୍ତୁ ଯେତେବେଳେ ଅବ୍ୟକ୍ତ

Digitized by srujanika@gmail.com

ଲାଭ ଉତ୍ତାରେ ପୁରୁଷଙ୍କର ସତ୍ତ୍ୱଗୁଣ ଉଦ୍ରିକ୍ତ ହେବ, ତେତେବେଳେ ସେ ଅମୃତତ୍ୱ ଲାଭ କରିବେ ।

ହେ ଦ୍ୱିଜସତ୍ତମଗଣ ! ମୋକ୍ଷବିତ୍ ପଣ୍ଡିତମାନେ ସତ୍ତ୍ୱଭିନ୍ନ ଅନ୍ୟ କାହାକୁ ଅତି ଉତ୍କୃଷ୍ଟ ବୋଲି ପ୍ରଶଂସା କରନ୍ତି ନାହିଁ । ଆମ୍ଭେମାନେ ଅନୁମାନଦ୍ୱାରା ପୁରୁଷଙ୍କୁ ସତ୍ତ୍ୱଗୁଣର ଆଶ୍ରୟ ବୋଲି ଜାଣୁଁ । କାରଣ, ପୁରୁଷ ସତ୍ତ୍ୱଗୁଣର ଆଶ୍ରୟ ନହେଲେ, ତାହାଙ୍କୁ କେହି ଜାଣିପାରନ୍ତେ ନାହିଁ । ୬ ।

କ୍ଷମା, ଧୃତି, ଅହିଂସା, ସମତା, ସତ୍ୟ, ସରଳତା, ଜ୍ଞାନ, ତ୍ୟାଗ ଓ ସନ୍ନ୍ୟାସ ଏହି ସମସ୍ତଙ୍କୁ ସାତ୍ତ୍ୱିକ ବୃତ୍ତି ବୋଲି ଜାଣିବ । ୭ । ଏହା ବିଶେଷ-ରୂପେ ବିଦିତ ହେଲେ, ପୁରୁଷ ଜ୍ଞାନଗୋଚର ହୁଅନ୍ତି । ମନୀଷିଗଣ ଏତାଦୃଶ ଅନୁମାନଦ୍ୱାରା ସତ୍ତ୍ୱ ଓ ପୁରୁଷଙ୍କୁ ଅଭେଦ ବୋଲି ଜ୍ଞାନ କରନ୍ତି । ତଦ୍‌ବିଷୟରେ ଅନ୍ୟ ବିଚାରଣା କରିବା ଅନୁଚିତ । ୮ ।

ଜ୍ଞାନସିଦ୍ଧ କୌଣସି କୌଣସି ପଣ୍ଡିତଗଣ ଏହିପରି କହନ୍ତି ଯେ, ସତ୍ତ୍ୱ ଓ କ୍ଷେତ୍ରଜ୍ଞ ପୁରୁଷଙ୍କର ଏକତା ଯୁକ୍ତିସିଦ୍ଧ ହୋଇପାରେ ନାହିଁ । ପୁରୁଷଙ୍କ ଅପେକ୍ଷା ସତ୍ତ୍ୱ ଯେ ପୃଥକ୍ ତଦ୍‌ବିଷୟରେ ବିଚାରଣା କରିବାର ନୁହେ । ବସ୍ତୁତଃ ସମୁଦ୍ରତରଙ୍ଗ ସଦୃଶ ସତ୍ତ୍ୱ ଓ ପୁରୁଷଙ୍କ ପୃଥକ୍‌ତ୍ୱ ବିଷୟରେ ପଣ୍ଡିତଗଣ ଏହିପରି ଯୁକ୍ତି ଦିଅନ୍ତି ଯେ, ଯେଉଁପରି ମଶକ ଓ ଉଡ଼ୁମ୍ବରର ଏକତା ଓ ପୃଥକ୍ ଭାବ ଦୃଷ୍ଟହୁଏ, ତଦ୍‌ବତ୍ ସତ୍ତ୍ୱ ଓ ପୁରୁଷଙ୍କର ଏକତ୍ୱ ଏବଂ ନାନାତ୍ୱ ଜ୍ଞାନ କରିବାକୁ ହେବ । ୧୧ । ଅପିଚ ମତ୍ସ୍ୟ ଓ ଜଳର ଯାଦୃଶ ପାର୍ଥକ୍ୟ ଏବଂ ପଦ୍ମପତ୍ର ଓ ଜଳବିନ୍ଦୁର ଯାଦୃଶ ସମ୍ବନ୍ଧ, ସତ୍ତ୍ୱ ଓ ପୁରୁଷଙ୍କର ତାଦୃଶ ପାର୍ଥକ୍ୟ ଓ ସମ୍ବନ୍ଧ ଜାଣିବ । ୧୨ ।

ଗୁରୁ କହିଲେ—ଲୋକ ପିତାମହ ବ୍ରହ୍ମା ସେହି ମୁନିସତ୍ତମ ବିପ୍ରଗଣଙ୍କୁ ଏହିପରି କହିବାରୁ ତେତେବେଳେ ସେମାନେ ପୁନଶ୍ଚ ସଂଶୟାପନ୍ନ ହୋଇ ତାହାଙ୍କୁ ପ୍ରଶ୍ନକଲେ । ୧୩ ।

Digitized by srujanika@gmail.com

# ଏକୋନପଞ୍ଚାଶତ୍ତମ ଅଧ୍ୟାୟ

ଋଷିଗଣ କହିଲେ—ହେ ବ୍ରହ୍ମନ୍ ! ଧର୍ମବୃନ୍ଦ ମଧ୍ୟରେ କେଉଁ ଧର୍ମ ଏକାନ୍ତ ଅନୁଷ୍ଠେୟ ? କାରଣ, ଧର୍ମର ବିବିଧ ଗତି ଦର୍ଶନ କରି ଆମ୍ଭମାନଙ୍କର ମୋହ ଉପସ୍ଥିତ ହେଉଅଛି । ୧ ।

କୌଣସି କୌଣସି ନାସ୍ତିକ କହନ୍ତି ଯେ, ଦେହନାଶ ଉତ୍ତାରେ ଆତ୍ମାବସ୍ଥିତି କରନ୍ତି । କେହି କେହି ଦେହଧ୍ୱଂସ ଉତ୍ତରେ ତାହାଙ୍କର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ତଦ୍‌ବିଷୟରେ କେହି କେହି ସଂଶୟ କରନ୍ତି, କେହି କେହି ଅବା ନିଶ୍ଚୟ କରିଥାଆନ୍ତି । ପ୍ରବାହରୂପରେ ନିତ୍ୟ ମୀମାଂସକ-ମାନେ, ଦୃଶ୍ୟାନିତ୍ୟ ତାର୍କିକମାନେ, ଶୂନ୍ୟବାଦୀମାନେ ଆତ୍ମ ଅର୍ଥାତ୍ କ୍ଷଣିକ ବୋଲି କହନ୍ତି । ସୌଗତମାନେ ନାହାନ୍ତି ବୋଲି କହନ୍ତି । ଯୋଗାଚାରମାନେ ଏକରୂପ ଓ ଦ୍ୱିରୂପ ବୋଲି କହନ୍ତି । ଉଡ଼ୁଲୋମଗଣ ନାନା ରୂପ ଅର୍ଥାତ୍ ଭିନ୍ନ ଓ ଅଭିନ୍ନ ବୋଲି କହନ୍ତି । ୩ ।

ତତ୍ତ୍ୱଦର୍ଶୀ ବ୍ରହ୍ମଜ୍ଞ ବ୍ରାହ୍ମଣଗଣ ଏକମାତ୍ର ବ୍ରହ୍ମ ବିଦ୍ୟମାନ ଅଛନ୍ତି, ଏହିପ୍ରକାର ମନେ କରନ୍ତି । ସଗୁଣ ବ୍ରହ୍ମୋପାସକ ନରଗଣ ବ୍ରହ୍ମଙ୍କୁ ପୃଥକ୍ ପୃଥକ୍ ଜ୍ଞାନ କରନ୍ତି । ପରମାଣୁବାଦୀମାନେ ବ୍ରହ୍ମଙ୍କର ବହୁତ୍ୱ ସ୍ୱୀକାର କରନ୍ତି । ୪ । ଜ୍ୟୋତିର୍ବିତ୍ ପଣ୍ଡିତମାନେ ଦେଶ ଓ କାଳ ଏହି ଉଭୟଙ୍କୁ ବ୍ରହ୍ମ ବୋଲି କହନ୍ତି । ବୃଦ୍ଧମାନେ ସ୍ୱପ୍ନରାଜ୍ୟର ମିଥ୍ୟାଚତୁର୍ବିଳାସୀ ସ୍ୱରୂପ ବୋଲି କହନ୍ତି ।

କତିପୟ ବ୍ୟକ୍ତି ଜଟାଜିନଧାରୀ ହୋଇ ବ୍ରହ୍ମଙ୍କ ଉପାସନା କରିବାକୁ ପ୍ରବୃତ୍ତ ହୁଅନ୍ତି । କେହି କେହି ମୁଣ୍ଡୀ ଓ କେହି କେହି ଦିଗମ୍ବର ହୋଇ ବିଚରଣ କରନ୍ତି । କୌଣସି କୌଣସି ବ୍ୟକ୍ତିମାନେ ସ୍ନାତ ହୋଇ, କୌଣସି କୌଣସି ବ୍ୟକ୍ତିମାନେ ସ୍ନାତ ନହୋଇ ଉପାସନାରେ ପ୍ରବୃତ୍ତ ହୁଅନ୍ତି । ତତ୍ତ୍ୱଦର୍ଶୀ ବ୍ରହ୍ମଜ୍ଞ ବ୍ରାହ୍ମଣଗଣ ସଦାଚରଣରେ ଉପାସନା କରନ୍ତି । ୬ ।

କେହି କେହି ଆହାର କରି ଉପାସନାରେ ପ୍ରବୃତ୍ତ ହୁଅନ୍ତି । କେହି କେହି ଅବା ଅନାହାରରେ ଉପାସନା କରନ୍ତି । କେହି କେହି କର୍ମକୁ ପ୍ରଶଂସା

Digitized by srujanika@gmail.com

କରନ୍ତି, ଅପର ନରଗଣ ଶାନ୍ତିକ ପ୍ରଶଂସା କରନ୍ତି । କେହି ଦେଶ ଓ କାଳ, କେହି ମୋକ୍ଷ, କେହି ଅବା ପୃଥକ୍‌ବିଧ ଭୋଗସମୂହର ପ୍ରଶଂସା କରନ୍ତି । କେହି ଉପାସକ ସାଧନଧନ ଇଚ୍ଛା କରନ୍ତି । ଅପର ବ୍ୟକ୍ତିଗଣ ନିର୍ଦ୍ଧନଚ୍ଚ ଅଭିଳାଷ କରନ୍ତି । କେହି ଅବା କିଛି ଇଚ୍ଛା କରନ୍ତି ନାହିଁ । ୮ ।

କେହି କେହି ଅହିଂସାନିରତ, କେହି ହିଂସାପରାୟଣ ହୁଅନ୍ତି । କେହି କେହି ପୁଣ୍ୟ ଓ ଯଶ ନିମିତ୍ତ ଯତ୍ନ କରନ୍ତି । କେହି ଅବା ଯଶ ଓ ପୁଣ୍ୟ ନିମିତ୍ତ ଯତ୍ନ କରନ୍ତି । କେହି ଅବା ଯଶ ଓ ପୁଣ୍ୟ କିଛି ସ୍ୱୀକାର କରନ୍ତି ନାହିଁ । ୯ ।

କେହି ସେହି ସଦ୍ଭାବନିରତ, କେହି କେହି ସଂଶୟରେ ଅବସ୍ଥିତ ହୁଅନ୍ତି । କେହି ସୁଖ ନିମିତ୍ତ, କେହି ଅବା ଦୁଃଖ ନିମିତ୍ତ ଧ୍ୟାନ କରନ୍ତି । ୧୦ ।

କେହି କେହି ଯଜ୍ଞ, କେହି ଦାନ, କେହି ତପସ୍ୟା, କେହି ଅବା ସ୍ୱାଧ୍ୟାୟକୁ ପ୍ରଶଂସା କରନ୍ତି । ୧୧ । କେହି ଜ୍ଞାନ, କେହି ସନ୍ନ୍ୟାସ, ଏବଂ ବସ୍ତୁତତ୍ତ୍ୱବିତ୍‌ଗଣ କୌଣସି କୌଣସି ପଣ୍ଡିତ ସ୍ୱଭାବକୁ ପ୍ରଶଂସା କରନ୍ତି । କେହି କେହି ସମସ୍ତଙ୍କୁ ପ୍ରଶଂସା କରନ୍ତି । କତିପୟ ବ୍ୟକ୍ତି ସମସ୍ତଙ୍କୁ ପ୍ରଶଂସା ନକରନ୍ତି । ୧୨ ।

ହେ ସୁରସତ୍ତମ ! ଆମ୍ଭେମାନେ ଏହିରୂପେ ଧର୍ମର ବିବିଧ ଗତି ଦର୍ଶନ କରି ନିତାନ୍ତ ବିମୋହିତ ହୋଇ ସନାତନ ଧର୍ମ ପରିଜ୍ଞାତ ହେବାକୁ ଅତଏବ ଅସମର୍ଥ ହୋଇଅଛୁଁ । ୧୩ । ନରଗଣ ମଧ୍ୟରେ କେହି କହନ୍ତି ଏହି ଧର୍ମ ଶ୍ରେଷ୍ଠ, କେହି କହନ୍ତି ଏହି ଧର୍ମ ଶ୍ରେଷ୍ଠ ନୁହେ । ଏହିପରି ବୋଧ କରିବାରୁ ଯାହାଙ୍କର ଯେଉଁ ଧର୍ମରେ ପ୍ରବୃତ୍ତି ହୁଏ, ସେ ସେହି ଧର୍ମକୁ ସର୍ବଦା ପୂଜା କରନ୍ତି । ୧୪ ।

ସେହି କାରଣରୁ ଆମ୍ଭମାନଙ୍କ ବୁଦ୍ଧି ବିଚଳିତ ଓ ମନ ନାନା ଦିଗକୁ ଧାବମାନ ହୋଇଅଛି । ଅତଏବ ହେ ସତ୍ତମ ! କେଉଁ ଧର୍ମ ଶ୍ରେଷ୍ଠ, ତାହା ଆପଣ ଆମ୍ଭମାନଙ୍କୁ କହିବା ହେଉନ୍ତୁ, ଆମ୍ଭେମାନେ ଶୁଣିବାକୁ ଇଚ୍ଛା କରୁଅଛୁଁ । ୧୫ । ଅତଃପର ଯାହା ଗୁହ୍ୟ ଏବଂ ସତ୍ତ୍ୱଗୁଣ ସହିତ ଜୀବାତ୍ମାଙ୍କ କେଉଁ କାରଣରେ ସମ୍ବନ୍ଧ ହୁଏ, ତାହା ଆମ୍ଭମାନଙ୍କୁ କହିବା ହେଉନ୍ତୁ । ୧୬ ।

Digitized by srujanika@gmail.com

ଧର୍ମାତ୍ମା, ବୁଦ୍ଧିମାନ୍, ଲୋକଭାବନ, ଭଗବାନ ବ୍ରହ୍ମା ଋଷିଗଣଙ୍କର ଏହିପ୍ରକାର ବାକ୍ୟ ଶ୍ରବଣ କରି ସେମାନଙ୍କୁ ଯଥାତଥରୂପେ କହିଲେ । ୧୭ ।

---

# ପଇଁଚାଳିଶତମ ଅଧ୍ୟାୟ

ବ୍ରହ୍ମା କହିଲେ—ହେ ସତ୍ତମଗଣ ! ତୁମ୍ଭେମାନେ ଆମ୍ଭଙ୍କୁ ଯେଉଁ ବିଷୟ ପ୍ରଶ୍ନକଲ, ଗୁରୁ ଉପଯୁକ୍ତ ଶିଷ୍ୟଙ୍କ ନିକଟରେ ଯାହା କହିଥିଲେ, ସେହି ଉତ୍ତମ ବିଷୟ ଆମ୍ଭେ ତୁମ୍ଭମାନଙ୍କୁ କହୁଅଛୁଁ, ତୁମ୍ଭେମାନେ ଅବହିତ ହୋଇ ଶ୍ରବଣ କର । ୧ ।

ତୁମ୍ଭେମାନେ ଆମ୍ଭ ନିକଟରୁ ସେହି ସମସ୍ତ ବିଷୟ ଶ୍ରବଣ କରି ସମ୍ୟକ୍‌ରୂପେ ଅବଧାରଣ କରିବ । ଅହିଂସା ଯେ ସମସ୍ତ ପ୍ରାଣିଗଣଙ୍କର ଉତ୍କୃଷ୍ଟ କାର୍ଯ୍ୟ, ଏହା ସାଧୁସମ୍ମତ । ତାହା ଧର୍ମର ବରିଷ୍ଠ ଲକ୍ଷଣ । ଏହି ବିଷୟରେ କିଞ୍ଚିନ୍ମାତ୍ର ସଂଶୟ ନାହିଁ । ତତ୍ତ୍ୱଦର୍ଶୀ ବୃଦ୍ଧଗଣ ଜ୍ଞାନକୁ ମୋକ୍ଷ-ସାଧନ ବୋଲି କୀର୍ତ୍ତନ କରନ୍ତି । ସେହି କାରଣରୁ ପ୍ରାଣିଗଣ କେବଳ ଜ୍ଞାନଦ୍ୱାରା ସର୍ବପାପରୁ ମୁକ୍ତ ହୁଅନ୍ତି । ଯେଉଁମାନେ ହିଂସାପରାୟଣ, ଯେଉଁମାନେ ନାସ୍ତିକ ଧର୍ମାବଲମ୍ବୀ ଏବଂ ଯେଉଁମାନେ ଲୋଭ ଓ ମୋହର ବଶବର୍ତ୍ତୀ, ସେହିମାନେ ନିରୟଗାମୀ ହୁଅନ୍ତି । ୪ । ପରନ୍ତୁ ଯେଉଁ ନରଗଣ ଅତନ୍ଦ୍ରିତ ହୋଇ ମଙ୍ଗଳଯୁକ୍ତ କାର୍ଯ୍ୟସମୂହ କରନ୍ତି, ସେହିମାନେ ଇହଲୋକରେ ବାରମ୍ବାର ଜନ୍ମଗ୍ରହଣ କରି ପ୍ରମୋଦିତ ହୁଅନ୍ତି । ୫ ।

ଯେଉଁମାନେ ଶ୍ରଦ୍ଧାଯୁକ୍ତ ଅର୍ଥାତ୍ କାମନାପରିଶୂନ୍ୟ ହୋଇ ସତ୍କାର୍ଯ୍ୟର ଅନୁଷ୍ଠାନ କରନ୍ତି, ସେହି ସାଧୁଦର୍ଶୀ ଧୀର ବିଦ୍ୱାନ୍‌ଗଣ କଦାପି ଜନ୍ମଗ୍ରହଣ କରନ୍ତି ନାହିଁ । ୬ ।

ହେ ସତ୍ତମଗଣ ! ଯେଉଁ ପ୍ରକାରରେ ସତ୍ତ୍ୱଗୁଣ ଓ କ୍ଷେତ୍ରଜ୍ଞଙ୍କର ସଂଯୋଗ ଓ ବିଯୋଗ ହୁଏ, ଏଥିଉତ୍ତାରେ ଆମ୍ଭେ ତୁମ୍ଭମାନଙ୍କୁ ସେହି ବିଷୟ କହୁଅଛୁଁ । ତୁମ୍ଭେମାନେ ଅବହିତ ହୋଇ ତାହା ଶ୍ରବଣ କର । ୭ ।

Digitized by srujanika@gmail.com

ସତ୍ତ୍ୱଗୁଣ ଓ ପୁରୁଷ ଏହି ଦୁହିଙ୍କ ମଧ୍ୟରେ ବିଷୟ ଓ ବିଷୟିଭାବ ଏହି ସମ୍ବନ୍ଧ ଉକ୍ତ ହୋଇଅଛି । ସତ୍ତ୍ୱଗୁଣ ବିଷୟ ଓ ପୁରୁଷଙ୍କୁ ବିଷୟୀ ବୋଲି ନିର୍ଦ୍ଦେଶ କରାଯାଏ । ୮ ।

ଉଡୁମ୍ବର ମଧ୍ୟରେ ମଶକ ଯେଉଁପରି ନିର୍ଲିପ୍ତ ଭାବରେ ଅବସ୍ଥାନ କରେ, ତଦ୍‌ବତ୍ ପୁରୁଷ ସତ୍ତ୍ୱଗୁଣରେ ନିର୍ଲିପ୍ତ ଭାବରେ ଅବସ୍ଥାନ କରିଥାଆନ୍ତି । ଯେଉଁପରି ପୂର୍ବେ ମଶକ ଓ ଉଡୁମ୍ବରର ଭୋଜ୍ୟଭୋକ୍ତୃ ଭାବ ସମ୍ବନ୍ଧ ହୋଇ-ଅଛି, ତଦ୍‌ବତ୍ ଏହି ସ୍ଥଳରେ ସତ୍ତ୍ୱ ଓ ପୁରୁଷଙ୍କର ଭୋଜ୍ୟଭୋକ୍ତୃ ଭାବସମ୍ବନ୍ଧ କଥିତ ହେଉଅଛି ।

ଅଚେତନ ସତ୍ତ୍ୱଗୁଣ ଭୋକ୍ତା ପୁରୁଷଙ୍କଦ୍ୱାରା ଭୁଜ୍ୟମାନ ହୋଇ ଆପଣାକୁ ଜାଣିପାରନ୍ତି ନାହିଁ । ପରନ୍ତୁ ଭୋକ୍ତା ପୁରୁଷ ମଶକ ସଦୃଶ ଭୁଜ୍ୟମାନ ସତ୍ତ୍ୱଗୁଣକୁ ସର୍ବଦା ସୁଖଦୁଃଖାଦି ଦ୍ୱନ୍ଦ୍ୱସମାଯୁକ୍ତ ବୋଲି କହନ୍ତି ଏବଂ ପୁରୁଷଙ୍କୁ ନିତ୍ୟ, ନିର୍ଦ୍ୱନ୍ଦ୍ୱ, ନିଷ୍କଳ, ନିର୍ଗୁଣାତ୍ମକ, କ୍ଷେତ୍ରଜ୍ଞ ବୋଲି କହନ୍ତି । ୧୦ ।

ପବନ ବିଦ୍ୟମାନ ଅଧିଷ୍ଠାନଭୂତ ସେହି ପୁରୁଷ ଅଧ୍ୟସ୍ତଭୂତ ସତ୍ତ୍ୱଗୁଣର ସମସଙ୍ଗତ୍ୱ ପ୍ରାପ୍ତହୋଇ ସଲିଳୋପଭୋଗୀ ପଦ୍ମପତ୍ର ସଦୃଶ ସର୍ବଦା ସତ୍ତ୍ୱଗୁଣକୁ ଉପଭୋଗ କରନ୍ତି । ୧୧ । ବିଦ୍ୱାନ୍ ପୁରୁଷ ସର୍ବପ୍ରକାର ଗୁଣଦ୍ୱାରା ବ୍ୟତିଷିକ୍ତ ହେଲେ ମଧ୍ୟ, ପଦ୍ମପତ୍ରସଂସ୍ଥିତ ଚଞ୍ଚଳ ଜଳବିନ୍ଦୁ ସଦୃଶ ତହିଁରେ ଲିପ୍ତ ହୁଅନ୍ତି ନାହିଁ । ଅତଏବ ପୁରୁଷ ଯେ ଅସଙ୍ଗ ଏହି ବିଷୟରେ କିଞ୍ଚିନ୍ମାତ୍ର ସଂଶୟ ନାହିଁ । ଏହିପରି ନିଶ୍ଚୟ ଅଛି ଯେ, ସତ୍ତ୍ୱଗୁଣ ପୁରୁଷଙ୍କର ଦ୍ରବ୍ୟମାତ୍ର । ୧୩ । ସତ୍ତ୍ୱ ଏବଂ ପୁରୁଷ ଉଭୟେ ମିଳିତ ହେଲେ ଦ୍ରବ୍ୟମାତ୍ର ହୁଏ । କର୍ତ୍ତା ଏବଂ ଦ୍ରବ୍ୟର ଯାଦୃଶ ସମ୍ବନ୍ଧ, ସତ୍ତ୍ୱ ଓ ପୁରୁଷଙ୍କର ତାଦୃଶ ସମ୍ବନ୍ଧ ଜାଣିବ ।

ଯେଉଁପରି କୌଣସି ବ୍ୟକ୍ତି ପ୍ରଦୀପ ନେଇ ଅନ୍ଧକାର ମଧ୍ୟରେ ଗମନ କରେ, ତଦ୍‌ବତ୍ ପରମପଦ ଆକାଂକ୍ଷୀ ନରଗଣ ସତ୍ତ୍ୱରୂପ ପ୍ରଦୀପଦ୍ୱାରା ପ୍ରକାଶ କରି ଗମନ କରନ୍ତି । ୧୪ । ଯାବତ୍‌କାଳ ତୈଳ ଏବଂ ବର୍ତ୍ତି ବିଦ୍ୟମାନ ଥାଏ ତାବତ୍‌କାଳ ପ୍ରଦୀପ ପ୍ରଜ୍ଜ୍ୱଳିତ ହେଉଥାଏ । ପରନ୍ତୁ ତୈଳ ଏବଂ ବର୍ତ୍ତି କ୍ଷୀଣ ହେଲେ ଜ୍ୟୋତି ଅନ୍ତର୍ହିତ ହୋଇଯାଏ । ୧୫ ।

Digitized by srujanika@gmail.com

ଯେଉଁପରି ପ୍ରଦୀପ ତୈଳ ଓ ବର୍ତ୍ତିଦ୍ୱାରା ଅବଷ୍ଟବ୍ଧ ହୋଇ ଭବନ, ଆକାଶ ଓ ଆପଣାକୁ ପ୍ରକାଶିତ କରେ, ଏବଂ ତୈଳ ଓ ବର୍ତ୍ତି କ୍ଷୀଣ ହେଲେ ସ୍ୱୟଂ ଅନ୍ତର୍ହିତ ହୁଏ, ତଦ୍‌ବତ୍ ସତ୍ତ୍ୱଗୁଣ କର୍ମଦ୍ୱାରା ଚରମ ବୃତ୍ତିରୂପେ ଅଭିବ୍ୟକ୍ତ ହୋଇ ପୁରୁଷ ଓ ଆପଣାକୁ ପୃଥକ୍ ରୂପେ ପ୍ରକାଶ କରେ ଏବଂ କର୍ମର ଉପଶମ ହେଲେ ସ୍ୱୟଂ ଅନ୍ତର୍ହିତ ହୁଏ । କିନ୍ତୁ ପୁରୁଷ ଅବ୍ୟକ୍ତ ଭାବରେ ଅବସ୍ଥାନ କରନ୍ତି । ୧୭ ।

ହେ ବିପ୍ରଗଣ ! ତୁମ୍ଭେମାନେ ଏହି ବିଷୟ ଉତ୍ତମରୂପେ ବିଦିତ ହେଲ । ଆଉ ମଧ୍ୟ ତୁମ୍ଭମାନଙ୍କୁ ଅନ୍ୟପ୍ରକାର କହୁଅଛୁଁ, ଶ୍ରବଣ କର । ଦୁର୍ବୁଦ୍ଧି ମାନବ ସହସ୍ରବାର ଉପଦିଷ୍ଟ ହେଲେ ସୁଦ୍ଧା ବୁଝିପାରନ୍ତି ନାହିଁ । ପରନ୍ତୁ ବୁଦ୍ଧିମାନ୍ ମନୁଷ୍ୟ ଚତୁର୍ଥବାର ଉପଦିଷ୍ଟ ହେଲେ ସେହି ବିଷୟ ହୃଦୟଙ୍ଗମ କରି ସୁଖ ଅନୁଭବ କରନ୍ତି ।

ଏହିରୂପେ ଉପାୟଦ୍ୱାରା ଧର୍ମର ସାଧନ ବିଶେଷରୂପେ ଅବଗତ ହେବ । କାରଣ, ଉପାୟଜ୍ଞ ମେଧାବୀ ମାନବ ଅତ୍ୟନ୍ତ ସୁଖଭୋଗ କରନ୍ତି ।୧୮।

ପାଥେୟପରିଶୂନ୍ୟ ବ୍ୟକ୍ତି ଅତିକଷ୍ଟରେ ପଥମଧ୍ୟରେ ଭ୍ରମଣ କରୁ କରୁ ଯେଉଁପରି ପଞ୍ଚତ୍ୱପ୍ରାପ୍ତ ହୁଅନ୍ତି, ତଦ୍‌ବତ୍ ପ୍ରାକ୍ତନ ପୁଣ୍ୟବିହୀନ ବ୍ୟକ୍ତି ଯୋଗମାର୍ଗ ଅବଲମ୍ବନ କଲେ, ଯୋଗ ସମ୍ୟକ୍‌ରୂପେ ଅନୁଷ୍ଠିତ ନ ହେଉଁଣୁ ତାହାଙ୍କର ପରଲୋକ ପ୍ରାପ୍ତି ହୁଏ । ଫଳତଃ ମନୁଷ୍ୟର ପ୍ରାକ୍ତନ ପ୍ରଭୂତ ପୁଣ୍ୟ ସଞ୍ଚିତ ହୋଇଥିଲେ ସମ୍ପୂର୍ଣ୍ଣ ଯୋଗଲାଭ ହୁଏ, ଏବଂ ଅଳ୍ପ ପୁଣ୍ୟ ସଞ୍ଚୟ ହୋଇଥିଲେ ନିଧନଲାଭ ହୁଏ । ୨୦ ।

ତତ୍ତ୍ୱଦର୍ଶନବର୍ଜିତ ନର ଅଦୃଷ୍ଟାନୁସାରେ ପାଦଦ୍ୱାରା ଯେଉଁ ଦୀର୍ଘପଥ ଗମନ କରନ୍ତି, ତତ୍ତ୍ୱଦର୍ଶୀ ପୁରୁଷ ଶୀଘ୍ରଗାମୀ ଅଶ୍ୱଯୁକ୍ତ ରଥଦ୍ୱାରା ସେହି ପଥ ଗମନ କରନ୍ତି । ଅତଏବ ବୁଦ୍ଧିଶାଳୀ ବ୍ୟକ୍ତିମାନଙ୍କର ଏହିପରି ଗତି ଜାଣିବ । ୨୨ । ପୁରୁଷ ଉଚ୍ଚ ପର୍ବତରେ ଆରୋହଣ କରି ଭୂତଳକୁ ଅବଲୋକନ କରିବେ ନାହିଁ, ଅର୍ଥାତ୍ ପରମପଦ ପ୍ରାପ୍ତ ହେଲେ ଶାସ୍ତ୍ର ଓ ତନ୍ନିହିତ କର୍ମସବୁ ପରିତ୍ୟାଗ କରିବେ । ବିଦ୍ୱାନ୍ ଜନ କର୍ମଦ୍ୱାରା କ୍ଲେଶ୍ୟମାନ ଅଚେତନ ଆତ୍ମାକୁ ଅବଲୋକନ କରି ଯାବତ୍ କର୍ମ କ୍ଷୟ ନହୁଏ, ତାବତ୍

Digitized by srujanika@gmail.com

କାଳ ପର୍ଯ୍ୟନ୍ତ କର୍ମମାର୍ଗରେ ଗମନ କରିବେ । ପରନ୍ତୁ କର୍ମ କ୍ଷୟ ହେଲେ, ସେହି ମାର୍ଗ ପରିତ୍ୟାଗ ପୂର୍ବକ ଜ୍ଞାନପଥରେ ଗମନ କରିବେ ।

ତତ୍ତ୍ୱଯୋଗବିଧାନବିତ୍ ଗୁଣଜ୍ଞ ମେଧାବୀ ନର ଏହିରୂପେ ସନ୍ନ୍ୟାସାଶ୍ରମରୁ କ୍ରମଶଃ ଉତ୍ତରୋତ୍ତର ଅର୍ଥାତ୍ ହଂସ, ପରମହଂସ ଆଶ୍ରମକୁ ସମ୍ୟକ୍ ଅବଗତ ହୋଇ ଗମନ କରିବେ ।

ପ୍ଲବହୀନ ପୁରୁଷ ମୋହବଶତଃ ମହାଘୋରାର୍ଣ୍ଣବ ପାରହେବା ନିମିତ୍ତ ବାହୁଦ୍ୱାରା ସନ୍ତରଣ କରି ଶ୍ରାନ୍ତହୋଇ ନିଶ୍ଚୟ ନିଧନ ଲାଭ କରନ୍ତି । ବିଭାଗବିତ୍ ପ୍ରାଜ୍ଞ ପୁରୁଷ ଉତ୍କୃଷ୍ଟ କ୍ଷେପଣୀସଂଯୁକ୍ତ ନୌକାଦ୍ୱାରା ସଲିଳରେ ଗମନ କରି ଅଶ୍ରାନ୍ତଭାବରେ ଶୀଘ୍ର ହ୍ରଦ ପାରହୋଇ ଯାଆନ୍ତି । ୨୭ ।

ଆମ୍ଭେ ପୂର୍ବେ ରଥୀ ଓ ପଦାତିକ ବୃତ୍ତାନ୍ତ ଯେଉଁପରି କହିଅଛୁଁ, ତଦ୍‌ବତ୍ ନିର୍ମମ ଜନ ହ୍ରଦ ଉତ୍ତୀର୍ଣ୍ଣ ହୋଇ ନୌକା ପରିତ୍ୟାଗ ପୂର୍ବକ ପରପାରକୁ ଗମନ କରିବେ । ୨୮ । ଯେଉଁପରି ନାବିକ କୈବର୍ତ୍ତ ସ୍ନେହବଶତଃ ମୂଢ଼ ହୋଇ ନୌକାରେ ପରିଭ୍ରମଣ କରେ, ତଦ୍‌ବତ୍ ପୁରୁଷ ଧ୍ୟାନଯୋଗ ଲାଭ କରି ନପାରିଲେ ମମତାବଶତଃ ମୂଢ଼ ହୋଇ ସେହି ଗୁରୁଙ୍କ ନିକଟରେ ସଂସାର ମଧ୍ୟରେ ପରିଭ୍ରମଣ କରୁଥାଆନ୍ତି । ୨୯ ।

ପୁରୁଷ ଯେଉଁପରି ନୌକାରୂଢ଼ ହୋଇ ସ୍ଥଳମଧ୍ୟରେ ପ୍ରବେଶ କରି ନପାରନ୍ତି, ତଦ୍‌ବତ୍ ରଥାରୂଢ଼ ହୋଇ ଜଳମଧ୍ୟରେ ପରିଭ୍ରମଣ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଏହିପରି କର୍ମକୃତ ଫଳ ନାନାପ୍ରକାର ଏବଂ ବିଷୟସୃଷ୍ଟ ଫଳ ପୃଥକ୍ ପୃଥକ୍ ବୋଲି ଜାଣିବ । ପରନ୍ତୁ ଇହଲୋକରେ ଯେଉଁପରି କର୍ମ ଅନୁଷ୍ଠିତ ହୁଏ, ତଦ୍‌ବତ୍ ଫଳଲାଭ ହୁଏ । ୩୧ ।

ହେ ଦ୍ୱିଜଗଣ ! ଯାହା ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦଯୁକ୍ତ ନୁହେ, ତାହାକୁ ବିଦ୍ୱାନ୍ ମୁନିଗଣ ପ୍ରଧାନ ବୋଲି କହନ୍ତି । ୩୨ । ସେହି ପ୍ରଧାନାବ୍ୟକ୍ତ, ସେହି ଅବ୍ୟକ୍ତ ପ୍ରଧାନଙ୍କର ଗୁଣ ମହାନ୍, ସେହି ମହତ୍ତ୍ୱରୂପୀ ପ୍ରଧାନ ଭୂତଙ୍କର ଗୁଣ ଅହଂକାର । ୩୩ ।

Digitized by srujanika@gmail.com

ଅହଂକାରରୁ ବିସ୍ତାରିତ ପଞ୍ଚମହାଭୂତ ସମ୍ଭୂତ ହୋଇଅଛନ୍ତି । ଶବ୍ଦାଦି ବିଷୟସବୁ ପୃଥକ୍ ଭାବରେ ପ୍ରତ୍ୟେକ ପଞ୍ଚମହାଭୂତର ଗୁଣ ବୋଲି ଉକ୍ତ ହୋଇଅଛି । ୩୪ । ସେହି ଅବ୍ୟକ୍ତ ବୀଜଧର୍ମୀ ଅର୍ଥାତ୍ ସୃଷ୍ଟିର କାରଣ ଏବଂ ପ୍ରସବାତ୍ମକ ଅର୍ଥାତ୍ କାର୍ଯ୍ୟରୂପୀ ବୋଲି ଜାଣିବ ।

ଆମ୍ଭେମାନେ ଏହିପରି ଶୁଣିଅଛୁଁ ଯେ, ମହାତ୍ମା, ମହାନ୍, ଅହଙ୍କାର ଏବଂ ପଞ୍ଚମହାଭୂତ ଏହିମାନେ ସମସ୍ତେ ବୀଜଧର୍ମୀ ଓ ପ୍ରସବଧର୍ମୀ ବୋଲି ଉକ୍ତ ହୋଇଅଛନ୍ତି । ପଣ୍ଡିତଗଣ ସମସ୍ତ ଶବ୍ଦାଦି ବିଷୟମାନଙ୍କୁ ବୀଜଧର୍ମୀ ଏବଂ ପ୍ରସବଧର୍ମୀ ବୋଲି କହନ୍ତି । ଶତ୍ରୁ ସେମାନଙ୍କର ବ୍ୟାବର୍ତ୍ତିକ ଅଟେ ।୩୭ । ସେହି ପଞ୍ଚମହାଭୂତମାନଙ୍କ ମଧ୍ୟରେ ଆକାଶ ଏକଗୁଣ, ବାୟୁ ଦ୍ୱିଗୁଣ, ଜ୍ୟୋତି ତ୍ରିଗୁଣ, ଜଳ ଚତୁର୍ଗୁଣ, ଏବଂ ସର୍ବଭୂତଙ୍କର ଶୁଭାଶୁଭନିଦର୍ଶିନୀ ଚରାଚର ସଙ୍କୁଳା ପୃଥିବୀ ପାଞ୍ଚଗୁଣା ବୋଲି ଉକ୍ତ ହୋଇଅଛି ।

ହେ ଦ୍ୱିଜସତ୍ତମଗଣ ! ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ପାଞ୍ଚଗୋଟି ପୃଥିବୀର ଗୁଣ ବୋଲି ଜାଣିବ । ୪୦ । ଗନ୍ଧ ପାର୍ଥିବ ଗୁଣ । ସେହି ଗନ୍ଧ ବହୁପ୍ରକାର ବୋଲି କଥିତ ହୋଇଅଛି । ସେହି ଗନ୍ଧର ଗୁଣସମୂହ ବିସ୍ତାର ପୂର୍ବକ ତୁମ୍ଭମାନଙ୍କୁ କହୁଅଛୁଁ । ୪୧ । ସୁଖକର, ଦୁଃଖଜନକ, ମଧୁର, ଅମ୍ଳ, କଟୁ, ଦୂରଗାମୀ, ମିଶ୍ରିତ, ସ୍ନିଗ୍ଧ, ରୁକ୍ଷ ଓ ବିଶଦ ଏହି ଦଶବିଧ ପାର୍ଥିବ ଗନ୍ଧ ବୋଲି ଜାଣିବ । ଶବ୍ଦ, ସ୍ପର୍ଶ, ରୂପ ଏବଂ ଦ୍ରବ ଏହିସବୁ ଜଳୀୟ ଗୁଣ ବୋଲି ଉକ୍ତ ହୋଇଅଛି । ୪୩ ।

ତେଜର ଗୁଣ ରୂପ । ସେହି ରୂପ ବହୁବିଧ । ଶୁକ୍ଳ, କୃଷ୍ଣ, ରକ୍ତ, ନୀଳ, ପୀତ, ଅରୁଣ, ହ୍ରସ୍ୱ, ଦୀର୍ଘ, କୃଶ, ସ୍ଥୂଳ, ଚତୁଷ୍କୋଣ ଓ ଗୋଲାକାର ଏହି ଦ୍ୱାଦଶବିଧ ତେଜର ରୂପ ଉକ୍ତ ହୋଇଅଛି । ୪୭ ।

ବାୟୁର ଶବ୍ଦ ଓ ସ୍ପର୍ଶ ଏହି ଦୁଇଗୋଟି ଗୁଣ ଅଛି ବୋଲି ସତ୍ୟବାଦୀ ଧର୍ମଜ୍ଞ ବୃଦ୍ଧ ବ୍ରାହ୍ମଣଗଣକର୍ତ୍ତୃକ ବିଶେଷରୂପେ ବିଦିତ ହୋଇଅଛି । ୪୮ । ବାୟୁର ସ୍ପର୍ଶଗୁଣ ବହୁପ୍ରକାର ବୋଲି ଉକ୍ତ ହୋଇଅଛି । ରୁକ୍ଷ, ଶୀତଳ, ଉଷ୍ଣ, ବିଶଦ, କଠିନ, ଚିକ୍କଣ, ଶ୍ଳକ୍ଷ୍ଣ, ପିଚ୍ଛିଳ, ଦାରୁଣ, ମୃଦୁ ଏବଂ ବିସ୍ତାର ଏହି ଦ୍ୱାଦଶବିଧ ବାୟୁର ଗୁଣ । ୫୦ ।

Digitized by srujanika@gmail.com

ଏହା ତତ୍ତ୍ୱଦର୍ଶୀ ସିଦ୍ଧ ଧର୍ମଜ୍ଞ ବ୍ରାହ୍ମଣଗଣ ଋଷିବର୍ଗ ଦ୍ୱାରା ବର୍ଣ୍ଣିତ ହୋଇ ଅଛନ୍ତି । ୫୧ । ଅପିଚ ଆମ୍ଭେମାନେ ଏହିପରି ଶୁଣିଅଛୁଁ ଯେ, ସେହି ଭୂତଗଣଙ୍କ ମଧ୍ୟରେ ଆକାଶର ଶବ୍ଦ ଗୋଟିଏ ଗୁଣ ବୋଲି ଉକ୍ତ ହୋଇଅଛି । ସେହି ଶବ୍ଦର ବହୁବିଧ ଗୁଣ ବିସ୍ତାର ପୂର୍ବକ କହୁଅଛୁଁ । ୫୨ ।

ଷଡ୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ନିଷାଦ, ଧୈବତ, ସୁଖକର, ଅସୁଖକର ଓ ଦୃଢ଼ ଏହି ଦଶବିଧ ଶବ୍ଦ ଆକାଶରୁ ସମ୍ଭୂତ ହୋଇଅଛି । ସକଳ ଭୂତଗଣଙ୍କ ମଧ୍ୟରେ ଆକାଶ ଉତ୍ତମ, ଅହଂକାର ଆକାଶାପେକ୍ଷା ଉତ୍କୃଷ୍ଟ, ବୁଦ୍ଧି ଅହଂକାର ଅପେକ୍ଷା ଉତ୍କୃଷ୍ଟ, ଆତ୍ମା ବୁଦ୍ଧି ଅପେକ୍ଷା ଶ୍ରେଷ୍ଠ, ଅବ୍ୟକ୍ତ ଆତ୍ମା ଅପେକ୍ଷା ଶ୍ରେଷ୍ଠ, ଏବଂ ପୁରୁଷ ଅବ୍ୟକ୍ତ ଅପେକ୍ଷା ଶ୍ରେଷ୍ଠ ବୋଲି ଜାଣିବ । ୫୫ ।

ଯେଉଁ ବ୍ୟକ୍ତି ସର୍ବକାର୍ଯ୍ୟରେ ବିଧିଜ୍ଞ, ଅଧ୍ୟାତ୍ମକୁଶଳ ଓ ସର୍ବଭୂତରେ ସମଦର୍ଶୀ ହୁଅନ୍ତି, ସେ ସେହି ଅବ୍ୟୟ ପରମ ପୁରୁଷଙ୍କୁ ଲାଭକରି ପାରନ୍ତି । ୫୬ ।

---

## ଏକପଞ୍ଚାଶତ୍ତମ ଅଧ୍ୟାୟ

ବ୍ରହ୍ମା କହିଲେ—ମନ ପଞ୍ଚଭୂତରେ ଉତ୍ପତ୍ତି, ସ୍ଥିତି ଏବଂ ବିନାଶ ବିଷୟରେ ପ୍ରଭୁ ଅଟନ୍ତି । ମନ ପଞ୍ଚଭୂତ ଓ ମହତ୍ତ୍ୱର ଅଧିଷ୍ଠାତା । ବୁଦ୍ଧି ମନର ଐଶ୍ୱର୍ଯ୍ୟ ବୋଲି କଥିତ ହୋଇଅଛି । ସେହି ମନ କ୍ଷେତ୍ରଜ୍ଞ ବୋଲି କଥିତ ହୋଇଅଛି । ୨ । ସାରଥି ଯେଉଁପରି ଉତ୍ତମ ଅଶ୍ୱମାନଙ୍କୁ ରଥରେ ନିଯୋଗ କରନ୍ତି, ତଦ୍‌ବତ୍ ମନ ଇନ୍ଦ୍ରିୟଗଣଙ୍କୁ ସ୍ୱ ସ୍ୱ ବିଷୟରେ ନିଯୋଗ କରନ୍ତି, ଏବଂ ଇନ୍ଦ୍ରିୟଗଣ ମନ ଓ ବୁଦ୍ଧି ଏମାନେ ସମସ୍ତେ ଆତ୍ମାଙ୍କ ଭୋଗ ନିମିତ୍ତ ନିଜ ନିଜ କାର୍ଯ୍ୟ ସମ୍ପାଦନ କରନ୍ତି । ୩ ।

ଭୂତାତ୍ମା ଦେହାଭିମାନୀ ଜୀବ ମହତ୍ତ୍ୱ ଓ ଇନ୍ଦ୍ରିୟରୂପ ଅଶ୍ୱଯୁକ୍ତ, ବୁଦ୍ଧିରୂପ ସାରଥିସମନ୍ୱିତ ରଥରେ ଆରୋହଣ କରି ସର୍ବତ୍ର ପରିଭ୍ରମଣ କରନ୍ତି । ୪ । ଯହିଁରେ ବଶୀକୃତ ଇନ୍ଦ୍ରିୟଗ୍ରାମ ଅଶ୍ୱରୂପେ ନିଯୁକ୍ତ, ମନ

Digitized by srujanika@gmail.com

ସାରଥି ଏବଂ ବୁଦ୍ଧି ପ୍ରତୋଦ ସ୍ୱରୂପ, ସେହି ବ୍ରହ୍ମଙ୍କର ବିକାରଭୂତ ଶରୀରକୁ ରଥ ବୋଲି ଜ୍ଞାନ କରିବ । ୫ ।

ଯେଉଁ ଧ୍ୟାନଶୀଳ ବିଦ୍ୱାନ୍ ଜନ ଏହି ବ୍ରହ୍ମମୟ ରଥକୁ ବିଶେଷରୂପେ ଅବଗତ ହୁଅନ୍ତି, ସେ ପ୍ରାଣିଗଣଙ୍କ ମଧ୍ୟରେ କଦାପି ମୋହପ୍ରାପ୍ତ ହୁଅନ୍ତି ନାହିଁ । ୬ । ଆଦିଭୂତ ଅବ୍ୟକ୍ତ ଓ ଶେଷ ସ୍ୱରୂପ ବିଶେଷ ଯୁକ୍ତ, ସ୍ଥାବର ଓ ଜଙ୍ଗମସମନ୍ୱିତ, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପ୍ରଭାଦ୍ୱାରା ପ୍ରକାଶିତ, ଗ୍ରହ ଓ ନକ୍ଷତ୍ର ମଣ୍ଡଳରେ ମଣ୍ଡିତ, ନଦୀ ଓ ପର୍ବତବୃନ୍ଦରେ ପରିଭୂଷିତ ସଲିଳଦ୍ୱାରା ବିବିଧ-ରୂପେ ସମଳଂକୃତ, ସର୍ବଭୂତଗଣଙ୍କର ଆଦିଭୂତ ଏବଂ ସମସ୍ତ ପ୍ରାଣିଗଣଙ୍କର ଗତିସ୍ୱରୂପ ପରମବ୍ରହ୍ମ ନିତ୍ୟ ବିରାଜିତ ଅଛନ୍ତି । ଦେବଗଣ ତାହାଙ୍କଠାରେ ବିଚରଣ କରୁଅଛନ୍ତି । ୯ ।

ଇହଲୋକରେ ସ୍ଥାବର ଜଙ୍ଗମ ପ୍ରଭୃତି ଯେଉଁ ସତ୍ତ୍ୱସବୁ ଅଛନ୍ତି, ପ୍ରଥମତଃ ସେହିସବୁ ଲୀନ ହୁଅନ୍ତି । ତଦନନ୍ତର ସୂକ୍ଷ୍ମ ଶରୀରାତ୍ମକ ପଞ୍ଚମହାଭୂତ, ତଦନନ୍ତର ଭୂତକୃତ ଶବ୍ଦାଦି ଗୁଣବୃନ୍ଦ ଲୀନ ହୁଅନ୍ତି । ଏହି ଦେହଦ୍ୱୟ ରୂପଭୂତ ସମୁତ୍ପନ୍ନ ଜାଣିବ । ୧୦ । ଦେବତା, ମନୁଷ୍ୟ, ଗନ୍ଧର୍ବ, ପିଶାଚ, ଅସୁର, ରାକ୍ଷସ ଏହିମାନେ ସ୍ୱଭାବରୁ ଉତ୍ପନ୍ନ ହୋଇ ଅଛନ୍ତି; କ୍ରିୟା ଅବା କାରଣରୁ ଉତ୍ପନ୍ନ ହୋଇନାହାନ୍ତି । ୧୧ ।

ହେ ବିପ୍ରଗଣ ! ଯେଉଁପରି ଲହରୀମାଳା ସାଗରରୁ ସମୁତ୍ଥିତ ହୋଇ ଯଥାକାଳରେ ତହିଁରେ ପ୍ରଲୀନ ହୁଅନ୍ତି, ତଦ୍‌ବତ୍ ଏହି ବିଶ୍ୱସ୍ରଷ୍ଟା ମରୀଚ୍ୟାଦି ପ୍ରଜାପତିଗଣ ପଞ୍ଚମହାଭୂତରୁ ଉତ୍ପନ୍ନ ହୋଇ ତହିଁରେ ଲୀନ ହୁଅନ୍ତି । ପରନ୍ତୁ ବିଶ୍ୱସ୍ରଷ୍ଟା ଭୂତଙ୍କର ଲୟ ହେଲେ ସୂକ୍ଷ୍ମ ପଞ୍ଚମହାଭୂତସମୂହରେ ବିଦ୍ୟମାନ ଥାଆନ୍ତି । ପୁରୁଷ ସେହି ଭୂତରୁ ମୁକ୍ତ ହୋଇପାରିଲେ ପରମଗତି ଲାଭ କରିବାକୁ ସମର୍ଥ ହୁଅନ୍ତି ।

ପ୍ରଭୁ ପ୍ରଜାପତି ମନଦ୍ୱାରା ସମସ୍ତ ବିଶ୍ୱ ନିର୍ମାଣ କରିଅଛନ୍ତି । ଫଳମୂଳାଶୀ ସିଦ୍ଧମୁନିଗଣ ସାଧନାନୁସାରେ ତପସ୍ୟାଦ୍ୱାରା ସମାହିତ ହୋଇ ତ୍ରୈଲୋକ୍ୟ ଦର୍ଶନ କରନ୍ତି । ରୋଗନାଶକ ଔଷଧ ପ୍ରଭୃତି ଓ ନାନା ବିଦ୍ୟାସବୁ ତପସ୍ୟା-ଦ୍ୱାରା ସିଦ୍ଧ ହୁଅନ୍ତି । କାରଣ, ତପସ୍ୟା ସାଧନର ମୂଳ ଅଟେ । ୧୬ ।

Digitized by srujanika@gmail.com

ଯାହା ଦୁଷ୍ପ୍ରାପ୍ୟ, ଇନ୍ଦ୍ରପଦ ପ୍ରଭୃତି, ଦୁରାମ୍ନାୟ ବେଦାଦି, ଦୁର୍ଦ୍ଧର୍ଷ ବ୍ୟାଘ୍ର ପ୍ରଭୃତି ଏବଂ ଦୁରନ୍ୱୟ ପ୍ରଳୟ ପ୍ରଭୃତି ସେହି ସମସ୍ତ ତପସ୍ୟାଦ୍ୱାରା ସିଦ୍ଧ ହୁଏ । ସୁତରାଂ ତପସ୍ୟା ଦୁରତିକ୍ରମଣୀୟ । ୧୭ ।

ସୁରାପାୟୀ, ବ୍ରହ୍ମଘ୍ନ, ସୁବର୍ଣ୍ଣଚୌର୍ଯ୍ୟନିରତ, ଭ୍ରୂଣଘାତୀ ଓ ଗୁରୁତଳ୍ପଗାମୀ ପାମରମାନେ ସୁତପ୍ତ ତପସ୍ୟାଦ୍ୱାରା ସେହି ପାପସମୂହରୁ ମୁକ୍ତ ହୁଅନ୍ତି । ୧୮ । ମନୁଷ୍ୟ, ପିତୃଗଣ, ଦେବତା, ପଶୁ, ପକ୍ଷୀ ଓ ବୃକ୍ଷ ପ୍ରଭୃତି ସ୍ଥାବରଜଙ୍ଗମାତ୍ମକ ଭୂତସମୂହ ତପଃପରାୟଣ ହେଲେ ସିଦ୍ଧିଲାଭ ବିଷୟରେ ସମର୍ଥ ହୁଅନ୍ତି । ମନୁଷ୍ୟଗଣ ନିରନ୍ତର ତପସ୍ୟାପରାୟଣ ହେଲେ ସେହି ତପସ୍ୟା ବଳରେ ସିଦ୍ଧ ହୁଅନ୍ତି । ମହାମାୟା ବିଶିଷ୍ଟ ଦେବଗଣ ସେହି ତପୋବଳରେ ସ୍ୱର୍ଗକୁ ଗମନ କରିଅଛନ୍ତି । ୨୦ ।

ଯେଉଁମାନେ ଅତନ୍ଦ୍ରିତ ହୋଇ ମଙ୍ଗଳଯୁକ୍ତ କର୍ମ କରନ୍ତି, ସେମାନେ ଅହଂକାର ସମାଯୁକ୍ତ ହୋଇ ପ୍ରଜାପତିଙ୍କ ନିକଟରେ ଅବସ୍ଥାନ କରନ୍ତି । ୨୧ । ଯେଉଁ ମହାତ୍ମାଗଣ କେବଳ ଧ୍ୟାନଯୋଗ କରନ୍ତି, ସେମାନେ ନିର୍ମମ ଓ ନିରହଂକୃତ ହୋଇ ଉତ୍ତମ ମହତ୍ ଲୋକ ପ୍ରାପ୍ତ ହୁଅନ୍ତି । ୨୨ ।

ପ୍ରସନ୍ନଚିତ୍ତ ଉତ୍ତମ ଆତ୍ମବିତ୍‌ଗଣ ଧ୍ୟାନଯୋଗ ଅପ୍ରାପ୍ତ ହେଲେ ସର୍ବଦା ଲୌକିକ ସୁଖବର୍ଦ୍ଧକ ପ୍ରକୃତିରେ ପ୍ରବିଷ୍ଟ ହୋଇ ରହନ୍ତି । ନିର୍ମମ ଓ ନିରହଂକୃତ ନରଗଣ ଧ୍ୟାନଯୋଗରୁ ନିବୃତ୍ତ ହେଲେ ଇହଲୋକରେ ଅବ୍ୟକ୍ତରେ ପ୍ରବେଶ କରି ଉତ୍ତମ ମହତ୍ ଲୋକ ପ୍ରାପ୍ତ ହୁଅନ୍ତି । ପ୍ରାଣିଗଣ ପ୍ରକୃତିରୁ ସମ୍ଭୂତ ହୋଇ ପୁନଶ୍ଚ ପ୍ରକୃତି ସଂଜ୍ଞା ପ୍ରାପ୍ତ ହୁଅନ୍ତି । ଯେଉଁ ବ୍ୟକ୍ତି ରଜ ଓ ତମୋଗୁଣରୁ ନିର୍ମୁକ୍ତ ହୁଅନ୍ତି, ସେ କେବଳ ସତ୍ତ୍ୱଗୁଣ ଅବଲମ୍ବନ କରି ସର୍ବପାପରୁ ବିମୁକ୍ତ ହୋଇ ସମସ୍ତ ବିଶ୍ୱ ନିର୍ମାଣ କରନ୍ତି । ସେ ନିଷ୍କଳ କ୍ଷେତ୍ରଜ୍ଞ ଈଶ୍ୱର ବୋଲି ବିଦିତ ହୁଅନ୍ତି । ଯେଉଁ ବ୍ୟକ୍ତି ତାହାଙ୍କୁ ଜାଣିପାରନ୍ତି, ସେ ବେଦ ଜାଣିବାକୁ ସମର୍ଥ ହୁଅନ୍ତି ।

ମନନଶୀଳ ନର ମନରେ ସମ୍ୟକ୍ ଜ୍ଞାନଲାଭ କରି ସର୍ବଦା ସଂଯତ ହୋଇ ରହିବେ । ଯେ ଚିତ୍ତ ସେ ମନ । ଏହି ମନ ବଶୀକୃତ ହେଲେ ଏ ସନାତନ ଈଶ୍ୱର ବୋଲି କଥିତ ହୁଅନ୍ତି । ଅବ୍ୟକ୍ତାଦି ବିଶେଷାନ୍ତ ଏହା

Digitized by srujanika@gmail.com

ଅବିଦ୍ୟାର ଲକ୍ଷଣ ବୋଲି ଉକ୍ତ ହୋଇଅଛି । ତୁମ୍ଭେମାନେ ଗୁଣଦ୍ୱାରା ଏହି ଲକ୍ଷଣ ବିଶେଷରୂପେ ଅବଗତ ହୁଅ । 'ମମ' ଏହି ଦୁଇଗୋଟି ଅକ୍ଷର ମୃତ୍ୟୁ, ଏବଂ 'ନମମ' ଏହି ତିନିଗୋଟି ଅକ୍ଷର ଶାଶ୍ୱତ ବ୍ରହ୍ମ ବୋଲି ଜାଣିବ । ୨୯ ।

ମନ୍ଦବୁଦ୍ଧିନିରତ କୌଣସି କୌଣସି ନରଗଣ କର୍ମକୁ ପ୍ରଶଂସା କରନ୍ତି । ପରନ୍ତୁ ଯେଉଁମାନେ ମହାତ୍ମା ଓ ଜ୍ଞାନବୃଦ୍ଧ ସେମାନେ କର୍ମକୁ ନିନ୍ଦା କରନ୍ତି । ପଞ୍ଚମହାଭୂତ ଓ ଏକାଦଶ ବିକାର ଏହି ଷୋଡ଼ଶାତ୍ମକ ଜନ୍ତୁ କର୍ମଦ୍ୱାରା ମୂର୍ତ୍ତିମାନ୍ ହୋଇ ଜନ୍ମଗ୍ରହଣ କରନ୍ତି । ବିଦ୍ୟା ସେହି ଷୋଡ଼ଶାତ୍ମକ ପୁରୁଷଙ୍କୁ ଯେ ଗ୍ରାସ କରନ୍ତି, ତାହା ଅମୃତାଶୀମାନଙ୍କର ଉପାଦେୟ ଗ୍ରାହ୍ୟ ବୋଲି ଜାଣିବ । ତନ୍ନିମିତ୍ତ ପାରଦର୍ଶୀ ପୁରୁଷ ସର୍ବକର୍ମରେ ସ୍ନେହ କରିବେ ନାହିଁ । ଏହି ପୁରୁଷ ବିଦ୍ୟାମୟ, କର୍ମମୟ ନୁହନ୍ତି । ୩୨ । ଯେ ଏହିରୂପେ ସେହି ଅମୃତ, ନିତ୍ୟ, ଅଗ୍ରାହ୍ୟ, ଅବିନାଶୀ, ଜିତଚିତ୍ତ, ଅସଙ୍ଗ ପୁରୁଷଙ୍କୁ ଅବଗତ ହୁଅନ୍ତି, ସେ ଅମର ହୁଅନ୍ତି । ୩୩ ।

ଯେଉଁ ଜନ ଅପୂର୍ବ ଅକୃତ୍ରିମ ନିତ୍ୟ-ଅପରାଜିତ, ଅଗ୍ରାହ୍ୟ, ଅମୃତାଶନ ଆତ୍ମାକୁ ଲାଭକରି ପାରନ୍ତି, ସେ ଏହି ସକଳ କାରଣରେ ନିଷ୍ଠୁର ଅଗ୍ରାହ୍ୟ ଓ ଅମୃତ ହୁଅନ୍ତି । ଯେଉଁମାନେ ସର୍ବଭୂତରେ ମିତ୍ରଭାବ ପ୍ରଭୃତି ସତ୍ପ୍ରବୃତ୍ତି-ସବୁ ସୁଦୃଢ଼ କରି ହୃଦୟପଦ୍ମରେ ନିରୋଧ କରିପାରନ୍ତି, ସେହିମାନେ ସେହି ସର୍ବାଧିକ ଶୁଭଙ୍କର ବ୍ରହ୍ମଙ୍କୁ ଜାଣିବାକୁ ସମର୍ଥ ହୁଅନ୍ତି । ଚିତ୍ତ ପ୍ରସନ୍ନ ଥିଲେ ପୁରୁଷ ଶାନ୍ତିଲାଭ କରିପାରନ୍ତି ।

ଯେଉଁପରି ସ୍ୱପ୍ନରେ ବିବିଧ ବିଷୟ ଭୋଗକରି ସ୍ୱପ୍ନାବସାନରେ ତତ୍ସମୁଦାୟ ଅଳୀକ ବୋଲି ବୋଧହୁଏ, ତଦ୍ଵତ୍ ସତ୍ତ୍ୱଗୁଣର ପ୍ରକାଶ ହେଲେ ସଂସାରର ସମସ୍ତ ପଦାର୍ଥ ଅକିଞ୍ଚିତ୍କର ବୋଲି ଜଣାଯାଏ । ଜ୍ଞାନସିଦ୍ଧ ମୁକ୍ତ ପୁରୁଷମାନଙ୍କ ଗତି ଏହିପରି ଜାଣିବ । ଯୋଗିଗଣ ପରିଣାମଜାତ ପ୍ରବୃତ୍ତିସବୁ ଦର୍ଶନ କରି ଥାଆନ୍ତି । ୩୭ । ସଂସାରବିରତ ପ୍ରାଣିଗଣଙ୍କର ଏହି ଗତି ଏବଂ ଏହି ସନାତନ ଧର୍ମ, ଏବଂ ଜ୍ଞାନବାନ୍ ବ୍ୟକ୍ତିମାନଙ୍କର ପ୍ରାପ୍ତି ଓ ଅନିନ୍ଦିତ ବୃତ୍ତି ଏହିପରି ଜାଣିବ । ୩୮ । ସର୍ବଭୂତରେ ସମ, ନିସ୍ପୃହ, ନିରାଶୀ, ଏବଂ ସର୍ବତ୍ର ସମଦର୍ଶୀ ନର ସ୍ୱୀୟ ଶକ୍ତି ଅନୁସାରେ ଏହି ଗତି ପ୍ରାପ୍ତ ହୋଇପାରନ୍ତି । ୩୯ ।

Digitized by srujanika@gmail.com

ହେ ବିପ୍ରର୍ଷିଗଣ ! ଆମ୍ଭେ ତୁମ୍ଭମାନଙ୍କୁ ଏହି ସମସ୍ତ ବିଷୟ ଯଥାବତ୍ କହିଲୁଁ । ଅତଃପର ତୁମ୍ଭେମାନେ ଏହିପରି ଆଚରଣ କରିପାରିଲେ ଶୀଘ୍ର ସିଦ୍ଧିଲାଭ କରିପାରିବ । ୪୦ ।

ଗୁରୁ କହିଲେ—ସେହି ମହାତ୍ମା ମୁନିଗଣ ଗୁରୁ ବ୍ରହ୍ମାଙ୍କଠାରୁ ଏହିପରି ବାକ୍ୟ ଶ୍ରବଣ କରି ଏହିରୂପେ ଆଚରଣ କରି ଉତ୍ତମ ଲୋକ ପ୍ରାପ୍ତ ହୋଇଥିଲେ । ୪୧ । ହେ ମହାଭାଗ ! ଆମ୍ଭେ ତୁମ୍ଭଙ୍କୁ ସେହି ବ୍ରହ୍ମାଙ୍କ ବାକ୍ୟ ଯଥାତଥରୂପେ କହିଲୁଁ । ହେ ଶୁଦ୍ଧାତ୍ମନ୍ ! ତୁମ୍ଭେ ଏହା ସମ୍ୟକ୍‌ରୂପେ ଆଚରଣ କଲେ ସିଦ୍ଧିଲାଭ କରିପାରିବ । ୪୨ ।

ବାସୁଦେବ କହିଲେ—ହେ କୁନ୍ତୀନନ୍ଦନ ! ତେତେବେଳେ ଗୁରୁ ସେହି ଶିଷ୍ୟଙ୍କୁ ଏହି ଅତି ଉତ୍କୃଷ୍ଟ ଧର୍ମ କହିବାରୁ ଶିଷ୍ୟ ସେହି ସମସ୍ତ ଧର୍ମ ସମ୍ୟକ୍-ରୂପେ ଆଚରଣ କରି ମୁକ୍ତିପ୍ରାପ୍ତ ହେଲେ । ୪୩ ।

ହେ କୁରୁକୁଳୋଦ୍‌ବହ ! ଯେଉଁ ସ୍ଥାନକୁ ଗମନ କଲେ ପୁରୁଷ ଶୋକ କରନ୍ତି ନାହିଁ, ଶିଷ୍ୟ ସେହି ପଦ ଲାଭକରି କୃତକୃତ୍ୟ ହେଲେ । ୪୪ ।

ଅର୍ଜୁନ କହିଲେ—ହେ କୃଷ୍ଣ ! ଆପଣ ଯେଉଁ ବ୍ରାହ୍ମଣ ଓ ଶିଷ୍ୟଙ୍କ କଥା କହିଲେ, ସେହି ବ୍ରାହ୍ମଣ ଓ ଶିଷ୍ୟ କିଏ ? ହେ ବିଭୋ ! ଏହା ଆମ୍ଭର ଯଦି ଶ୍ରୋତବ୍ୟ ହୁଏ, ତେବେ ଆପଣ ଅନୁଗ୍ରହପୂର୍ବକ ବିସ୍ତାର କରି ଆମ୍ଭଙ୍କୁ କହିବା ହେଉନ୍ତୁ ।

ବାସୁଦେବ କହିଲେ—ହେ ମହାବାହୋ ! ଧନଞ୍ଜୟ ! ଆମ୍ଭେ ଗୁରୁ ଏବଂ ଆମ୍ଭ ମନକୁ ଶିଷ୍ୟ ବୋଲି ଜାଣ । ତୁମ୍ଭପ୍ରତି ଆମ୍ଭର ପ୍ରୀତି ଥିବାରୁ ଆମ୍ଭେ ତୁମ୍ଭଙ୍କୁ ଏହି ଗୁହ୍ୟ ବିଷୟ କହିଲୁଁ । ୪୬ ।

ହେ ସୁବ୍ରତ ! କୁରୁକୁଳୋଦ୍‌ବହ ! ତୁମ୍ଭର ଆମ୍ଭଠାରେ ଯଦି ନିତ୍ୟ ପ୍ରୀତି ଥାଏ, ତେବେ ଆମ୍ଭ ନିକଟରୁ ଏହି ଅଧ୍ୟାତ୍ମ ବିଷୟ ଶ୍ରବଣ କରି ସମ୍ୟକ୍‌ରୂପେ ଆଚରଣ କର । ୪୭ ।

ହେ ଅରିକର୍ଷଣ ! ତୁମ୍ଭେ ଏହି ଧର୍ମକୁ ସମ୍ୟକ୍‌ରୂପେ ଆଚରଣ କଲେ ସର୍ବପାପରୁ ମୁକ୍ତ ହୋଇ କେବଳ ମୋକ୍ଷପ୍ରାପ୍ତ ହେବ । ୪୯ ।

Digitized by srujanika@gmail.com

ହେ ମହାବାହୋ ! ଆମ୍ଭେ ପୂର୍ବେ ଯୁଦ୍ଧ ସମୟରେ ତୁମ୍ଭଙ୍କୁ ଏହି ବିଷୟ କହିଥିଲୁଁ । ତନ୍ନିମିତ୍ତ ଏହି ବିଷୟରେ ମନଃସଂଯୋଗ କର । ୪୯ । ପରନ୍ତୁ ଆମ୍ଭେ ବହୁକାଳ ହେଲା ପ୍ରଭୁ ପିତାଙ୍କୁ ଦର୍ଶନ କରିନାହୁଁ । ସଂପ୍ରତି ତାଙ୍କୁ ଦର୍ଶନ କରିବା ନିମିତ୍ତ ଅଭିଳାଷ ହେଉଅଛି । ଅତଏବ ହେ ଭରତ-ଶ୍ରେଷ୍ଠ ! ଫାଲ୍‌ଗୁନ ! ତୁମ୍ଭେ ଏହି ବିଷୟରେ ସମ୍ମତି ପ୍ରଦାନ କର । ୫୦ ।

ବୈଶମ୍ପାୟନ କହିଲେ—କୃଷ୍ଣ ଅର୍ଜ୍ଜୁନଙ୍କୁ ଏହି କଥା କହିବାରୁ ଧନଞ୍ଜୟ କହିଲେ, ହେ କୃଷ୍ଣ ! ଆସିବା ହେଉନ୍ତୁ । ଅଦ୍ୟ ଆମ୍ଭେଦୁହେଁ ଏହି ନଗରରୁ ହସ୍ତିନାପୁରକୁ ଗମନ କରିବା । ୫୧ । ଆପଣ ସେଠାରେ ଧର୍ମାତ୍ମା ରାଜା ଯୁଧିଷ୍ଠିରଙ୍କୁ ରାଜ୍ୟପାଳନ ନିମିତ୍ତ ଆଦେଶ କରି ନିଜ ପୁରକୁ ଗମନ କରିବେ । ୫୨ ।

---

# ଦ୍ୱିପଞ୍ଚାଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର କୃଷ୍ଣ ଦାରୁକଙ୍କୁ ରଥରେ ଅଶ୍ୱଯୋଜନା କରିବା ନିମିତ୍ତ ଆଦେଶ କଲେ । ଦାରୁକ ମଧ୍ୟ ମୁହୂର୍ତ୍ତ ମଧ୍ୟରେ ଅଶ୍ୱ ଯୋଜନା କରି "ରଥ ପ୍ରସ୍ତୁତ ହୋଇଅଛି" ଏହି କଥା କୃଷ୍ଣଙ୍କୁ କହିଲେ । ୧ । ପାଣ୍ଡୁନନ୍ଦନ ଅର୍ଜ୍ଜୁନ ଅନୁଗାମୀ ସୈନିକପୁରୁଷମାନଙ୍କୁ କହିଲେ, ଆମ୍ଭେମାନେ ହସ୍ତିନା ନଗରକୁ ଗମନ କରିବୁଁ, ତୁମ୍ଭେମାନେ ସମସ୍ତେ ସୁସଜ୍ଜିତ ହୁଅ । ୨ ।

ହେ ବିଶାମ୍ପତେ ! ସୈନିକପୁରୁଷମାନେ ଅମିତତେଜା ପୃଥାନନ୍ଦନ ଅର୍ଜ୍ଜୁନଙ୍କ ଆଦେଶାନୁସାରେ ସୁସଜ୍ଜିତ ହୋଇ ତାହାଙ୍କୁ କହିଲେ ଯେ, ଆମ୍ଭେମାନେ ସଜ୍ଜିତ ହୋଇଅଛୁଁ । ୩ ।

ହେ ବିଶାମ୍ପତେ ! ତଦନନ୍ତର କୃଷ୍ଣ ଓ ଅର୍ଜ୍ଜୁନ ପ୍ରୀତଚିତ୍ତରେ ରଥାରୂଢ଼ ହୋଇ ପରସ୍ପର ନାନାବିଧ କଥୋପକଥନ କରି ହସ୍ତିନା ନଗର ଅଭିମୁଖରେ ପ୍ରସ୍ଥାନ କଲେ । ୪ ।

Digitized by srujanika@gmail.com

ହେ ଭରତସତ୍ତମ ! ମହାତେଜା ଧନଞ୍ଜୟ ସେହି ରଥସ୍ଥିତ ବସୁଦେବ-ନନ୍ଦନ କୃଷ୍ଣଙ୍କୁ ପୁନଶ୍ଚ ଏହିପ୍ରକାର କହିଲେ ଯେ, ହେ ବୃଷ୍ଣିକୁଳୋଦ୍‌ଭବ ! ଆପଣଙ୍କ ପ୍ରସାଦରେ ଶତ୍ରୁବୃନ୍ଦ ନିହତ ହୋଇଅଛନ୍ତି, ଏବଂ ରାଜା ଯୁଧିଷ୍ଠିର ଅକଣ୍ଟକ ରାଜ୍ୟ ପ୍ରାପ୍ତହୋଇ ଜୟଲାଭ କରିଅଛନ୍ତି । ୬ ।

ହେ ମଧୁସୂଦନ ! ଆପଣ ପାଣ୍ଡବଗଣଙ୍କର ନାଥ, ଅତଏବ ସେମାନେ ଆପଣଙ୍କୁ ପ୍ଳବସ୍ୱରୂପ ପ୍ରାପ୍ତହୋଇ କୁରୁସାଗର ଉତ୍ତୀର୍ଣ୍ଣ ହୋଇଅଛନ୍ତି । ୭ । ଅତଏବ ହେ ବିଶ୍ୱାତ୍ମନ୍ ! ହେ ବିଶ୍ୱକର୍ମନ୍ ! ହେ ବିଶ୍ୱସତ୍ତମ ! ଆପଣଙ୍କୁ ନମସ୍କାର । ଆମ୍ଭେ ଆପଣଙ୍କୁ ଯେଉଁପରି ଜାଣୁଁ, ଆପଣ ତଦ୍‌ବତ୍ ଅଟନ୍ତି । ୮ । ହେ ବିଭୋ ! ମଧୁସୂଦନ ! ନିତ୍ୟଭୂତାତ୍ମା ଆପଣଙ୍କ ତେଜରୁ ସମ୍ଭୂତ ଅଟନ୍ତି । ରତି ଆପଣଙ୍କର କ୍ରୀଡ଼ାମୟୀ ଲୀଳା, ଏବଂ ଦ୍ୟୁଲୋକ ଓ ଭୂର୍ଲୋକ ଆପଣଙ୍କର ମାୟା । ୯ । ସ୍ଥାବର ଓ ଜଙ୍ଗମ ସହ ଏହି ସମସ୍ତ ବିଶ୍ୱ ଆପଣଙ୍କ ଠାରେ ପ୍ରତିଷ୍ଠିତ ହୋଇଅଛନ୍ତି । ଆପଣ ସମସ୍ତ ଭୂତଗଣଙ୍କୁ ସର୍ବପ୍ରକାର ବିଭକ୍ତ କରିଅଛନ୍ତି । ୧୦ ।

ହେ ମଧୁସୂଦନ ! ପୃଥିବୀ, ଅନ୍ତରୀକ୍ଷ, ସ୍ୱର୍ଗ, ନିର୍ମଳ ଜ୍ୟୋତ୍ସ୍ନା ଆପଣଙ୍କର ହାସ୍ୟ, ଛଅ ଋତୁ ଆପଣଙ୍କର ଇନ୍ଦ୍ରିୟ । ହେ ମହାମତେ ! ସତତ ଗମନଶୀଳ ବାୟୁ ଆପଣଙ୍କର ପ୍ରାଣ, ସନାତନ ମୃତ୍ୟୁ ଆପଣଙ୍କର କ୍ରୋଧ, ପଦ୍ମାଳୟା ଲକ୍ଷ୍ମୀ ସର୍ବଦା ଆପଣଙ୍କଠାରେ ବିଦ୍ୟମାନ ଥାଆନ୍ତି ।୧୨। ହେ ଅନଘ ! ରତି, ତୁଷ୍ଟି, ଧୃତି, କ୍ଷାନ୍ତି, ମତି, କାନ୍ତି ଓ ଚରାଚର ବିଶ୍ୱ ଆପଣଙ୍କଠାରେ ପ୍ରତିଷ୍ଠିତ ହୋଇ ରହିଅଛନ୍ତି । କଳ୍ପାନ୍ତକାଳରେ ଆପଣ ନିଧନ ବୋଲି ଅଭିହିତ ହୁଅନ୍ତି । ୧୩ ।

ହେ ନଳିନନେତ୍ର ! ଆମ୍ଭେ ଅନନ୍ତକାଳରେ ଆପଣଙ୍କର ଗୁଣଗ୍ରହଣ କରିବାକୁ ସମର୍ଥ ହେବୁଁ ନାହିଁ । ଆପଣ ଆତ୍ମା, ଆପଣ ପରମାତ୍ମା । ଅତଏବ ଆପଣଙ୍କୁ ନମସ୍କାର ।

ହେ ଦୁର୍ଦ୍ଧର୍ଷ ! ଆମ୍ଭେ ନାରଦ, ଦେବଲ, କୃଷ୍ଣଦ୍ୱୈପାୟନ ଏବଂ କୁରୁପିତାମହ ଭୀଷ୍ମ ଏମାନଙ୍କଠାରୁ ଆପଣଙ୍କୁ ବିଦିତ ହୋଇଅଛୁଁ । ୧୫ । ଆପଣଙ୍କଠାରେ ସମସ୍ତ ସମାସକ୍ତ ହୋଇଅଛି । ଆପଣ

Digitized by srujanika@gmail.com

ଏକମାତ୍ର ଜନେଶ୍ୱର । ହେ ଅନଘ ! ଆପଣ ଅନୁଗ୍ରହପୂର୍ବକ ଯେଉଁ ସମସ୍ତ ବିଷୟ ଆମ୍ଭଙ୍କୁ କହିଲେ, ଆମ୍ଭେ ତାହାସବୁ ସମ୍ୟକ୍ ରୂପେ ଆଚରଣ କରିବୁଁ ।

ହେ ଜନାର୍ଦ୍ଦନ ! ଆପଣ ଆମ୍ଭର ହିତୈଷୀ ହୋଇ ଅତ୍ୟନ୍ତ ଅଦ୍ଭୁତ କର୍ମ କରିଅଛନ୍ତି । ୧୭ । ଧୃତରାଷ୍ଟ୍ରଙ୍କ ପୁତ୍ର ପାପାତ୍ମା ଦୁର୍ଯ୍ୟୋଧନ ଯେଉଁ ଯୁଦ୍ଧରେ ନିହତ ହୋଇଅଛନ୍ତି, ଆପଣ ତାହାଙ୍କ ସୈନ୍ୟ ଦଗ୍ଧ କରିଅଛନ୍ତି, ଆମ୍ଭେ ଯୁଦ୍ଧରେ ଜୟଲାଭ କରିଅଛୁଁ । ୧୮ । ଆପଣଙ୍କ ବୁଦ୍ଧି ଏବଂ ପରାକ୍ରମଦ୍ୱାରା ଦୁର୍ଯ୍ୟୋଧନଙ୍କ ଯୁଦ୍ଧରେ ଆମ୍ଭେ ଯେ ଜୟପ୍ରାପ୍ତ ହୋଇଅଛୁଁ, ଏହି ସମସ୍ତ କର୍ମ ଆପଣଙ୍କଦ୍ୱାରା ସମ୍ପାଦିତ ହୋଇଅଛି । ୧୯ । କର୍ଣ୍ଣ, ପାପାତ୍ମା ସିନ୍ଧୁରାଜ ଜୟଦ୍ରଥ ଏବଂ ଭୂରିଶ୍ରବାଙ୍କ ବଧୋପାୟ ଆପଣଙ୍କଦ୍ୱାରା ପ୍ରଦର୍ଶିତ ହୋଇଅଛି । ୨୦ ।

ହେ ଦେବକୀନନ୍ଦନ ! ଆପଣ ପ୍ରୀତଚିତ୍ତରେ ଆମ୍ଭଙ୍କୁ ଯାହା କହିଲେ, ଆମ୍ଭେ ତାହା କରିବୁଁ । ଏହି ବିଷୟରେ ଆମ୍ଭର ଆଉ କିଛିମାତ୍ର ବିଚାରଣା ନାହିଁ । ୨୧ ।

ହେ ଅନଘ ! ଆମ୍ଭେ ଧର୍ମାତ୍ମା ରାଜା ଯୁଧିଷ୍ଠିରଙ୍କ ନିକଟକୁ ଗମନ କରି ଆପଣଙ୍କ ଗମନ ନିମିତ୍ତ ତାହାଙ୍କୁ ନିବେଦନ କରିବୁଁ । ୨୨ । ହେ ପ୍ରଭୋ ! ଆପଣଙ୍କର ଦ୍ୱାରକାଗମନ ବିଷୟରେ ଆମ୍ଭର ଅଭିଳାଷ ଅଛି । ହେ ଜନାର୍ଦ୍ଦନ ! ଆପଣ ଶୀଘ୍ର ସେହି ମହାପ୍ରୀ ମାତୁଳ ବସୁଦେବ, ଦୁର୍ଦ୍ଧର୍ଷ ବଳଦେବ ଓ ଅନ୍ୟାନ୍ୟ ବୃଷ୍ଣିପୁଙ୍ଗବମାନଙ୍କୁ ଦର୍ଶନ କରିବେ ।

ତଦନନ୍ତର ସେହି କୃଷ୍ଣ ଓ ଅର୍ଜ୍ଜୁନ ଉଭୟେ ଏହିପରି କଥୋପକଥନ କରି ହସ୍ତିନାପୁର ପ୍ରାପ୍ତହୋଇ ପ୍ରହୃଷ୍ଟ ଜନସମୂହସମାକୁଳ ସେହି ପୁର ମଧ୍ୟରେ ପ୍ରବିଷ୍ଟ ହେଲେ ।

ହେ ମହାରାଜ ! ବାସୁଦେବ ଓ ଅର୍ଜ୍ଜୁନ ଶକ୍ରସଦନ ସମ ଧୃତରାଷ୍ଟ୍ରଙ୍କ ଗୃହକୁ ଗମନ କରି ନରପତି ଧୃତରାଷ୍ଟ୍ର, ମହାବୁଦ୍ଧି ବିଦୁର, ରାଜା ଯୁଧିଷ୍ଠିର, ଦୁର୍ଦ୍ଧର୍ଷ ଭୀମ, ମାଦ୍ରୀସୁତ ନକୁଳ ସହଦେବ, ଧୃତରାଷ୍ଟ୍ରଙ୍କ ସମୀପରେ ଆସୀନ ଅପରାଜିତ ଯୁଯୁତ୍ସୁ, ମହାପ୍ରାଜ୍ଞା ଗାନ୍ଧାରୀ, ପୃଥା, ଭାମିନୀ

Digitized by srujanika@gmail.com

ଦ୍ରୌପଦୀ, ସୁଭଦ୍ରା ପ୍ରଭୃତି ଭରତକୁଳର ସ୍ତ୍ରୀଗଣ ଏବଂ ଗାନ୍ଧାରୀଙ୍କ ପରିଚାରିକା ସ୍ତ୍ରୀବୃନ୍ଦଙ୍କୁ ଦର୍ଶନ କଲେ ।

ତଦନନ୍ତର ଅରିନ୍ଦମ ବାସୁଦେବ ଓ ଅର୍ଜ୍ଜୁନ ଉଭୟେ ସମବେତ ହୋଇ ରାଜା ଧୃତରାଷ୍ଟ୍ରଙ୍କ ନିକଟରେ ନିଜ ନିଜ ନାମ ନିବେଦନ କରି ତାଙ୍କର ପାଦଦ୍ୱୟ ଗ୍ରହଣ କଲେ । ତଦନନ୍ତର ଗାନ୍ଧାରୀ ପୃଥା ଧର୍ମରାଜ ଯୁଧିଷ୍ଠିର ଏବଂ ଭୀମଙ୍କ ପାଦଦ୍ୱୟ ଗ୍ରହଣ କଲେ । ତଦନନ୍ତର ସେହି ମହାତ୍ମା ଦୁହେଁ କ୍ଷତ୍ତା ବିଦୁରଙ୍କୁ ଆଲିଙ୍ଗନ କରି କୁଶଳପ୍ରଶ୍ନ କରି, ସେମାନଙ୍କ ସହିତ ବୃଦ୍ଧ ନୃପତି ଧୃତରାଷ୍ଟ୍ରଙ୍କୁ ଉପାସନା କଲେ । ତଦନନ୍ତର ମହାରାଜ ମେଧାବୀ ଧୃତରାଷ୍ଟ୍ର ରାତିରେ ଯୁଧିଷ୍ଠିର ପ୍ରଭୃତି କୁରୁପୁଙ୍ଗବମାନଙ୍କୁ ଏବଂ ଜନାର୍ଦ୍ଦନ କୃଷ୍ଣଙ୍କୁ ଶୟନାର୍ଥ ଗୃହସବୁ ବିଭାଗକରି ଦେଲେ ।

ସେମାନେ ଧୃତରାଷ୍ଟ୍ର ନୃପତିକର୍ତ୍ତୃକ ଶୟନ ନିମିତ୍ତ ଆଦିଷ୍ଟ ହୋଇ ନିଜ ନିଜ ନିକେତନକୁ ଗମନ କଲେ । ୩୩ । କିନ୍ତୁ ବୀର୍ଯ୍ୟବାନ୍ କୃଷ୍ଣ ଧନଞ୍ଜୟଙ୍କ ଗୃହକୁ ଗମନ କଲେ । ଧନଞ୍ଜୟ ସହାୟବାନ୍ ମେଧାବୀ କୃଷ୍ଣ ଧନଞ୍ଜୟଙ୍କ ଗୃହରେ ସର୍ବବିଧ କାମଦ୍ୱାରା ଯଥାବିଧି ଅର୍ଚ୍ଚିତ ହୋଇ ସେଠାରେ ଶୟନ କଲେ ।

ରାତି ପ୍ରଭାତ ହେବାରୁ କୃଷ୍ଣ ଓ ଅର୍ଜ୍ଜୁନ ପ୍ରାତଃକୃତ୍ୟ ସମାଧାନ କରି ଅର୍ଚ୍ଚିତ ହୋଇ ଯେଉଁ ସ୍ଥାନରେ ମହାବଳ ଧର୍ମରାଜ ଅମାତ୍ୟସହ ଅବସ୍ଥାନ କରନ୍ତି, ସେହି ଭବନରେ ଉପନୀତ ହେଲେ । ୩୬ । ମହାତ୍ମା କୃଷ୍ଣ ଓ ଅର୍ଜ୍ଜୁନ ଧର୍ମରାଜଙ୍କର ଅତି ସୁଶୋଭିତ ଗୃହରେ ପ୍ରବେଶ କରି ଅଶ୍ୱିନୀକୁମାର ଯୁଗଳ ଇନ୍ଦ୍ରଙ୍କୁ ଦର୍ଶନ କଲାପରି ତାହାଙ୍କୁ ଦର୍ଶନ କଲେ । ୩୭ ।

ବୃଷ୍ଣିନନ୍ଦନ କୁରୁପୁଙ୍ଗବ କୃଷ୍ଣ ଅର୍ଜ୍ଜୁନ ଦୁହେଁ ରାଜା ଯୁଧିଷ୍ଠିରଙ୍କ ନିକଟକୁ ଗମନ କରି ପ୍ରୀତଚିତ୍ତ ରାଜା ଯୁଧିଷ୍ଠିରଙ୍କଦ୍ୱାରା ଅନୁଜ୍ଞାତ ହୋଇ ଉପବେଶନ କଲେ । ତଦନନ୍ତର ବାଗ୍ମିବର ମେଧାବୀ ରାଜଶ୍ରେଷ୍ଠ ଯୁଧିଷ୍ଠିର ଭାଷଣୋନ୍ମୁଖ କୃଷ୍ଣାର୍ଜ୍ଜୁନ ଉଭୟଙ୍କୁ ଅବଲୋକନ କରି କହିଲେ । ୩୯ ।

ଯୁଧିଷ୍ଠିର କହିଲେ—ହେ ବୀରବର ! ଯଦୁକୁରୂଦ୍‌ବହ ! କୃଷ୍ଣାର୍ଜ୍ଜୁନ ! ତୁମ୍ଭେ ଦୁହେଁ ଆମ୍ଭଙ୍କୁ କିଛି କହିବ, ଏହିପରି ମନେ କରୁଅଛ । ଅତଏବ

Digitized by srujanika@gmail.com

ତୁମ୍ଭ ଦୁହିଙ୍କର କର୍ତ୍ତବ୍ୟ ବିଷୟ କିଛି ବିଗୃର ନକରି ଶୀଘ୍ର କହ । ତୁମ୍ଭେ ଦୁହେଁ ଯାହା କହିବ, ଆମ୍ଭେ ତାହା କରିବୁଁ, ଆମ୍ଭେ ଏହି ବ୍ରତ କରିଅଛୁଁ ।୪୦।

ବାକ୍ୟବିଶାରଦ ଫାଲ୍‌ଗୁନ ଅର୍ଜ୍ଜୁନ ଧର୍ମରାଜଙ୍କର ଏହି ବାକ୍ୟ ଶ୍ରବଣ କରି ବିମୀତଭାବରେ ତାହାଙ୍କ ନିକଟକୁ ଗମନପୂର୍ବକ ତାହାଙ୍କୁ କହିଲେ—ହେ ରାଜନ୍ ! ପ୍ରତାପବାନ୍ ବାସୁଦେବ ବହୁକାଳ ହେଲା ଦ୍ୱାରକାରୁ ଆସିଅଛନ୍ତି । ଆପଣଙ୍କର ଅନୁମତି ହେଲେ, ସମ୍ପ୍ରତି ପିତାମାତାଙ୍କୁ ଦର୍ଶନ କରିବା ନିମିତ୍ତ ଦ୍ୱାରକାକୁ ଗମନ କରିବା ବିଷୟରେ ଅଭିଳାଷୀ ହୋଇ ଅଛନ୍ତି । ୪୨ । ହେ ବୀର ! ଆପଣ ଯଦି ସମ୍ମତ ହୋଇ ଏହାଙ୍କୁ ଆଦେଶ କରିବେ, ତେବେ ଏ ଆନର୍ତ୍ତ ନଗରୀକୁ ଗମନ କରିବେ । ଅତଏବ ଆପଣ ଅନୁମତି ପ୍ରଦାନ କରିବା ହେଉନ୍ତୁ । ୪୩ ।

ଯୁଧିଷ୍ଠିର କହିଲେ—ହେ ପୁଣ୍ଡରୀକାକ୍ଷ ! ମଧୁସୂଦନ ! ପ୍ରଭୋ ! ତୁମ୍ଭର ମଙ୍ଗଳ ହେଉ । ତୁମ୍ଭେ ଆଜି ଶୂରସୁତ ବସୁଦେବଙ୍କୁ ଦର୍ଶନ କରିବା ନିମିତ୍ତ ଦ୍ୱାରକା ନଗରୀକୁ ଗମନ କର । ୪୪ ।

ହେ ମହାବାହୋ ! କେଶବ ! ତୁମ୍ଭେ ମଦୀୟ ମାତୁଳ ବସୁଦେବ ଏବଂ ଦେବୀ ଦେବକୀଙ୍କୁ ବହୁକାଳ ହେଲା ଦର୍ଶନ କରିନାହଁ ବୋଲି ତୁମ୍ଭର ଗମନ ବିଷୟରେ ଆମ୍ଭର ଅଭିରୁଚି ହେଉଅଛି । ୪୫ । ହେ ମହାପ୍ରାଜ୍ଞ ! ମାନଦ ! ତୁମ୍ଭେ ମଦୀୟ ମାତୁଳ ବସୁଦେବ ଏବଂ ବଳଦେବଙ୍କ ନିକଟକୁ ଗମନ କରି ସେମାନଙ୍କୁ ଯଥାଯୋଗ୍ୟ ପୂଜା କରିବ । ହେ ମାନଦ ! ତୁମ୍ଭେ ନିତ୍ୟ ଆମ୍ଭଙ୍କୁ ଏବଂ ବଳିଷ୍ଠଶ୍ରେଷ୍ଠ ଭୀମ, ଫାଲ୍‌ଗୁନ ଅର୍ଜ୍ଜୁନ, ସହଦେବ ଓ ନକୁଳଙ୍କୁ ସ୍ମରଣ କରୁଥିବ । ୪୭ । ହେ ମହାଭୁଜ ! ତୁମ୍ଭେ ଆନର୍ତ୍ତ ନଗରବାସୀ ପ୍ରଜାଗଣ, ପିତା ବସୁଦେବ ଏବଂ ବୃଷ୍ଣିବଂଶୀୟମାନଙ୍କୁ ଅବଲୋକନ କରି ଆମ୍ଭର ଅଶ୍ୱମେଧ ଯଜ୍ଞରେ ପୁନଶ୍ଚ ପ୍ରବେଶ କରିବ । ୪୮ । ହେ ଶାଶ୍ୱତ ! ବିବିଧ ରତ୍ନ, ଧନ ଓ ଅନ୍ୟାନ୍ୟ ଯେଉଁସବୁ ପଦାର୍ଥରେ ତୁମ୍ଭର ରୁଚି ହୁଏ, ତୁମ୍ଭେ ତାହାସବୁ ଗ୍ରହଣ କରି ଗମନ କର । ୪୯ ।

ହେ ବୀର ! କେଶବ ! ତୁମ୍ଭର ଅନୁଗ୍ରହ ହେତୁରୁ ଏହି ସସାଗରା ବସୁନ୍ଧରା ଆମ୍ଭମାନଙ୍କର ହସ୍ତଗତ ହୋଇଅଛି । ଏବଂ ଶତ୍ରୁସମୂହ ହତ

Digitized by srujanika@gmail.com

ହୋଇଅଛନ୍ତି । ୫୦ । କୌରବ୍ୟ ଧର୍ମରାଜ ଯୁଧିଷ୍ଠିର ଏହିପରି କହିବାରୁ ପୁରୁଷପ୍ରବର ବାସୁଦେବ ଏହିପରି କହିଲେ । ୫୧ ।

ବାସୁଦେବ କହିଲେ—ହେ ମହାଭୁଜ ! ଏହି ପୃଥିବୀ, ରତ୍ନ ଏବଂ ଧନ-ସମୂହ ତୁମ୍ଭର ଅଟେ । ଆମ୍ଭ ଗୃହରେ ଯେଉଁସବୁ ଅନ୍ୟାନ୍ୟ ଧନ ଅଛି, ତୁମ୍ଭେ ସେହି ସବୁ ଧନର ସ୍ୱାମୀ ଅଟ ।

ତଦନନ୍ତର ବଳବାନ୍ ଗଦାଗ୍ରଜ ବାସୁଦେବ ଧର୍ମସୁତ ରାଜା ଯୁଧିଷ୍ଠିର-କର୍ତ୍ତୃକ ପ୍ରତିପୂଜିତ ଏବଂ ତଦ୍‌ବତ୍ ତପାସୁ ବାକ୍ୟ ଶ୍ରବଣ କରି ପିତୃଷ୍ୱସା କୁନ୍ତୀଙ୍କୁ ଯଥାବିଧି ପ୍ରଦକ୍ଷିଣ କରି, ତାହାଙ୍କୁ କହି, ସମ୍ୟକ୍‌ରୂପେ ସମ୍ମାନିତ ହୋଇ ଗମନ କଲେ । ୫୩ ।

ତଦନନ୍ତର ଚତୁର୍ଭୁଜ ଗଦାଗ୍ରଜ କୃଷ୍ଣ କୁନ୍ତୀ ଓ ବିଦୁର ପ୍ରଭୃତି ନରଗଣକର୍ତ୍ତୃକ ପ୍ରତିନନ୍ଦିତ ହୋଇ ଦିବ୍ୟରଥରେ ଆରୋହଣ କଲେ ଓ ହସ୍ତିନାପୁରରୁ ବିନିର୍ଗତ ହେଲେ । ୫୪ ।

ମହାଭୁଜ ଜନାର୍ଦ୍ଦନ ଯୁଧିଷ୍ଠିର ଓ ପିତୃଷ୍ୱସା କୁନ୍ତୀଙ୍କ ଅନୁମତି ଅନୁସାରେ ଭଗିନୀ ସୁଭଦ୍ରାଙ୍କୁ ରଥରେ ଆରୋହଣ କରାଇ ପୌରଜନ ସମୂହରେ ସମାବୃତ ହୋଇ ହସ୍ତିନାପୁରରୁ ବିନିର୍ଗତ ହେଲେ । ୫୫ ।

କପିଧ୍ୱଜ, ସାତ୍ୟକି, ମାଦ୍ରୀପୁତ୍ର ନକୁଳ ସହଦେବ, ଅଗାଧବୁଦ୍ଧି ବିଦୁର ଏବଂ ଗଜରାଜବିକ୍ରମ ଭୀମ ସେହି ମାଧବଙ୍କର ଅନୁଗାମୀ ହେଲେ । ୫୭ । ତଦନନ୍ତର ଜନାର୍ଦ୍ଦନ କୁରୁରାଷ୍ଟ୍ରବର୍ଦ୍ଧନ ଭୀମ ପ୍ରଭୃତି ଏବଂ ବିଦୁରଙ୍କୁ ନିବର୍ତ୍ତିତ କରି ଦାରୁକ ଓ ସାତ୍ୟକିଙ୍କୁ ଶୀଘ୍ର ଅଶ୍ୱଚାଳନ ନିମିତ୍ତ ଆଦେଶ ଦେଲେ । ୫୮ ।

ଅନନ୍ତର ଇନ୍ଦ୍ର ଯେଉଁପରି ଅରିକୁଳ ନିଧନ କରି ସ୍ୱର୍ଗପୁରଗାମୀ ହୁଅନ୍ତି, ତଦ୍‌ବତ୍ ଅରିଗଣପ୍ରମର୍ଦ୍ଦନ ପ୍ରତାପଶାଳୀ ଜନାର୍ଦ୍ଦନ ଶିନିପ୍ରବୀର ସାତ୍ୟକିଙ୍କ ସହିତ ଶତ୍ରୁକୁଳ ସଂହାର କରି ଆନର୍ତ୍ତପୁରୀକୁ ଗମନ କଲେ । ୫୯ ।

---

Digitized by srujanika@gmail.com

# ତ୍ରିପଞ୍ଚାଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ବୃଷ୍ଣିକୁଳନନ୍ଦନ କୃଷ୍ଣ ଦ୍ୱାରକାକୁ ଗମନ କରୁଥିବା ସମୟରେ ପରନ୍ତପ ଭରତଶ୍ରେଷ୍ଠ ଅନୁଯାତ୍ରିକଗଣ ତାହାଙ୍କୁ ଆଲିଙ୍ଗନ କରି ତାହାଙ୍କ ନିକଟରୁ ନିବୃତ୍ତ ହେଲେ । ୧ ।

ଫାଲ୍‌ଗୁନ ଅର୍ଜ୍ଜୁନ ବୃଷ୍ଣିବଂଶସମ୍ଭୂତ କୃଷ୍ଣଙ୍କୁ ବାରମ୍ବାର ଆଲିଙ୍ଗନ କଲେ । ଯାବତ୍‌କାଳ ନୟନପଥରୁ ଅନ୍ତର୍ହିତ ନହେଲେ ପର୍ଯ୍ୟନ୍ତ ବାରମ୍ବାର ତାହାଙ୍କୁ ଦେଖୁଥିଲେ । ତଦନନ୍ତର ପାର୍ଥ ଗୋବିନ୍ଦଙ୍କଠାରେ ବିନିବେଶିତ ସେହି ଦୃଷ୍ଟିକୁ ଅତିକଷ୍ଟରେ ସଂହାର କଲେ, ଏବଂ ଅପରାଜିତ କୃଷ୍ଣ ମଧ୍ୟ ଅତିକଷ୍ଟରେ ଦୃଷ୍ଟି ସଂହାର କଲେ । ୩ ।

ମହାତ୍ମା କୃଷ୍ଣଙ୍କ ଗମନ ସମୟରେ ଯେଉଁ ସମସ୍ତ ଅଦ୍ଭୁତ ନିମିତ୍ତ ଉତ୍‌ଥିତ ହୋଇଥିଲା, ସେହି ସମସ୍ତ ବିଷୟ ଆମ୍ଭେ କହୁଅଛୁଁ, ତୁମ୍ଭେ ଶ୍ରବଣ କର । ୪ । ବାୟୁ ରଥର ଅଗ୍ରଭାଗରେ ମାର୍ଗକୁ ଶର୍କରା ଧୂଳି ଏବଂ କଣ୍ଟକ-ବିହୀନ କରି ମହାବେଗରେ ପ୍ରଧାବିତ ହେଲା ।

ଇନ୍ଦ୍ର ଶାର୍ଙ୍ଗଧନ୍ୱା କୃଷ୍ଣଙ୍କ ରଥର ଅଗ୍ରଭାଗରେ ସୁଗନ୍ଧ ସୁଶୀତଳ ସଲିଳ ଏବଂ ଦିବ୍ୟ ପୁଷ୍ପସମୂହ ବର୍ଷଣ କଲେ । ଅନନ୍ତର ମହାବାହୁ କୃଷ୍ଣ ସମତଳ ମରୁଭୂମିରେ ଗମନ କରି ଅମିତତେଜା ମୁନିଶ୍ରେଷ୍ଠ ଉତ୍ତଙ୍କଙ୍କୁ ଦର୍ଶନ କଲେ । ୭ । ବିଶାଳଲୋଚନ ତେଜସ୍ୱୀ କୃଷ୍ଣ ମୁନିଙ୍କୁ ପୂଜାକରି କୁଶଳବାର୍ତ୍ତା ପ୍ରଶ୍ନକଲେ । ବ୍ରାହ୍ମଣଶ୍ରେଷ୍ଠ ଉତ୍ତଙ୍କ କୃଷ୍ଣକର୍ତ୍ତୃକ କୁଶଳ ଜିଜ୍ଞାସିତ ହୋଇ ମାଧବଙ୍କୁ ପୂଜାକରି ପଚାରିଲେ—ହେ ଶୌରେ ! ଆପଣ କୁରୁ ଏବଂ ପାଣ୍ଡବ-ମାନଙ୍କ ଗୃହକୁ ଗମନ କରି ଯେଉଁ ଅଚଳ ସୌଭ୍ରାତ୍ର କରିଅଛନ୍ତି, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧୦ ।

ହେ ବୃଷ୍ଣିପୁଙ୍ଗବ କେଶବ ! ଆପଣ ଆପଣଙ୍କର ସନ୍ତତପ୍ରିୟ ସମ୍ବନ୍ଧ ସେହି ବୀରମାନଙ୍କୁ ଏକତ୍ରିତ କରି ଆସି ଅଛନ୍ତି ତ ? ହେ ପରନ୍ତପ ! ପଞ୍ଚ ପାଣ୍ଡୁସୁତ ଓ ଧୃତରାଷ୍ଟ୍ରଙ୍କ ପୁତ୍ରଗଣ ଆପଣଙ୍କ ସହିତ ଲୋକ ମଧ୍ୟରେ ବିହାର କରିବେ ତ ? ହେ କେଶବ ! ଆପଣ ପ୍ରଭୁ ହୋଇ କୌରବକୁଳକୁ ସାନ୍ତ୍ୱନା

Digitized by srujanika@gmail.com

କରିବାରୁ ରାଜଗଣ ପ୍ରୀତ ରାଷ୍ଟ୍ର ମଧ୍ୟରେ ସୁଖଭୋଗ କରିବେ ତ ? ହେ ତାତ ! ଆପଣଙ୍କଠାରେ ଆମ୍ଭର ଯେଉଁ ସମ୍ଭାବନା ନିତ୍ୟ ଅବସ୍ଥାନ କରେ, ଆପଣ ଭରତକୁଳ ପ୍ରତି ତାହାସବୁ କରିଅଛନ୍ତି ତ ? ୧୪ ।

ଭଗବାନ୍ କହିଲେ—ଆମ୍ଭେ ପୂର୍ବେ କୌରବମାନଙ୍କର ପାଣ୍ଡବମାନଙ୍କ ସହିତ ସନ୍ଧି ସ୍ଥାପନ ନିମିତ୍ତ ବିଶେଷ ଯତ୍ନବାନ୍ ହୋଇଥିଲୁଁ । ଯେଉଁ କାରଣରୁ ସେମାନେ ଶାନ୍ତି ଅବଲମ୍ବନ କରିବାକୁ ସମର୍ଥ ନହେଲେ, ସେହି ହେତୁରୁ ସେମାନେ ସୁତ ଓ ବାନ୍ଧବବର୍ଗଙ୍କ ସହିତ ନିଧନପ୍ରାପ୍ତ ହେଲେ । କୌଣସି ବ୍ୟକ୍ତି ବଳ ଅବା ବୁଦ୍ଧିଦ୍ୱାରା ଦୈବଙ୍କୁ ଅତିକ୍ରମ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୧୭ ।

ହେ ଅନଘ ! ମହର୍ଷେ ! ସେହି କୌରବଗଣ ଭୀଷ୍ମଙ୍କର, ବିଦୁରଙ୍କର ଏବଂ ଆମ୍ଭର ମତ ଯେ ଅତିକ୍ରମ କରିଥିଲେ, ତାହା ଆପଣ ବିଦିତ ହୋଇ ଅଛନ୍ତି । ସେହି କାରଣରୁ ସେମାନେ ପରସ୍ପର ମିଳିତ ହୋଇ ଯମାଳୟକୁ ଗମନ କରିଅଛନ୍ତି । ହତମିତ୍ର ହତପୁତ୍ର ପଞ୍ଚପାଣ୍ଡବ କେବଳ ଅବଶିଷ୍ଟ ଅଛନ୍ତି । ୧୮ । ଏବଂ ଧୃତରାଷ୍ଟ୍ରଙ୍କର ପୁତ୍ରଗଣ ସୁତ ଓ ବାନ୍ଧବବର୍ଗ ସହିତ ନିହତ ହୋଇଅଛନ୍ତି ।

କୃଷ୍ଣ ଏହିପ୍ରକାର କହିବାରୁ ଉତ୍ତଙ୍କ ଅତିଶୟ କ୍ରୁଦ୍ଧ ହୋଇ ରୋଷ-ବଶତଃ ଉତ୍‌ଫୁଲ୍ଲଲୋଚନରେ କୃଷ୍ଣଙ୍କୁ କହିଲେ । ୧୯ ।

ଉତ୍ତଙ୍କ କହିଲେ—ହେ କୃଷ୍ଣ ! ତୁମ୍ଭେ ପରିତ୍ରାଣ ବିଷୟରେ ସମର୍ଥ ହୋଇ ଯଦି ସେହି ପ୍ରିୟ ସମ୍ବନ୍ଧି କୁରୁପୁଙ୍ଗବମାନଙ୍କୁ ପରିତ୍ରାଣ କରିନାହିଁ, ସେହି କାରଣରୁ ଆମ୍ଭେ ତୁମ୍ଭଙ୍କୁ ନିଶ୍ଚୟ ଶାପ ପ୍ରଦାନ କରିବୁଁ । ୨୦ । ହେ ମଧୁସୂଦନ ! ଯେଉଁ କାରଣରୁ ତୁମ୍ଭେ ତତ୍‌କ୍ଷଣାତ୍ ସେମାନଙ୍କୁ ନିଗ୍ରହ ପୂର୍ବକ ନିବାରିତ କଲନାହିଁ, ତନ୍ନିମିତ୍ତ ଆମ୍ଭେ ମନ୍ୟୁସମନ୍ୱିତ ହୋଇ ତୁମ୍ଭଙ୍କୁ ଶାପ ପ୍ରଦାନ କରିବୁଁ । ୨୧ । ହେ ମାଧବ ! ତୁମ୍ଭେ ସମର୍ଥ ହୋଇ ମିଥ୍ୟାଚରଣ କରିବାରୁ ସେହି କୁରୁପୁଙ୍ଗବଗଣ ଉପେକ୍ଷିତ ହୋଇ ବିନଷ୍ଟ ହୋଇଅଛନ୍ତି । ୨୨ ।

Digitized by srujanika@gmail.com

ବାସୁଦେବ କହିଲେ—ହେ ଭୃଗୁନନ୍ଦନ ! ଭାର୍ଗବ ! ଆମ୍ଭେ ବିସ୍ତାର ପୂର୍ବକ ଯାହା କହୁଅଛୁଁ, ତାହା ଶ୍ରବଣ କର । ତୁମ୍ଭେ ତପସ୍ୱୀ ବୋଲି ଆମ୍ଭେ ତୁମ୍ଭଙ୍କୁ ଯେଉଁ ଅନୁନୟ କରୁଅଛୁଁ, ତାହା ଶ୍ରବଣ କର । ଆମ୍ଭେ ଯେଉଁ ଅଧ୍ୟାତ୍ମ ବିଷୟ କହୁଅଛୁଁ, ତାହା ଶ୍ରବଣ କର ତତ୍ପରେ ଶାପମୋଚନ କର । କୌଣସି ପୁରୁଷ ଅଳ୍ପ ତପସ୍ୟାଦ୍ୱାରା ଆମ୍ଭଙ୍କୁ ଅଭିଭବ କରିବାକୁ ସମର୍ଥ ହୁଅନ୍ତି ନାହିଁ ।

ହେ ତପସ୍ୱିବର ! ଆମ୍ଭେ ତୁମ୍ଭର ତପସ୍ୟା ନାଶ ବିଷୟରେ ଇଚ୍ଛା କରୁନାହୁଁ । କାରଣ, ତୁମ୍ଭେ ଅନେକ କଷ୍ଟରେ ସେହି ସୁମହତ୍ ପବିତ୍ର ତପସ୍ୟା ଉପାର୍ଜନ କରିଅଛ ଏବଂ ଗୁରୁଗଣଙ୍କୁ ସନ୍ତୁଷ୍ଟ କରିଅଛ । ୨୫ ।

ହେ ଦ୍ୱିଜସତ୍ତମ ! ଆମ୍ଭେ ତୁମ୍ଭର କୌମାର ବ୍ରହ୍ମଚର୍ଯ୍ୟ ବିଶେଷରୂପେ ବିଦିତ ହୋଇଅଛୁଁ । ତୁମ୍ଭେ ଅଧିକ ଦୁଃଖ ସହ୍ୟକରି ଯେଉଁ ତପସ୍ୟା ଉପାର୍ଜନ କରିଅଛ, ତାହା ଆମ୍ଭେ ନଷ୍ଟ କରିବାକୁ ଅଭିଳାଷୀ ହେଉନାହୁଁ । ୨୬ ।

—0—

## ଚତୁଃପଞ୍ଚାଶତ୍ତମ ଅଧ୍ୟାୟ

ଉତଙ୍କ କହିଲେ—ହେ କେଶବ ! ଆପଣ ଆମ୍ଭମାନଙ୍କୁ ଅନିନ୍ଦିତ ଅଧ୍ୟାତ୍ମ ବିଷୟ ଯଥାଯଥରୂପେ କହିବା ହେଉନ୍ତୁ । ହେ ଜନାର୍ଦ୍ଦନ ! ସେହି ଅଧ୍ୟାତ୍ମ ବିଷୟ ଶ୍ରବଣ କରି ଆମ୍ଭେ ତୁମ୍ଭର ମଙ୍ଗଳବିଧାନ କରିବୁଁ ଅଥବା ତୁମ୍ଭଙ୍କୁ ଅଭିଶାପ ପ୍ରଦାନ କରିବୁଁ ।

ବାସୁଦେବ କହିଲେ—ହେ ଦ୍ୱିଜ ! ଆପଣ ଜାଣିବା ହେଉନ୍ତୁ । ସତ୍ତ୍ୱ, ରଜ ଓ ତମ ଏହି ତିନିଗୋଟି ଭାବ ଆମ୍ଭଙ୍କୁ ଆଶ୍ରୟ କରି ରହିଅଛନ୍ତି । ଏବଂ ରୁଦ୍ର ଓ ବସୁମାନଙ୍କୁ ମତ୍ସମ୍ଭୂତ ବୋଲି ଜ୍ଞାନ କର । ୨ । ଆମ୍ଭେ ସର୍ବଭୂତରେ ବିଦ୍ୟମାନ ଅଛୁଁ, ଏବଂ ଆମ୍ଭଠାରେ ସମସ୍ତ ଭୂତଗଣ ବିଦ୍ୟମାନ ଅଛନ୍ତି ବୋଲି ଜାଣିବା ହେଉନ୍ତୁ । ଏହି ବିଷୟରେ ଆପଣଙ୍କର ସଂଶୟ ନହେଉ ।୩।

Digitized by srujanika@gmail.com

ହେ ଦ୍ୱିଜ ! ଦୈତ୍ୟ, ଯକ୍ଷ, ଗନ୍ଧର୍ବ, ରାକ୍ଷସ, ନାଗ ଓ ଅପ୍ସରାଗଣ ମତ୍‌ସମ୍ଭୂତ ବୋଲି ଜାଣିବା ହେଉନ୍ତୁ । ୪ । ପଣ୍ଡିତଗଣ ଯାହାଙ୍କୁ ସତ୍, ଅସତ୍, ବ୍ୟକ୍ତ, ଅବ୍ୟକ୍ତ, କ୍ଷର ଓ ଅକ୍ଷର ବୋଲି କହନ୍ତି, ସେସବୁ ମଦାତ୍ମକ ବୋଲି ଜାଣନ୍ତୁ । ୫ ।

ହେ ମୁନେ ! ଚାରି ଆଶ୍ରମରେ ଯେଉଁ ଚାରିଗୋଟି ଧର୍ମ ଏବଂ ବୈଦିକ କର୍ମସବୁ ବିହିତ ହୋଇଅଛି, ତାହା ଆପଣଙ୍କର ବିଦିତ ଅଛି । ତାହାସବୁ ମଦାତ୍ମକ । ୬ । ଅସତ୍ ଶଶବିଷାଣାଦି, ସଦସତ୍, ଘଟପଟାଦି ଏବଂ ସଦସତ୍‌ର ଅବ୍ୟକ୍ତ ବସ୍ତୁ ଯେଉଁ ବିଶ୍ୱ, ତାହାସବୁ ଆମ୍ଭଠାରୁ ପୃଥକ୍ ନୁହନ୍ତି । କାରଣ, ଆମ୍ଭେ ଦେବଦେବ ସନାତନ । ୭ ।

ହେ ଭୃଗୂଦ୍‌ବହ ! ଆମ୍ଭଙ୍କୁ ଓଁକାର ପ୍ରଭୃତି ବେଦସମୂହ, ଯୂପ, ସୋମ, ଚରୁ, ହୋମ ଏବଂ ଯଜ୍ଞରେ ତ୍ରିଦଶଗଣଙ୍କର ଆପ୍ୟାୟନ ବୋଲି ଜ୍ଞାନ କରନ୍ତୁ । ୮ ।

ହେ ଭୃଗୁନନ୍ଦନ ! ଆମ୍ଭଙ୍କୁ ହୋତା, ହବ୍ୟ, ଅଧ୍ୱର୍ଯ୍ୟୁ, କଳ୍ପକ ଏବଂ ପରମ ସଂସ୍କୃତ ହବି ବୋଲି ଜାଣନ୍ତୁ । ୯ । ମହାଯଜ୍ଞରେ ଉଦ୍‌ଗାତା ଗୀତ-ଘୋଷମାନଙ୍କଦ୍ୱାରା ଆମ୍ଭଙ୍କୁ ସ୍ତବ କରନ୍ତି, ପ୍ରାୟଶ୍ଚିତ୍ତରେ ଶାନ୍ତି ଓ ମଙ୍ଗଳ-ବାଚକ ବ୍ରାହ୍ମଣବରଗଣ ଆମ୍ଭଙ୍କୁ ବିଶ୍ୱକର୍ମା ବୋଲି ସ୍ତବ କରନ୍ତି ।

ହେ ଦ୍ୱିଜସତ୍ତମ ! ଧର୍ମଙ୍କୁ ଆମ୍ଭର ଜ୍ୟେଷ୍ଠସୁତ ଏବଂ ସର୍ବଭୂତରେ ଦୟାତ୍ମକ ମାନସକୁ ଦୟିତ ବୋଲି ଜ୍ଞାନ କରନ୍ତୁ । ହେ ସତ୍ତମ ! ଯେଉଁ ନରଗଣ ସେହି ଧର୍ମରେ ବର୍ତ୍ତମାନ ଏବଂ ନିବୃତ୍ତ ଥାଆନ୍ତି, ଆମ୍ଭେ ସେହି ସେହି ମାନବରୂପୀ, ଧର୍ମସଂସ୍ଥାପନ, ଏବଂ ଧର୍ମରକ୍ଷଣ ନିମିତ୍ତ ଆମ୍ଭେ ବହୁଯୋନିରେ ଭ୍ରମଣ କରି ଅବସ୍ଥାନ କରିଅଛୁଁ । ୧୩ ।

ହେ ଭାର୍ଗବ ! ତ୍ରିଲୋକ ମଧ୍ୟରେ ଆମ୍ଭେ ପ୍ରଧାନ ପ୍ରଧାନ ବେଶ ଓ ପ୍ରଧାନ ପ୍ରଧାନ. ରୂପ ଧାରଣ କରୁଁ । ଆମ୍ଭେ ବିଷ୍ଣୁ, ଆମ୍ଭେ ବ୍ରହ୍ମା ଏବଂ ଆମ୍ଭେ ଇନ୍ଦ୍ରସ୍ୱରୂପ । ୧୪ । ଆମ୍ଭେ ଭୂତଗଣଙ୍କର ସୃଷ୍ଟି ଓ ସଂହାରକର୍ତ୍ତା, ଏବଂ ଅଧର୍ମରେ ବିଦ୍ୟମାନ ସମସ୍ତ ନରଗଣଙ୍କ ମଧ୍ୟରେ ଆମ୍ଭେ ଅଚ୍ୟୁତ । ୧୫ ।

Digitized by srujanika@gmail.com

ଆମ୍ଭେ ପ୍ରଜାଗଣଙ୍କ ହିତକାମନାରେ ପ୍ରତି ଯୁଗରେ ସେହି ସେହି ଯୋନିରେ ପ୍ରବିଷ୍ଟ ହୋଇ ଧର୍ମର ସେତୁବନ୍ଧନ କରୁଁ । ୧୬ ।

ହେ ଭୃଗୁନନ୍ଦନ ! ଆମ୍ଭେ ଯେତେବେଳେ ଦେବଯୋନିରେ ପ୍ରବିଷ୍ଟ ହେଉଁ, ତେତେବେଳେ ଦେବ ସଦୃଶ ସମସ୍ତ ବିଷୟ ଆଚରଣ କରୁଁ, ଏହି ବିଷୟରେ ସଂଶୟ ନାହିଁ । ୧୭ ।

ହେ ଭୃଗୁନନ୍ଦନ ! ଯେତେବେଳେ ଗନ୍ଧର୍ବଯୋନିରେ ପ୍ରବିଷ୍ଟ ହେଉଁ, ତେତେବେଳେ ସମସ୍ତ ଗନ୍ଧର୍ବବତ୍ ଆଚରଣ କରୁଁ, ସଂଶୟ ନାହିଁ । ୧୮ । ଯେତେବେଳେ ନାଗଯୋନିରେ ପ୍ରବିଷ୍ଟ ହେଉଁ, ତେତେବେଳେ ନାଗବତ୍ ଏବଂ ଯେତେବେଳେ ଯକ୍ଷରାକ୍ଷସ ଯୋନିରେ ପ୍ରବିଷ୍ଟ ହେଉଁ, ତେତେବେଳେ ଯକ୍ଷରାକ୍ଷସବତ୍ ଆଚରଣ କରୁଁ । ୧୯ । ଆମ୍ଭେ ମନୁଷ୍ୟଯୋନିରେ ଉତ୍ପନ୍ନ ହୋଇ ସେହି କୌରବଗଣଙ୍କୁ ଦୀନଭାବରେ ବହୁତର ଯୋଗ କରିଥିଲୁଁ । କ୍ରୁଦ୍ଧ ହୋଇ ମହତ୍ ଭୟପ୍ରଦର୍ଶନ ପୂର୍ବକ ବାସିତ ଏବଂ ଯଥାବିଧି ଶିକ୍ଷା ପ୍ରଦାନ କରିଥିଲୁଁ । କିନ୍ତୁ ସେମାନେ ମହାମୋହରେ ବିମୋହିତ ହୋଇ ଆମ୍ଭ ବାକ୍ୟ ଗ୍ରହଣ କଲେ ନାହିଁ । ପ୍ରତ୍ୟୁତ ସେମାନେ କାଳଧର୍ମରେ ବେଷ୍ଟିତ ଓ ଅଧର୍ମସଂଯୁକ୍ତ ହୋଇ ଧନଯୁଦ୍ଧରେ ନିଧନ ଲାଭକରି ସୁରପୁରକୁ ଗମନ କରିଅଛନ୍ତି, ଏଥିରେ ସଂଶୟ ନାହିଁ । ୨୨ ।

ହେ ଦ୍ୱିଜୋତ୍ତମ ! ଲୋକ ମଧ୍ୟରେ ପାଣ୍ଡବଗଣ ଖ୍ୟାତିଲାଭ କରି ଅଛନ୍ତି । ଆପଣ ଆମ୍ଭଙ୍କୁ ଯାହା ପ୍ରଶ୍ନ କରିଅଛନ୍ତି, ଏହା ଆମ୍ଭେ ଆପଣଙ୍କୁ ସମ୍ୟକ୍‌ରୂପେ କହିଲୁଁ । ୨୩ ।

---

# ପଞ୍ଚପଞ୍ଚାଶତ୍ତମ ଅଧ୍ୟାୟ

ଉତଙ୍କ କହିଲେ—ହେ ଜନାର୍ଦ୍ଦନ ! ଆମ୍ଭେ ଆପଣଙ୍କୁ ଜଗତ୍‌କର୍ତ୍ତା ବୋଲି ଜାଣୁଅଛୁଁ । ଏହା ନିଶ୍ଚୟ ଆପଣଙ୍କର ଅନୁଗ୍ରହ, ଏହି ବିଷୟରେ ସଂଶୟ ନାହିଁ । ୧ । ହେ ଅଚ୍ୟୁତ ପରଂତପ ! ଜାଣିବା ହେଉନ୍ତୁ । ଆମ୍ଭ ଚିତ୍ତ ଆପଣଙ୍କଠାରେ ଆସକ୍ତ ହେବାରୁ ତାହା ପ୍ରସନ୍ନ ହୋଇ ଶାପରୁ

Digitized by srujanika@gmail.com

ନିବୃତ୍ତ ହେଲା । ୨ । ହେ ଜନାର୍ଦ୍ଦନ ! ଆମ୍ଭେ ଭବଦୀୟ ଐଶ୍ୱର ରୂପ ଦର୍ଶନ କରିବାକୁ ଅଭିଳାଷୀ ହେଉଅଛୁଁ । ଯଦି ଆପଣଙ୍କର କଞ୍ଚିତ୍ ଅନୁଗ୍ରହ ହୁଏ, ତେବେ ତାହା ଆମ୍ଭଙ୍କୁ ଅନୁଗ୍ରହପୂର୍ବକ ଦର୍ଶନ କରାଇବା ହେଉନ୍ତୁ । ୩ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ଧୀମାନ୍ ଧନଞ୍ଜୟ ଯେଉଁ ଶାଶ୍ୱତ ବୈଷ୍ଣବ ଦର୍ଶନ କରିଥିଲେ, କୃଷ୍ଣ ପରମ ପ୍ରୀତ ହୋଇ ଉତ୍ତଙ୍କଙ୍କୁ ସେହି ମୂର୍ତ୍ତି ଦର୍ଶନ କରାଇଲେ । ୪ । ଉତ୍ତଙ୍କ ମହାଭୁଜ ବିଶ୍ୱରୂପ ସହସ୍ର ସୂର୍ଯ୍ୟପ୍ରତିମ ଜ୍ୱଳନ୍ତ ପାବକସଦୃଶ ସର୍ବବ୍ୟାପୀ ସର୍ବତୋମୁଖ ମହାତ୍ମା କୃଷ୍ଣଙ୍କୁ ଦର୍ଶନ କଲେ । ତଦନନ୍ତର ସେହି ବିପ୍ର ଅଦ୍ଭୁତ ପରମରୂପ ପରମେଶ୍ୱର ବିଷ୍ଣୁଙ୍କୁ ଦର୍ଶନ କରି ଅତିଶୟ ବିସ୍ମିତ ହେଲେ । ୬ ।

ଉତ୍ତଙ୍କ କହିଲେ—ହେ ବିଶ୍ୱକର୍ମନ୍ ! ହେ ବିଶ୍ୱାତ୍ମନ୍ ! ଆପଣଙ୍କୁ ନମସ୍କାର ! ହେ ବିଶ୍ୱସମ୍ଭବ ! ଆପଣଙ୍କ ପାଦଦ୍ୱୟଦ୍ୱାରା ପୃଥିବୀ, ମସ୍ତକଦ୍ୱାରା ନଭୋମଣ୍ଡଳ ବ୍ୟାପ୍ତ ହୋଇଅଛି । ୭ । ହେ ଅଚ୍ୟୁତ ! ଆପଣଙ୍କ ଜଠରଦ୍ୱାରା ଦ୍ୟୁଲୋକ ଓ ଭୂର୍ଲୋକ ଏବଂ ଭୁଜଦ୍ୱୟଦ୍ୱାରା ଦିକ୍‌ସମୂହ ଆବୃତ ହୋଇ ରହିଅଛି । ଅତଏବ ତୁମ୍ଭେ ଏହି ବିଶ୍ୱରୂପରେ ଅବସ୍ଥିତ କରିଅଛ । ୮ । ହେ ଦେବ ! ଏହି ସମସ୍ତ ଅନୁତ୍ତମ ଅକ୍ଷୟ୍ୟ ରୂପକୁ ସଂହାର କରିବା ହେଉନ୍ତୁ । ଆମ୍ଭେ ପୁନଶ୍ଚ ଆପଣଙ୍କର ସେହି ଶାଶ୍ୱତ କୃଷ୍ଣରୂପ ଦର୍ଶନ କରିବାକୁ ଅଭିଳାଷୀ ହେଉଅଛୁଁ । ୯ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ଗୋବିନ୍ଦ କୃଷ୍ଣ ପ୍ରସନ୍ନ ହୋଇ ସେହି ଉତ୍ତଙ୍କଙ୍କୁ କହିଲେ ଯେ, ହେ ମୁନେ ! ତୁମ୍ଭେ ଆମ୍ଭ ନିକଟରେ ବର ପ୍ରାର୍ଥନା କର ।

ତେତେବେଳେ ଉତ୍ତଙ୍କ ତାହାଙ୍କୁ ଏହି କଥା କହିଲେ ଯେ, ମହାଦ୍ୟୁତେ ! ହେ ପୁରୁଷୋତ୍ତମ ! କୃଷ୍ଣ ! ଅଦ୍ୟ ଆମ୍ଭେ ଆପଣଙ୍କର ଯେଉଁ ଏହି ରୂପ ଦର୍ଶନ କଲୁଁ, ତାହାଦ୍ୱାରା ଆମ୍ଭର ଯଥେଷ୍ଟ ବରଲାଭ ହୋଇଅଛି । ୧୧ ।

କୃଷ୍ଣ ପୁନଶ୍ଚ ଉତ୍ତଙ୍କଙ୍କୁ କହିଲେ ଯେ, ହେ ମୁନେ ! ତୁମ୍ଭେ ନିଶ୍ଚୟ ଆମ୍ଭର ଏହି ଅମୋଘ ଦର୍ଶନ କରିବ । ଏହି ବିଷୟରେ ଅନ୍ୟ କିଛି ବିଚାର କରନା । ୧୨ ।

Digitized by srujanika@gmail.com

ଉତଙ୍କ କହିଲେ—ହେ କେଶବ ! ଆପଣ ଯଦି ଏହା ଅବଶ୍ୟ କରଣୀୟ ବୋଲି ବୋଧ କରୁଅଛନ୍ତି, ତେବେ ଏହି ମରୁଭୂମି ମଧ୍ୟରେ ଯେଉଁ ସ୍ଥାନରେ ଏହି ଦୁର୍ଲ୍ଲଭ ଜଳ ଅଭିଳାଷ କରିବୁଁ, ସେହି ସ୍ଥାନରେ ଆମ୍ଭର ଅଭିଳାଷ ପୂର୍ଣ୍ଣ ହୋଇପାରିବ । ୧୩ ।

ଅନନ୍ତର ଈଶ୍ୱର ସେହି ତେଜ ସଂହାର କରି ଉତଙ୍କଙ୍କୁ କହିଲେ ଯେ, ହେ ମୁନେ ! ତୁମ୍ଭର ଯେତେବେଳେ ଯେଉଁ ବିଷୟରେ ଅଭିଳାଷ ହେବ, ତେତେବେଳେ ଆମ୍ଭଙ୍କୁ ସ୍ମରଣ କରିବ । ଏହି କଥା କହି ଦ୍ୱାରକାନଗରୀକୁ ଗମନ କଲେ । ୧୪ ।

ଅନନ୍ତର କୌଣସି ସମୟରେ ଭଗବାନ୍ ଉତଙ୍କ ମରୁଭୂମିରେ ପରିଭ୍ରମଣ କରିବାରୁ ତୃଷିତ ହୋଇ ଜଳ ଆକାଂକ୍ଷାରେ ଅଚ୍ୟୁତ କୃଷ୍ଣଙ୍କୁ ସ୍ମରଣ କଲେ । ୧୫ । ତତ୍ ସମୟରେ କୁକ୍କୁରଯୂଥପରିବୃତ ଶରକାର୍ମୁକଧାରୀ ଭୀଷଣାକାର ଦିଗମ୍ବର ଚଣ୍ଡାଳ ତାହାଙ୍କ ଦୃଷ୍ଟିପଥରେ ନିପତିତ ହେଲା । ସେହି ଚଣ୍ଡାଳ ନିରନ୍ତର ମୂତ୍ର ପରିତ୍ୟାଗ କରୁଥିଲା ।

ସେ ଉତଙ୍କଙ୍କୁ ତୃଷାର୍ତ୍ତ ଦେଖି ସମ୍ବୋଧନ ପୂର୍ବକ କହିଲେ— ହେ ମହର୍ଷେ ! ଉତଙ୍କ ! ଆପଣଙ୍କୁ ତୃଷାର୍ତ୍ତ ଦେଖି ଆମ୍ଭର ଅତିଶୟ ଦୟା ଜନ୍ମିଅଛି । ଅତଏବ ଆପଣ ଶୀଘ୍ର ଆଗମନ କରି ଆମ୍ଭର ଏହି ପ୍ରସ୍ରାବ ପାନ କରନ୍ତୁ । ମୁନିବର ଉତଙ୍କ ମାତଙ୍ଗ ଚଣ୍ଡାଳ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅଭିନନ୍ଦନ କଲେ ନାହିଁ । ପ୍ରତ୍ୟୁତ ସେହି ଚଣ୍ଡାଳଙ୍କୁ ଉଗ୍ର ବାକ୍ୟରେ ନିନ୍ଦାକଲେ । ମାତଙ୍ଗ ଉତଙ୍କଙ୍କୁ ବାରମ୍ବାର 'ମୂତ୍ର ପାନକର' ବୋଲି କହିଲେ । ୨୦ ।

ଉତଙ୍କଙ୍କ ଅନ୍ତରାତ୍ମା କ୍ଷୋଭିତ ହେଲାରୁ ସେ କ୍ରୋଧାନ୍ୱିତ ହୋଇ ତାହା ପାନ କଲେ ନାହିଁ । ଉତଙ୍କ ନିଶ୍ଚୟ କରି ତାହାଙ୍କୁ ପ୍ରତ୍ୟାଖ୍ୟାନ କଲାରୁ ସେ ସେଠାରେ କୁକ୍କୁରଗଣ ସହିତ ଅନ୍ତର୍ହିତ ହେଲେ । ମହାତ୍ମା ଉତଙ୍କ ତଦ୍ଦର୍ଶନରେ ଅମିତଦ୍ୟୁତି ଭଗବାନ୍ କୃଷ୍ଣ ତାହାଙ୍କୁ ବଞ୍ଚନା କରି-ଅଛନ୍ତି ବୋଲି ଜାଣିପାରି ନିତାନ୍ତ ଲଜ୍ଜିତ ହେଲେ ।

Digitized by srujanika@gmail.com

ତଦନନ୍ତର ଶଙ୍ଖଚକ୍ରଗଦାଧାରୀ କୃଷ୍ଣ ସେହି ପଥରେ ଉତ୍ତଙ୍କଙ୍କ ନିକଟକୁ ଆସି ଉପସ୍ଥିତ ହେଲେ, ଏବଂ ମହାବୁଦ୍ଧି ଉତ୍ତଙ୍କ ତାହାଙ୍କୁ କହିଲେ—ହେ ପୁରୁଷସତ୍ତମ ! ତୃଷାର୍ତ୍ତ ବ୍ରାହ୍ମଣଙ୍କୁ ଚଣ୍ଡାଳର ମୂତ୍ର ପ୍ରଦାନ କରିବାର ଆପଣଙ୍କର ଅନୁଚିତ ।

ଉତ୍ତଙ୍କ ଏହିପରି କହିବାରୁ ମହାବୁଦ୍ଧି ଜନାର୍ଦ୍ଦନ କୃଷ୍ଣ ମଧୁର ବାକ୍ୟରେ ତାହାଙ୍କୁ ସାନ୍ତ୍ୱନା କରି କହିଲେ, ଏହି ସ୍ଥାନରେ ଯେଉଁପରି ଦାନ କରିବାର ଉଚିତ ସେହିପରି ଦିଆ ହୋଇଥିଲା, ତାହା ତୁମ୍ଭେ ବୁଝିପାରିଲ ନାହିଁ । ଆମ୍ଭେ ତୁମ୍ଭ ନିମିତ୍ତ ବଜ୍ରପାଣି ଇନ୍ଦ୍ରଙ୍କୁ କହିଥିଲୁଁ ଯେ, ଉତ୍ତଙ୍କଙ୍କୁ ତୋୟରୂପ ଅମୃତ ଦାନକର ।

ହେ ଭୃଗୁନନ୍ଦନ ! ଦେବେନ୍ଦ୍ର ଏହି କଥା ଶୁଣି ଆମ୍ଭଙ୍କୁ କହିଲେ ଯେ, ମର୍ତ୍ତ୍ୟ ଲୋକ ଅମରତ୍ୱ ପ୍ରାପ୍ତ ହେବେ ନାହିଁ । ୨୮ । ଅତଏବ ତାହାଙ୍କୁ ଅନ୍ୟ ବର ପ୍ରଦାନ କରିବା ହେଉନ୍ତୁ । କିନ୍ତୁ ଆମ୍ଭେ ତାହାଙ୍କୁ କହିଲୁଁ ଯେ, ହେ ଶଚୀନାଥ ! ଉତ୍ତଙ୍କଙ୍କୁ ଅମୃତ ବର ପ୍ରଦାନ କରିବାର ଉଚିତ । ୨୯ ।

ତେତେବେଳେ ସେ ଆମ୍ଭଙ୍କୁ ପ୍ରସନ୍ନ କରାଇ ପୁନଶ୍ଚ କହିଲେ ଯେ, ହେ ମହାମତେ ! ଯଦି ଉତ୍ତଙ୍କଙ୍କୁ ଏହି ବର ଦେୟ ଅଟେ, ତେବେ ଆମ୍ଭେ ମାତଙ୍ଗ ହୋଇ ସେହି ମହାତ୍ମା ଭୃଗୁନନ୍ଦନଙ୍କୁ ଅମୃତଦାନ କରିବୁଁ । ହେ ବିଭୋ ! ଅଦ୍ୟ ଭୃଗୁନନ୍ଦନ ଉତ୍ତଙ୍କ ଯଦି ଏହିରୂପେ ଅମୃତ ପ୍ରତିଗ୍ରହ କରିବେ, ତେବେ ଆମ୍ଭେ ଅମୃତ ଦେବା ନିମିତ୍ତ ଗମନ କରୁଅଛୁଁ । ପରନ୍ତୁ ଆମ୍ଭେ ଯଦି ତତ୍କର୍ତ୍ତୃକ ପ୍ରତ୍ୟାଖ୍ୟାତ ହେବୁଁ, ତେବେ ଆମ୍ଭେ ତାହାଙ୍କୁ କଦାପି ଅମୃତ ଦାନ କରିବୁଁ ନାହିଁ । ୩୨ ।

ସେହି ବାସବ ଆମ୍ଭ ନିକଟରେ ଏହିରୂପେ ଅଙ୍ଗୀକାର କରି ତୁମ୍ଭଙ୍କୁ ଅମୃତ ଦେବା ନିମିତ୍ତ ଚଣ୍ଡାଳସ୍ୱରୂପୀ ହୋଇ ତୁମ୍ଭ ନିକଟରେ ଉପସ୍ଥିତ ହୋଇଥିଲେ । ତୁମ୍ଭେ ବୁଝିନପାରି ତାହାଙ୍କୁ ପ୍ରତ୍ୟାଖ୍ୟାନ କରିଅଛ । ସେହି ଚଣ୍ଡାଳରୂପୀ ଭଗବାନ୍ ବାସବ ତୁମ୍ଭଦ୍ୱାରା ପ୍ରତ୍ୟାଖ୍ୟାତ ହେବାରୁ ତୁମ୍ଭର ମହାନ୍ ବ୍ୟତିକ୍ରମ ଘଟିଅଛି । ପରନ୍ତୁ ଆମ୍ଭେ ସାଧ୍ୟାନୁସାରେ ପୁନଶ୍ଚ ତୁମ୍ଭର ଅଭିଲଷିତ ସମ୍ପାଦନ କରିବୁଁ । ୩୪ ।

Digitized by srujanika@gmail.com

ହେ ବ୍ରହ୍ମନ୍ ! ଯେଉଁ ଧବସମାନଙ୍କରେ ତୁମ୍ଭର ସଲିଳରେ ସ୍ପୃହା ହେବ, ସେହି ଧନମାନଙ୍କରେ ଆମ୍ଭେ ତୁମ୍ଭର ସେହି ଦୁରନ୍ତ ଜଳଲାଳସା ସଫଳ କରିବୁଁ । ୩୫ ।

ହେ ଭୃଗୁନନ୍ଦନ ! ସେହି ଧନ ମରୁଭୂମିରେ ଜଳଧରଗଣ ଜଳପୂର୍ଣ୍ଣ ହୋଇ ତୁମ୍ଭଙ୍କୁ ସୁସ୍ୱାଦୁ ଜଳ ପ୍ରଦାନ କରିବେ । ୩୬ । ଏବଂ ଉତ୍ତଙ୍କ ମେଘ ବୋଲି ଖ୍ୟାତିଲାଭ କରିବେ ।

ହେ ଭାରତ ! ସେହି ବିପ୍ର କୃଷ୍ଣଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅତିଶୟ ପ୍ରୀତ ହେଲେ । ସେହି କାରଣରୁ ଅଦ୍ୟାପି ଉତ୍ତଙ୍କ ମେଘସମୂହ ସେହି ମରୁଭୂମିରେ ବୃଷ୍ଟି କରୁଅଛନ୍ତି । ୩୭ ।

---

# ଷଟ୍ପଞ୍ଚାଶତ୍ତମ ଅଧ୍ୟାୟ

ଜନମେଜୟ କହିଲେ—ହେ ମହର୍ଷେ ! ମହାମନା ଉତ୍ତଙ୍କ କେଉଁ ତପସ୍ୟା କରିଥିଲେ ଯେ, ଜଗତ୍‌ପ୍ରଭୁ ବିଷ୍ଣୁଙ୍କୁ ଶାପ ଦେବାକୁ ଉଦ୍ୟତ ହୋଇ ଥିଲେ ? ୧ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ଉତ୍ତଙ୍କ ମହା ତପୋନିଷ୍ଠ ଥିଲେ । ସେହି ତେଜସ୍ୱୀ କେବଳ ଗୁରୁଅର୍ଚ୍ଚନା କରନ୍ତି, ଅନ୍ୟ କାହାର ଅର୍ଚ୍ଚନା କରନ୍ତି ନାହିଁ । ଏହି ମହାତ୍ମା ଗୁରୁଗୃହରେ ବାସ କରୁଥିବା ସମୟରେ ଅନ୍ୟାନ୍ୟ ଋଷିପୁତ୍ରଗଣ ତାହାଙ୍କ ଗୁରୁଭକ୍ତିର ପରାକାଷ୍ଠା ଦର୍ଶନ କରି ତତ୍ସଦୃଶ ଗୁରୁଭକ୍ତିପରାୟଣ ହେବାକୁ ସର୍ବଦା ବାସନା କରୁଥିଲେ ।

ହେ ଜନମେଜୟ ! ଗୌତମଙ୍କର ଯେତେ ଶିଷ୍ୟ ଥିଲେ ତନ୍ମଧ୍ୟରେ ଉତ୍ତଙ୍କଙ୍କଠାରେ ତାହାଙ୍କର ଅତିଶୟ ପ୍ରୀତି ଏବଂ ସ୍ନେହ ଜନ୍ମିଥିଲା । ଗୌତମ ଉତ୍ତଙ୍କଙ୍କର ଦମ, ଶୌଚ, ବିକ୍ରମ, କର୍ମ ଏବଂ ସମଧିକ ପରିଚର୍ଯ୍ୟାଦ୍ୱାରା ପରମପ୍ରୀତି ଲଭ କରିଥିଲେ ।

ଏଥିଉତ୍ତାରେ ଏକଦା ଗୌତମ ଋଷି କୌଣସି ସମୟରେ ସହସ୍ର ଶିଷ୍ୟଙ୍କୁ ଗୃହକୁ ଯିବା ବିଷୟରେ ଆଦେଶ ଦେଲେ । ପରନ୍ତୁ ପରମ

Digitized by srujanika@gmail.com

ପ୍ରୀତିବଶତଃ ଉତ୍ତଙ୍କଙ୍କୁ ଗୃହଗମନ ବିଷୟରେ ଆଦେଶ ଦେଲେନାହିଁ । କ୍ରମଶଃ ସେହି ମହାମୁନି ଉତ୍ତଙ୍କଙ୍କୁ ବୃଦ୍ଧାବସ୍ଥା ପ୍ରାପ୍ତହେଲା । କିନ୍ତୁ ଏକାନ୍ତ ଗୁରୁଭକ୍ତି ପ୍ରଭାବରେ ଉତ୍ତଙ୍କ ତାହା ଅବଗତ ହୋଇ ପାରିଲେ ନାହିଁ ।

ହେ ରାଜେନ୍ଦ୍ର ! ଅନନ୍ତର ଏକଦା ଉତ୍ତଙ୍କ କାଷ୍ଠ ଆନୟନ ନିମିତ୍ତ ଗମନ କରିଥିଲେ । ୭ । ହେ ଅରିନ୍ଦମ ! ଉତ୍ତଙ୍କ ମହାନ୍ କାଷ୍ଠଭାର ବହନ କରି ଆଣିଥିଲେ । ସେ କାଷ୍ଠଭାରରେ ଅଭିଭୂତ, ପରିଶ୍ରାନ୍ତ ଓ ବୁଭୁକ୍ଷିତ ହୋଇ ଭୂମିତଳରେ କାଷ୍ଠଭାର ନିକ୍ଷେପ କଲେ । ତେତେବେଳେ ତାହାଙ୍କର ରୌପ୍ୟସମ ପ୍ରଭାଶାଳୀ ଜଟାସମୂହ କାଷ୍ଠରେ ବିଲଗ୍ନ ହୋଇଥିବାରୁ ସେ କାଷ୍ଠମାନଙ୍କ ସହିତ ଧରିତଳରେ ପତିତ ହେଲେ ।

ହେ ଭାରତ ! କ୍ଷୁଧାବିଷ୍ଟ ଉତ୍ତଙ୍କ କାଷ୍ଠଭାରରେ ନିଷ୍ପିଷ୍ଟ ହୋଇ ଭୂତଳରେ ପତିତ ହେବା ସମୟରେ କାଷ୍ଠଲଗ୍ନ ଶୁକ୍ଳ ଜଟା ଦେଖି ନିଜର ତାଦୃଶ ବୃଦ୍ଧବୟୋବସ୍ଥା ଦର୍ଶନ କରି ଆର୍ତ୍ତସ୍ୱରରେ ରୋଦନ କଲେ । ୧୧ ।

ତେତେବେଳେ ପୃଥୁଲୋଚନା ସୁଶ୍ରୋଣୀ ଧର୍ମଜ୍ଞା ଗୁରୁସୁତା ପିତାଙ୍କ ଆଦେଶାନୁସାରେ ଅବନତ ମସ୍ତକରେ ଅଞ୍ଜଳିଦ୍ୱାରା ଅଶ୍ରୁଜଳ ଗ୍ରହଣ କଲେ । ୧୨ । ସେହି ଅଶ୍ରୁବିନ୍ଦୁ ତାହାଙ୍କ କରଦ୍ୱୟ ଦଗ୍ଧକରି ଭୂତଳରେ ପତିତ ହେଲା । ପୃଥିବୀଦେବୀ ସେହି ଅଶ୍ରୁଧାରାମାନଙ୍କୁ ଧାରଣ କରିବା ନିମିତ୍ତ ସମର୍ଥ ହେଲେ ନାହିଁ । ୧୩ ।

ତେତେବେଳେ ଗୌତମ ପ୍ରୀତଚିତ୍ତରେ ଉତ୍ତଙ୍କ ବିପ୍ରଙ୍କୁ କହିଲେ— ହେ ତାତ ! ଅଦ୍ୟ ତୁମ୍ଭର ମନ କେଉଁ କାରଣରୁ ଶୋକାତୁର ହୋଇଅଛି ? ହେ ବିପ୍ରର୍ଷେ ! ତୁମ୍ଭେ ଧୀରେ ଧୀରେ ଆମ୍ଭ ନିକଟରେ ଯଥାର୍ଥରୂପେ କହ । ଆମ୍ଭେ ତାହା ଶୁଣିବାକୁ ଅଭିଳାଷୀ ହୋଇଅଛୁଁ । ୧୪ ।

ଉତ୍ତଙ୍କ କହିଲେ—ହେ ଦ୍ୱିଜଶ୍ରେଷ୍ଠ ! ଆମ୍ଭେ ଆପଣଙ୍କ ପ୍ରିୟ ଚିକୀର୍ଷା, ଆପଣଙ୍କଠାରେ ଏକାନ୍ତ ଭକ୍ତି, ଏକାଗ୍ରଚିତ୍ତତା ହେତୁରୁ ଏବଂ ସର୍ବଦା ଆପଣଙ୍କୁ ଅନୁଗତ ହୋଇ ଆମ୍ଭର ଯେ ବାର୍ଦ୍ଧକ୍ୟ ଉପସ୍ଥିତ ହୋଇଅଛି, ତାହା ଜାଣିପାରିଲୁ ନାହିଁ । ଆମ୍ଭେ ଅଦ୍ୟାପି ସୁଖର ଲେଶମାତ୍ର ଅନୁଭବ କରିପାରିଲୁ ନାହିଁ ।

Digitized by srujanika@gmail.com

ଆପଣଙ୍କ ନିକଟରେ ଆମ୍ଭର ଏକଶତ ବର୍ଷର ଅତିବାହିତ ହେଲା । ଏତନ୍ମଧ୍ୟରେ ଆପଣ ଆମ୍ଭ ଅପେକ୍ଷା ବୟସରେ କନିଷ୍ଠ ସହସ୍ର ସହସ୍ର ଶିଷ୍ୟମାନଙ୍କୁ ଗୃହଗମନ ବିଷୟରେ ଅନୁମତି ପ୍ରଦାନ କରିଅଛନ୍ତି । କିନ୍ତୁ ଏତେ କାଳ ପର୍ଯ୍ୟନ୍ତ ଆମ୍ଭଙ୍କୁ ଗୃହଗମନ ବିଷୟରେ ଅନୁମତି ପ୍ରଦାନ କଲେ ନାହିଁ । ଏହି ନିମିତ୍ତ ଆମ୍ଭେ ଅତିଶୟ ଦୁଃଖିତ ଅଛୁଁ । ୧୭ ।

ଗୌତମ କହିଲେ—ହେ ଦ୍ୱିଜବର ! ତୁମ୍ଭର ଗୁରୁଶୁଶ୍ରୂଷା ହେତୁରୁ ଆମ୍ଭେ ତୁମ୍ଭଠାରେ ପ୍ରୀତିଯୁକ୍ତ ହେବାରୁ ଅଧିକ କାଳ ଯେ କିରୂପେ ଅଜ୍ଞାତ ହୋଇଅଛି, ତାହା ଜାଣି ପାରିନାହୁଁ । ୧୮ । ହେ ଭାର୍ଗବ ! ଅଦ୍ୟ ଯଦି ତୁମ୍ଭର ଗୃହକୁ ଗମନ କରିବା ନିମିତ୍ତ ଅଭିଳାଷ ହୁଏ, ତେବେ ଆମ୍ଭେ ତୁମ୍ଭଙ୍କୁ ଆଦେଶ କରୁଅଛୁଁ, ତୁମ୍ଭେ ଶୀଘ୍ର ସ୍ୱୀୟ ଗୃହକୁ ଗମନ କର । ୧୯ ।

ଉତ୍ତଙ୍କ କହିଲେ—ହେ ଦ୍ୱିଜସତ୍ତମ ! ଆମ୍ଭେ ଆପଣଙ୍କୁ ଗୁରୁଦକ୍ଷିଣା ସ୍ୱରୂପ କେଉଁ ଦ୍ରବ୍ୟ ପ୍ରଦାନ କରିବୁଁ, ତାହା ଆଦେଶ କରିବା ହେଉନ୍ତୁ । ହେ ବିପ୍ରେ ! ଆପଣ ଯାହା ଆଦେଶ କରିବେ, ଆମ୍ଭେ ତାହା ଆହରଣ କରି ଆଣିବୁଁ, ଏବଂ ତାହା ଆପଣଙ୍କୁ ଅର୍ପଣ ପୂର୍ବକ ଗୃହକୁ ପ୍ରତିଗମନ କରିବୁଁ । ୨୦ ।

ଗୌତମ କହିଲେ—ହେ ବ୍ରହ୍ମନ୍ ! ପଣ୍ଡିତଗଣ କହନ୍ତି, ଗୁରୁମାନଙ୍କର ସନ୍ତୋଷ କେବଳ ଦକ୍ଷିଣା, ଅତଏବ ଆମ୍ଭେ ତୁମ୍ଭର ସଦାଚରଣରେ ପରିତୁଷ୍ଟ ହୋଇଅଛୁଁ, ସଂଶୟ ନାହିଁ । ୨୧ ।

ହେ ଭୃଗୂଦ୍ୱହ ! ଆମ୍ଭେ ତୁମ୍ଭଠାରେ ପରିତୁଷ୍ଟ ଅଛୁଁ ବୋଲି ଜ୍ଞାନକର । ହେ ବ୍ରହ୍ମନ୍ ! ଅଦ୍ୟ ତୁମ୍ଭେ ଯଦି ଷୋଡ଼ଶବର୍ଷୀୟ ଯୁବା ହେବ ତେବେ ଆମ୍ଭେ ତୁମ୍ଭ ନିମିତ୍ତ ନିଜ କନ୍ୟାଙ୍କୁ ତୁମ୍ଭର ପତ୍ନୀରୂପେ ଦାନ କରିବୁଁ । ଏହି କନ୍ୟାଙ୍କ ବ୍ୟତିରେକେ ଅନ୍ୟ କୌଣସି ଅଙ୍ଗନା ତୁମ୍ଭର ତେଜ ଧାରଣ କରିବାକୁ ସମର୍ଥା ହେବେ ନାହିଁ । ୨୩ ।

ତଦନନ୍ତର ଉତ୍ତଙ୍କ ଯୁବା ହୋଇ ଗୁରୁଙ୍କ ଆଦେଶାନୁସାରେ ସେହି ଯଶସ୍ୱିନୀ କନ୍ୟାଙ୍କୁ ଗ୍ରହଣ କରି ଗୁରୁପତ୍ନୀ ଅହଲ୍ୟାଙ୍କୁ କହିଲେ—ଆପଣଙ୍କୁ କେଉଁ ଦ୍ରବ୍ୟ ଗୁରୁଦକ୍ଷିଣାରୂପେ ପ୍ରଦାନ କରିବୁଁ, ଆପଣ ତାହା ଆମ୍ଭଙ୍କୁ ଆଦେଶ କରନ୍ତୁ । ୨୪ । ଆମ୍ଭେ ପ୍ରାଣ ଏବଂ ଧନଦ୍ୱାରା ଆପଣଙ୍କର ପ୍ରିୟ ଏବଂ ହିତ

Digitized by srujanika@gmail.com

ଆକାଂକ୍ଷା କରୁଅଛୁଁ । ଇହଲୋକରେ ଯେଉଁ ରତ୍ନ ଦୁର୍ଲ୍ଲଭ, ଆମ୍ଭେ ତପୋବଳରେ ସେହି ଅଦ୍ଭୁତ ମହାରତ୍ନ ଆନୟନ କରିବୁଁ, ଏହି ବିଷୟରେ କିଂଚିନ୍ମାତ୍ର ସଂଶୟ ନାହିଁ । ୨୬ ।

ଅହଲ୍ୟା କହିଲେ—ହେ ତାତ ! ବିପ୍ର ! ଆମ୍ଭେ ତୁମ୍ଭର ଏହି ଭକ୍ତିଦ୍ୱାରା ପରିତୋଷ ଲାଭ କରିଅଛୁଁ । ଏହି ଭକ୍ତି ଯଥେଷ୍ଟ ଗୁରୁଦକ୍ଷିଣା ହୋଇଅଛି । ତୁମ୍ଭର ମଙ୍ଗଳ ହେଉ । ସମ୍ପ୍ରତି ତୁମ୍ଭେ ଇଚ୍ଛାନୁସାରେ ଗମନ କର । ୨୭ ।

ବୈଶମ୍ପାୟନ କହିଲେ—ମହାରାଜ ! ଉତ୍ତଙ୍କ ଅହଲ୍ୟାଙ୍କୁ ପୁନଶ୍ଚ କହିଲେ, ହେ ମାତ ! ଆପଣ ଆମ୍ଭଙ୍କୁ ଆଜ୍ଞା କରିବା ହେଉନ୍ତୁ, ଆମ୍ଭେ ଆପଣଙ୍କର କେଉଁ ପ୍ରିୟକାର୍ଯ୍ୟ କରିବୁଁ ? ୨୮ ।

ଅହଲ୍ୟା କହିଲେ—ହେ ତାତ ! ତୁମ୍ଭର ମଙ୍ଗଳ ହେଉ । ସୌଦାସ-ପତ୍ନୀ ଯେଉଁ ଦିବ୍ୟ ମଣିମୟ କୁଣ୍ଡଳଦ୍ୱୟ ଧାରଣ କରିଅଛନ୍ତି, ତୁମ୍ଭେ ସେହି କୁଣ୍ଡଳ ଆନୟନ କର । ତାହାହେଲେ ସେହି କୁଣ୍ଡଳଦ୍ୱୟ ଗୁରୁଦକ୍ଷିଣା ସ୍ୱରୂପ ହେବ । ୨୯ ।

ହେ ଜନମେଜୟ ! ତେତେବେଳେ ଉତ୍ତଙ୍କ 'ତାହା ଆଣିବୁ' ଏହିରୂପ ପ୍ରତିଜ୍ଞା କରି ଗୁରୁପତ୍ନୀଙ୍କ ପ୍ରିୟ ନିମିତ୍ତ ସେହି କୁଣ୍ଡଳଦ୍ୱୟ ଭିକ୍ଷା କରିବା ନିମିତ୍ତ ରାକ୍ଷସରୂପୀ ସୌଦାସ ନରପାଳଙ୍କ ନିକଟକୁ ଗମନ କଲେ । ୩୧ ।

ଗୌତମ ନିଜ ପତ୍ନୀ ଅହଲ୍ୟାଙ୍କୁ ପ୍ରଶ୍ନକଲେ ଯେ, ଅଦ୍ୟ ଆମ୍ଭେ ଉତ୍ତଙ୍କଙ୍କୁ ଦେଖୁନାହୁଁ । ସେ କେଉଁଠାରେ ଅଛନ୍ତି ?

ଅହଲ୍ୟା ଗୌତମଙ୍କ ବାକ୍ୟ ଶ୍ରବଣ କରି କହିଲେ ଯେ, ଉତ୍ତଙ୍କ କୁଣ୍ଡଳ ଆନୟନ ନିମିତ୍ତ ଗମନ କରିଅଛନ୍ତି । ୩୨ ।

ତଦନନ୍ତର ଗୌତମ ପତ୍ନୀଙ୍କୁ କହିଲେ ଯେ, ହେ ଅହଲ୍ୟେ ! ତୁମ୍ଭେ ଏହା ଉତ୍ତମ କର୍ମ କରିନାହଁ । କାରଣ, ସେହି ସୌଦାସ ଅଭିଶପ୍ତ ହୋଇ ରାକ୍ଷସ ହୋଇ ଅଛନ୍ତି । ସେ ପାର୍ଥିବ ବ୍ରାହ୍ମଣ ଉତ୍ତଙ୍କଙ୍କୁ ନିଶ୍ଚୟ ବଧ କରିବେ । ୩୩ ।

Digitized by srujanika@gmail.com

ଅହଲ୍ୟା କହିଲେ—ହେ ଭଗବନ୍ ! ଆମ୍ଭେ ସୌଦାସଙ୍କ ପ୍ରଭାବ ଜାଣି ନଥିବାରୁ ସେହି ବ୍ରାହ୍ମଣଙ୍କୁ କହିଲୁ । ଆପଣଙ୍କ ପ୍ରସାଦରେ ତାହାଙ୍କର କୌଣସି ଭୟ ଉପସ୍ଥିତ ହେବନାହିଁ । ୩୪ ।

ଗୌତମ ଅହଲ୍ୟାଙ୍କର ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ—ହେ ଅହଲ୍ୟେ ! ତୁମ୍ଭେ ଯାହା କହିଲ, ତାହା ହେଉ ।

ଉତ୍ତଙ୍କ ଗୌତମଙ୍କ ଆଶ୍ରମରୁ ଯାଇ ନିର୍ଜନ ବନ ମଧ୍ୟରେ ସେହି ସୌଦାସ ନରପାଳଙ୍କୁ ଦର୍ଶନ କଲେ । ୩୫ ।

---

# ସପ୍ତପଞ୍ଚାଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଉତ୍ତଙ୍କ ବିପ୍ର ଦୀର୍ଘଶ୍ମଶ୍ରୁଧାରୀ ନରରକ୍ତଲିପ୍ତ-କଳେବର ଘୋରଦର୍ଶନ ରାଜା ସୌଦାସଙ୍କୁ ଦର୍ଶନ କରି ବ୍ୟଥିତ ହେଲେ ନାହିଁ । ପରନ୍ତୁ ମହାତେଜା ଯମସଦୃଶ ଭୟପ୍ରଦ ରାଜା ସୌଦାସ ଉତ୍ତଙ୍କଙ୍କୁ କହିଲେ ଯେ, ହେ ଦ୍ୱିଜସତ୍ତମ ! ଆମ୍ଭେ ଭକ୍ଷ୍ୟଦ୍ରବ୍ୟ ଅନ୍ୱେଷଣ କରୁଅଛୁଁ । ତୁମ୍ଭେ ଭାଗ୍ୟବଶତଃ ଦିବସର ଷଷ୍ଠାଂଶ ସମୟରେ ଆମ୍ଭ ନିକଟରେ ଆସି ଉପସ୍ଥିତ ହୋଇଅଛ । ୩ ।

ଉତ୍ତଙ୍କ କହିଲେ—ରାଜନ୍ ! ଆମ୍ଭେ ଗୁରୁଦକ୍ଷିଣା ନିମିତ୍ତ ଅର୍ଥ ପ୍ରାର୍ଥନା କରିବାକୁ ଏହି ସ୍ଥାନରେ ଉପସ୍ଥିତ ହୋଇଅଛୁଁ । ଆମ୍ଭଙ୍କୁ ଗୁରୁଙ୍କ ନିମିତ୍ତ ଅର୍ଥପ୍ରାର୍ଥୀ ବୋଲି ଜ୍ଞାନ କର । ମନୀଷିଗଣ ଗୁରୁଙ୍କ ଅର୍ଥ ନିମିତ୍ତ ଉଦ୍ୟୁକ୍ତ ନରଙ୍କୁ ଅବଧ୍ୟ ବୋଲି ଜାଣନ୍ତି । ୪ ।

ରାଜା କହିଲେ—ହେ ଦ୍ୱିଜସତ୍ତମ ! ଅଦ୍ୟ ଦିବସର ଷଷ୍ଠଭାଗରେ ତୁମ୍ଭେ ଆମ୍ଭର ଆହାରରୂପେ ବିହିତ ହୋଇଅଛ । ଆମ୍ଭେ ଅତିଶୟ କ୍ଷୁଧିତ ହୋଇଅଛୁଁ, ଅତଏବ ଅଦ୍ୟ ତୁମ୍ଭଙ୍କୁ ପରିତ୍ୟାଗ କରିପାରିବୁଁ ନାହିଁ । ୫ ।

ଉତ୍ତଙ୍କ କହିଲେ—ମହାରାଜ ! ଆପଣ ଯେଉଁପରି ଅଭିଳାଷ କରିଅଛନ୍ତି, ତାହା ହେଉ । ପରନ୍ତୁ ଆପଣ ଆମ୍ଭ ପ୍ରତିଜ୍ଞା ସଫଳ କରନ୍ତୁ । ଆମ୍ଭେ ଗୁରୁଙ୍କ କାର୍ଯ୍ୟ ସମାଧା କରି ପୁନଶ୍ଚ ଭବଦୀୟ ବଶତାକୁ ପ୍ରାପ୍ତ ହେବୁଁ ।

Digitized by srujanika@gmail.com

ହେ ରାଜସତ୍ତମ ! ଆମ୍ଭେ ଯେଉଁ ଅର୍ଥ ଗୁରୁଙ୍କୁ ପ୍ରଦାନ କରିବୁଁ ବୋଲି ପ୍ରତିଜ୍ଞାରୂଢ଼ ହୋଇଅଛୁଁ, ସେହି ଅର୍ଥ ଆପଣଙ୍କର ଅଧୀନ । ଅତଏବ ହେ ନରେଶ୍ୱର ! ତାହା ଆପଣଙ୍କ ନିକଟରେ ପ୍ରାର୍ଥନା କରିଅଛୁଁ । ୭ । ଆପଣ ନିତ୍ୟ ଦ୍ୱିଜବରମାନଙ୍କୁ ପ୍ରଭୂତ ରତ୍ନ ଦାନ କରୁଅଛନ୍ତି । ହେ ନରବ୍ୟାଘ୍ର ! ନୃପସତ୍ତମ ! ଏହି ପୃଥିବୀ ମଧ୍ୟରେ ଆପଣ ଦାତା ଏବଂ ଆମ୍ଭେ ପ୍ରତିଗ୍ରହୀତା । ଆପଣ ଆମ୍ଭଙ୍କୁ ପ୍ରତିଗ୍ରହର ପାତ୍ର ବୋଲି ଜାଣିବା ହେଉନ୍ତୁ । ୮ ।

ହେ ଅରିନ୍ଦମ ! ରାଜେନ୍ଦ୍ର ! ଆପଣଙ୍କର ଆପୃତ୍ତ ସେହି ଅର୍ଥ ଗୁରୁଙ୍କ ନିମିତ୍ତ ଆହରଣ କରି ଆମ୍ଭେ ପ୍ରତିଜ୍ଞାନୁସାରେ ପୁନଶ୍ଚ ଆପଣଙ୍କ ଅଧୀନ ହେବୁଁ । ୯ । ଆମ୍ଭେ ଯେଉଁ ପ୍ରତିଜ୍ଞା କରୁଅଛୁଁ ଏହା କଦାପି ମିଥ୍ୟା ହେବ ନାହିଁ । କାରଣ, ଆମ୍ଭେ ପୂର୍ବେ କଦାପି ଇଚ୍ଛାନୁସାରେ ମିଥ୍ୟା କଥା କହିନାହୁଁ । ଅତଏବ କଦାପି ପ୍ରତିଜ୍ଞା ଅନ୍ୟଥା ହେବନାହିଁ । ୧୦ ।

ସୌଦାସ କହିଲେ—ହେ ତପୋଧନ ! ଆପଣଙ୍କ ଗୁରୁଦକ୍ଷିଣା ଯଦି ଆମ୍ଭର ଆପୃତ୍ତ ଅଟେ, ତେବେ ଆପଣ ତାହା ଅବଶ୍ୟ ପ୍ରାପ୍ତ ହୋଇ ପାରିବେ । ସମ୍ପ୍ରତି ଆମ୍ଭ ନିକଟରୁ ପ୍ରତିଗ୍ରହ କରିବାର ଯଦି ଆପଣଙ୍କର କର୍ତ୍ତବ୍ୟ ଅଟେ, ତେବେ ଆପଣଙ୍କୁ କେଉଁ ଦ୍ରବ୍ୟ ପ୍ରଦାନ କରିବୁଁ, ତାହା କହିବା ହେଉନ୍ତୁ । ୧୧ ।

ଉତ୍ତଙ୍କ କହିଲେ—ହେ ପୁରୁଷର୍ଷଭ ! ଆପଣ ଆମ୍ଭର ପ୍ରତିଗ୍ରାହ୍ୟ ବୋଲି ଅଭିମତ ହୋଇଅଛନ୍ତି । ସେହି କାରଣରୁ ଆମ୍ଭେ ମଣିକୁଣ୍ଡଳଦ୍ୱୟ ଭିକ୍ଷା କରିବାକୁ ଭବଦୀୟ ସନ୍ନିଧିକୁ ଆଗତ ହୋଇଅଛୁଁ । ୧୨ ।

ସୌଦାସ କହିଲେ—ହେ ସୁବ୍ରତ ! ବିପ୍ରର୍ଷେ ! ସେହି ମଣିକୁଣ୍ଡଳଦ୍ୱୟ ଆମ୍ଭ ପତ୍ନୀଙ୍କର ଅଟେ । ଆମ୍ଭର ତାହା ଦାନ କରିବାକୁ ଅଧିକାର ନାହିଁ । ଅତଏବ ତୁମ୍ଭେ ଯାହା ଅନ୍ୟ ଅର୍ଥ ପ୍ରାର୍ଥନା କରିବ, ତାହା ଆମ୍ଭେ ତୁମ୍ଭଙ୍କୁ ଦାନ କରିବୁଁ । ୧୩ ।

ଉତ୍ତଙ୍କ କହିଲେ—ହେ ପାର୍ଥିବ ! ଆମ୍ଭଙ୍କୁ ଦାନ କରିବାର ଆପଣଙ୍କର ଯଦି ଅଭିପ୍ରେତ ହୁଏ, ତେବେ ଏହିରୂପ ଛଳ ପ୍ରଦର୍ଶନ ନକରି ଅନତି-ବିଳମ୍ବରେ ଆମ୍ଭଙ୍କୁ କୁଣ୍ଡଳଯୁଗଳ ପ୍ରଦାନ କରି ସତ୍ୟବାଦୀ ହେଉନ୍ତୁ । ୧୪ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ରାଜା ଏହି ବାକ୍ୟ ଶ୍ରବଣ କରି ପୁନଶ୍ଚ ଉତ୍ତଙ୍କଙ୍କୁ କହିଲେ, ହେ ସତ୍ତମ ! ଆପଣ ଆମ୍ଭ ଅନୁରୋଧ ଅନୁସାରେ ମଦୀୟ ପତ୍ନୀଙ୍କ ନିକଟକୁ ଗମନ କରି ତାହାଙ୍କୁ କହିବା ହେଉନ୍ତୁ ଯେ, ହେ ରାଜ୍ଞି ! ସୌଦାସ ନରପତିଙ୍କ ଅନୁରୋଧ ଅନୁସାରେ ଆପଣ ଆମ୍ଭଙ୍କୁ କୁଣ୍ଡଳଯୁଗଳ ପ୍ରଦାନ କରିବା ହେଉନ୍ତୁ । ହେ ଦ୍ୱିଜବର ! ସେହି ଶୁଚିବ୍ରତା ମଦୀୟ ପତ୍ନୀ ତୁମ୍ଭମୁଖରୁ ଏହିପରି ବାକ୍ୟ ଶ୍ରବଣ କଲେ, ଆପଣଙ୍କୁ ନିଶ୍ଚୟ କୁଣ୍ଡଳଯୁଗଳ ପ୍ରଦାନ କରିବେ । ୧୬ ।

ଉତ୍ତଙ୍କ କହିଲେ—ହେ ନରେଶ୍ୱର ! ଆମ୍ଭେ ଆପଣଙ୍କ ପତ୍ନୀଙ୍କୁ କେଉଁଠାରେ ଦେଖିବାକୁ ସମର୍ଥ ହେବୁଁ ? ଆପଣ ସ୍ୱୟଂ କି ନିମିତ୍ତ ସ୍ୱପତ୍ନୀଙ୍କ ନିକଟକୁ ଗମନ କରୁନାହାନ୍ତି ? ୧୭ ।

ସୌଦାସ କହିଲେ—ଅଦ୍ୟ ଅରଣ୍ୟସ୍ଥିତ କୌଣସି ନିର୍ଝର ନିକଟରେ ଆପଣ ତାହାଙ୍କୁ ଦେଖିପାରିବେ । ଅଦ୍ୟ ଦିବସର ଷଷ୍ଠ ଭାଗରେ ଆମ୍ଭେ ତାହାଙ୍କୁ ଦର୍ଶନ କରିପାରିବୁ ନାହିଁ । ୧୮ ।

ବୈଶମ୍ପାୟନ କହିଲେ—ହେ ଭରତର୍ଷଭ ! ଉତ୍ତଙ୍କ ରାଜାଙ୍କ ମୁଖରୁ ତାଦୃଶ ବାକ୍ୟ ଶ୍ରବଣ କରି ସେଠାରୁ ଯାଇ ବନମଧ୍ୟରେ ସୌଦାସପତ୍ନୀ ମଦୟନ୍ତୀଙ୍କୁ ଦେଖିଲେ । ତଦନନ୍ତର ତାହାଙ୍କୁ ସୌଦାସଙ୍କ ବାକ୍ୟ ସହିତ ନିଜ ପ୍ରୟୋଜନ ନିବେଦନ କଲେ । ୧୯ ।

ହେ ଜନମେଜୟ ! ଅନନ୍ତର ପୃଥୁଲୋଚନା ସେହି ସୌଦାସପତ୍ନୀ ଉତ୍ତଙ୍କଙ୍କ ମୁଖରୁ ସୌଦାସଙ୍କର ଅନୁରୋଧ ବାକ୍ୟ ଶ୍ରବଣ କରି ମହାବୁଦ୍ଧି ଉତ୍ତଙ୍କଙ୍କୁ କହିଲେ—ହେ ଅନଘ ! ଆପଣ ଯାହା କହିଲେ, ତାହା ସତ୍ୟ ଅଟେ । କିନ୍ତୁ ଆପଣ ତାହାଙ୍କର କିଛି ଅଭିଜ୍ଞାନ ଆନୟନ କରିବା ହେଉନ୍ତୁ । ୨୧ ।

ଦେବତା, ଯକ୍ଷ ଏବଂ ମହର୍ଷିଗଣ ନାନାବିଧ ଉପାୟଦ୍ୱାରା ଆମ୍ଭର ଏହି ଦିବ୍ୟ ମଣିମୟ କୁଣ୍ଡଳଦ୍ୱୟ ଅପହରଣ କରିବା ଅଭିଳାଷରେ ନିରନ୍ତର ଛିଦ୍ର ଅନ୍ୱେଷଣ କରନ୍ତି । ୨୨ । ଏହି ରତ୍ନ ଭୂତଳରେ ନିକ୍ଷିପ୍ତ ହେଲେ ପନ୍ନଗଗଣ, ଉଚ୍ଛିଷ୍ଟ ଅବସ୍ଥାରେ ଧାରଣ କଲେ ଯକ୍ଷଗଣ ଏବଂ ନିଦ୍ରାବସ୍ଥାରେ ଧାରଣ କଲେ ସୁରଗଣ ଅପହରଣ କରିବେ । ୨୩ ।

Digitized by srujanika@gmail.com

ହେ ଦ୍ୱିଜସତ୍ତମ ! ଏହି ଛିଦ୍ରସବୁ ଉପସ୍ଥିତ ହେଲେ ଆମ୍ଭର ଏହି କୁଣ୍ଡଳ-ଯୁଗଳ ଦେବତା, ଯକ୍ଷ ଓ ନାଗଗଣକର୍ତ୍ତୃକ ଅପହୃତ ହୋଇପାରେ । ଅତଏବ ଅପ୍ରମତ୍ତ ହୋଇ ଏହା ଧାରଣ କରିବାଏ । ୨୪ । ହେ ଦ୍ୱିଜବର ! ଆମ୍ଭର ଏହି କୁଣ୍ଡଳଯୁଗଳ ଦିବସ ଓ ରାତ୍ରି ସମୟରେ ସୁବର୍ଣ୍ଣ କ୍ଷରଣ କରନ୍ତି ଏବଂ ରାତ୍ରିରେ ନକ୍ଷତ୍ର ଓ ତାରାଗଣଙ୍କ ପ୍ରଭା ଆକର୍ଷଣ ପୂର୍ବକ ଅବସ୍ଥାନ କରନ୍ତି । ୨୫ ।

ହେ ଭଗବନ୍ ! ଏହି କୁଣ୍ଡଳ ଧାରଣ କଲେ ମନୁଷ୍ୟ କ୍ଷୁଧା ଓ ପିପାସାରେ ପୀଡ଼ିତ ହୁଅନ୍ତି ନାହିଁ । ୨୬ । ଖର୍ବକାୟ ବ୍ୟକ୍ତି ଏହି କୁଣ୍ଡଳ ଧାରଣ କଲେ ଏହା ଖର୍ବ ହୁଏ । ଦୀର୍ଘକାୟ ବ୍ୟକ୍ତି ଧାରଣ କଲେ ଏହା ଦୀର୍ଘ ହୁଏ । ୨୭ । ଆମ୍ଭର ପରମପୂଜିତ ମଣିମୟ କୁଣ୍ଡଳଯୁଗଳର ଗୁଣ ତ୍ରିଲୋକ ମଧ୍ୟରେ ବିଖ୍ୟାତ । ଅତଏବ ଆପଣ ତହିଁପାଇଁ ଅଭିଜ୍ଞାନ ଆନୟନ କରନ୍ତୁ ।

---

## ଅଷ୍ଟାପଞ୍ଚାଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଉତ୍ତଙ୍କ ସୌଦାସଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ କହିଲେ—ମହାରାଜ ! ରାଜ୍ଞୀ ଆପଣଙ୍କ ଅଭିଜ୍ଞାନ ଭିନ୍ନ ଆମ୍ଭଙ୍କୁ କୁଣ୍ଡଳ ପ୍ରଦାନ କରିବେ ନାହିଁ । ଅତଏବ ଆପଣ ଅନୁଗ୍ରହକରି ଆମ୍ଭଙ୍କୁ କୌଣସି ଅଭିଜ୍ଞାନ ପ୍ରଦାନ କରିବା ହେଉନ୍ତୁ । ଇକ୍ଷ୍ୱାକୁପ୍ରବର ସୌଦାସ ଉତ୍ତଙ୍କଙ୍କୁ ଏହି ବାକ୍ୟରୂପ ଅଭିଜ୍ଞାନ ପ୍ରଦାନ କଲେ । ୧ ।

ସୌଦାସ କହିଲେ—ଆମ୍ଭମାନଙ୍କର ଏହି ରାକ୍ଷସଯୋନିରୂପା ଗତି ମଙ୍ଗଳକର ନୁହେଁ, ଏବଂ କୁଣ୍ଡଳଦାନ ଅପେକ୍ଷା ଅନ୍ୟକିଛି ମୁକ୍ତିରୂପା ଗତି ନାହିଁ । ଅତଏବ ତୁମ୍ଭେ ଆମ୍ଭର ଏହି ମତ ଅବଗତ ହୋଇ ଏହାଙ୍କୁ ମଣିମୟ କୁଣ୍ଡଳଯୁଗଳ ପ୍ରଦାନ କର । ୨ ।

ଉତ୍ତଙ୍କ ସୌଦାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସୌଦାସପତ୍ନୀ ମଦୟନ୍ତୀଙ୍କୁ ସ୍ୱାମୀଙ୍କର ଏହି ବାକ୍ୟ କହିଲେ । ସେ ସ୍ୱାମୀଙ୍କ ବାକ୍ୟ ଶ୍ରବଣ କରି

Digitized by srujanika@gmail.com

ଉତ୍ତଙ୍କଙ୍କୁ ସେହି ମଣିମୟ କୁଣ୍ଡଳଯୁଗଳ ପ୍ରଦାନ କଲେ । ୩ । ଉତ୍ତଙ୍କ ସେହି ମଣିମୟ କୁଣ୍ଡଳ ପ୍ରାପ୍ତହୋଇ ପୁନଶ୍ଚ ରାଜାଙ୍କୁ କହିଲେ, ହେ ରାଜନ୍ ! ଅଭିଜ୍ଞାନ ବିଷୟ ଗୁହ୍ୟ ଅଟେ । ତାହାର ତାତ୍ପର୍ଯ୍ୟ ଶ୍ରବଣ କରିବାକୁ ଆମ୍ଭର ଅଭିଳାଷ ଜନ୍ମିଅଛି । ୪ ।

ସୌଦାସ କହିଲେ—ବ୍ରାହ୍ମଣଗଣ ପ୍ରଜାସୃଷ୍ଟି କରନ୍ତି ବୋଲି କ୍ଷତ୍ରିୟକୁଳ ସେମାନଙ୍କୁ ପୂଜା କରନ୍ତି । ତଥାପି ବିପ୍ରଗଣ ସେମାନଙ୍କର ଅନିଷ୍ଟାଚରଣରେ ପ୍ରବୃତ୍ତ ହୁଅନ୍ତି । ୫ । ଦେଖିବା ହେଉନ୍ତୁ, ଆମ୍ଭେ ବ୍ରାହ୍ମଣଙ୍କଠାରେ ଏକାନ୍ତ ଭକ୍ତିପରାୟଣ ହେଲେ ସୁଦ୍ଧା ବ୍ରାହ୍ମଣଙ୍କ ଶାପରେ ଏତାଦୃଶ ଦୁରବସ୍ଥାରେ ନିପତିତ ହୋଇଅଛୁଁ । ଆମ୍ଭେ କୌଣସି ସମୟରେ ଯେ ଏହି ଅବସ୍ଥାରୁ ବିମୁକ୍ତ ହୋଇ ଇହଲୋକରେ ସୁଖୀ ହେବୁଁ ଏବଂ ପରଲୋକରେ ସ୍ୱର୍ଗଲାଭ କରିପାରିବୁଁ, ଆମ୍ଭର ଏତାଦୃଶ ଆଶା ନାହିଁ । ଫଳତଃ କୌଣସି ରାଜା ବ୍ରାହ୍ମଣଙ୍କ ସହିତ ବିରୋଧ କରି ଇହଲୋକରେ ବା ପରଲୋକରେ ସୁଖଭୋଗ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଆମ୍ଭେ ମଦୀୟ ପତ୍ନୀ ମଦୟନ୍ତୀଙ୍କ ସହିତ ବିପ୍ରଗଣଙ୍କଠାରୁ ଦୋଷପ୍ରାପ୍ତ ହୋଇ ସର୍ବଦା ସେମାନଙ୍କ ନିକଟରେ ପ୍ରଣତ ହୋଇଥାଉଁ । ସେମାନଙ୍କ ଭିନ୍ନ ଅନ୍ୟ ଗତି କିଛି ଦେଖୁନାହୁଁ ।

ହେ ଗତିଜ୍ଞପ୍ରବର ! ଦ୍ୱିଜବର ! ବ୍ରାହ୍ମଣଗଣଙ୍କ ନିକଟରେ ପ୍ରଣତ ରହିବା ଭିନ୍ନ ଇହଲୋକରେ ସୁଖଭୋଗର ଏବଂ ପରଲୋକରେ ସ୍ୱର୍ଗଦ୍ୱାରଗମନର ଅନ୍ୟ ଉପାୟ ଦେଖାଯାଏ ନାହିଁ । ୭ ।

ରାଜା ଯେତେ ଐଶ୍ୱର୍ଯ୍ୟଶାଳୀ ହେଉନ୍ତୁ ପଛକେ ବ୍ରାହ୍ମଣମାନଙ୍କ ସହିତ ବିରୋଧ କଲେ ସେ ଇହଲୋକରେ ଅବସ୍ଥାନ ଏବଂ ପରଲୋକରେ ସୁଖଭୋଗ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୮ । ତନ୍ନିମିତ୍ତ ଆମ୍ଭେ ଆପଣଙ୍କ ଅଭିଳଷିତ ଏହି ସ୍ୱକୀୟ ମଣିମୟ କୁଣ୍ଡଳଦ୍ୱୟ ଆପଣଙ୍କୁ ପ୍ରଦାନ କରିଅଛୁଁ । ପରନ୍ତୁ ଅଦ୍ୟ ଆମ୍ଭ ନିକଟରେ ଆପଣ ଯେଉଁ ଅଙ୍ଗୀକାର କଲେ, ତାହା ସଫଳ କରିବା ହେଉନ୍ତୁ ।

ଉତ୍ତଙ୍କ କହିଲେ—ହେ ରାଜନ୍ ! ଆମ୍ଭେ ପୁନଶ୍ଚ ଆପଣଙ୍କ ନିକଟକୁ ଆସି ନିଜ ଅଙ୍ଗୀକୃତ ବିଷୟ ସଫଳ କରିବୁଁ । ପରନ୍ତୁ, ହେ ପରନ୍ତପ ! ଆମ୍ଭେ ଆପଣଙ୍କୁ କିଛି ପ୍ରଶ୍ନ ପଚାରି ନିବୃତ୍ତ ହେଉଅଛୁଁ । ୧୦ ।

Digitized by srujanika@gmail.com

ସୌଦାସ କହିଲେ—ହେ ବିପ୍ର ! ଆପଣଙ୍କର ଯାହା ଅଭିରୁଚି ହୁଏ, ଆପଣ ତାହା ପଚାରିବା ହେଉନ୍ତୁ । ଆମ୍ଭେ ଆପଣଙ୍କ ସେହି ପ୍ରଶ୍ନର ପ୍ରତ୍ୟୁତ୍ତର କରିବୁଁ ଏବଂ ବିନା ବିଚାରରେ ଅଦ୍ୟ ଆପଣଙ୍କ ସମସ୍ତ ସଂଶୟ ଛେଦ କରିବୁଁ । ୧୧ ।

ଉତ୍ତଙ୍କ କହିଲେ—ଧର୍ମନୈପୁଣ୍ୟଦର୍ଶୀ ପଣ୍ଡିତଗଣ ସପ୍ତପଦବାକ୍ୟ ମନୁଷ୍ୟଙ୍କୁ ମିତ୍ର ବୋଲି କହନ୍ତି ଏବଂ ଯେଉଁ ବ୍ୟକ୍ତି ମିତ୍ର ମଧ୍ୟରେ ବିଷମଚିତ୍ତ ହୁଅନ୍ତି, ସେମାନେ ତାହାଙ୍କୁ ତସ୍କର ବୋଲି ବୋଧ କରନ୍ତି । ୧୨ ।

ହେ ପାର୍ଥିବ ! ଆପଣ ଅଦ୍ୟ ଆମ୍ଭର ମିତ୍ର ହେଲେ, ଅତଏବ ଆପଣ ଆମ୍ଭଙ୍କୁ ସ୍ୱୀୟ ଧର୍ମବୁଦ୍ଧି ପ୍ରଦାନ କରନ୍ତୁ । ଅଦ୍ୟ ଆମ୍ଭେ ଆପଣଙ୍କ ନିକଟରୁ ଅର୍ଥ ପ୍ରାପ୍ତ ହୋଇଅଛୁଁ । ଆପଣ ପୁରୁଷାଦକ, ଅତଏବ ଆପଣଙ୍କ ନିକଟକୁ ପୁନଶ୍ଚ ଆମ୍ଭର ଆଗମନ କରିବାର କର୍ତ୍ତବ୍ୟ କି ନା ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧୪ ।

ସୌଦାସ କହିଲେ—ହେ ଉତ୍ତଙ୍କ ! ଦ୍ୱିଜବର ! ଏହି ସ୍ଥଳରେ ଯାହା କର୍ତ୍ତବ୍ୟ ତାହା ଆମ୍ଭେ ଆପଣଙ୍କୁ କହୁଅଛୁଁ । ହେ ଦ୍ୱିଜଶ୍ରେଷ୍ଠ ! ଆପଣ ଆମ୍ଭ ନିକଟକୁ କଦାପି ଆଗମନ କରିବେ ନାହିଁ । ୧୫ । ହେ ଭୃଗୁକୁଳୋଦ୍‌ଵହ ! ଆମ୍ଭ ନିକଟକୁ ଆଗମନ ନକଲେ ଆପଣଙ୍କର ଶ୍ରେୟ ହେବ । ଆପଣ ଯଦି ଆଗମନ କରିବେ, ତେବେ ଆପଣଙ୍କର ନିଶ୍ଚୟ ମୃତ୍ୟୁ ହେବ । ୧୬ ।

ବୈଶମ୍ପାୟନ କହିଲେ—ବୁଦ୍ଧିମାନ୍ ନରପତି ସୌଦାସ ଏହିପରି ଉତ୍ତଙ୍କଙ୍କୁ ସେହି କର୍ତ୍ତବ୍ୟ ହିତ ବିଷୟ କହିଲେ । ସେ ନରପତି ସୌଦାସଙ୍କୁ ରାଜ୍ୟ ପାଳନ କରିବା ନିମିତ୍ତ ଆଦେଶ କରି ଅହଲ୍ୟାଙ୍କ ନିକଟକୁ ଗମନ କଲେ । ୧୭ ।

ଉତ୍ତଙ୍କ ଦିବ୍ୟ ମଣିମୟ କୁଣ୍ଡଳଯୁଗଳ ଗ୍ରହଣ କରି ମହାବେଗରେ ଗୌତମଙ୍କ ଆଶ୍ରମକୁ ଗମନ କରି ଗୁରୁପତ୍ନୀ ଅହଲ୍ୟାଙ୍କର ପ୍ରିୟପାତ୍ର ହେଲେ । ୧୮ । ମଦୟନ୍ତୀ କୁଣ୍ଡଳଯୁଗଳର ରକ୍ଷା ନିମିତ୍ତ ଯେଉଁପରି ଉପଦେଶ କରିଥିଲେ, ଉତ୍ତଙ୍କ ସେହିରୂପେ କୃଷ୍ଣାଜିନରେ କୁଣ୍ଡଳଯୁଗଳ ବାନ୍ଧିକରି ନେଇଥିଲେ । ୧୯ ।

Digitized by srujanika@gmail.com

ସେହି ବିପ୍ରର୍ଷି ଉତ୍ତଙ୍କ କୁଣ୍ଡଳଯୁଗଳ ଗ୍ରହଣ କରି ଗମନ କରୁଥିବା ସମୟରେ ବନେ କ୍ଷୁଧାବିଷ୍ଟ ହୋଇ ଫଳଭରରେ ଅବନତ ଗୋଟିଏ ବିଲ୍ୱବୃକ୍ଷ ଦେଖି ତହିଁରେ ଆରୋହଣ କଲେ । ୨୦ ।

ହେ ଅରିନ୍ଦମ ! ଦ୍ୱିଜବର ଉତ୍ତଙ୍କ କୁଣ୍ଡଳଯୁକ୍ତ କୃଷ୍ଣାଜିନକୁ ବିଲ୍ୱବୃକ୍ଷର ଶାଖାରେ ବନ୍ଧନକରି ବିଲ୍ୱଫଳମାନଙ୍କୁ ପାତିତ କରୁଥିଲେ । ୨୧ । ହେ ବିଭୋ ! ଉତ୍ତଙ୍କ ବିଲ୍ୱଫଳ ପାତିତ କରୁଥିବା କାଳରେ ତପସ୍ୱୀ ଚକ୍ଷୁ ବିଲ୍ୱଦ୍ୱାରା ଆହତ ହେବାରୁ ଯେଉଁ ଶାଖାରେ କୁଣ୍ଡଳଯୁକ୍ତ କୃଷ୍ଣାଜିନ ବଦ୍ଧ ହୋଇଥିଲା, ସେହି ଅଜିନଯୁକ୍ତ ଶାଖାର ବିଲ୍ୱଫଳ ସବୁ ନିପତିତ ହେଲା ।

ତଦନନ୍ତର ବିଲ୍ୱ ପ୍ରହାରରେ କୃଷ୍ଣାଜିନର ବନ୍ଧନ ବିଶୀର୍ଣ୍ଣ ହେବାରୁ କୁଣ୍ଡଳଯୁକ୍ତ ସେହି କୃଷ୍ଣାଜିନ ବୃକ୍ଷରୁ ସହସା ଭୂତଳରେ ପତିତ ହେଲା । ବନ୍ଧନ ବିଶୀର୍ଣ୍ଣ ହେବାରୁ ସେହି କୁଣ୍ଡଳଯୁଗଳ ଭୂମିଗତ ହେଲା ।

ତଦନନ୍ତର ସେଠାରେ କୌଣସି ସର୍ପ, ସେହି ଐରାବତକୁଳସମ୍ଭୂତ ସର୍ପ, ସତ୍ୱର ହୋଇ ମୁଖଦ୍ୱାରା କୁଣ୍ଡଳ ଧାରଣକରି କୁଣ୍ଡଳ ସହିତ ବଲ୍ମୀକ ମଧ୍ୟରେ ପ୍ରବେଶ କଲା । ଉତ୍ତଙ୍କ ଭୁଜଙ୍ଗଦ୍ୱାରା କୁଣ୍ଡଳଯୁଗଳ ଅପହୃତ ହେବାର ଦେଖି ଅତିବ ଦୁଃଖିତ ଓ କୋପାନ୍ୱିତ ହୋଇ ଉଦ୍‌ବେଗରେ ବୃକ୍ଷରୁ ପତିତ ହେଲେ ।

ତଦନନ୍ତର ସେହି ବ୍ରାହ୍ମଣସତ୍ତମ ଉତ୍ତଙ୍କ କ୍ରୋଧ ଏବଂ ଅମର୍ଷବଶତଃ ଅତିଶୟ ସନ୍ତପ୍ତ ହୋଇ ଦଣ୍ଡକାଷ୍ଠ ଗ୍ରହଣ କରି ଅବ୍ୟଗ୍ରଭାବରେ ପଞ୍ଚବିଂଶତ୍ ଦିବସ ସେହି ବଲ୍ମୀକକୁ ଖନନ କରିଥିଲେ । ଦଣ୍ଡକାଷ୍ଠର ଆଘାତଦ୍ୱାରା ବିଚ୍ଛିନ୍ନକଳେବରା ବସୁନ୍ଧରା ନାଗଲୋକକୁ ଗମନର ପଥ କରିବାକୁ ସମୁତ୍ସୁକ ଧରଣୀତଳ ବିଦାରକ ଉତ୍ତଙ୍କଙ୍କ ଅସହ୍ୟ ବେଗ ସହ୍ୟ କରିନପାରି ଅତ୍ୟନ୍ତ ଆକୁଳା ହେଲେ । ୨୯ ।

ତଦନନ୍ତର ମହାତେଜା ବଜ୍ରପାଣି ଅଶ୍ୱଯୁକ୍ତ ରଥରେ ଆରୂଢ଼ ହୋଇ ସେହି ସ୍ଥାନକୁ ଆଗମନ କରି ଦ୍ୱିଜବର ଉତ୍ତଙ୍କଙ୍କୁ ଦର୍ଶନ କଲେ । ୩୦ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ଇନ୍ଦ୍ର ବ୍ରାହ୍ମଣ ବେଶ ଧାରଣ କରି ଉତ୍ତଙ୍କଙ୍କ ଦୁଃଖରେ ଦୁଃଖିତ ହୋଇ ତାହାଙ୍କୁ କହିଲେ ଯେ, ଏହା ଆପଣଙ୍କର ସାଧ୍ୟ ନୁହେ । ୩୧ । ନାଗଲୋକ ଏହି ସ୍ଥାନରୁ ସହସ୍ର ଯୋଜନ, ଅତଏବ ଆମ୍ଭଙ୍କୁ ବୋଧ ହେଉଅଛି ଯେ, ଆପଣ ଦଣ୍ଡକାଷ୍ଠଦ୍ୱାରା ଏହା ଖନନ କରି ପାରିବେ ନାହିଁ । ୩୨ ।

ଉତ୍ତଙ୍କ କହିଲେ—ହେ ବ୍ରହ୍ମନ୍ ! ଦ୍ୱିଜୋତ୍ତମ ! ଆମ୍ଭେ ଯଦି ନାଗ-ଲୋକରେ କୁଣ୍ଡଳଯୁଗଳ ଲାଭ କରିବାକୁ ଅସମର୍ଥ ହେବୁଁ, ତେବେ ଆପଣଙ୍କ ସମକ୍ଷରେ ପ୍ରାଣ ବିସର୍ଜନ କରିବୁଁ । ୩୩ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ବଜ୍ରପାଣି ଯେତେବେଳେ ଉତ୍ତଙ୍କଙ୍କର ନିଶ୍ଚୟ ଅନ୍ୟଥା କରିବାକୁ ଅସମର୍ଥ ହେଲେ, ତେତେବେଳେ ନିଜ ବଜ୍ର ସହିତ ସେହି ଦଣ୍ଡକାଷ୍ଠକୁ ଯୋଗକଲେ । ତଦନନ୍ତର ବଜ୍ର-ପ୍ରହାରଦ୍ୱାରା ବସୁନ୍ଧରା ବିଦୀର୍ଣ୍ଣ ହେଲାରୁ ନାଗଲୋକର ପଥ ଦେଖାଗଲା । ସେ ସେହି ପଥଦ୍ୱାରା ନାଗଲୋକରେ ପ୍ରବିଷ୍ଟ ହୋଇ ସହସ୍ରଯୋଜନବ୍ୟାପୀ ନାଗଲୋକ ଦର୍ଶନ କଲେ । । ୩୬ ।

ହେ ମହାଭାଗ ! ସେହି ନାଗଲୋକ ଦିବ୍ୟ ମଣି ଓ ମୁକ୍ତାସମୂହରେ ଅଲଂକୃତ ସୁବର୍ଣ୍ଣମୟ ପ୍ରାଚୀରଦ୍ୱାରା ପରିବେଷ୍ଟିତ । ତନ୍ମଧ୍ୟରେ ବାପୀସମୂହ ସ୍ଫଟିକନିର୍ମିତ ସୋପାନସମନ୍ୱିତ, ନଦୀସମୂହ ବିମଳଜଳଯୁକ୍ତ ଏବଂ ବୃକ୍ଷବୃନ୍ଦ ବହୁବିଧ ବିହଙ୍ଗମଗଣରେ ସମାଚ୍ଛାଦିତ ହୋଇଥିବାର ଅବଲୋକନ କଲେ । ୩୮ । ଭୃଗୁନନ୍ଦନ ଉତ୍ତଙ୍କ ପଞ୍ଚଯୋଜନବିସ୍ତୃତ ଶତଯୋଜନ ଆୟତ ନାଗଲୋକର ଦ୍ୱାର ଅବଲୋକନ କରି ସେହିଠାରେ ଧୀନଭାବାପନ୍ନ ହୋଇ କୁଣ୍ଡଳ ଆହରଣ ବିଷୟରେ ନିରାଶ ହେଲେ । ୪୦ ।

ତେତେବେଳେ ତେଜଃପୂର୍ଣ୍ଣକଳେବର ଗୋଟିଏ ଅଶ୍ୱ ତାହାଙ୍କ ନେତ୍ରପଥରେ ପତିତ ହେଲା । ସେହି ଅଶ୍ୱର ପୁଚ୍ଛ ଶ୍ୱେତ ଓ କୃଷ୍ଣ ଲୋମରେ ବିଭୂଷିତ ଏବଂ ମୁଖ ଓ ନେତ୍ରଯୁଗଳ ରକ୍ତବର୍ଣ୍ଣ । ଅଶ୍ୱ ଅଚିରାତ୍ ଉତ୍ତଙ୍କଙ୍କ ନିକଟକୁ ଆଗମନ ପୂର୍ବକ ତାହାଙ୍କୁ କହିଲା—ହେ ଉତ୍ତଙ୍କ ! ତୁମ୍ଭେ ଆମ୍ଭ ଗୁହ୍ୟଦ୍ୱାରରେ ଫୁତ୍କାର ପ୍ରଦାନ କର, ତାହାହେଲେ କୁଣ୍ଡଳଲାଭ ବିଷୟରେ ସମର୍ଥ ହେବ । ଐରାବତବଂଶସମ୍ଭୂତ ଏକ ନାଗ ତୁମ୍ଭର କୁଣ୍ଡଳଦ୍ୱୟ

Digitized by srujanika@gmail.com

ଏହି ସ୍ଥାନକୁ ଆନୟନ କରିଅଛି । ହେ ପୁତ୍ର ! ତୁମ୍ଭେ ଗୁହ୍ୟଦ୍ୱାରରେ ଫୁତ୍କାର ପ୍ରଦାନ ବିଷୟରେ ଘୃଣା କରନା । ତୁମ୍ଭେ ପୂର୍ବେ ଗୌତମଙ୍କ ଆଶ୍ରମରେ ବାରମ୍ବାର ଏହି କାର୍ଯ୍ୟ କରିଅଛ । ୪୩ ।

ଉତ୍ତଙ୍କ କହିଲେ—ଆମ୍ଭେ ଆପଣଙ୍କୁ ଜାଣିପାରୁ ନାହୁଁ । ଆମ୍ଭେ ପୂର୍ବେ ଉପାଧ୍ୟାୟଙ୍କ ଆଶ୍ରମରେ ଯେଉଁ ଆଚରଣ କରିଥିଲୁଁ, ତାହା ଆପଣଙ୍କ ମୁଖରୁ ଶୁଣିବାକୁ ଇଚ୍ଛା କରୁଅଛୁଁ । ୪୪ ।

ଅଶ୍ୱ କହିଲେ—ହେ ବିପ୍ର ! ଆମ୍ଭେ ତୁମ୍ଭ ଗୁରୁ ଗୌତମଙ୍କର ଗୁରୁ ଅଟୁଁ । ତୁମ୍ଭେ ଆମ୍ଭଙ୍କୁ ଜ୍ୱଳନ ଜାତବେଦା ବୋଲି ଜ୍ଞାନ କର । ତୁମ୍ଭେ ଗୁରୁଙ୍କ ପ୍ରୟୋଜନ ନିମିତ୍ତ ଶୁଦ୍ଧଭାବରେ ସର୍ବଦା ଆମ୍ଭଙ୍କୁ ପୂଜା କରୁଥାଅ । ତନ୍ନିମିତ୍ତ ଆମ୍ଭେ ତୁମ୍ଭର ଶ୍ରେୟୋବିଧାନ କରିବୁଁ । ଆମ୍ଭେ ଯାହା କହିଲୁଁ, ତାହା ତୁମ୍ଭେ ଶୀଘ୍ର କର, ବିଳମ୍ବ କରନା । ଉତ୍ତଙ୍କ ଚିତ୍ରଭାନୁଙ୍କଠାରୁ ଏହି ବାକ୍ୟ ଶ୍ରବଣ କରି ତାହା କଲେ । ତଦନନ୍ତର ଘୃତାର୍ଚ୍ଚି ଉତ୍ତଙ୍କଙ୍କ ଠାରେ ପରମ ପ୍ରୀତ ହୋଇ ନାଗଲୋକକୁ ଦଗ୍ଧକରିବା ଅଭିଳାଷରେ ପ୍ରଜ୍ୱଳିତ ହେଲେ । ୪୭ ।

ହେ ଭାରତ ! ଅନନ୍ତର ସେଠାରେ ତାହାଙ୍କ ରୋମକୂପମାନଙ୍କଠାରୁ ନାଗଲୋକର ଭୟାବହ ନିବିଡ଼ ଧୂମ ପ୍ରାଦୁର୍ଭୂତ ହେଲା । ୪୮ ।

ହେ ଭାରତ ! ମହାରାଜ ! ସେହି ଧୂମ ଅତିଶୟ ବର୍ଦ୍ଧିତ ହେବାରୁ ନାଗଲୋକରେ କିଛି ଦୃଷ୍ଟି ହେଲା ନାହିଁ । ୪୯ ।

ହେ ଜନମେଜୟ ! ତଦନନ୍ତର ଐରାବତ ନାଗର ଗୃହବୃନ୍ଦରେ ବାସୁକି ପ୍ରଭୃତି ନାଗମାନଙ୍କର ହାହାକାର ଶବ୍ଦ ଉତ୍ଥିତ ହେଲା । ୫୦ ।

ହେ ଭାରତ ! ସେତେବେଳେ ମହାବୃତ୍ତ ବନ ଓ ପର୍ବତ ସଦୃଶ ଧୂମରୁଦ୍ଧ ଗୃହସମୂହ ଅପ୍ରକାଶିତ ହେଲା । ୫୧ । ନାଗଗଣ ଧୂମଭରରେ ଆରକ୍ତ ନୟନ ଏବଂ ବହ୍ନିତେଜରେ ତାପିତ ହୋଇ ମହାତ୍ମା ଭୃଗୁନନ୍ଦନ ଉତ୍ତଙ୍କଙ୍କ ନିଶ୍ଚୟ ଜାଣିବା ନିମିତ୍ତ ଆଗମନ କଲେ । ୫୨ । ସେମାନେ ମହାତେଜା ମହର୍ଷିଙ୍କର ନିଶ୍ଚୟ ଶ୍ରବଣ କରି ଭୟଜନିତ ସଜଳ ଲୋଚନରେ ଯଥାବିଧି ତାହାଙ୍କୁ ପୂଜାକଲେ । ୫୩ । ନାଗଗଣ ବଦ୍ଧାଞ୍ଜଳି ହୋଇ ବାଳକ

Digitized by srujanika@gmail.com

ଓ ବୃନ୍ଦଗଣଙ୍କୁ ଅଗ୍ରରେ କରି ଅବନତ ମସ୍ତକରେ ପ୍ରଣିପାତ ପୂର୍ବକ କହିଲେ—ହେ ଭଗବନ୍ ! ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ । ୫୪ ।

ପନ୍ନଗଗଣ ବ୍ରାହ୍ମଣଙ୍କୁ ପ୍ରସନ୍ନ କରି ପାଦ୍ୟ ଏବଂ ଅର୍ଘ୍ୟ ନିବେଦନ କରି ପରମାର୍ଚ୍ଚିତ ଦିବ୍ୟ ମଣିମୟ କୁଣ୍ଡଳଦ୍ୱୟ ତାହାଙ୍କୁ ପ୍ରଦାନ କଲେ । ୫୫ ।

ତଦନନ୍ତର ପ୍ରତାପଶାଳୀ ଉତ୍ତଙ୍କ ନାଗଗଣଙ୍କଦ୍ୱାରା ସେଠାରେ ପୂଜିତ ହୋଇ ଅଗ୍ନିଙ୍କୁ ପ୍ରଦକ୍ଷିଣ କରି ଗୁରୁଙ୍କ ଗୃହକୁ ଗମନ କଲେ । ୫୬ ।

ହେ ରାଜନ୍ ! ଅନଘ ! ସେ ସତ୍ୱର ଗୁରୁ ଗୌତମଙ୍କ ଗୃହକୁ ଗମନ କରି ଗୁରୁପତ୍ନୀ ଅହଲ୍ୟାଙ୍କୁ ସେହି ଦିବ୍ୟ କୁଣ୍ଡଳଯୁଗଳ ପ୍ରଦାନ କଲେ । ୫୮ । ଏବଂ ବାସୁକି ପ୍ରଭୃତି ନାଗଗଣଙ୍କ ବୃତ୍ତାନ୍ତସବୁ ଗୁରୁଙ୍କ ନିକଟରେ ଯଥାବତ୍ କୀର୍ତ୍ତନ କଲେ ।

ହେ ଜନମେଜୟ ! ମହାତ୍ମା ଦ୍ୱିଜସତ୍ତମ ଉତ୍ତଙ୍କ ଏହିରୂପେ ତ୍ରିଲୋକ ଭ୍ରମଣ କରି ସେହି ଦିବ୍ୟ ମଣିମୟ କୁଣ୍ଡଳଯୁଗଳ ଆହରଣ କରିଥିଲେ । ୫୯ ।

ହେ ଭରତଶ୍ରେଷ୍ଠ ! ତୁମ୍ଭେ ଯାହାଙ୍କ କଥା ଆମ୍ଭଙ୍କୁ ପଚାରିଥିଲ, ସେହି ପରମ ତପସ୍ୱୀ ମୁନିବର ଉତ୍ତଙ୍କ ଏହିପରି ପ୍ରଭାବଶାଳୀ ଅଟନ୍ତି । ୬୦ ।

---

## ଏକୋନଷଷ୍ଟିତମ ଅଧ୍ୟାୟ

ଜନମେଜୟ କହିଲେ—ହେ ଦ୍ୱିଜସତ୍ତମ ! ମହାଯଶା ମହାବାହୁ ଗୋବିନ୍ଦ ଉତ୍ତଙ୍କଙ୍କୁ ବର ପ୍ରଦାନ କରି ତଦନନ୍ତର କି କଲେ ? ୧ ।

ବୈଶମ୍ପାୟନ କହିଲେ—ଗୋବିନ୍ଦ ଉତ୍ତଙ୍କଙ୍କୁ ବର ପ୍ରଦାନ କରି ସାତ୍ୟକିଙ୍କ ସହିତ ଶୀଘ୍ରଗାମୀ ତୁରଗଯୁକ୍ତ ରଥରେ ଆରୋହଣ କରି ସରୋବର, ସରିତ୍ ଓ ପର୍ବତମାଳା ଅତିକ୍ରମ ପୂର୍ବକ ରମଣୀୟ ଦ୍ୱାରବତୀ ପୁରୀକୁ ଗମନ କଲେ । ୩ ।

ହେ ମହାରାଜ ! ସେତେବେଳେ ରୈବତକ ପର୍ବତରେ ଉତ୍ସବ ଉପସ୍ଥିତ ହେବାରୁ ପୁଣ୍ଡରୀକାକ୍ଷ ଗୋବିନ୍ଦ ଯୁଯୁଧାନଙ୍କ ସହିତ ସେଠାରେ ଉପସ୍ଥିତ ହେଲେ । ୪ ।

Digitized by srujanika@gmail.com

ହେ ଭରତଶ୍ରେଷ୍ଠ ! ସେହି ଗିରିବର ରୈବତକ ବିଚିତ୍ର ନାନା ବର୍ଣ୍ଣ ଦ୍ୱାରା ଅଳଂକୃତ, ରତ୍ନମୟ କୋଷଦ୍ୱାରା ସଂବୃତ ଉତ୍କୃଷ୍ଟ ସ୍ୱର୍ଣ୍ଣମୟ ମାଳା, ମନୋହର ପୁଷ୍ପ, ବସ୍ତ୍ର, କଳ୍ପବୃକ୍ଷ ଏବଂ ସୁବର୍ଣ୍ଣମୟ ଦୀପବୃକ୍ଷଦ୍ୱାରା ସୁଶୋଭିତ ହେବାରୁ ଗୁହା ଓ ନିର୍ଝର ଦେଶରେ ଦିବସ ସଦୃଶ ପ୍ରଭା ବିରାଜୁଥିଲା । ୭ । ଚତୁର୍ଦ୍ଦିଗ ଘଣ୍ଟାଯୁକ୍ତ ବିଚିତ୍ର ପତାକା ସ୍ତ୍ରୀ ଓ ପୁରୁଷବୃନ୍ଦରେ ବେଷ୍ଟିତ ହୋଇଥିବାରୁ ଉତ୍ତମ ଗାନ କଲାପରି ଜଣାଯାଉଥିଲା । ମଣିଗଣଦ୍ୱାରା ବିଭୂଷିତ ହେବାରୁ ସୁମେରୁ ସଦୃଶ ଦର୍ଶନୀୟ ହୋଇଥିଲା । ପ୍ରମତ୍ତ ହୃଷ୍ଟରୂପା ସ୍ତ୍ରୀ ଏବଂ ଗାୟକ ପୁରୁଷଗଣଙ୍କର ଗଗନସ୍ପର୍ଶୀ ଶବ୍ଦଦ୍ୱାରା ପର୍ବତଶ୍ରେଷ୍ଠ ଗାନ କଲାପରି ଜଣାଯାଉଥିଲା । ପ୍ରମତ୍ତ, ମତ୍ତ ଏବଂ ସମତ୍ତ ପ୍ରାଣିଗଣଙ୍କର ଅର୍ଥାତ୍ କ୍ରୀଡ଼ାସକ୍ତ, ମଦମତ୍ତ ଓ ଆହ୍ଲାଦିତଚିତ୍ତ ବ୍ୟକ୍ତିଗଣଙ୍କର ବାହୁ ଆସ୍ଫୋଟ, ପରସ୍ପର ଆକର୍ଷଣ ଏବଂ କଳ୍‌କଳା ଶବ୍ଦରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେଉଥିଲା । ଅତି ଉତ୍କୃଷ୍ଟ ପବିତ୍ର ଗୃହ, ବିପଣି, ଆପଣ, ଆହାର ବିହାର ସାମଗ୍ରୀ, ବସ୍ତ୍ରମାଲ୍ୟ, ବୀଣା, ବେଣୁ, ମୃଦଙ୍ଗ ଏବଂ ସୁରା ଓ ମୈରେୟ ମିଶ୍ରିତ ଭକ୍ଷ୍ୟଦ୍ରବ୍ୟ ସର୍ବତ୍ର ପର୍ଯ୍ୟାପ୍ତ ପରିମାଣରେ ରହିଥିଲା ଏବଂ ପୁଣ୍ୟାତ୍ମା ବ୍ୟକ୍ତିଗଣ ନିରନ୍ତର ଦାନ, ଅନ୍ଧ ଓ ଦରିଦ୍ରମାନଙ୍କୁ ଅଭିଲଷିତ ବସ୍ତୁ ପ୍ରଦାନ କରୁଥିଲେ । ଅତଏବ ସେହି ମହାଗିରି ରୈବତକର ମହୋତ୍ସବ ଅତୀବ ଆନନ୍ଦଜନକ ହୋଇଥିଲା । ୧୩ । ରୈବତକ ପର୍ବତର ଉତ୍ସବରେ ପୁଣ୍ୟଶୀଳ ବ୍ୟକ୍ତିଗଣ, ବୃଷ୍ଣିବଂଶୀୟ ବୀର ବ୍ୟକ୍ତିଗଣ ପବିତ୍ର ଗୃହଯୁକ୍ତ ବିହାରସ୍ଥାନରେ ଅବସ୍ଥାନ କରିଥିଲେ ।

ହେ ଭରତର୍ଷଭ ! ତେତେବେଳେ ଗୃହସମୂହରେ ପରିବ୍ୟାପ୍ତ ସେହି ଗିରିବର କୃଷ୍ଣଙ୍କ ସାନ୍ନିଧ୍ୟ ପ୍ରାପ୍ତହୋଇ ଇନ୍ଦ୍ରାଳୟ ଓ ଦେବଲୋକ ସଦୃଶ ଶୋଭା ପାଇଥିଲା ।

ତଦନନ୍ତର ଗୋବିନ୍ଦ ସାତ୍ୟକିଙ୍କ ସହିତ ସେଠାରେ ସମାଗତ ହୋଇ ଚିରକାଳ ପ୍ରବାସ ବଶତଃ ପ୍ରହୃଷ୍ଟ ଚିତ୍ତରେ ନିଜ ଗୃହକୁ ଗମନ କଲେ । ୧୭ । ବାସବ ଦାନବଦଳ ଦଳନ କରି ଅମରାବତୀ ନଗରୀକୁ ଆଗମନ କଲେ । ଦେବଗଣ ଯେଉଁପରି ତଦୀୟ ନିକଟକୁ ଗମନ କରନ୍ତି, ତଦ୍‌ବତ୍ ବୃଷ୍ଣିକୁଳ-ନନ୍ଦନ କୃଷ୍ଣ କୁରୁକୁଳର ଧ୍ୱଂସ ସ୍ୱରୂପ ଦୁଷ୍କର କର୍ମ କରି ଦ୍ୱାରବତୀ ପୁରୀରେ ପ୍ରବେଶ କଲାରୁ ଭୋଜବଂଶୀୟ, ବୃଷ୍ଣିବଂଶୀୟ ଓ ଅନ୍ଧକବଂଶୀୟ-

Digitized by srujanika@gmail.com

ମାନେ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ମେଧାବୀ କୃଷ୍ଣ ସେମାନଙ୍କର ସମ୍ମାନନା କରି କୁଶଳ ପ୍ରଭୃତି ପ୍ରଶ୍ନକରି ପ୍ରୀତଚିତ୍ତରେ ପିତା ଏବଂ ମାତାଙ୍କୁ ଅଭିବାଦନ କଲେ । ୧୯ ।

ମହାଭୁଜ କୃଷ୍ଣ ପିତା ଓ ମାତାଙ୍କଦ୍ୱାରା ଆଲିଙ୍ଗିତ ଓ ସାନ୍ତ୍ୱନା-ପ୍ରାପ୍ତ ହୋଇ ନିକଟରେ ଉପବିଷ୍ଟ ସେହି ବୃଷ୍ଣିବଂଶୀୟଗଣ କର୍ତ୍ତୃକ ପରିବେଷ୍ଟିତ ହେଲେ । ୨୦ ।

ମହାତେଜା କୃଷ୍ଣ ପାଦପ୍ରକ୍ଷାଳନ ପୂର୍ବକ ବିଶ୍ରାନ୍ତ ଭାବରେ ଉପସ୍ଥିତ ହେବାପରେ ପିତା ଯୁଦ୍ଧବୃତ୍ତାନ୍ତ ପ୍ରଶ୍ନକଲେ । ତଦନନ୍ତର ସେ ତାହାଙ୍କୁ ସମସ୍ତ ଯୁଦ୍ଧବୃତ୍ତାନ୍ତ କହିଲେ । ୨୧ ।

---

# ଷଷ୍ଟିତମ ଅଧ୍ୟାୟ

ବସୁଦେବ କହିଲେ—ହେ ବୃଷ୍ଣିକୁଳନନ୍ଦନ କୃଷ୍ଣ ! ସେହି କୁରୁକ୍ଷେତ୍ରରେ ନିତ୍ୟ, ପରସ୍ପର ବଧ୍ୟମାନ ନରଗଣଙ୍କର ଯେଉଁ ପରମ ଅଦ୍ଭୁତ ସଂଗ୍ରାମ ହୋଇଥିଲା, ତାହା ଆମ୍ଭେ କଥାପ୍ରସଙ୍ଗରେ ଶୁଣିଅଛୁଁ । ପରନ୍ତୁ ତୁମ୍ଭେ ପ୍ରତ୍ୟକ୍ଷରେ ଦର୍ଶନ କରିଅଛ, ଏବଂ ସେମାନଙ୍କ ରୂପ ଅବଗତ ହୋଇଅଛ । ଅତଏବ ହେ ଅନଘ ! ସେହି ଯୁଦ୍ଧ ବିଷୟ ପ୍ରକୃତରୂପେ ଆମ୍ଭନିକଟରେ ବର୍ଣ୍ଣନ କର । ୨ ।

ଭୀଷ୍ମ, କର୍ଣ୍ଣ, ଦ୍ରୋଣ, କୃପ ଓ ଶଲ୍ୟ ଏହିମାନଙ୍କ ସହିତ ମହାତ୍ମା ପାଣ୍ଡବମାନଙ୍କର ଏବଂ କୃତାସ୍ତ୍ର, ନାନା ବେଶ ଓ ଆକୃତିବିଶିଷ୍ଟ ନାନା ଦେଶବାସୀ ଅନ୍ୟାନ୍ୟ କ୍ଷତ୍ରିୟମାନଙ୍କର ଯେଉଁପରି ଯୁଦ୍ଧ ହୋଇଥିଲା ତାହା ବର୍ଣ୍ଣନ କର । ୪ ।

ବୈଶମ୍ପାୟନ କହିଲେ—ପୁଣ୍ଡରୀକାକ୍ଷ କୃଷ୍ଣ ମାତାଙ୍କ ନିକଟରେ ପିତାଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସଂଗ୍ରାମରେ କୁରୁବୀରମାନଙ୍କର ଯେଉଁପରି ନିଧନ ହୋଇଥିଲା, ତାହା କହିଲେ । ୫ ।

Digitized by srujanika@gmail.com

କୃଷ୍ଣ କହିଲେ—ମହାତ୍ମା କ୍ଷତ୍ରିୟଗଣଙ୍କର ସେହି ଅତିଅଦ୍ଭୁତ କର୍ମସବୁ ଶତବର୍ଷରେ ବର୍ଣ୍ଣିତ ହୋଇ ପାରିବ ନାହିଁ । ତଥାପି ପ୍ରଧାନ ପ୍ରଧାନ ନରପାଳମାନଙ୍କର କର୍ମସବୁ ସଂକ୍ଷେପରେ ଯଥାବତ୍ ବର୍ଣ୍ଣନ କରୁଅଛୁଁ ।

ହେ ଅମିତଦ୍ୟୁତେ ! ଶ୍ରବଣ କରିବା ହେଉନ୍ତୁ । ୭ । କୁରୁବଂଶାବତଂସ କୁରୁ ସେନାପତି ଭୀଷ୍ମ, ସୁର ସେନାପତି ଶଚୀପତିଙ୍କ ସଦୃଶ କୌରବମାନଙ୍କର ଏକାଦଶ ଚମୂର ଅଧିପତି ହୋଇଥିଲେ । ୮ । ପାଣ୍ଡବପକ୍ଷର ନେତା ବୁଦ୍ଧିମାନ୍ ଶିଖଣ୍ଡୀ ସପ୍ତ ଚମୂର ଅଧିପତି ହୋଇଥିଲେ । ଶ୍ରୀମାନ୍ ସବ୍ୟସାଚୀ ଅର୍ଜୁନ ସେମାନଙ୍କୁ ରକ୍ଷା କରୁଥିଲେ । ୯ । ସେହି ମହାତ୍ମାଗଣ, ଦଶ ଦିବସ କୁରୁ ଓ ପାଣ୍ଡବଗଣଙ୍କର ରୋମହର୍ଷଜନକ ଯୁଦ୍ଧ କରିଥିଲେ । ୧୦ ।

ତଦନନ୍ତର ଶିଖଣ୍ଡୀ ଗାଣ୍ଡୀବଧନ୍ୱା ଅର୍ଜୁନଙ୍କ ସହିତ ମହାଯୁଦ୍ଧରେ ଯୁଧ୍ୟମାନ ଗଙ୍ଗାନନ୍ଦନ ଭୀଷ୍ମଙ୍କୁ ବହୁବାଣଦ୍ୱାରା ନିହତ କଲେ । ସେହି ମନସ୍ୱୀ ଭୀଷ୍ମ ଦକ୍ଷିଣାୟନରେ ଶରଶଯ୍ୟାରେ ଶୟନକରି ଉତ୍ତରାୟଣ ଉପସ୍ଥିତ ହେବାରୁ ପ୍ରାଣପରିତ୍ୟାଗ କଲେ । ୧୨ ।

ତଦନନ୍ତର ଦୈତ୍ୟଗୁରୁ ଭାର୍ଗବଙ୍କ ସଦୃଶ କୁରୁକୁଳର ଗୁରୁ ମହାଅସ୍ତ୍ରପଣ୍ଡିତବର ଦ୍ରୋଣ କୌରବମାନଙ୍କର ସେନାପତି ହେଲେ । ୧୩ । ସେହି ସମରଶ୍ଳାଘୀ ଦ୍ୱିଜସତ୍ତମ ଦ୍ରୋଣ ଅବଶିଷ୍ଟ ନ ଅକ୍ଷୌହିଣୀ ସେନାରେ ପରିବୃତ ହୋଇ ଯୁଦ୍ଧରେ ପ୍ରବୃତ୍ତ ହେଲେ । କୃପ ଓ ପ୍ରଧାନ କ୍ଷତ୍ରିୟଗଣ ତାହାଙ୍କ ରକ୍ଷା ବିଷୟରେ ନିଯୁକ୍ତ ହୋଇଥିଲେ । ୧୪ । ମେଧାବୀ ମହାଅସ୍ତ୍ରବିତ୍ ଧୃଷ୍ଟଦ୍ୟୁମ୍ନ ପାଣ୍ଡବଗଣଙ୍କ ସେନାପତି ହେଲେ । ମିତ୍ରଦେବଙ୍କଦ୍ୱାରା ରକ୍ଷିତ ବରୁଣ ଦେବଙ୍କ ସଦୃଶ ସେ ଭୀମକର୍ତ୍ତୃକ ରକ୍ଷିତ ହୋଇଥିଲେ ।

ସେହି ମହାମନା ଧୃଷ୍ଟଦ୍ୟୁମ୍ନ ପିତାଙ୍କ ପରିଭବ ସ୍ମରଣ କରି ଦ୍ରୋଣଙ୍କୁ ବିନାଶ କରିବା ମାନସରେ ସେନାବୃନ୍ଦରେ ପରିବୃତ ହୋଇ ଯୁଦ୍ଧରେ ଅତି ଦୁଷ୍କର କର୍ମ କରିଥିଲେ । ୧୭ । ନାନା ଦିଗମାନଙ୍କରୁ ସମାଗତ ନରପାଳଗଣ ସେହି ଦ୍ରୋଣ ଓ ଧୃଷ୍ଟଦ୍ୟୁମ୍ନଙ୍କ ଯୁଦ୍ଧରେ ପ୍ରାୟ ସମସ୍ତେ ନିଧନପ୍ରାପ୍ତ ହେଲେ । ସେହି ସୁଦାରୁଣ ସମର ପଞ୍ଚଦିବସରେ ସମ୍ପନ୍ନ

Digitized by srujanika@gmail.com

ହୋଇଥିଲା । ତଦନନ୍ତର ଦ୍ରୋଣାଚାର୍ଯ୍ୟ ବିଶ୍ରାନ୍ତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କର ବଶବର୍ତ୍ତୀ ହେଲେ । ୧୮ ।

ତଦନନ୍ତର କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ସୈନ୍ୟମଧ୍ୟରେ ଅବଶିଷ୍ଟ ଅକ୍ଷୌହିଣୀ ସେନାରେ ସମାବୃତ ହୋଇ ଯୁଦ୍ଧରେ ସେନାପତି କାର୍ଯ୍ୟରେ ନିଯୁକ୍ତ ହେଲେ । ୧୯ । ପାଣ୍ଡବଗଣଙ୍କର ପ୍ରଭୂତ ବୀର ହତ ହେବାରୁ ଅବଶିଷ୍ଟ ତିନି ଚମୂ ଅର୍ଜୁନଙ୍କଦ୍ୱାରା ରକ୍ଷିତ ହୋଇ ଯୁଦ୍ଧରେ ଅବସ୍ଥିତ ଥିଲେ । ୨୦ । ପରେ ଦ୍ୱିତୀୟ ଦିବସରେ ସୂତନନ୍ଦନ ସୁଦାରୁଣ କର୍ଣ୍ଣ ପାବକପ୍ରାପ୍ତ ପତଙ୍ଗ ସଦୃଶ ପୃଥାପୁତ୍ର ଅର୍ଜୁନଙ୍କୁ ପ୍ରାପ୍ତହୋଇ ପଞ୍ଚତ୍ୱ ଲାଭକଲେ । ୨୧ ।

କର୍ଣ୍ଣ ହତ ହେବାରୁ ହତତେଜା କୌରବଗଣ ନିରୁତ୍ସାହ ହୋଇ ମଦ୍ରାଧିପ ଶଲ୍ୟଙ୍କୁ ତିନି ଅକ୍ଷୌହିଣୀ ସେନାର ଅଧିପତି କଲେ । ପାଣ୍ଡବମାନେ ମଧ୍ୟ ବିରାଟ ପ୍ରଭୃତି ନିହତ ହେବାରୁ ଉତ୍ସାହଶୂନ୍ୟ ହୋଇ ଶଲ୍ୟଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ଯୁଧିଷ୍ଠିରଙ୍କୁ ଏକ ଅକ୍ଷୌହିଣୀ ସେନାର ଅଧିପତି କଲେ ।୨୩ । କୁରୁରାଜ ଯୁଧିଷ୍ଠିର ମଦ୍ରରାଜ ଶଲ୍ୟଙ୍କ ସହିତ ଅର୍ଦ୍ଧଦିବସ ସୁଦୁଷ୍କର ସଂଗ୍ରାମକରି ତାହାଙ୍କୁ ସଂହାର କଲେ । ୨୪ । ଶଲ୍ୟ ନିହତ ହେବାପରେ ମହାମନା ଅମିତ-ବିକ୍ରମ ସହଦେବ ସେହି କଳହର ମୂଳ କାରଣ ଶକୁନିଙ୍କୁ ନିହତ କଲେ । ୨୫ । ଶକୁନି ଓ ସୈନ୍ୟସମୂହ ନିହତ ହେବାରୁ ଧୃତରାଷ୍ଟ୍ରନନ୍ଦନ ରାଜା ସୁଯୋଧନ ଅତିଶୟ ଦୁର୍ମନା ହୋଇ ଗଦା ଗ୍ରହଣ ପୂର୍ବକ ପଳାୟନ କରି ଦ୍ୱୈପାୟନ ହ୍ରଦ ଅର୍ଥାତ୍ ବ୍ୟାସସରୋବରରେ ଅବସ୍ଥାନ କଲେ ।

ପ୍ରତାପଶାଳୀ ଭୀମ କ୍ରୁଦ୍ଧ ହୋଇ ତାହାଙ୍କ ଅନୁଧାବନ କରି ବ୍ୟାସହ୍ରଦରେ ତାହାଙ୍କୁ ଦେଖିଲେ । ୨୭ । ଅନନ୍ତର ପଞ୍ଚପାଣ୍ଡବ ହୃଷ୍ଟଚିତ୍ତରେ ହତାବଶିଷ୍ଟ ସୈନ୍ୟମାନଙ୍କ ସହିତ ହ୍ରଦସ୍ଥ ଦୁର୍ଯ୍ୟୋଧନଙ୍କୁ ପରିବେଷ୍ଟନ କରି ସେଠାରେ ଉପବିଷ୍ଟ ହୋଇ ଭର୍ତ୍ସନା କଲେ । ୨୮ । ସଳିଳସ୍ଥ ସୁଯୋଧନ ବାକ୍ୟବାଣରେ ଅତିଶୟ ବିକ୍ଷତ ହୋଇ ଗଦାହସ୍ତରେ ସଳିଳରୁ ଗାତ୍ରୋତ୍ଥାନ କରି ଯୁଦ୍ଧ ନିମିତ୍ତ ଉପସ୍ଥିତ ହେଲେ । ୨୯ ।

ତଦନନ୍ତର ଭୀମସେନ ଯୁଦ୍ଧରେ ନରପାଳମାନଙ୍କ ସମକ୍ଷରେ ବିକ୍ରମ ପ୍ରକାଶ ପୂର୍ବକ ଧୃତରାଷ୍ଟ୍ରନନ୍ଦନ ଦୁର୍ଯ୍ୟୋଧନଙ୍କୁ ନିହତ କଲେ । ୩୦ ।

Digitized by srujanika@gmail.com

ତଦନନ୍ତର ଦ୍ରୋଣପୁତ୍ର ଅଶ୍ୱତ୍ଥାମା ପିତୃବଧ ହେତୁରୁ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ନିଶା ସମୟରେ ଶିବିରମଧ୍ୟରେ ପ୍ରସୁପ୍ତ ସମସ୍ତ ପାଣ୍ଡବ ସୈନ୍ୟ ସଂହାର କଲେ । ୩୧ ।

ତେତେବେଳେ ଆମ୍ଭେ ଏବଂ ଯୁଯୁଧାନଙ୍କ ବ୍ୟତିରେକେ ପୁତ୍ର, ବଳ ଏବଂ ମିତ୍ରବର୍ଜ୍ଜିତ ପଞ୍ଚପାଣ୍ଡବ ମାତ୍ର ଅବଶିଷ୍ଟ ରହିଥିଲେ । ୩୨ । ଅଶ୍ୱତ୍ଥାମା କୃପ ଓ ଭୋଜଙ୍କ ସହିତ ସଂଗ୍ରାମରୁ ମୁକ୍ତ ହେଲେ, ଏବଂ କୁରୁବଂଶୀୟ ଯୁଯୁତ୍ସୁ ପାଣ୍ଡବମାନଙ୍କ ନିକଟରୁ ମୁକ୍ତ ହେଲେ । ୩୩ । କୌରବେନ୍ଦ୍ର ସୁଯୋଧନ ବାନ୍ଧବବର୍ଗଙ୍କ ସହିତ ନିହତ ହେବାରୁ ବିଦୁର ଓ ସଞ୍ଜୟ ଧର୍ମରାଜଙ୍କ ନିକଟରେ ଉପସ୍ଥିତ ହେଲେ ।

ହେ ପ୍ରଭୋ ! ସେହି ଯୁଦ୍ଧ ଏହିରୂପେ ଅଷ୍ଟାଦଶ ଦିବସ ହୋଇଥିଲା । ସେହି ଯୁଦ୍ଧରେ ଯେଉଁ ନରପାଳବୃନ୍ଦ ନିହତ ହେଲେ ସେମାନେ ସମସ୍ତେ ସ୍ୱର୍ଗକୁ ଗମନ କରିଅଛନ୍ତି । ୩୪ ।

ବୈଶମ୍ପାୟନ କହିଲେ—ମହାରାଜ ! ବୃଷ୍ଣିବଂଶୀୟମାନେ ସେହି ଲୋମହର୍ଷଣ କଥା ଶ୍ରବଣ କରି ଦୁଃଖଶୋକରେ ଅତିଶୟ ଆର୍ତ୍ତ ହେଲେ ।୩୫।



# ଏକଷଷ୍ଟିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ମହାମତି ପ୍ରତାପଶାଳୀ ବାସୁଦେବ ପିତାଙ୍କ ନିକଟରେ ସେହି ଭାରତ ଯୁଦ୍ଧ ବର୍ଣ୍ଣନ କରୁ କରୁ ବସୁଦେବଙ୍କର ଅପ୍ରିୟ ହେବ ବୋଲି କଥାମଧ୍ୟରେ ଅଭିମନ୍ୟୁଙ୍କ ବଧବୃତ୍ତାନ୍ତ ଅତିକ୍ରମ କରି କହିଲେ । ୧ । ବସୁଦେବ ଦୌହିତ୍ରବଧ ବିବରଣ ଶ୍ରବଣ କଲେ ଦୁଃଖ ଏବଂ ଶୋକରେ ଅତିଶୟ ସନ୍ତପ୍ତ ହେବେ ବୋଲି ତାହା କହିଲେ ନାହିଁ । ୩ ।

ପରନ୍ତୁ ସୁଭଦ୍ରା କହିଲେ—ହେ କୃଷ୍ଣ ! ତୁମ୍ଭେ ଯେ ଆମ୍ଭ ପୁତ୍ର ଅଭିମନ୍ୟୁଙ୍କ ବଧବୃତ୍ତାନ୍ତ ଗୋପନ କଲ, ତାହା କହ । ଏହା କହି ଭୂତଳରେ ନିପତିତା ହେଲେ । ତେତେବେଳେ ବସୁଦେବ ମଧ୍ୟ ସୁଭଦ୍ରାଙ୍କୁ ଭୂତଳରେ ପଡ଼ିଯିବାର ଦେଖି ଦୁଃଖରେ ମୂର୍ଚ୍ଛିତ ହୋଇ ଧରାତଳରେ ପତିତ ହେଲେ । ୫ ।

Digitized by srujanika@gmail.com

ହେ ମହାରାଜ ! ଅନନ୍ତର ବସୁଦେବ ଦୌହିତ୍ରବଧଜନିତ ଦୁଃଖ ଏବଂ ଶୋକରେ ସମାହତ ହୋଇ କୃଷ୍ଣଙ୍କୁ କହିଲେ ଯେ, ହେ ପୁଣ୍ଡରୀକାକ୍ଷ ! ତୁମ୍ଭେ ଯେ ସତ୍ୟବାଦୀ ବୋଲି ପୃଥିବୀରେ ବିଖ୍ୟାତ ହୋଇଅଛ, ତାହା ଆମ୍ଭର ବିଶ୍ୱାସ ହେଉନାହିଁ । କାରଣ, ଅଦ୍ୟ ତୁମ୍ଭେ ଆମ୍ଭନିକଟରେ ଦୌହିତ୍ରବଧ ବୃତ୍ତାନ୍ତ ପ୍ରକାଶ କଲନାହିଁ ।

ହେ କୃଷ୍ଣ ! ଅରିନ୍ଦମ ! ପ୍ରଭୋ ! ତୁମ୍ଭ ଭାଗିନେୟର ବଧବୃତ୍ତାନ୍ତ ଆମ୍ଭଙ୍କୁ ଯଥାର୍ଥରୂପେ କହ । ୮ । ହେ ବାର୍ଷ୍ଣେୟ ! ତୁମ୍ଭର ଲୋଚନ ସଦୃଶ ଲୋଚନ-ସମ୍ପନ୍ନ ସୁଭଦ୍ରାସୁତ ଅଭିମନ୍ୟୁ ଅକାଳରେ ମନୁଷ୍ୟମାନଙ୍କ ସହିତ ଦୁର୍ମରଣ ସଦୃଶ ଯୁଦ୍ଧରେ ଶତ୍ରୁକର୍ତ୍ତୃକ କି ନିମିତ୍ତ ହତ ହେଲେ ? ୯ ।

ହେ କୃଷ୍ଣ ! ଏତେବେଳେ ଆମ୍ଭ ହୃଦୟ ଦୁଃଖବଶତଃ କେଉଁ କାରଣରୁ ଶତଧା ବିଦୀର୍ଣ୍ଣ ହେଉନାହିଁ ! ସେହି ଅଭିମନ୍ୟୁ ଯେତେବେଳେ ଯୁଦ୍ଧରେ ନିହତ ହେଲେ ତେତେବେଳେ ସେ ତାହାଙ୍କ ମାତା ସୁଭଦ୍ରା ଏବଂ ଆମ୍ଭଙ୍କୁ କଣ କହିଥିଲେ ? ହେ ପୁଣ୍ଡରୀକାକ୍ଷ ! ସେହି ଚଞ୍ଚଳଲୋଚନ ସୁଭଦ୍ରାନନ୍ଦନ ଆମ୍ଭର ପରମ ପ୍ରିୟପାତ୍ର ଥିଲେ । ସେ କି ଯୁଦ୍ଧରେ ପରାଙ୍ମୁଖ ହେବାରୁ ଶତ୍ରୁଗଣ ତାହାଙ୍କୁ ନିହତ କରିଅଛନ୍ତି ? ୧୧ । ହେ ଗୋବିନ୍ଦ ! ଆମ୍ଭେ ପଚାରୁଅଛୁଁ, ଶତ୍ରୁଗଣ ଯୁଦ୍ଧରେ ତାହାଙ୍କ ମୁଖକୁ ବିକୃତ କରି ନାହାନ୍ତି ତ ? ହେ କୃଷ୍ଣ ! ସେହି ମହାତେଜା ଆମ୍ଭନିକଟରେ ପ୍ରଶଂସିତ ହୋଇଥିଲେ । ୧୨ । ସେହି ମହାତେଜା ବାଲଭାବରେ ସମସ୍ତଙ୍କ ନିକଟରେ ନିଜର ବିନୟ କହୁଥିଲେ ।

ହେ କେଶବ ! ସେହି ବାଳକ ଦ୍ରୋଣ, କର୍ଣ୍ଣ ଓ କୃପ ପ୍ରଭୃତି ବା କ୍ଷତ୍ରିୟଗଣକର୍ତ୍ତୃକ ନିହତ ହୋଇ ନାହାନ୍ତି ତ ? ସେ ଶତ୍ରୁଗଣକର୍ତ୍ତୃକ ନିହତ ହୋଇ ଯେଉଁରୂପେ ପୃଥିବୀରେ ଶୟନ କରିଥିଲେ, ତାହା ଆମ୍ଭଙ୍କୁ କହ । ଆମ୍ଭ ଦୌହିତ୍ର ଅଭିମନ୍ୟୁ ଯୁଦ୍ଧରେ ଦ୍ରୋଣ, ଭୀଷ୍ମ ଏବଂ ଅତିଶୟ ବଳଯୁକ୍ତ କର୍ଣ୍ଣଙ୍କୁ ନିରନ୍ତର ସ୍ପର୍ଦ୍ଧା କରୁଥିଲେ ।

ତେତେବେଳେ ବାସୁଦେବ ଦୁଃଖିତ ହୋଇ ତାହାଙ୍କୁ କହିଲେ ଯେ, ହେ ତାତ ! ଅଭିମନ୍ୟୁ ରଣାଙ୍ଗନରେ ମୁଖବିକୃତ କରିନଥିଲେ । ୧୬ । ପ୍ରତ୍ୟୁତ

Digitized by srujanika@gmail.com

ଯୁଦ୍ଧରେ ପରାଙ୍ମୁଖ ନ ହୋଇ ଦୁସ୍ତର ସଂଗ୍ରାମ କରିଥିଲେ । ଶତସହସ୍ର ନରପାଳମାନଙ୍କୁ ନିହତ କରି ଦ୍ରୋଣ ଓ କର୍ଣ୍ଣକର୍ତ୍ତୃକ ଖେଦପ୍ରାପ୍ତ ହୋଇ ଦୁଃଶାସନପୁତ୍ରଙ୍କର ବଶବର୍ତ୍ତୀ ହୋଇଥିଲେ ।

ହେ ପ୍ରଭୋ ! କୌରବଗଣ ଯଦି ଜଣେ ଜଣେ ହୋଇ ଅଭିମନ୍ୟୁଙ୍କ ସଙ୍ଗେ ଯୁଦ୍ଧ କରିଥାଆନ୍ତେ, ତେବେ କେହି ତାହାଙ୍କୁ ପରାଭବ କରି ପାରନ୍ତେ ? କୌରବମାନଙ୍କ କଥା ଦୂରେ ଥାଉ, ବଜ୍ରପାଣି ଇନ୍ଦ୍ର ହେଲେ ସୁଦ୍ଧା ଏକାକୀ ଯୁଦ୍ଧରେ ତାହାଙ୍କୁ ସଂହାର କରିବାକୁ ସମର୍ଥ ନୁହନ୍ତି । ତେତେବେଳେ ପାର୍ଥ ସଂଶପ୍ତକଗଣକର୍ତ୍ତୃକ ସଂଗ୍ରାମରୁ ସମାହୃତ ହେଲାରୁ ଦ୍ରୋଣ ପ୍ରଭୃତି ଯୋଦ୍ଧୃବର୍ଗ ଅତିଶୟ କ୍ରୁଦ୍ଧ ହୋଇ ତାହାଙ୍କୁ ପରିବେଷ୍ଟନ କଲେ । ତଦନନ୍ତର ସୁଭଦ୍ରାସୁତ ଯୁଦ୍ଧରେ ସୁମହତ୍ ଓ ସମଧିକ ଶତ୍ରୁଗଣଙ୍କୁ ସଂହାର କରି ପରିଶେଷରେ ଦୁଃଶାସନପୁତ୍ରଙ୍କର ବଶବର୍ତ୍ତୀ ହେଲେ ।

ହେ ବୃଷ୍ଣିନନ୍ଦନ ମହାମତେ ! ଆପଣଙ୍କ ଦୌହିତ୍ର ନିଶ୍ଚୟ ସ୍ୱର୍ଗକୁ ଯାଇଅଛନ୍ତି । ଆପଣ ତାହାଙ୍କ ନିମିତ୍ତ ଶୋକ କରନ୍ତୁ ନାହିଁ । ଶୋକ ପରିତ୍ୟାଗ କରିବା ହେଉନ୍ତୁ । ୨୧ । ଏହି ବିଷୟରେ ଭବାଦୃଶ କୃତବୁଦ୍ଧି ବ୍ୟକ୍ତି-ମାନଙ୍କର ବ୍ୟସନପ୍ରାପ୍ତ ହୋଇ ଅବସନ୍ନ ହେବାର ଉଚିତ ନୁହେ । ଯଦି ମହେନ୍ଦ୍ର ସଦୃଶ ବଳଶାଳୀ କର୍ଣ୍ଣ ପ୍ରଭୃତି ବୀର ଯୁଦ୍ଧକରି ସ୍ୱର୍ଗଗାମୀ ହୋଇ ଅଛନ୍ତି, ତେବେ ସେହି ଅଭିମନ୍ୟୁ କେଉଁ କାରଣରେ ସ୍ୱର୍ଗକୁ ଗମନ ନ କରିବେ ?

ହେ ଦୁର୍ଦ୍ଧର୍ଷ ! ଆପଣ ଶୋକ ପରିତ୍ୟାଗ କରନ୍ତୁ । ଶୋକର ବଶବର୍ତ୍ତୀ ହୁଅନ୍ତୁ ନାହିଁ । ୨୩ । ସେହି ପୁରଞ୍ଜୟ ଅଭିମନ୍ୟୁ ନିଶ୍ଚୟ ଶସ୍ତ୍ରପୂତ ଗତି ପ୍ରାପ୍ତ ହୋଇଅଛନ୍ତି । ସେହି ବୀର ଅଭିମନ୍ୟୁ ନିହତ ହେଲାରୁ ଆମ୍ଭ ଭଗିନୀ ଏହି ସୁଭଦ୍ରା ଦେବୀ ଦୁଃଖାର୍ତ୍ତ ହୋଇ ପୃଥାଙ୍କ ନିକଟକୁ ଗମନ ପୂର୍ବକ କୁରରୀ ସଦୃଶ ବାରଂବାର ରୋଦନ କରି ଦ୍ରୌପଦୀଙ୍କୁ ଦୁଃଖିତ ଚିତ୍ତରେ ପଚାରିଲେ—ଆର୍ଯ୍ୟେ ! ପୁତ୍ରଗଣ କେଉଁଠାରେ ଅଛନ୍ତି ? ଆମ୍ଭେ ସେମାନଙ୍କୁ ଦେଖିବା ନିମିତ୍ତ ଇଚ୍ଛା କରୁଅଛୁଁ । ସୁଭଦ୍ରାଙ୍କର ଏହି ବାକ୍ୟ ଶ୍ରବଣ କରି ସମସ୍ତ କୁରୁରମଣୀଗଣ ଭୁଜଦ୍ୱୟ ଦ୍ୱାରା ଏହାଙ୍କୁ ଧାରଣ କରି ଅତିଶୟ ଆର୍ତ୍ତଧ୍ୱନିରେ ରୋଦନ କଲେ । ୨୭ । ସୁଭଦ୍ରା ସମସ୍ତ କୁରୁନାରୀଗଣଙ୍କ ସହିତ

Digitized by srujanika@gmail.com

ଉତ୍ତରାଙ୍କୁ କହିଲେ, ହେ ଭଦ୍ରେ ! ତୁମ୍ଭ ଭର୍ତ୍ତା କେଉଁ ସ୍ଥାନକୁ ଗମନ କରି ଅଛନ୍ତି ? ସେ କେଉଁ ଦିନ ଆସିବେ ତୁମ୍ଭେ ତାହା ଶୀଘ୍ର ଆମ୍ଭଙ୍କୁ କହ । ୨୮ ।

ହେ ବିରାଟନନ୍ଦିନି ! ଆମ୍ଭେ ଅଭିମନ୍ୟୁଙ୍କୁ ଆହ୍ୱାନ କଲେ ସେ ତୁମ୍ଭ ସହିତ ଆମ୍ଭ କଥା ଶ୍ରବଣମାତ୍ରେ ଗୃହରୁ ବହିର୍ଗତ ହୁଅନ୍ତି । ଅଦ୍ୟ ତୁମ୍ଭ ପତି କେଉଁ କାରଣରୁ ଆସୁନାହାନ୍ତି ? ୨୯ । ହେ ଅଭିମନ୍ୟୋ ! ତୁମ୍ଭେ ଯୁଦ୍ଧ ନିମିତ୍ତ ଏହିସ୍ଥାନକୁ ଆଗତ ହେଲେ, ତୁମ୍ଭେ ଯୁଦ୍ଧପ୍ରିୟ ବୋଲି ତୁମ୍ଭର କୁଶଳୀ ମହାରଥ ମାତୁଳଗଣ ଯୁଦ୍ଧରୁ ଆସି ତୁମ୍ଭଙ୍କୁ ଶୁଭ ଆଶୀର୍ବାଦ କରନ୍ତି । ହେ ଅରିନ୍ଦମ ! ତୁମ୍ଭେ ପ୍ରତିଦିନ ଆମ୍ଭ ନିକଟରେ ଯୁଦ୍ଧବୃତ୍ତାନ୍ତ ସବୁ ଆନୁପୂର୍ବିକ କୀର୍ତ୍ତନ କରୁଥିଲ । ସମ୍ପ୍ରତି ଆମ୍ଭେ ଏଠାରେ ଏତାଦୃଶ ବିଳାପ କରୁଅଛୁଁ । ତୁମ୍ଭେ କି ନିମିତ୍ତ ଆମ୍ଭଙ୍କୁ ପ୍ରତ୍ୟୁତ୍ତର ଦେଉନାହଁ ? ୩୧ ।

ପୃଥା ବୃଷ୍ଣିବଂଶସମ୍ଭୂତା ସୁଭଦ୍ରାଙ୍କର ଏତାଦୃଶ ବିଳାପ ବାକ୍ୟ ଶ୍ରବଣ କରି ସୁଦୁଃଖିତ ଚିତ୍ତରେ ତାହାଙ୍କୁ ଧୀରେ ଧୀରେ କହିଲେ— ହେ ସୁଭଦ୍ରେ ! ସେହି ବାଳକ ଅଭିମନ୍ୟୁ ଯୁଦ୍ଧରେ ବାସୁଦେବ, ସାତ୍ୟକି ଓ ତାହାଙ୍କ ପିତା ଅର୍ଜୁନଙ୍କର୍ତ୍ତୃକ ଲାଳିତ ହୋଇ ସୁଦ୍ଧା କାଳଧର୍ମାନୁସାରେ ନିହତ ହୋଇଅଛନ୍ତି । ୩୩ ।

ହେ ଯଦୁନନ୍ଦିନି ! ମର୍ତ୍ତ୍ୟଧର୍ମ ଏହି ପ୍ରକାର ଅଟେ । ଅତଏବ ଏହି ବିଷୟରେ ଶୋକ କରନା । ତୁମ୍ଭର ସେହି ଦୁର୍ଦ୍ଧର୍ଷ ପୁତ୍ର ନିଶ୍ଚୟ ପରମଗତି ପ୍ରାପ୍ତ ହୋଇଅଛନ୍ତି । ୩୪ । ହେ ପଦ୍ମପଲାଶଲୋଚନେ ! ତୁମ୍ଭେ ମହାତ୍ମା କ୍ଷତ୍ରିୟଗଣଙ୍କ ମଧ୍ୟରେ ମହତ୍କୁଳରେ ଜନ୍ମଗ୍ରହଣ କରିଅଛ । ଅତଏବ ହେ ଚଞ୍ଚଳଲୋଚନେ ! ତୁମ୍ଭେ ଶୋକ କରିବାର ଉଚିତ ନୁହେ ।୩୫। ହେ ଶୁଭେ ! ତୁମ୍ଭେ ଗୁର୍ବିଣୀ ଉତ୍ତରାଙ୍କୁ ଅବଲୋକନ କର, ଏହି ଭାମିନୀ ଉତ୍ତରା ଶୀଘ୍ର ଅଭିମନ୍ୟୁଙ୍କର ପୁତ୍ର ପ୍ରସବ କରିବେ । ୩୬ ।

ହେ ଯଦୁକୁଳୋଦ୍‌ବହ ! କୁନ୍ତୀ ଏହିପରି ସୁଭଦ୍ରାଙ୍କୁ ଆଶ୍ୱାସିତ କରି ଶୋକ ପରିହାର ପୂର୍ବକ ତାହାଙ୍କର ଶ୍ରାଦ୍ଧ ପ୍ରଭୃତି କର୍ମକଲେ । ୩୭ । ଧର୍ମଜ୍ଞା କୁନ୍ତୀ ଅଭିମନ୍ୟୁଙ୍କ ଉଦ୍ଦେଶ୍ୟରେ ଦାନ କରିବା ନିମିତ୍ତ ଯୁଧିଷ୍ଠିର, ଭୀମ ଏବଂ ଯମସଦୃଶ ଯମଜ ନକୁଳ ଓ ସହଦେବଙ୍କୁ ଆଦେଶ କରି ଅନେକ ପ୍ରକାର ଦାନ ଦେଲେ । ୩୮ ।

Digitized by srujanika@gmail.com

ହେ ଯଦୂଦ୍‌ବହ ! ତଦନନ୍ତର ସେ ବ୍ରାହ୍ମଣଙ୍କୁ ବହୁଳ ଗୌ ପ୍ରଦାନ କରି ବିରାଟନନ୍ଦିନୀ ଉତ୍ତରାଙ୍କୁ ଆହ୍ୱାନ ପୂର୍ବକ କହିଲେ ଯେ, ହେ ସୁଶ୍ରୋଣି ! ଅନିନ୍ଦିତେ ! ବିରାଟନନ୍ଦିନ ! ସଂପ୍ରତି ତୁମ୍ଭର ପତିଙ୍କ ନିମିତ୍ତ ସନ୍ତାପ କରିବାର ଉଚିତ ନୁହେ, ତୁମ୍ଭେ ଗର୍ଭସ୍ଥ ଶିଶୁଙ୍କୁ ରକ୍ଷାକର । ୪୦ ।

ହେ ମହାଦ୍ୟୁତେ ! କୁନ୍ତୀ ଉତ୍ତରାଙ୍କୁ ଏହି ପ୍ରକାର କହି ବିରତ ହେଲେ । ଆମ୍ଭେ ତାହାଙ୍କ ଅନୁମତି ଗ୍ରହଣ ପୂର୍ବକ ଏହି ସୁଭଦ୍ରାଙ୍କୁ ଆନୟନ କଲୁଁ । ୪୧ ।

ହେ ମାନଦ ! ଦୁର୍ଦ୍ଧର୍ଷ ! ଆପଣଙ୍କ ଦୌହିତ୍ର ସେହି ଅଭିମନ୍ୟୁ ଏହିରୂପେ ନିଧନପ୍ରାପ୍ତ ହେଲେ । ଅତଏବ ଆପଣ ଶୋକ ପରିତ୍ୟାଗ କରନ୍ତୁ । ଚିତ୍ତକୁ ଆଉ ଶୋକାକୁଳିତ କରନ୍ତୁ ନାହିଁ । ୪୨ ।

---

# ଦ୍ୱିଷଷ୍ଟିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତେତେବେଳେ ଧର୍ମାତ୍ମା ଶୂରନନ୍ଦନ ବସୁଦେବ ପୂର୍ବଙ୍କର ତାଦୃଶ ବାକ୍ୟ ଶ୍ରବଣ କରି ଶୋକ ପରିତ୍ୟାଗ ପୂର୍ବକ ଉତ୍କୃଷ୍ଟ ଶ୍ରାଦ୍ଧ ଓ ଦାନାଦି କାର୍ଯ୍ୟ କଲେ । ୧ । ବାସୁଦେବ ମଧ୍ୟ ପିତାଙ୍କ ପ୍ରିୟପାତ୍ର ସ୍ୱସ୍ରୀପୁତ୍ର ମହାତ୍ମା ଅଭିମନ୍ୟୁଙ୍କର ଔର୍ଦ୍ଧ୍ୱଦେହିକ କାର୍ଯ୍ୟ କଲେ । ୨ । ତଦନନ୍ତର ଷଷ୍ଟି ସହସ୍ର ମହାତେଜା ବ୍ରାହ୍ମଣଗଣଙ୍କୁ ସର୍ବଗୁଣଯୁକ୍ତ ଭୋଜ୍ୟଦ୍ରବ୍ୟ ଯଥାବିଧାନରେ ଭୋଜନ କରାଇଲେ । ୩ ।

ତେତେବେଳେ ମହାବାହୁ କୃଷ୍ଣ ଆଚ୍ଛାଦନାଦିଦ୍ୱାରା ବ୍ରାହ୍ମଣଗଣଙ୍କର ଏହିରୂପେ ଧନତୃଷ୍ଣା ଅପନୟନ କରିଥିଲେ ଯେ, ତାହା ସମସ୍ତଙ୍କର ଲୋମହର୍ଷଣକର ହୋଇଥିଲା । ୪ ।

ତେତେବେଳେ ସୁବର୍ଣ୍ଣ, ଗୋ, ଶଯ୍ୟା ଓ ପରିଧେୟ ବସ୍ତ୍ର ପ୍ରଭୃତି ପ୍ରାପ୍ତ ହେଲାରୁ ବ୍ରାହ୍ମଣଗଣ ମହା ଆହ୍ଲାଦିତ ହୋଇ "ଆପଣଙ୍କର ଐଶ୍ୱର୍ଯ୍ୟ ସମଧିକ ପରିବର୍ଦ୍ଧିତ ହେଉ" ବୋଲି ବାସୁଦେବଙ୍କୁ ଆଶୀର୍ବାଦ କଲେ । ୫ ।

Digitized by srujanika@gmail.com

ଅନନ୍ତର ସାତ୍ୟକଙ୍କ ସହିତ ଦାଶାର୍ହ ବାସୁଦେବ, ବଳଦେବ ଏବଂ ସତ୍ୟକ ଏହିମାନେ ଯେଉଁପରି ଅଭିମନ୍ୟୁଙ୍କ ଶ୍ରାଦ୍ଧକରି ଦୁଃଖରେ ଅତିସନ୍ତପ୍ତ ହୋଇ ତେତେବେଳେ ଶାନ୍ତିଲାଭ କରି ପାରିଲେ ନାହିଁ, ତଦ୍‌ବତ୍ ମହାବୀର ପାଣ୍ଡବଗଣ ମଧ୍ୟ ଅଭିମନ୍ୟୁଙ୍କ ବିରହରେ ହସ୍ତିନା ନଗରରେ ଶାନ୍ତିଲାଭ କରି ପାରିଲେ ନାହିଁ ।

ହେ ରାଜେନ୍ଦ୍ର ! ବିରାଟନନ୍ଦିନୀ ଉତ୍ତରା ପତିଙ୍କ ବିରହଜନିତ ଦୁଃଖରେ ଅତୀବ ଆର୍ତ୍ତା ହୋଇ ବହୁଦିବସ ଅନାହାରରେ କାଳାତିପାତ କରିବାରୁ ତଦୀୟ ଗର୍ଭସ୍ଥିତ ବାଳକର ବିଘ୍ନ ହେବାର ବିଲକ୍ଷଣ ସମ୍ଭାବନା ଜନ୍ମିଲା । ୯ । ତଦନନ୍ତର ଧୀମାନ୍ ମହାତେଜା ବ୍ୟାସଦେବ ଦିବ୍ୟଦୃଷ୍ଟିଦ୍ୱାରା ତାହା ଜାଣିପାରି ସେଠାକୁ ଆଗମନ କରି ପୃଥୁଲୋଚନା ପୃଥା ଏବଂ ଉତ୍ତରାଙ୍କୁ କହିଲେ ଯେ, ତୁମ୍ଭେମାନେ ଶୋକ ପରିତ୍ୟାଗ କର । ତଦନନ୍ତର ଉତ୍ତରାଙ୍କୁ କହିଲେ ଯେ, ହେ ଯଶସ୍ୱିନି ! ତୁମ୍ଭେ ଶୋକ କରନା, ତୁମ୍ଭର ମହାତେଜସ୍ୱୀ ପୁତ୍ର ହେବେ । ୧୧ । ସେହି ପୁତ୍ର ବାସୁଦେବଙ୍କ ପ୍ରଭାବରେ ଏବଂ ଆମ୍ଭ ଆଜ୍ଞାନୁସାରେ ପାଣ୍ଡବଗଣଙ୍କ ଅବସାନରେ ପୃଥିବୀ ପାଳନ କରିବେ । ୧୨ ।

ହେ ଭାରତ ! ବ୍ୟାସ ଧର୍ମରାଜଙ୍କ ସମକ୍ଷରେ ଅର୍ଜୁନଙ୍କୁ ଲକ୍ଷ୍ୟ କରି ତାହାଙ୍କୁ ହର୍ଷିତ କରି କହିଲେ ଯେ, ହେ ଅର୍ଜୁନ ! ତୁମ୍ଭର ମହାମନା ଭାଗ୍ୟବାନ୍ ପୌତ୍ର ଉତ୍ପନ୍ନ ହେବେ । ସେହି ପୌତ୍ର ଧର୍ମତଃ ସସାଗରା ବସୁନ୍ଧରା ପାଳନ କରିବେ । ୧୪ । ଅତଏବ ହେ ଅରିକର୍ଷଣ ! କୁରୁପୁଙ୍ଗବ ! ତୁମ୍ଭେ ଶୋକ ପରିତ୍ୟାଗ କର । ଆମ୍ଭେ ଯାହା କହିଲୁଁ ତାହା ସତ୍ୟ ହେବ । ଏହି ବିଷୟରେ କିଞ୍ଚିତ୍‌ମାତ୍ର ବିଚାର କରନା । ୧୫ ।

ହେ କୁରୁନନ୍ଦନ ! ବୃଷ୍ଣିପ୍ରବର କୃଷ୍ଣ ପୂର୍ବେ ଯାହା କହିଥିଲେ ତାହା ହେବ, ତଦ୍‌ବିଷୟରେ ତୁମ୍ଭର ସଂଶୟ ନାହିଁ । ୧୬ । ସେହି ବୀରବର ଅଭିମନ୍ୟୁ ନିଜାର୍ଜିତ ଅକ୍ଷୟ ଅମରଲୋକ ପ୍ରାପ୍ତ ହୋଇଅଛନ୍ତି । ଅତଏବ ତୁମ୍ଭର ଅଥବା ଅନ୍ୟାନ୍ୟ କୁରୁବଂଶୀୟମାନଙ୍କର ତାହାଙ୍କ ବିଷୟରେ ଶୋକ କରିବାର ବିଧେୟ ନୁହେ । ୧୭ ।

Digitized by srujanika@gmail.com

ହେ ମହାରାଜ ! ତେତେବେଳେ ଧର୍ମାତ୍ମା ଧନଞ୍ଜୟ ପିତାମହ ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଶୋକ ପରିତ୍ୟାଗ ପୂର୍ବକ ସୁସ୍ଥଚିତ୍ତ ହେଲେ । ୧୮ ।

ହେ ଧର୍ମଜ୍ଞ ! ମହାମତେ ! ତୁମ୍ଭ ପିତା ଅଭିମନ୍ୟୁନନ୍ଦନ ସେହି ଗର୍ଭମଧ୍ୟରେ ଇଚ୍ଛାନୁସାରେ ଶୁକ୍ଳପକ୍ଷ ଚନ୍ଦ୍ର ସଦୃଶ ବର୍ଦ୍ଧିତ ହେଉଥିଲେ । ୧୯ ।

ତଦନନ୍ତର ବ୍ୟାସ ଧର୍ମନନ୍ଦନ ରାଜା ଯୁଧିଷ୍ଠିରଙ୍କୁ ଅଶ୍ୱମେଧ ଯାଗ କରିବା ନିମିତ୍ତ ଆଦେଶ ପ୍ରଦାନ ପୂର୍ବକ ଅନ୍ତର୍ହିତ ହେଲେ । ୨୦ ।

ହେ ତାତ ! ମେଧାବୀ ଧର୍ମରାଜ ବ୍ୟାସଙ୍କର ସେହି ବାକ୍ୟ ଶ୍ରବଣ କରି ଯଜ୍ଞ ଅନୁଷ୍ଠାନର ଉପଯୋଗୀ ଧନ ଆହରଣ ନିମିତ୍ତ ମନୋଯୋଗୀ ହେଲେ । ୨୧ ।

---

# ତ୍ରିଷଷ୍ଟିତମ ଅଧ୍ୟାୟ

ଜନମେଜୟ କହିଲେ—ହେ ବ୍ରହ୍ମନ୍ ! ଯୁଧିଷ୍ଠିର ମହାତ୍ମା ବ୍ୟାସଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ପୁନଶ୍ଚ ଅଶ୍ୱମେଧ ଯାଗର କି ପ୍ରକାର ଅନୁଷ୍ଠାନ କଲେ ? ୧ । ହେ ଦ୍ୱିଜୋତ୍ତମ ! ମରୁତ୍ତ ଯେଉଁ ରତ୍ନ ବସୁଧାତଳରେ ସଞ୍ଚୟ କରିଥିଲେ, ସେହି ରତ୍ନ ସେ କି ପ୍ରକାର ପ୍ରାପ୍ତ ହେଲେ, ତାହା କହିବା ହେଉନ୍ତୁ । ୨ ।

ବୈଶମ୍ପାୟନ କହିଲେ—ଧର୍ମରାଜ ଯୁଧିଷ୍ଠିର ଦ୍ୱୈପାୟନଙ୍କ ବାକ୍ୟ ଶ୍ରବଣ କରି ଭ୍ରାତା ଅର୍ଜ୍ଜୁନ, ଭୀମ ଏବଂ ମାଦ୍ରୀତନୟ ଯମଜ ନକୁଳ ସହଦେବଙ୍କୁ ଆହ୍ୱାନ କରି କହିଲେ—ହେ ବୀରଗଣ ! କୁରୁକୁଳର ହିତୈଷୀ, ସୁହୃଦ୍‌ବର୍ଗର ଐଶ୍ୱର୍ଯ୍ୟାଭିଳାଷୀ, ତପୋବୃଦ୍ଧ, ଧୀମାନ୍ ମହାତ୍ମା କୃଷ୍ଣ ସୌହାର୍ଦ୍ଦବଶତଃ ଯାହା କହିଥିଲେ, ଏବଂ ଅଦ୍ଭୁତକର୍ମା ଧର୍ମଶୀଳ ଗୁରୁ ବ୍ୟାସ ଓ ଧୀମାନ୍ ଭୀଷ୍ମ ଏହିମାନେ ଯାହା କହିଥିଲେ, ତାହା ତୁମ୍ଭେମାନେ ଶୁଣିଅଛ ।

Digitized by srujanika@gmail.com

ହେ ମହାପ୍ରାଜ୍ଞ ପାଣ୍ଡବଗଣ ! ଯଦ୍ୟପି ତାହା ଆମ୍ଭର ଦୃଷ୍ଟିଗୋଚର ହେବାରୁ ଆମ୍ଭ ସମସ୍ତଙ୍କର ବର୍ତ୍ତମାନ ଓ ଭବିଷ୍ୟତ୍କାଳର ହିତଜନକ ସେହି କାର୍ଯ୍ୟ କରିବା ନିମିତ୍ତ ଇଚ୍ଛା କରୁଅଛୁଁ । କାରଣ, ବ୍ରହ୍ମବାଦିମାନଙ୍କ ବାକ୍ୟ ଫଳୋତ୍ପତ୍ତି ବିଷୟରେ କଲ୍ୟାଣକର ଅଟେ ।

ହେ କୁରୁଦ୍ଵହଗଣ ! ଏହି ବସୁନ୍ଧରା ଧନହୀନ ହୋଇଥିବାରୁ ତେତେବେଳେ ବ୍ୟାସ ମରୁତ୍ତଙ୍କ ଧନ କଥା କହିଥିଲେ । ଅତଏବ ହେ ନୃପଗଣ ! ତୁମ୍ଭେମାନେ ଯଦି ତାହା କର୍ତ୍ତବ୍ୟ ଏବଂ ବହୁମତ ବୋଲି ଜ୍ଞାନ କର, ତେବେ ଆମ୍ଭେମାନେ ସେହି ଧନ ଏହି ସ୍ଥାନକୁ ଆନୟନ କରିବା । ହେ ଭୀମ ! ଏହି ବିଷୟରେ ତୁମ୍ଭର କି ପ୍ରକାର ମତ ଅଛି, ତାହା କହ ।

ହେ କୁରୁକୁଳୋଦ୍ଵହ ! ତେତେବେଳେ ନରପତି ଯୁଧିଷ୍ଠିର ଏହିପ୍ରକାର କହିବାରୁ ଭୀମ ଅଞ୍ଜଳି ସହକାରରେ ନୃପେନ୍ଦ୍ର ଯୁଧିଷ୍ଠିରଙ୍କୁ କହିଲେ— ହେ ମହାବାହୋ ! ବ୍ୟାସଙ୍କ ଉପଦିଷ୍ଟ ଧନ ଆନୟନ ବିଷୟରେ ଆପଣ ଯେଉଁ ପ୍ରକାର କହିଥିଲେ, ତାହା ଆମ୍ଭର ଅଭିମତ ଅଟେ । ୧୧ । ହେ ପ୍ରଭୋ ! ଯଦି ଅବିକ୍ଷିତ୍କୁମାର ମରୁତ୍ତଙ୍କର ସେହି ଅର୍ଥ ପ୍ରାପ୍ତ ହୋଇପାରେ ତେବେ ଆମ୍ଭଙ୍କୁ ଜଣାଯାଏ ଯେ ତାହାଦ୍ଵାରା ଆମ୍ଭମାନଙ୍କର କାର୍ଯ୍ୟ ସମ୍ପନ୍ନ ହେବ । ୧୨ । ଅତଏବ ଆପଣଙ୍କ କଲ୍ୟାଣ ନିମିତ୍ତ ଆମ୍ଭେମାନେ କପର୍ଦ୍ଦି ଗିରୀଶ ମହାତ୍ମା ମହାଦେବଙ୍କୁ ପ୍ରଣିପାତ ପୂର୍ବକ ଯଥାବିଧି ତାହାଙ୍କ ଅର୍ଚ୍ଚନା କରି ତାହା ଆନୟନ କରିବୁଁ । ଆମ୍ଭେ ବାକ୍ୟ, କର୍ମ ଏବଂ ଜ୍ଞାନଦ୍ଵାରା ସେହି ଦେବଦେବାଧିପତି ବିଭୁ ଭୂତନାଥ ଓ ତାହାଙ୍କ ଅନୁଚରଗଣଙ୍କୁ ପ୍ରସନ୍ନ କରିପାରିଲେ ନିଶ୍ଚୟ ସେହି ଅର୍ଥ ଲାଭ କରିପାରିବୁଁ । ବୃଷଧ୍ଵଜ ପ୍ରସନ୍ନ ହେଲେ ଯେଉଁ ସମସ୍ତ ରୌଦ୍ରଦର୍ଶନ କିନ୍ନରଗଣ ସେହି ଧନ ରକ୍ଷା କରୁଅଛନ୍ତି, ସେମାନେ ବଶୀଭୂତ ହେବେ ।

ହେ ଭରତ ! ଭୀମ ଏହି କଥା କହିବାରୁ ଧର୍ମନନ୍ଦନ ରାଜା ଯୁଧିଷ୍ଠିର ତାହା ଶ୍ରବଣ କରି ଅତିଶୟ ପ୍ରୀତ ହେଲେ ଏବଂ ଅର୍ଜ୍ଜୁନ ପ୍ରଭୃତି ଭ୍ରାତୃଗଣ, ତାହା ହେବ, ଏହି କଥା କହିଲେ । ୧୩ ।

Digitized by srujanika@gmail.com

ତଦନନ୍ତର ପାଣ୍ଡବଗଣ ରତ୍ନାହରଣ ବିଷୟରେ କୃତନିଶ୍ଚୟ ହୋଇ ଉତ୍ତମ ନକ୍ଷତ୍ରଯୁକ୍ତ ଦିବସରେ ସେନାମାନଙ୍କୁ ଗମନ ନିମିତ୍ତ ଆଦେଶ କଲେ । ୧୮ ।

ତଦନନ୍ତର ପାଣ୍ଡୁପୁତ୍ରଗଣ ବ୍ରାହ୍ମଣମାନଙ୍କ ସ୍ୱସ୍ତିବାଚନ କରାଇ ମୋଦକ, ପାୟସ ଏବଂ ପିଷ୍ଟକଦ୍ୱାରା ଦେବଦେବ ମହେଶ୍ୱରଙ୍କ ଅର୍ଚ୍ଚନା କରି ମହାତ୍ମା ଯୁଧିଷ୍ଠିରଙ୍କୁ ଆଶ୍ୱାସିତ କରି ଅତ୍ୟନ୍ତ ହର୍ଷରେ ଯାତ୍ରା କଲେ । ୨୦ । ସେମାନଙ୍କ ଗମନ ସମୟରେ ତତ୍ରତ୍ୟ ନଗରବାସିଗଣ ମାଙ୍ଗଳିକ କାର୍ଯ୍ୟ ଏବଂ ବିପ୍ରସମୂହ ଶୁଭ ଆଶୀର୍ବାଦ କଲେ ।

ତଦନନ୍ତର ସେମାନେ ଅଗ୍ନିସହିତ ବ୍ରାହ୍ମଣଗଣଙ୍କୁ ପ୍ରଦକ୍ଷିଣ ଏବଂ ଅବନତ ମସ୍ତକରେ ପ୍ରଣାମ କରି ପୁତ୍ରଶୋକାହତ ସର୍ବାର୍ଯ୍ୟ ରାଜା ଧୃତରାଷ୍ଟ୍ର ଓ ପୃଥୁଲୋଚନା ପୃଥାଙ୍କ ଅନୁମତି ଗ୍ରହଣ ପୂର୍ବକ ଗମନ କଲେ । ସେମାନେ କୁରୁବଂଶୀୟ ଧୃତରାଷ୍ଟ୍ରସୁତ ଯୁଯୁତ୍ସୁଙ୍କୁ ଧୃତରାଷ୍ଟ୍ର ଓ କୁନ୍ତୀଙ୍କ ନିକଟରେ ସମର୍ପଣ କରି ଗମନ କରିବା ସମୟରେ ସେମାନେ ପୁରବାସୀ ଓ ମନୀଷୀ ବ୍ରାହ୍ମଣଗଣକର୍ତ୍ତୃକ ସମ୍ୟକ୍‌ରୂପେ ସମ୍ମାନିତ ହେଲେ । ୨୪ ।

---

# ଚତୁଃଷଷ୍ଟିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ପ୍ରହୃଷ୍ଟ ନର ବାହନ ସମନ୍ୱିତ ପାଣ୍ଡବଗଣ ଆନନ୍ଦିତ ହୋଇ ବିପୁଳ ରଥଶବ୍ଦଦ୍ୱାରା ପୃଥିବୀ ପରିପୂରିତ କରି ଗମନ କଲେ । ୧ । ସେତେବେଳେ ସୂତ, ମାଗଧ ଓ ବନ୍ଦିଗଣ ସ୍ତୁତିବାକ୍ୟ-ଦ୍ୱାରା ସେମାନଙ୍କୁ ସ୍ତବ କଲେ । ସ୍ୱୀୟ ରଶ୍ମିଦ୍ୱାରା ସମାବୃତ ଆଦିତ୍ୟଗଣ ସଦୃଶ ସେମାନେ ନିଜ ସୈନ୍ୟଦ୍ୱାରା ପରିବୃତ ହୋଇ ଗମନ କଲେ । ୨ । ମସ୍ତକ ଉପରେ ପାଣ୍ଡୁବର୍ଣ୍ଣ ଛତ୍ର ଧୃତ ହେବାରୁ ସେତେବେଳେ ଯୁଧିଷ୍ଠିର ପୌର୍ଣ୍ଣମାସୀ ରଜନୀରେ ସମୁଦିତ ଚନ୍ଦ୍ରସଦୃଶ ଶୋଭା ପାଉଥିଲେ । ୩ ।

ପୁରୁଷପ୍ରବର ପାଣ୍ଡୁତନୟ ଯୁଧିଷ୍ଠିର ପଥମଧ୍ୟରେ ପ୍ରହୃଷ୍ଟ ପୁରୁଷ-ଗଣଙ୍କର ଜୟଯୁକ୍ତ ଆଶୀର୍ବାଦ ବିଧି ମତ ଅନୁସାରେ ପ୍ରତିଗ୍ରହ କଲେ । ୪ ।

Digitized by srujanika@gmail.com

ହେ ରାଜନ୍ ! ରାଜାଙ୍କର ଅନୁଗାମୀ ସୈନିକପୁରୁଷଗଣଙ୍କର କୋଳାହଳ ଶବ୍ଦ ଗଗନମଣ୍ଡଳ ସ୍ତବ୍ଧକରି ଅବସ୍ଥାନ କଲା । ୫ । ତଦନନ୍ତର ମହାରାଜ ଯୁଧିଷ୍ଠିର ସରୋବର, ସରିତ୍, ବନ ଓ ଉପବନସମୂହ ଅତିକ୍ରମ କରି ଗିରି ନିକଟରେ ଉପନୀତ ହେଲେ । ୬ ।

ହେ ରାଜେନ୍ଦ୍ର ! ଯେଉଁ ସ୍ଥାନରେ ସେହି ମରୁତ୍ତଙ୍କର ଉତ୍ତମ ଧନସମୂହ ନିହିତ ହୋଇଅଛି, ଯୁଧିଷ୍ଠିର ପାଣ୍ଡବ ଓ ସୈନିକଗଣ ସହିତ ସେହି ସ୍ଥାନରେ ଉପସ୍ଥିତ ହୋଇ ବାସସ୍ଥାନ ନିର୍ମାଣ କଲେ ।

ହେ ଭରତସତ୍ତମ ! ରାଜଗଣ, ତପସ୍ୟା ବିଦ୍ୟା ଓ ଦମଗୁଣଯୁକ୍ତ ବ୍ରାହ୍ମଣଗଣ ଏବଂ ବେଦବେଦାଙ୍ଗପାରଗ ଆହିତାଗ୍ନି ପୁରୋହିତ ଧୌମ୍ୟଙ୍କୁ ଅଗ୍ରସର କରି ସେହି ସମତଳ ଶୁଭକର ପ୍ରଦେଶରେ ପୁରୋହିତ ଓ ବ୍ରାହ୍ମଣଗଣଙ୍କ ସହିତ ଶାନ୍ତିକରି, ଅମାତ୍ୟସହ ରାଜା ଯୁଧିଷ୍ଠିରଙ୍କୁ ମଧ୍ୟବର୍ତ୍ତୀ କରି ସମସ୍ତେ ଯଥାବିଧି ପରିବେଷ୍ଟନ କରି ରହିଲେ । ୯ ।

ଯୁଧିଷ୍ଠିର ଦ୍ୱିଜଗଣ ଓ ମନୁଷ୍ୟମାନଙ୍କ ନିମିତ୍ତ ଷଟ୍‌ସଂଖ୍ୟକ ରାଜମାର୍ଗ ଓ ନବସଂଖ୍ୟକ ବାସସ୍ଥାନଯୁକ୍ତ ଗୋଟିଏ ଗୃହ ନିର୍ମାଣ କରି ମତ୍ତମାତଙ୍ଗମାନଙ୍କ ରହିବା ନିମିତ୍ତ ଗୋଟିଏ ଉପଯୁକ୍ତ ଶାଳା ନିର୍ମାଣ କଲେ ।

ତଦନନ୍ତର ରାଜେନ୍ଦ୍ର ଯୁଧିଷ୍ଠିର ବାସସ୍ଥାନ କରାଇ ବ୍ରାହ୍ମଣମାନଙ୍କୁ କହିଲେ—ହେ ଦ୍ୱିଜେନ୍ଦ୍ରଗଣ ! ଉତ୍ତମ ନକ୍ଷତ୍ରଯୁକ୍ତ ଶୁଭ ଦିବସରେ ଏହି କାର୍ଯ୍ୟ ସମ୍ପାଦନ କରିବାକୁ ହେବ । ଏହି ବିଷୟରେ ଆପଣମାନଙ୍କର ଯେଉଁପରି ଅଭିଳାଷ ହୁଏ, ସେହିପରି କରିବା ଉଚିତ । ପରନ୍ତୁ, ଯଦ୍ଦ୍ୱାରା ଆମ୍ଭମାନଙ୍କର କାଳବିଳମ୍ବ ନହୁଏ, ଏହିରୂପ ନିଷ୍ପନ୍ନ କରି ତଦନନ୍ତର କର୍ତ୍ତବ୍ୟ କାର୍ଯ୍ୟ ସମ୍ପାଦନ କରିବା ହେଉନ୍ତୁ ।

ଧର୍ମରାଜଙ୍କର ହିତାଭିଳାଷୀ ପୁରୋହିତ ସହ ବ୍ରାହ୍ମଣଗଣ ରାଜାଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ହୃଷ୍ଟାନ୍ତଃକରଣରେ କହିଲେ ଯେ, ହେ ରାଜନ୍ ! ଅଦ୍ୟ ଉତ୍ତମ ନକ୍ଷତ୍ର ଏବଂ ପୁଣ୍ୟାହ, ଅତଏବ ଆମ୍ଭେମାନେ ଅଦ୍ୟ ଶ୍ରେଷ୍ଠତମ କାର୍ଯ୍ୟରେ ସଯତ୍ନ ହେବୁଁ । ଆମ୍ଭେମାନେ ଅଦ୍ୟ ଏହି ସ୍ଥାନରେ ଜଳପାନ କରି ଅବସ୍ଥିତ ହେବୁଁ, ଆପଣମାନେ ଉପବାସ କରନ୍ତୁ । ୧୪ ।

Digitized by srujanika@gmail.com

ନରେନ୍ଦ୍ରଗଣ ବ୍ରାହ୍ମଣମାନଙ୍କ ବାକ୍ୟ ଶ୍ରବଣକରି ପ୍ରୀତଚିତ୍ତରେ ଉପବାସକରି ରଜନୀରେ ଯଜ୍ଞସ୍ଥଳରେ ପ୍ରଜ୍ୱଳିତ ଅନଳ ସଦୃଶ କୁଶଶଯ୍ୟାରେ ଶୟନ କରି ରହିଲେ । ୧୫ । ବ୍ରାହ୍ମଣମାନଙ୍କର ଧର୍ମଯୁକ୍ତ ବାକ୍ୟ ଶ୍ରବଣ କରୁ କରୁ ନିଶା ଅବସାନ ହେଲା । ତଦନନ୍ତର ନିର୍ମଳ ପ୍ରଭାତ କାଳ ଉପସ୍ଥିତ ହେବାରୁ ବ୍ରାହ୍ମଣଗଣ ନରପତି ଧର୍ମନନ୍ଦନ ଯୁଧିଷ୍ଠିରଙ୍କୁ କହିଲେ । ୧୬ ।



# ପଞ୍ଚଷଷ୍ଟିତମ ଅଧ୍ୟାୟ

ବ୍ରାହ୍ମଣଗଣ କହିଲେ—ହେ ନରନାଥ ! ଆପଣ ପ୍ରଥମତଃ ମହାତ୍ମା ତ୍ର୍ୟମ୍ବକଙ୍କୁ ଉପହାର ପ୍ରଦାନ କରନ୍ତୁ । ତଦନନ୍ତର ଆମ୍ଭେମାନେ ଆପଣଙ୍କ ଅର୍ଥସିଦ୍ଧି ନିମିତ୍ତ ଯତ୍ନଶୀଳ ହେବୁଁ । ୧ ।

ଯୁଧିଷ୍ଠିର ବ୍ରାହ୍ମଣମାନଙ୍କ ବାକ୍ୟ ଶ୍ରବଣକରି ଗିରିଶ ଶଂକରଦେବଙ୍କର ଯଥାବିଧାନରେ ଉପହାର ଆହରଣ କଲେ । ୨ । ତେତେବେଳେ ପୁରୋହିତ ସଂସ୍କୃତ ଆଜ୍ୟଦ୍ୱାରା ଯଥାବିଧି ଅଗ୍ନିପୂଜା କରି ମନ୍ତ୍ରସିଦ୍ଧ ଚରୁ ପ୍ରସ୍ତୁତ କରି ଗମନକଲେ । ୩ ।

ହେ ଜନାଧିପ ! ସେ ମନ୍ତ୍ରପୂତ ପୁଷ୍ପ, ମୋଦକ, ପାୟସ ଏବଂ ମାଂସ ପଭୃତି ବଳି ଆହରଣ କରି ମହାଦେବଙ୍କୁ ଅର୍ଚ୍ଚନାକଲେ । ସେହି ବେଦ-ପାରଗ ବିପ୍ର ନାନାବିଧ ପୁଷ୍ପ, ଉଚ୍ଚାବଚ, ଲାଜସହ ସମସ୍ତ ଦ୍ରବ୍ୟ ଉତ୍ତମରୂପେ ଇଷ୍ଟତମ କରି ଯକ୍ଷେନ୍ଦ୍ର କୁବେର ଏବଂ ମଣିଭଦ୍ର ପ୍ରଭୃତି କିଙ୍କରଗଣଙ୍କୁ ବଳିପ୍ରଦାନ କଲେ । ୬ ।

ତଦନନ୍ତର କୃଶର, ତିଳମିଶ୍ରିତ ପାୟସ, ମାଂସ ଓ ତିଳଯୁକ୍ତ ନିବାପ ଏବଂ କରପରିମିତ ଓଦନଦ୍ୱାରା ଅନ୍ୟାନ୍ୟ ଯକ୍ଷ ଏବଂ ସମସ୍ତ ଭୂତପତିଗଣଙ୍କର ଅର୍ଚ୍ଚନା କଲେ । ତେତେବେଳେ ରାଜା ବ୍ରାହ୍ମଣଗଣଙ୍କୁ ସହସ୍ର ଗୋଦାନ କରି ରାତ୍ରିଚର ଭୂତଗଣଙ୍କୁ ବଳିପ୍ରଦାନ ନିମିତ୍ତ ଆଦେଶ କଲେ ।

Digitized by srujanika@gmail.com

ହେ ପାର୍ଥିବ ! ଦେବାଦିଦେବ ମହାଦେବଙ୍କ ସ୍ଥାନ ଧୂପଗନ୍ଧରେ ନିରୁଦ୍ଧ ଏବଂ ନାନାବିଧ ପୁଷ୍ପଦ୍ୱାରା ସଂବୃତ ହେବାରୁ ଅତିଶୟ ଶୋଭିତ ହେଲା ।

ତଦନନ୍ତର ଯୁଧିଷ୍ଠିର ରୁଦ୍ର ଓ ତଦୀୟ ସମସ୍ତ ଗଣମାନଙ୍କ ପୂଜାକରି ବ୍ୟାସଙ୍କୁ ଅଗ୍ରସର କରାଇ ରତ୍ନ ଓ ନିଧି ନିକଟକୁ ଗମନକଲେ । ସେଠାରେ ବୀର୍ଯ୍ୟବାନ୍ ଯୁଧିଷ୍ଠିର ବିଚିତ୍ର ପୁଷ୍ପ, ପିଷ୍ଟକ ଏବଂ କୃଶରଦ୍ୱାରା ଧନାଧିକ୍ଷ କୁବେର, ଶଂଖାଦି ନିଧି ଓ ନିଧିପାଳ ସମସ୍ତଙ୍କୁ ଅର୍ଚ୍ଚନା ପୂର୍ବକ ପ୍ରଣିପାତ ଏବଂ ଅଭିବାଦନ କରି ବ୍ରାହ୍ମଣଗଣଙ୍କ ସ୍ୱସ୍ତିବାଚନ କରାଇଲେ ।

କୁରୁପତି ଯୁଧିଷ୍ଠିର ବ୍ରାହ୍ମଣମାନଙ୍କର ପୁଣ୍ୟାହ ଶବ୍ଦ ଏବଂ ତେଜ ସହିତ ଅବସ୍ଥିତ ହୋଇ ପ୍ରୀତଚିତ୍ତରେ ସେହି ଧନ ଖନନ କରାଇଲେ । ତଦନନ୍ତର ଧର୍ମରାଜ ଯୁଧିଷ୍ଠିର ସେହି ଖନିରୁ କରକାସହ ବହୁବିଧ ମନୋରମ ପାତ୍ର, ଭୃଙ୍ଗାର, କଟାହ, ଶରାବ ଏବଂ ଶତସହସ୍ର ବିଚିତ୍ର ପାତ୍ରସବୁ ଉତ୍ତୋଳନ କରାଇଲେ ।

ହେ ରାଜନ୍ ! ସେଠାରେ ଅତୀବ ମହତ୍ କରପୁଟାକାର ପାତ୍ର ଥିଲା । ଯୁଧିଷ୍ଠିର ହସ୍ତିନାରୁ ଆଗମନ କରିବା ସମୟରେ ଧନ ରକ୍ଷଣୋପ-ଯୋଗୀ ସିନ୍ଧୁକ ପ୍ରଭୃତି ବିବିଧ ପାତ୍ର ଏବଂ ଅର୍ଥବାହନ ନିମିତ୍ତ ଷଷ୍ଟିଲକ୍ଷ ଉଷ୍ଟ୍ର, ଏକଶତବିଂଶତି ଲକ୍ଷ ଘୋଟକ, ଏକଲକ୍ଷ ହସ୍ତୀ, ଏକଲକ୍ଷ ରଥ, ଏକଲକ୍ଷ ଶକଟ, ଏକଲକ୍ଷ ହସ୍ତିନୀ, ଅସଂଖ୍ୟ ମନୁଷ୍ୟ ଓ ବହୁସଂଖ୍ୟକ ଗର୍ଦ୍ଦଭ ଆନୟନ କରିଥିଲେ ।

ତେତେବେଳେ ସେ ସେହି ସମସ୍ତ ପାତ୍ରରେ ସେହି ସୁବର୍ଣ୍ଣରାଶି ସଂସ୍ଥାପନ କରି ବାହନଗଣଙ୍କ ଉପରେ ସନ୍ନିବେଶିତ କରିବାକୁ ଆଜ୍ଞାକଲେ । ତେତେବେଳେ ପ୍ରତ୍ୟେକ ଉଷ୍ଟ୍ରରେ ଅଷ୍ଟସହସ୍ର, ପ୍ରତ୍ୟେକ ଶକଟରେ ଷୋଡ଼ଶ ସହସ୍ର ଓ ପ୍ରତ୍ୟେକ ଗଜରେ ଚତୁର୍ବିଂଶ ସହସ୍ର ସୁବର୍ଣ୍ଣ ପରିମିତ ଭାର ଏବଂ ଘୋଟକ, ଗର୍ଦ୍ଦଭ ଓ ମନୁଷ୍ୟଗଣଙ୍କ ଉପରେ ଯଥାଯୋଗ୍ୟ ଭାର ସନ୍ନିବେଶିତ ହେଲା ।

ମହାତ୍ମା ଧର୍ମନନ୍ଦନ ଏହିରୂପେ ସେହି ବିପୁଳ ସମ୍ପତ୍ତି ଗ୍ରହଣ ପୂର୍ବକ ପୁନଶ୍ଚ ଶିବଙ୍କୁ ଅର୍ଚ୍ଚନାକରି ମହର୍ଷି ବେଦବ୍ୟାସଙ୍କ ଆଦେଶାନୁସାରେ ପୁରୋହିତଙ୍କୁ ଅଗ୍ରସର କରାଇ ହସ୍ତିନାଭିମୁଖରେ ପ୍ରସ୍ଥାନ କଲେ ।

Digitized by srujanika@gmail.com

ଗମନକାଳରେ ବାହନଗଣ ଗୁରୁଭରରେ ଆକ୍ରାନ୍ତ ହେବାରୁ ପ୍ରତିଦିନ ସେ ଦୁଇକୋଶ ଅନ୍ତରରେ ଅବସ୍ଥାନ କରୁଥିଲେ ।

ହେ ରାଜନ୍ ! ସେହି ନଗରାଭିମୁଖୀ ମହତୀ ସେନା ଧନଭାରରେ କ୍ଲାନ୍ତ ହେଲେ ସୁଦ୍ଧା ଅତିକଷ୍ଟରେ ଭାର ବହନ କରି କୌରବଗଣଙ୍କର ହର୍ଷବର୍ଦ୍ଧନ କରୁଥିଲେ । ୨୩ ।

---

# ଷଟ୍‌ଷଷ୍ଟିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଏହି ସମୟ ମଧ୍ୟରେ ବୀର୍ଯ୍ୟବାନ୍ ବାସୁଦେବ ସ୍ୱୀୟ ପୁରୀ ଦ୍ୱାରକା ନଗରୀକୁ ଗମନ କରିବା ସମୟରେ ଧର୍ମରାଜ ଯାହା କହିଥିଲେ, ସେହି ଅଶ୍ୱମେଧ ସମୟ ସ୍ମରଣ କରି ବୃଷ୍ଣିବଂଶୀୟ ରୁକ୍ମିଣୀପୁତ୍ର ଯୁଯୁଧାନ, ଚାରୁଦେଷ୍ଣ, ଶାମ୍ବ, ଗଦ, କୃତବର୍ମା, ବୀରବର ସାରଣ, ନିଶଠ ଏବଂ ଉଲ୍ମୁକ ଏହିମାନଙ୍କ ସହିତ ସୁଭଦ୍ରାଙ୍କୁ ସଙ୍ଗେ ନେଇ ବଳଦେବଙ୍କୁ ଅଗ୍ରସର କରି ହସ୍ତିନାପୁରରେ ଆସି ଉପସ୍ଥିତ ହେଲେ । ୪ ।

ତଦନନ୍ତର କୃଷ୍ଣ ବୃଷ୍ଣିବଂଶୀୟମାନଙ୍କ ସହିତ ଦ୍ରୌପଦୀ, ଉତ୍ତରା, ପୃଥା ଏବଂ ଅନ୍ୟାନ୍ୟ ନରଶ୍ରେଷ୍ଠ କ୍ଷତ୍ରିୟା ସ୍ତ୍ରୀମାନଙ୍କୁ ଦର୍ଶନ ଏବଂ ଆଶ୍ୱାସ ପ୍ରଦାନ କରିବାକୁ ଆସିଲେ । ୫ । ମହୀପତି ଧୃତରାଷ୍ଟ୍ର ଓ ମହାମନା ବିଦୁର ସେହି ବୃଷ୍ଣିବଂଶୀୟମାନଙ୍କୁ ସମାଗତ ହେବାର ଦେଖି ସମ୍ମାନ ସହିତ ଆହ୍ୱାନକଲେ । ୬ । ପୁରୁଷପ୍ରବର ମହାତେଜା କୃଷ୍ଣ ବିଦୁର ଓ ଯୁଯୁତ୍ସୁ-କର୍ତ୍ତୃକ ସୁନ୍ଦରରୂପେ ସମ୍ମାନିତ ହୋଇ ବୃଷ୍ଣିବଂଶୀୟମାନଙ୍କ ସହିତ ସେହି ସ୍ଥାନରେ ଉପବେଶନ କଲେ । ୭ ।

ହେ ଜନମେଜୟ ! ତଦନନ୍ତର ବୃଷ୍ଣିବଂଶୀୟ ବୀରଗଣ ସେଠାରେ ଉପବେଶନ କଲାରୁ ତୁମ୍ଭ ପିତା ପରବୀରହନ୍ତା ପରୀକ୍ଷିତ ପ୍ରସୂତ ହେଲେ । ୮ । ପରନ୍ତୁ ସେ ନରଶ୍ରେଷ୍ଠ ଶବରୂପରେ ଗର୍ଭରୁ ଭୂମିଷ୍ଠ ହୋଇଥିଲେ । ସେତେବେଳେ ଅନ୍ତଃପୁରସ୍ଥ ଲୋକସମୂହ ଉତ୍ତରାଙ୍କର ପୁତ୍ର ହୋଇଥିବା ଦେଖି ପ୍ରଥମତଃ ପୁଲକିତ ଚିତ୍ତରେ ହର୍ଷସୂଚକ ଶବ୍ଦ କଲେ । କିନ୍ତୁ

Digitized by srujanika@gmail.com

ଅବଲମ୍ବରେ ସେମାନେ ସେହି ପୁତ୍ରକୁ ମୃତ ହୋଇଥିବାର ଦେଖି ଅତିଶୟ ବିଷଣ୍ଣ ହୋଇ ରୋଦନ କଲେ ।

ରାଜା ପରୀକ୍ଷିତ ଗର୍ଭମଧ୍ୟରେ ବ୍ରହ୍ମାସ୍ତ୍ରଦ୍ୱାରା ପୀଡ଼ିତ ହୋଇ ଥିବାରୁ ନଶ୍ଚେଷ୍ଟ ଶବ ଆକାରରେ ଭୂମିଷ୍ଠ ହୋଇଥିଲେ । ସେତେବେଳେ ପ୍ରହୃଷ୍ଟ ଜନଗଣଙ୍କର ସିଂହନାଦ ସହ ତୁମୁଳ ଧ୍ୱନି ଉତ୍ଥିତ ହୋଇ ସମସ୍ତ ଦିକ୍‌ସମୂହରେ ପ୍ରବେଶ କରି ପୁନଶ୍ଚ ଉପରତ ହେଲା । ୧୦ ।

ତଦନନ୍ତର କୃଷ୍ଣ ବ୍ୟଥିତେନ୍ଦ୍ରିୟ ଓ ବ୍ୟଥିତଚିତ୍ତ ହୋଇ ଯୁଯୁଧାନଙ୍କ ସହିତ ଅତିଶୀଘ୍ର ଅନ୍ତଃପୁରରେ ପ୍ରବେଶ କଲେ । ୧୧ । କୃଷ୍ଣ ଅନ୍ତଃପୁରରେ ପ୍ରବେଶ କରି ଦେଖିଲେ ଯେ, ସ୍ୱୀୟ ପିତୃଷ୍ୱସା ପୃଥା ଉଚ୍ଚୈଃସ୍ୱରରେ ରୋଦନ କରି, ଶୀଘ୍ର ବାସୁଦେବଙ୍କ ନିକଟକୁ ଚାଲ, ଏହି କଥା କହି କହି ଭରିତ ଗତିରେ ଆଗମନ କରୁଥିଲେ । ୧୨ । ପଶ୍ଚାତ୍ ଭାଗରେ ଦ୍ରୌପଦୀ, ଯଶସ୍ୱିନୀ ସୁଭଦ୍ରା ଏବଂ ବାନ୍ଧବମାନଙ୍କ ସହିତ ଅନ୍ୟାନ୍ୟ ସ୍ତ୍ରୀଗଣ କରୁଣ ସ୍ୱରରେ ରୋଦନ କରି କରି ଆସୁଥିଲେ ।

ହେ ରାଜଶାର୍ଦ୍ଦୂଳ ! ସେତେବେଳେ ଭୋଜରାଜଦୁହିତା କୁନ୍ତୀ କୃଷ୍ଣଙ୍କ ନିକଟରେ ପ୍ରାପ୍ତହୋଇ ବାଷ୍ପଗଦ୍‌ଗଦ ବାକ୍ୟରେ କହିଲେ ଯେ, ହେ ମହାବାହୁ ବାସୁଦେବ ! ତୁମଦ୍ୱାରା ଦେବକୀ ସୁପୁତ୍ରବତୀ ହୋଇଅଛନ୍ତି ।

ହେ କୃଷ୍ଣ ! ତୁମ୍ଭେ ଆମ୍ଭମାନଙ୍କର ଏକମାତ୍ର ଗତି ଓ ପ୍ରତିଷ୍ଠା ଅଟ । ଏହି କୁରୁକୁଳ ତୁମ୍ଭର ଅଧୀନ ହୋଇଅଛି । ୧୫ ।

ଅତଏବ, ହେ ପ୍ରଭୋ ! ଯଦୁପ୍ରବୀର କେଶବ ! ତୁମ୍ଭର ଏହି ସ୍ୱସ୍ରୀୟାତ୍ମଜ ଅଶ୍ୱତ୍ଥାମାକର୍ତ୍ତୃକ ନିହତ ହୋଇ ପ୍ରସୂତ ହୋଇଅଛି । ତୁମ୍ଭେ ତାହାକୁ ଜୀବିତ କର । ୧୬ ।

ହେ ଯଦୁନନ୍ଦନ ପ୍ରଭୋ ! ଈଷିକାସ୍ତ୍ର ପ୍ରୟୋଗ ସମୟରେ ତୁମ୍ଭେ ଏହିପରି ପ୍ରତିଜ୍ଞା କରିଥିଲ ଯେ ମୃତପୁତ୍ର ଜାତ ହେଲେ ସୁଦ୍ଧା ଆମ୍ଭେ ଜୀବିତ କରିବୁଁ । ୧୭ ।

ହେ ତାତ ! ଦେଖ, ସମ୍ପ୍ରତି ସେହି ମୃତପୁତ୍ର ଜନ୍ମିଅଛି । ଅତଏବ ହେ ପୁରୁଷପ୍ରବର ! ତୁମ୍ଭେ ଏହି ବାଳକର ଜୀବନ ପ୍ରଦାନ କରି ଉତ୍ତରା,

Digitized by srujanika@gmail.com

ସୁଭଦ୍ରା, ଦ୍ରୌପଦୀ, ଧର୍ମପୁତ୍ର, ଭୀମ, ଅର୍ଜୁନ, ନକୁଳ, ଦୁର୍ଦ୍ଧର୍ଷ, ସହଦେବ ଏବଂ ଆମ୍ଭଙ୍କୁ ରକ୍ଷାକର । ୧୯ । ବିଶେଷତଃ ଏହି ବାଳକଙ୍କଠାରେ ପାଣ୍ଡବଗଣଙ୍କ ପ୍ରାଣ ଏବଂ ପାଣ୍ଡୁ ଓ ଆମ୍ଭ ଶ୍ୱଶୁରଙ୍କ ପିଣ୍ଡ ସମ୍ୟକ୍‌ରୂପେ ଆୟତ୍ତ ହୋଇଅଛି ।

ହେ ଜନାର୍ଦ୍ଦନ ! ତୁମ୍ଭର ପ୍ରିୟପାତ୍ର ମୃତ ଅଭିମନ୍ୟୁଙ୍କର ମଙ୍ଗଳ ହେଉ । ଅଦ୍ୟ ତୁମ୍ଭେ ଏହି ବାଳକକୁ ଜୀବିତ କରି ତାହାଙ୍କର ପ୍ରିୟକାର୍ଯ୍ୟ ଉତ୍ପାଦନ କର । ୨୧ ।

ହେ ଶତ୍ରୁସୂଦନ ! ପୂର୍ବେ ଅଭିମନ୍ୟୁ ପ୍ରଣୟ ବଶତଃ ଉତ୍ତରାଙ୍କୁ ଯାହା କହିଥିଲେ, ତାହାଙ୍କର ସେହି ବାକ୍ୟରେ କିଛିମାତ୍ର ସଂଶୟ ନାହିଁ ।

ହେ ଦାଶାର୍ହ ! ତେତେବେଳେ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ ବିରାଟ-ନନ୍ଦିନୀ ଉତ୍ତରାଙ୍କୁ କହିଥିଲେ ଯେ—ହେ ଭଦ୍ରେ ! ତୁମ୍ଭ ପୁତ୍ର ମଦୀୟ ମାତୁଳ-କୁଳକୁ ଗମନ କରି ସେହି ବୃଷ୍ଣି ଓ ଅନ୍ଧକକୁଳରେ ଧନୁର୍ବେଦ, ବିଚିତ୍ର ଅସ୍ତ୍ର ଓ ନୀତିଶାସ୍ତ୍ର ଗ୍ରହଣ କରିବେ । ୨୪ ।

ହେ ତାତ ! ଦୁର୍ଦ୍ଧର୍ଷ ! ପରବୀରଘାତୀ ସୁଭଦ୍ରାନନ୍ଦନ ପ୍ରଣୟ ହେତୁରୁ ଏହିପରି ଯାହା କହିଥିଲେ, ତାହା ନିଷ୍ଫଳ ହେଲା, ସଂଶୟ ନାହିଁ । ୨୫ ।

ହେ ମଧୁସୂଦନ ! ଆମ୍ଭେମାନେ ଅବନତ ହୋଇ ତୁମ୍ଭ ନିକଟରେ ପ୍ରାର୍ଥନା କରୁଅଛୁଁ ଯେ, ତୁମ୍ଭେ ଏହି କୁରୁକୁଳର ହିତାର୍ଥ ଉତ୍ତମ କଲ୍ୟାଣ ସାଧନ କର । ୨୬ ।

ପୃଥୁଲୋଚନା ପୃଥା ଅନ୍ୟାନ୍ୟ କୁରୁବଧୂଗଣଙ୍କ ସମଭିବ୍ୟାହାରରେ ବୃଷ୍ଣିବଂଶସମ୍ଭୂତ କୃଷ୍ଣଙ୍କୁ ଏହିପରି କହି ଅତିଶୟ ଦୁଃଖିତାନ୍ତଃକରଣରେ ବାହୁଯୁଗ ଉତ୍ତୋଳନ କରି ଭୂତଳରେ ପତିତା ହେଲେ । ୨୭ ।

ହେ ମହାରାଜ ! ପ୍ରଭୋ ! ଲୋତକଧାରା ଆବିଳଲୋଚନା କୌରବ-ରମଣୀଗଣ ବାସୁଦେବଙ୍କର ସ୍ୱସ୍ରୀୟାତ୍ମଜ ମୃତ ହୋଇ ଜନ୍ମିଲା, ଏହି କଥା କହୁଥିଲେ । ୨୮ ।

Digitized by srujanika@gmail.com

ହେ ଭାରତ ! ସମସ୍ତେ ଏହିପରି କହୁଥିବା ସମୟରେ ଜନାର୍ଦ୍ଦନ ଭୂତଳରେ ନିପତିତା କୁନ୍ତୀଙ୍କୁ ଉତ୍ତୋଳନ କରି ସାନ୍ତ୍ୱନା ଦେଲେ । ୨୯ ।

---

## ସପ୍ତଷଷ୍ଟିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତେତେବେଳେ ପୃଥା ଉତ୍ଥିତ ହେବାରୁ ସୁଭଦ୍ରାଭ୍ରାତା କୃଷ୍ଣଙ୍କୁ ଅବଲୋକନ କରି ଅତିଶୟ ଦୁଃଖାର୍ତ୍ତ ହୋଇ ରୋଦନ କଲେ ଏବଂ ଏହି କଥା କହିଲେ । ୧ ।

ହେ ପୁଣ୍ଡରୀକାକ୍ଷ ! କୁରୁକୁଳ ପରିକ୍ଷୀଣ ହେବାରୁ ଦେଖ, ଧୀମାନ୍ ପାର୍ଥଙ୍କର ପୌତ୍ର ପରୀକ୍ଷିତ ଗତାୟୁ ହୋଇ ଜନ୍ମିଅଛନ୍ତି । ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଭୀମଙ୍କ ବଧ ନିମିତ୍ତ ଯେଉଁ ଈଷିକାସ୍ତ୍ର ପ୍ରୟୋଗ କରିଥିଲେ, ସେହି ଅସ୍ତ୍ର ଉତ୍ତରାଙ୍କ ଉପରେ, ଧନଞ୍ଜୟ ଓ ଆମ୍ଭ ଉପରେ ନିପତିତ ହେଲା । ୩ । ହା ! ଆମ୍ଭେ ଆଜ ଅଭିମନ୍ୟୁଙ୍କର ହତପୁତ୍ରକୁ ଦେଖିଲୁଁ ।

ଧର୍ମରାଜ ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ସମସ୍ତେ ଅଭିମନ୍ୟୁଙ୍କଠାରେ ବିଶେଷ ସ୍ନେହ କରନ୍ତି । ଫଳତଃ ସେମାନେ ସେହି ଅଭିମନ୍ୟୁଙ୍କ ମୃତପୁତ୍ରକୁ ଭୂମିଷ୍ଠ ହୋଇଥିବାର ଶୁଣି କଣ କହିବେ ! ଏବଂ ଅଭିମନ୍ୟୁଙ୍କ ମୃତପୁତ୍ରକୁ ନିରୀକ୍ଷଣ କରିବାର ତୁମ୍ଭର ମଧ୍ୟ ଅଳ୍ପ କଷ୍ଟର ବିଷୟ ନୁହେ । ହା ! ଆଜ ଦ୍ରୋଣପୁତ୍ରଙ୍କ ପ୍ରତାପରେ ପାଣ୍ଡବଗଣ ନିତାନ୍ତ ଅବସନ୍ନ ହେଲେ ! ସେମାନେ ଦ୍ରୋଣପୁତ୍ରଙ୍କ ଅସ୍ତ୍ରରେ କି ନିର୍ଜିତ ହେଲେ !

ହେ ପୁରୁଷୋତ୍ତମ ! ଆଜ ଆମ୍ଭେ ଅବନତ ମସ୍ତକରେ ତୁମ୍ଭଙ୍କୁ ପ୍ରସନ୍ନ କରାଉଅଛୁଁ । ତୁମ୍ଭେ ଏହି ପୃଥା ଓ ଦ୍ରୌପଦୀଙ୍କଠାରେ ଦୃଷ୍ଟିପାତ କର । ୯ ।

ହେ ଅରିମର୍ଦ୍ଦନ ମାଧବ ! ଯେତେବେଳେ ଅଶ୍ୱତ୍ଥାମା ପାଣ୍ଡବବଧୂଗଣଙ୍କ ଗର୍ଭ ବିନାଶ କଲେ, ତେତେବେଳେ ତୁମ୍ଭେ କ୍ରୁଦ୍ଧହୋଇ ତାହାଙ୍କୁ କହିଥିଲ ଯେ, ହେ ନରାଧମ ବ୍ରହ୍ମବନ୍ଧୋ ! ଆମ୍ଭେ କିରୀଟିତନୟଙ୍କ ପୁତ୍ରଙ୍କୁ ଜୀବିତ କରି ତୁମ୍ଭର କାମନା ବିଫଳ କରିବୁଁ । ୧୧ । ଆମ୍ଭେ ଏହି ବାକ୍ୟ ଶ୍ରବଣକରି

Digitized by srujanika@gmail.com

ତୁମ୍ଭ ବଳ ବର୍ଦ୍ଧିତ ହୋଇଅଛୁଁ । ତୁମ୍ଭଙ୍କୁ ପ୍ରସାଦିତ କରାଇ ପ୍ରାର୍ଥୀ ହେଉଅଛୁଁ ଯେ, ତୁମ୍ଭେ ଅଭିମନ୍ୟୁକୁମାରଙ୍କୁ ଜୀବିତ କର । ୧୨ ।

ହେ ବୃଷ୍ଣିଶାର୍ଦ୍ଦୂଳ ! ତୁମ୍ଭେ ଯଦି ଏହିପରି ପ୍ରତିଜ୍ଞା କରି ସମ୍ପ୍ରତି ସେହି ପ୍ରତିଶ୍ରୁତ ବାକ୍ୟ ସଫଳ ନ କରିବ, ତେବେ ତୁମ୍ଭେ ଜାଣିଥାଅ ଯେ, ଆମ୍ଭେ ନିଶ୍ଚୟ ତୁମ୍ଭ ସମକ୍ଷରେ ପ୍ରାଣ ପରିତ୍ୟାଗ କରିବୁଁ । ୧୩ ।

ହେ ବୀର ! ଏହି ଅଭିମନ୍ୟୁଙ୍କ ପୁତ୍ର ଯଦି ଜୀବିତ ନ ହେବେ, ତେବେ ତୁମ୍ଭେ ଜୀବିତ ଥିଲେ ଆମ୍ଭେ ତୁମ୍ଭଦ୍ୱାରା କେଉଁ କାର୍ଯ୍ୟ କରିବୁଁ ? ୧୪ ।

ଅତଏବ, ହେ ଦୁର୍ଦ୍ଧର୍ଷ ! ବୀର ! ଜଳଦ ଯେଉଁପରି ଜଳବୃଷ୍ଟିଦ୍ୱାରା ଶସ୍ୟକୁ ଜୀବିତ କରେ, ତଦ୍‌ବତ୍ ତୁମ୍ଭେ ଅଭିମନ୍ୟୁଙ୍କର ଏହି ମୃତପୁତ୍ରକୁ ଜୀବିତ କର । ୧୫ ।

ହେ ଅରିନ୍ଦମ ! କେଶବ ! ତୁମ୍ଭେ ଧର୍ମାତ୍ମା, ସତ୍ୟବାଦୀ ଏବଂ ସତ୍ୟବିକ୍ରମ ଅଟ, ଏବଂ ମିଥ୍ୟା ବାକ୍ୟକୁ ସତ୍ୟ କରିପାର । ୧୬ । ଏହି ମୃତଜାତ ପରମ ପ୍ରିୟପାତ୍ର ଭଗିନେୟାତ୍ମଜଙ୍କୁ ଜୀବିତ କରିବାର ତୁମ୍ଭ ପକ୍ଷରେ ଅକାଞ୍ଚିତ୍କର ଅଟେ । କାରଣ, ତୁମ୍ଭେ ଇଚ୍ଛା କଲେ ଏହି ତ୍ରିଭୁବନର ସମସ୍ତ ମୃତଲୋକମାନଙ୍କୁ ଜୀବିତ କରିପାର । ୧୭ ।

ହେ କୃଷ୍ଣ ! ଆମ୍ଭେ ତୁମ୍ଭର ପ୍ରଭାବ ଜାଣିଅଛୁଁ । ତନ୍ନିମିତ୍ତ ଆମ୍ଭେ ତୁମ୍ଭ ନିକଟରେ ପ୍ରାର୍ଥନା କରୁଅଛୁଁ । ତୁମ୍ଭେ ପାଣ୍ଡୁପୁତ୍ରମାନଙ୍କଠାରେ ଏହି ପରମାନୁଗ୍ରହ ପ୍ରକାଶ କର । ୧୮ ।

ହେ ମହାବାହୋ ! ତୁମ୍ଭେ ଆମ୍ଭଙ୍କୁ ଭଗିନୀ ବୋଲି ଅବା ହତପୁତ୍ରା ବୋଲି କିମ୍ବା ଶରଣାଗତା ବୋଲି ଜାଣି ଆମ୍ଭଠାରେ ଦୟାକର । ୧୯ ।

---

Digitized by srujanika@gmail.com

# ଅଷ୍ଟଷଷ୍ଟିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜେନ୍ଦ୍ର ! ସୁଭଦ୍ରା ଏହିପରି କହନ୍ତେ କେଶୀହନ୍ତା କୃଷ୍ଣ ଦୁଃଖରେ ମୂର୍ଚ୍ଛିତ ହୋଇ ଉଚ୍ଚୈଃସ୍ୱରରେ ତାହା ହେବ, ଏହି କଥା କହି ତଦନ୍ତ୍ୟ ଜନଗଣଙ୍କୁ ଆହ୍ଲାଦିତ କଲେ । ୧ ।

ଘର୍ମାକ୍ତ ବ୍ୟକ୍ତି ଜଳସେଚନଦ୍ୱାରା ଯେଉଁପରି ସୁଖାନୁଭବ କରନ୍ତି, ତଦ୍‌ବତ୍ ସେତେବେଳେ ପୁରୁଷପ୍ରବର ପ୍ରଭୁ କୃଷ୍ଣଙ୍କର ସେହି ବାକ୍ୟଦ୍ୱାରା ସମସ୍ତେ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ୨ ।

ତଦନନ୍ତର ସେ ସତ୍ୱର ତୁମ୍ଭ ପିତାଙ୍କ ଜନ୍ମଗୃହରେ ପ୍ରବେଶ କରି ଦେଖିଲେ ଯେ, ସେହି ଗୃହ ଶୁଭ୍ର ମାଲ୍ୟଦ୍ୱାରା ଯଥାବିଧାନରେ ସୁସଜ୍ଜିତ; ତାହାର ଚତୁର୍ଦ୍ଦିଗରେ ଜଳପୂର୍ଣ୍ଣ କଳଶରାଶି ବିନ୍ୟସ୍ତ; ଘୃତ, ତିନ୍ଦୁକ କାଷ୍ଠର ଅଙ୍ଗାର, ସର୍ଷପ, ବିମଳ ଅସ୍ତ୍ର ଏବଂ ଅଗ୍ନି ଯଥାସ୍ଥାନରେ ସନ୍ନିହିତ । ହେ ମହାଭୁଜ ! ଧୀର ! ସେଠାରେ ପରିଚର୍ଯ୍ୟା ନିମିତ୍ତ ବୃଦ୍ଧା ସ୍ତ୍ରୀ ଏବଂ ରମଣୀୟା ରାମାଗଣ ଦଣ୍ଡାୟମାନ ହୋଇଥିଲେ ।

ଚିକିତ୍ସା ନିମିତ୍ତ ସୁନିପୁଣ ଚିକିତ୍ସକଗଣ ବିଦ୍ୟମାନ, ଏବଂ ମନ୍ତ୍ରକୁଶଳ ଜନଗଣଦ୍ୱାରା ରକ୍ଷୋଘ୍ନ ଦ୍ରବ୍ୟସମୂହ ଯଥାବିଧି ସ୍ଥାପିତ ହୋଇଥିଲା ।

ହୃଷୀକେଶ ! ତୁମ୍ଭ ପିତାଙ୍କର ତାଦୃଶ ଜନ୍ମଗୃହ ଦର୍ଶନ କରି ଅତିଶୟ ହୃଷ୍ଟ ହୋଇ, ସାଧୁ ସାଧୁ ଏହି କଥା କହିଲେ ।

ବୃଷ୍ଣିନନ୍ଦନ ପ୍ରହୃଷ୍ଟ ବଦନରେ ଏହିପରି କହିବା ସମୟରେ ଦ୍ରୌପଦୀ ସତ୍ୱର ଗମନରେ ବିରାଟନନ୍ଦିନୀ ଉତ୍ତରାଙ୍କ ନିକଟକୁ ଯାଇ ତାହାଙ୍କୁ କହିଲେ—ହେ ଭଦ୍ରେ ! ତୁମ୍ଭର ଏହି ଶ୍ୱଶୁର ପୁରାଣ ଋଷି ଅଚିନ୍ତ୍ୟାତ୍ମା ଅପରାଜିତ ମଧୁସୂଦନ କୃଷ୍ଣ ତୁମ୍ଭନିକଟକୁ ଆଗମନ କରୁଛନ୍ତି ।

ଉତ୍ତରାଦେବୀ ଦ୍ରୌପଦୀଙ୍କ ବାକ୍ୟ ଶ୍ରବଣ ପୂର୍ବକ ବାଷ୍ପପରିପୂର୍ଣ୍ଣ ବାକ୍ୟ ଏବଂ ଲୋତକ ଜଳ ସମ୍ବରଣ କରି ଦେବ ସଦୃଶ କୃଷ୍ଣଙ୍କୁ ଦେଖି ଅବଗୁଣ୍ଠନବତୀ ହେଲେ ।

Digitized by srujanika@gmail.com

ତଦନନ୍ତର ସେହି ତପସ୍ୱିନୀ ବିରାଟନନ୍ଦିନୀ ସମାଗତ ଗୋବିନ୍ଦଙ୍କୁ ଦର୍ଶନ କରି ସନ୍ତପ୍ତ ହୃଦୟରେ କରୁଣ ବାକ୍ୟରେ ଏହିପରି ବିଳାପ କଲେ ।

ହେ ପୁଣ୍ଡରୀକାକ୍ଷ ! ଜନାର୍ଦ୍ଦନ ! ଦେଖିବା ହେଉନ୍ତୁ, ଆମ୍ଭେ ଦୁହେଁ ବାଳକହୀନ ହୋଇଅଛୁଁ । ଅଭିମନ୍ୟୁ ଓ ଆମ୍ଭେ ସମାନରୂପେ ହତ ହୋଇଅଛୁଁ ବୋଲି ଜାଣିବା ହେଉନ୍ତୁ । ୧୨ ।

ହେ ମଧୁସୂଦନ ! ଯଦୁନନ୍ଦନ ! ବୀର ! ଆମ୍ଭେ ଅବନତ ମସ୍ତକରେ ଆପଣଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ଯେ, ଆପଣ ଦ୍ରୋଣପୁତ୍ରଙ୍କ ଅସ୍ତ୍ରଦ୍ୱାରା ନିର୍ଦ୍ଦଗ୍ଧ ଆମ୍ଭର ଏହି ପୁତ୍ରକୁ ଜୀବିତ କରିବା ହେଉନ୍ତୁ । ୧୩ ।

ହେ ପୁଣ୍ଡରୀକାକ୍ଷ ! ଯଦି ପୂର୍ବେ ଧର୍ମରାଜ, ଭୀମସେନ ଅଥବା ଆପଣ ଅଶ୍ୱତ୍ଥାମାଙ୍କୁ କହିଥାଆନ୍ତେ ଯେ ଏହି ଈଷିକାଦ୍ୱାରା ଉତ୍ତରାଙ୍କର ପ୍ରାଣ ନାଶ ହେଉ, ତେବେ ଆମ୍ଭର ପ୍ରାଣବିୟୋଗ ହୋଇ ଥାଆନ୍ତା, କିନ୍ତୁ ଆମ୍ଭେ କଦାପି ଏପରି ଯନ୍ତ୍ରଣା ସହ୍ୟ କରି ନଥାନ୍ତୁ ।

ହା ! ବ୍ରହ୍ମାସ୍ତ୍ରଦ୍ୱାରା ଆମ୍ଭର ଏହି ଗର୍ଭସ୍ଥ ବାଳକକୁ ନିପାତିତ କରିବାରୁ ବ୍ରାହ୍ମଣାଧମ ଦୁର୍ବୁଦ୍ଧି ଅଶ୍ୱତ୍ଥାମାଙ୍କର କେଉଁ ଫଳ ଲାଭହେଲା ? ୧୬ ।

ହେ ଶତ୍ରୁନିବର୍ହଣ ! ଆମ୍ଭେ ଅବନତ ମସ୍ତକରେ ଆପଣଙ୍କୁ ପ୍ରସନ୍ନ କରାଇ ପ୍ରାର୍ଥନା କରୁଅଛୁଁ ଯେ, ଆପଣ ଏହି ବାଳକକୁ ଜୀବିତ କରିବା ହେଉନ୍ତୁ ।

ହେ ଗୋବିନ୍ଦ ! ଏହି ବାଳକ ଯଦି ଜୀବିତ ନହେବ, ତେବେ ଆମ୍ଭେ ଆପଣଙ୍କ ସମକ୍ଷରେ ପ୍ରାଣ ପରିତ୍ୟାଗ କରିବୁଁ । ୧୭ ।

ହେ ସାଧୋ ! ହେ କେଶବ ! ଏହି ବିଷୟରେ ଆମ୍ଭର ଯେଉଁ ମନୋରଥସବୁ ଉତ୍ପନ୍ନ ହୋଇଥିଲା, ଅଶ୍ୱତ୍ଥାମା ତାହା ନଷ୍ଟ କରି ଅଛନ୍ତି । ଅତଏବ ଆମ୍ଭେ କି ନିମିତ୍ତ ପ୍ରାଣଧାରଣ କରିବୁଁ ? ୧୮ । ଆମ୍ଭେମାନେ କହିଥିଲୁଁ ଯେ, ପୁତ୍ରକୁ କୋଡ଼ରେ କରି ତାହାକୁ ଆପଣଙ୍କ ଚରଣତଳେ ପ୍ରଣିପାତ କରାଇବୁଁ, କିନ୍ତୁ ତେତେବେଳେ ଆମ୍ଭେ ପୂର୍ଣ୍ଣଗର୍ଭା ଥିବାରୁ ତାହା ବିଫଳ ହୋଇଅଛି । ୧୯ ।

Digitized by srujanika@gmail.com

ହେ ପୁରୁଷର୍ଷଭ ! ଆମ୍ଭ ହୃଦୟରେ ଯେଉଁ ମନୋରଥସବୁ ଉତ୍ପନ୍ନ ହୋଇଥିଲା, ଚଞ୍ଚଳଲୋଚନଙ୍କର ଏହି ପୁତ୍ର ମୃତ ହେବାରୁ ସେହି ମନୋରଥ ସବୁ ବିଫଳ ହୋଇଅଛି । ୨୦ ।

ହେ ମଧୁସୂଦନ ! ସେହି ଚପଳାକ୍ଷ ଆପଣଙ୍କର ପରମ ପ୍ରିୟପାତ୍ର ଥିଲେ । ତାହାଙ୍କର ଏହି ପୁତ୍ର ବ୍ରହ୍ମାସ୍ତ୍ରଦ୍ୱାରା ନିପାତିତ ହୋଇଅଛି । ଏହାକୁ ଅବଲୋକନ କରିବା ହେଉନ୍ତୁ । ୨୧ । ଏହାର ଜନକ ଯେଉଁପରି କୃତଘ୍ନ ଓ ନୃଶଂସ, ଏହି ବାଳକ ମଧ୍ୟ ତାଦୃଶ ଅଟେ । କାରଣ, ଅଦ୍ୟ ଏହି ବାଳକ ପାଣ୍ଡବୀ ଶ୍ରୀ ପରିତ୍ୟାଗ ପୂର୍ବକ ଯମାଳୟକୁ ଗମନ କରିଅଛି । ୨୨ ।

ହେ କେଶବ ! ପୂର୍ବେ ଆମ୍ଭେ ତାହାଙ୍କ ନିକଟରେ ଏହିପରି ପ୍ରତିଜ୍ଞା କରିଥିଲୁଁ ଯେ, ହେ ବୀର ଅଭିମନ୍ୟୋ ! ତୁମ୍ଭେ ସମରାଙ୍ଗଣରେ ନିହତ ହେଲେ ଆମ୍ଭେ ତତ୍କ୍ଷଣାତ୍ ତୁମ୍ଭ ନିକଟକୁ ଗମନ କରିବୁଁ । ୨୩ ।

ହେ କୃଷ୍ଣ ! ଆମ୍ଭେ ନୃଶଂସତା ବଶତଃ ଜୀବନ ଆଶାରେ ତାହା କରିନାହୁଁ । ସମ୍ପ୍ରତି ଆମ୍ଭେ ସେଠାକୁ ଗମନକଲେ ସେହି ଫାଲ୍‌ଗୁନି ଆମ୍ଭଙ୍କୁ କଣ କହିବେ ? ୨୪ ।

---

# ଊନସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ସେହି ପୁତ୍ରାଭିଲାଷିଣୀ ତପସ୍ୱିନୀ କାତରା ଉତ୍ତରା ଉନ୍ମତ୍ତା ସଦୃଶ କରୁଣ ବାକ୍ୟରେ ଏହିପରି ବିଳାପ କରି ଭୂତଳରେ ପଡ଼ିଲେ । ୧ । ଦୁଃଖାର୍ତ୍ତା କୁନ୍ତୀ ଏବଂ ଅନ୍ୟାନ୍ୟ ଭରତକୁଳାଙ୍ଗନାଗଣ ସେହି ମୃତପୁତ୍ରା ପରିଚ୍ଛଦହୀନା ଉତ୍ତରାଙ୍କୁ ଭୂତଳରେ ନିପତିତ ହେବାର ଦେଖି ଉଚ୍ଚୈଃସ୍ୱରରେ ରୋଦନ କଲେ । ୨ ।

ହେ ରାଜେନ୍ଦ୍ର ! ସେତେବେଳେ ପାଣ୍ଡବମାନଙ୍କ ଗୃହସବୁ ମୁହୂର୍ତ୍ତ ମଧ୍ୟରେ ଆର୍ତ୍ତସ୍ୱରରେ ନିନାଦିତ ହୋଇ ଅଦର୍ଶନୀୟ ହେଲା । ୩ ।

ହେ ବୀର ! ରାଜେନ୍ଦ୍ର ! ସେତେବେଳେ ସୁତଶୋକସନ୍ତପ୍ତା ବିରାଟ-ଦୁହିତା ଉତ୍ତରା ମୁହୂର୍ତ୍ତ ସମୟ ମୂର୍ଚ୍ଛିତା ହୋଇଥିଲେ । ୪ ।

Digitized by srujanika@gmail.com

ହେ ଭରତର୍ଷଭ ! ତଦନନ୍ତର ଉତ୍ତରା ସଙ୍ଗାଲାଭ କରି ମୃତପୁତ୍ରଙ୍କୁ କୋଡ଼ରେ ଧରି ତାହାଙ୍କୁ ଏହି କଥା କହିଲେ ଯେ, ହେ ପୁତ୍ର ! ତୁମ୍ଭେ ଧାର୍ମିକ ବ୍ୟକ୍ତିଙ୍କ ପୁତ୍ର ହୋଇ ବୃଷ୍ଣିପ୍ରବର କୃଷ୍ଣଙ୍କର ଅଭିବାଦନ ନ କରିବାରୁ ତୁମ୍ଭର ଯେ ଅଧର୍ମ ହେଉଅଛି, ତାହା ତୁମ୍ଭେ କି ଜାଣି ପାରୁନାହଁ ? ତୁମ୍ଭେ ତୁମ୍ଭ ପିତାଙ୍କ ନିକଟକୁ ଗମନ କରି ତାହାଙ୍କୁ ଆମ୍ଭର ଏହି କଥା କହ ଯେ, ହେ ବୀର ! ପ୍ରାଣିଗଣଙ୍କର ମୃତ୍ୟୁ ସମୟ ଉପସ୍ଥିତ ନ ହେଉଣୁ ଆପଣ କେଉଁ କାରଣରୁ ଦୁର୍ମରଣରେ ମୃତ ହେଲେ ? ୭ । ଲବ୍ଧାଦୃଶ ପତି ଏବଂ ପୁତ୍ର ବିରହରେ ଆମ୍ଭର ମରଣ ଶ୍ରେୟସ୍କର ଅଟେ । ତେବେ ଏଠାରେ ଅଦ୍ୟାପି ଆମ୍ଭେ ଯେ ଜୀବିତ ରହିଅଛୁଁ, ଏହାହାରା ଆମ୍ଭର କି ମଙ୍ଗଳ ହେବ ? ୮ ।

ହେ ମହାଭୁଜ ! ଆମ୍ଭେ ଧର୍ମରାଜଙ୍କର ଅନୁମତି ଗ୍ରହଣ କରି ଘୋରତର ବିଷଭକ୍ଷଣ ବା ଅନଳରେ ପ୍ରବେଶ କରିବୁଁ । ୯ । ହା ! ଆମ୍ଭେ ପତିପୁତ୍ରବିହୀନା ହେଲୁଁ, ତଥାପି ଆମ୍ଭର ଦୁର୍ଦ୍ଧର ହୃଦୟ ସହସ୍ରଧା ବିଦୀର୍ଣ୍ଣ ହେଲାନାହିଁ ! ୧୦ ।

ହେ ପୁତ୍ର ! ତୁମ୍ଭେ ଉତ୍ଥିତ ହୋଇ ଦୁଃଖିତା ଶୋକାର୍ତ୍ତା ବିପଦ୍‌ଗ୍ରସ୍ତା ଦୀନା ଶୋକସାଗରରେନିମଗ୍ନା ସାତ୍ୱତବଂଶସମ୍ଭୂତା ତୁମ୍ଭର ପ୍ରପିତାମହୀ ଏହି ଆର୍ଯ୍ୟା କୁନ୍ତୀ, ପିତାମହୀ ତପସ୍ୱିନୀ ଦ୍ରୌପଦୀ ଓ ସୁଭଦ୍ରା ଏବଂ ଜନନୀ ଆମ୍ଭେ ସମସ୍ତେ ବ୍ୟାଧବିଦ୍ଧା ମୃଗୀସଦୃଶ ଅତିଶୟ ଦୁଃଖିତା ହୋଇଅଛୁଁ । ଆମ୍ଭମାନଙ୍କୁ ଅବଲୋକନ କର । ୧୨ ।

ହେ ବତ୍ସ ! ତୁମ୍ଭେ ଉତ୍ଥିତ ହୁଅ । ତୁମ୍ଭ ପିତାମହଙ୍କ ସଖା ଲୋକନାଥ କୃଷ୍ଣ ତୁମ୍ଭ ସମ୍ମୁଖରେ ଉପସ୍ଥିତ ହୋଇଅଛନ୍ତି । ତାହାଙ୍କର ପଦ୍ମପତ୍ରସମ ଲୋଚନସମ୍ପନ୍ନ ଚପଳେକ୍ଷଣଯୁକ୍ତ ମୁଖମଣ୍ଡଳ ଅବଲୋକନ କର । ୧୩ ।

ଉତ୍ତରା ଭୂତଳରେ ପତିତା ହୋଇ ଏହିପରି ବିଳାପ କଲାରୁ ସେହି ନାରୀଗଣ ତଦ୍ଦର୍ଶନରେ ଅତିଶୟ ଦୁଃଖିତା ହୋଇ ପୁନଶ୍ଚ ତାହାଙ୍କୁ ଉଠାଇଲେ । ୧୪ । ତେତେବେଳେ ମତ୍ସ୍ୟରାଜଦୁହିତା ଉତ୍ଥିତ ହୋଇ ଧୈର୍ଯ୍ୟାବଲମ୍ବନ ପୂର୍ବକ ପୁନଶ୍ଚ କରପୁଟରେ ଭୂମିଷ୍ଠ ହୋଇ ପୁଣ୍ଡରୀକାକ୍ଷଙ୍କୁ ଅଭିବାଦନ କଲେ । ୧୫ ।

Digitized by srujanika@gmail.com

ତଦନନ୍ତର ସେହି ପୁରୁଷପ୍ରବର କୃଷ୍ଣ ଉତ୍ତରାଙ୍କର ଗୁରୁତର ବିଳାପ ବାକ୍ୟ ଶ୍ରବଣକରି ଆଚମନ ପୂର୍ବକ ବ୍ରହ୍ମାସ୍ତ୍ର ପ୍ରତିସଂହାର କଲେ । ୧୬ । ବିଶୁଦ୍ଧାତ୍ମା ଅଚ୍ୟୁତ ଦାଶାର୍ହ କୃଷ୍ଣ ବାଳକର ଜୀବନଦାନ ବିଷୟରେ ପ୍ରତିଜ୍ଞା କରି ଅଖିଳ ଭୂମଣ୍ଡଳକୁ ଶ୍ରବଣ କରାଇ କହିଲେ । ୧୭ ।

ହେ ଉତ୍ତରେ ! ଆମ୍ଭେ ମିଥ୍ୟା କହୁନାହୁଁ, ଆମ୍ଭେ ଯାହା କହିଅଛୁଁ ତାହା ସତ୍ୟ ହେବ । ଦେଖ, ଆମ୍ଭେ ସମସ୍ତଙ୍କ ସାକ୍ଷାତରେ ଏହି ବାଳକକୁ ଜୀବିତ କରିବୁଁ । ୧୮ ।

ଆମ୍ଭେ ପୂର୍ବେ ଯେଉଁପରି କଦାପି ଅଣୁମାତ୍ର ମିଥ୍ୟା କଥା କହିନାହୁଁ, ଏବଂ ଆମ୍ଭେ କଦାପି ଯୁଦ୍ଧରୁ ପରାଙ୍ମୁଖ ହୋଇନାହୁଁ, ସେହିପରି ସେହି ପୁଣ୍ୟବଳରେ ଏହି ବାଳକ ଜୀବିତ ହେଉ । ୧୯ । ଆମ୍ଭର ଧର୍ମ ଓ ବ୍ରାହ୍ମଣଗଣ ଯେଉଁପରି ପ୍ରିୟ, ଅଭିମନ୍ୟୁଙ୍କ ପୁତ୍ର ମଧ୍ୟ ତଦ୍‌ବତ୍ ପ୍ରିୟ । ଅତଏବ ଏହି ମୃତଜାତ ପୁତ୍ର ଜୀବିତ ହେଉ । ୨୦ । ଆମ୍ଭେ ଅରିବିଜୟୀ ଅର୍ଜୁନଙ୍କ ସହିତ କଦାପି ବିରୋଧ କରିନାହୁଁ । ସେହିପରି ସେହି ସତ୍ୟାନୁସାରେ ଏହି ମୃତଶିଶୁ ଜୀବିତ ହେଉ ! ୨୧ । ଯେଉଁପରି ସତ୍ୟ ଏବଂ ଧର୍ମ ଆମ୍ଭଠାରେ ନିତ୍ୟ ପ୍ରତିଷ୍ଠିତ ହୋଇଅଛନ୍ତି, ତଦ୍‌ବତ୍ ଅଭିମନ୍ୟୁଙ୍କର ଏହି ଜାତ ଶିଶୁ ଜୀବିତ ହେଉ । ୨୨ । ଯେଉଁପରି ଧର୍ମ ପ୍ରଭାବରେ କଂସ ଓ କେଶୀ ମତ୍‌କର୍ତ୍ତୃକ ନିହତ ହୋଇଅଛନ୍ତି, ସେହି ସତ୍ୟଧର୍ମାନୁସାରେ ଏହି ମୃତ ବାଳକ ଜୀବିତ ହେଉ । ୨୩ ।

ହେ ଭରତଶ୍ରେଷ୍ଠ ! ମହାରାଜ ! ବାସୁଦେବ ଏହିପରି ବାକ୍ୟ କହିଲାରୁ ସେହି ବାଳକ କ୍ରମେ କ୍ରମେ ସଚେତନ ହୋଇ ଅଙ୍ଗପ୍ରତ୍ୟଙ୍ଗସବୁ ସଞ୍ଚାଳନ କଲେ ।

---

Digitized by srujanika@gmail.com

# ସପ୍ତସପ୍ତତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! କୃଷ୍ଣ ଯେତେବେଳେ ସେହି ବ୍ରହ୍ମାସ୍ତ୍ର ପ୍ରତିସଂହାର କଲେ, ସେତେବେଳେ ଆପଣଙ୍କ ପିତାଙ୍କ ତେଜଃ ପ୍ରଭାବରେ ସେହି ଗୃହ ପ୍ରଦୀପିତ ହେଲା । ୧ । ତଦନନ୍ତର ରକ୍ଷୋଗଣ ସେହି ଗୃହ ପରିତ୍ୟାଗ ପୂର୍ବକ ପଳାୟନ କଲେ । ଅନ୍ତରୀକ୍ଷରୁ କେଶବଙ୍କ ପ୍ରତି ବାରମ୍ବାର ସାଧୁବାଦ ସମୁତ୍ଥିତ ହେଲା । ୨ ।

ହେ ଜନେଶ୍ୱର ! ସେତେବେଳେ ସେହି ଅସ୍ତ୍ର ପ୍ରଜ୍ୱଳିତ ହୋଇ ପିତାମହଙ୍କ ନିକଟକୁ ଗମନ କଲା । ଆପଣଙ୍କ ପିତା ପୁନଶ୍ଚ ପ୍ରାଣଲାଭ କଲେ । ୩ ।

ହେ ରାଜନ୍ ! ତଦନନ୍ତର ବାଳକ ଅଙ୍ଗସଞ୍ଚାଳନ କଲାରୁ ଭରତକୁଳର ଅଂଗନାଗଣ ବଳ ଏବଂ ଉତ୍ସାହ ସହକାରରେ ହର୍ଷ ପ୍ରକାଶ କଲେ । ୪ । ସେମାନେ ସମସ୍ତେ ହର୍ଷିତ ହୋଇ ଗୋବିନ୍ଦଙ୍କ ଆଦେଶାନୁସାରେ ବ୍ରାହ୍ମଣଗଣଙ୍କୁ ସ୍ୱସ୍ତିବାଚନ କରାଇ ଜନାର୍ଦ୍ଦନଙ୍କର ପ୍ରଶଂସା କଲେ । ୫ । ଜଳନିମଗ୍ନ ବ୍ୟକ୍ତି ନୌକାପ୍ରାପ୍ତ ହେଲେ ଯେଉଁପରି ଆହ୍ଲାଦିତ ହୁଏ, ତଦ୍‌ବତ୍ କୁନ୍ତୀ, ଦ୍ରୌପଦୀ, ସୁଭଦ୍ରା ଏବଂ ଉତ୍ତରା ପ୍ରଭୃତି ଭରତକୁଳର ରମଣୀଗଣ ମୃତ ବାଳକ ଜୀବିତ ପ୍ରାପ୍ତ ହୋଇବାର ଦେଖି ପ୍ରହୃଷ୍ଟଚିତ୍ତ ହେଲେ । ସେଠାରେ ମଲ୍ଲ, ନଟ, ଦୈବଜ୍ଞ, ସୁଖଶୟନ, ଜିଜ୍ଞାସୁ, ସୂତ ଓ ମାଗଧଗଣ କୁରୁବଂଶର ସ୍ତବସୂଚକ ଆଶୀର୍ବଚନଦ୍ୱାରା ଜନାର୍ଦ୍ଦନଙ୍କୁ ସ୍ତବକଲେ । ୮ ।

ହେ ଭରତ ! ଉତ୍ତରା ଯଥାସମୟରେ ଉତ୍ଥିତ ହୋଇ ପ୍ରୀତଚିତ୍ତରେ ପୁତ୍ର ସହିତ ଯଦୁନନ୍ଦନ କୃଷ୍ଣଙ୍କୁ ଅଭିବାଦନ କଲେ । ୯ । ପ୍ରଭୁ କୃଷ୍ଣ ଅତିଶୟ ହୃଷ୍ଟହୋଇ ତାହାଙ୍କୁ ପ୍ରଭୂତ ରତ୍ନ ପ୍ରଦାନ କରି ଅନ୍ୟାନ୍ୟ ବୃଷ୍ଣି-ବଂଶୀୟମାନଙ୍କ ପରି ତାହାଙ୍କର ନାମକରଣ କଲେ । ୧୦ ।

ହେ ମହାରାଜ ! ଭରତକୁଳ କ୍ଷୀଣ ହେଲା ସମୟରେ ଅଭିମନ୍ୟୁଙ୍କ ପୁତ୍ର ଉତ୍ପନ୍ନ ହେଲାରୁ ସେତେବେଳେ ସତ୍ୟସନ୍ଧ ଜନାର୍ଦ୍ଦନ କୃଷ୍ଣ ଏହାଙ୍କ ନାମ ପରୀକ୍ଷିତ ହେଉ ଏହି କଥା କହିଲେ । ସେହି କାରଣରୁ ଆପଣଙ୍କ ପିତାଙ୍କ ନାମ ପରୀକ୍ଷିତ ହେଲା ।

Digitized by srujanika@gmail.com

ହେ ଜନନାଥ ! ଆପଣଙ୍କ ପିତା ଯଥାକାଳରେ କ୍ରମଶଃ ପରିବର୍ଦ୍ଧିତ ହୋଇ ସମସ୍ତଙ୍କର ଚିତ୍ତବିନୋଦନ କଲେ । ହେ ବୀର ! ଭରତ ! ଆପଣଙ୍କ ପିତା ଏକମାସ ବୟସ୍କ ହେଲାରୁ ପାଣ୍ଡବଗଣ ବହୁଳ ରତ୍ନ ନେଇ ହସ୍ତିନା ନଗରରେ ଉପନୀତ ହେଲେ । ବୃଷ୍ଣିପୁଙ୍ଗବଗଣ ସେମାନଙ୍କ ଆଗମନବାର୍ତ୍ତା ଶ୍ରବଣ କରି ଦର୍ଶନ ନିମିତ୍ତ ଗୃହରୁ ବହିର୍ଗତ ହେଲେ । ୧୪ ।

ହେ ଜନନାଥ ! ଜନପଦ ଓ ପୁରବାସୀ ପୁରୁଷଗଣ ନାନାବିଧ ମାଲ୍ୟ, ବିଚିତ୍ର ପତାକା, ବହୁବିଧ ଧ୍ୱଜ ଏବଂ ବିବିଧ ପୂଜାଦ୍ରବ୍ୟଦ୍ୱାରା ହସ୍ତିନାନଗର, ରାଜଭବନ ଏବଂ ଦେବାଳୟସବୁ ଅଲଂକୃତ କଲେ । ସେତେବେଳେ ଦେବଗଣଙ୍କର ବିବିଧ ପୂଜା ହେଲା । ୧୬ ।

ତଦନନ୍ତର ବିଦୁର ପାଣ୍ଡୁପୁତ୍ରମାନଙ୍କର ପ୍ରିୟ କାମନାରେ ରାଜମାର୍ଗ ସବୁ ପୁଷ୍ପମାଳାଦ୍ୱାରା ସୁଶୋଭିତ କରିବାକୁ ଆଦେଶ ଦେଲେ । ତଦନୁସାରେ ରାଜମାର୍ଗସମୂହ ବିବିଧ ବିଚିତ୍ର ପୁଷ୍ପମାଳାଦ୍ୱାରା ସମଲଂକୃତ ହେଲା । ୧୭ ।

ହେ ରାଜନ୍ ! ସେତେବେଳେ ନୃତ୍ୟକାରୀ ନର୍ତ୍ତକ ଏବଂ ଗାୟକଗଣଙ୍କ ସଙ୍ଗୀତ ଶବ୍ଦରେ ରାଜପୁର ପ୍ରତିଧ୍ୱନିତ ହୋଇ ଶବ୍ଦାୟମାନ ସାଗର ସଦୃଶ ଶୋଭା ଧାରଣ କଲା ।

ସେହି ସ୍ଥାନର ଚତୁର୍ଦ୍ଦିଗରେ ନିର୍ଜନ ପ୍ରଦେଶରେ ସମ୍ମୀଳ ବନ୍ଦିଗଣ ରହି ସ୍ତୁତିବାଦ କରିବାରୁ ସେତେବେଳେ ରାଜଭବନ କୁବେରଙ୍କ ଭବନ ସଦୃଶ ପ୍ରକାଶିତ ହେଲା । ପତାକାସମୂହ ସମୀରଣଦ୍ୱାରା ଇତସ୍ତତଃ ସଞ୍ଚାରିତ ହୋଇ ଉତ୍ତର ଓ ଦକ୍ଷିଣ କୁରୁଗଣଙ୍କୁ ପ୍ରଦର୍ଶନ କଲାପରି ଜଣା ଯାଉଥିଲା ଏବଂ ରାଜଭାରାଧିକୃତ ପୁରୁଷଗଣ ସେତେବେଳେ ଏହିପରି ଘୋଷଣା କଲେ ଯେ, ପାଣ୍ଡବଗଣ ରତ୍ନ ଆହରଣ ନିମିତ୍ତ ସମସ୍ତ ରାଷ୍ଟ୍ରରେ ବିହାର କରି ଅଦ୍ୟ ହସ୍ତିନା ନଗରରେ ପ୍ରବେଶ କଲେ । ୨୧ ।

---

Digitized by srujanika@gmail.com

# ଏକସପ୍ତଶତତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଶତ୍ରୁସୂଦନ ବାସୁଦେବ ପାଣ୍ଡବମାନଙ୍କର ଆଗମନବାର୍ତ୍ତା ଶ୍ରବଣ କରି ଦର୍ଶନାଭିଳାଷୀ ହୋଇ ଅମାତ୍ୟଗଣ ଓ ସୁହୃଦ୍‌ଗଣଙ୍କ ସହିତ ସେମାନଙ୍କ ନିକଟକୁ ଗମନ କଲେ । ୧ ।

ହେ ରାଜନ୍ ! ପାଣ୍ଡବଗଣ ଧର୍ମ ପ୍ରଭାବରେ ବୃଷ୍ଣିବଂଶୀୟମାନଙ୍କ ସହିତ ମିଳିତ ହୋଇ ପୁର ମଧ୍ୟରେ ପ୍ରବେଶ କଲେ । ତେତେବେଳେ ସେହି ମହାସୈନ୍ୟସ୍ଥିତ ବାହନଗଣଙ୍କ ଖୁର ଓ ରଥନେମିର ଶବ୍ଦରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଓ ସମସ୍ତ ବିଶ୍ୱ ସମାବୃତ ହେଲା । ତଦନନ୍ତର ପାଣ୍ଡବଗଣ ରତ୍ନକୋଷ ସମୂହକୁ ଅଗ୍ରରେ କରି ପ୍ରୀତଚିତ୍ତରେ ଅମାତ୍ୟ ଓ ସୁହୃଦ୍‌ଗଣଙ୍କ ସମଭିବ୍ୟାହାରରେ ନିଜପୁରରେ ପ୍ରବିଷ୍ଟ ହେଲେ । ସେମାନେ ସମସ୍ତେ ସମବେତ ହୋଇ ନ୍ୟାୟାନୁସାରେ ନରନାଥ ଧୃତରାଷ୍ଟ୍ରଙ୍କ ନିକଟରେ ନିଜ ନିଜ ନାମକୀର୍ତ୍ତନ କରି କ୍ରମେ କ୍ରମେ ତାହାଙ୍କ ଚରଣଯୁଗଳ ବନ୍ଦନ କଲେ ।

ହେ ରାଜେନ୍ଦ୍ର ! ଭରତସତ୍ତମ ! ପାଣ୍ଡବଗଣ ଧୃତରାଷ୍ଟ୍ରଙ୍କ ଚରଣ ବନ୍ଦନ କରି ଯଥାକ୍ରମରେ ସୁବଳସୁତା ଗାନ୍ଧାରୀ, କୁନ୍ତୀ ଏବଂ ବୈଶ୍ୟାପୁତ୍ର ବିଦୁରଙ୍କୁ ଅର୍ଚ୍ଚନା କରି ପୁରବାସୀଗଣକର୍ତ୍ତୃକ ପୂଜିତ ହୋଇ ବିଶେଷରୂପେ ଶୋଭା ଧାରଣ କଲେ । ତଦନନ୍ତର ସେମାନେ ଆପଣଙ୍କ ପିତାଙ୍କ ପରମାଶ୍ଚର୍ଯ୍ୟ ବିଚିତ୍ର ଅତ୍ୟଦ୍ଭୁତ ଜନ୍ମବୃତ୍ତାନ୍ତ ଏବଂ ଧୀମାନ୍ କୃଷ୍ଣଙ୍କର ତାଦୃଶ ବିସ୍ମୟକର କର୍ମ ଶ୍ରବଣ କରି ପୂଜନୀୟ ଦେବକୀନନ୍ଦନ କୃଷ୍ଣଙ୍କୁ ପୂଜାକଲେ ।

ଅନନ୍ତର କିୟତ୍ ଦିବସ ଉତ୍ତାରେ ସତ୍ୟବତୀସୁତ ମହାତେଜା ବ୍ୟାସ ହସ୍ତିନା ନଗରକୁ ଆଗମନ କଲେ । କୁରୂଦ୍ୱହ ପାଣ୍ଡବଗଣ ବୃଷ୍ଣି ଓ ଅନ୍ଧକବଂଶସମ୍ଭୂତ ନରଗଣ ସହିତ ବ୍ୟାସଙ୍କ ପୂଜାକରି ତାହାଙ୍କ ଉପାସନା କଲେ ।

ତେତେବେଳେ ଧର୍ମନନ୍ଦନ ଯୁଧିଷ୍ଠିର ବ୍ୟାସଙ୍କ ପୂଜାକରି ତାହାଙ୍କ ଉପାସନା କଲେ । ତେତେବେଳେ ଧର୍ମନନ୍ଦନ ଯୁଧିଷ୍ଠିର ବ୍ୟାସଙ୍କ ନିକଟରେ ବହୁବିଧ କଥା କୀର୍ତ୍ତନ କରି ତାହାଙ୍କୁ କହିଲେ—ହେ ଭଗବନ୍ ! ଆପଣଙ୍କ

Digitized by srujanika@gmail.com

ପ୍ରସାଦରେ ଏହି ଯେଉଁ ରତ୍ନଗଣ ଆହୃତ ହୋଇଅଛି, ଅଶ୍ୱମେଧ ମହାଯଜ୍ଞରେ ସେହି ରତ୍ନସବୁ ବ୍ୟୟ କରିବାକୁ ଇଚ୍ଛା କରିଅଛି ।

ହେ ମୁନିସତ୍ତମ ! ଆମ୍ଭେମାନେ ସମସ୍ତେ ଆପଣଙ୍କର ଏବଂ କୃଷ୍ଣଙ୍କର ଅଧୀନ । ଅତଏବ ପ୍ରାର୍ଥନା ଯେ, ଆପଣ ଆମ୍ଭଙ୍କୁ ତଦ୍‌ବିଷୟରେ ଅନୁମତି ପ୍ରଦାନ କରିବା ହେଉନ୍ତୁ । ୧୪ ।

ବ୍ୟାସ କହିଲେ—ହେ ରାଜନ୍ ! ଆମ୍ଭେ ତୁମ୍ଭଙ୍କୁ ଅନୁମତି ପ୍ରଦାନ କଲୁଁ । ଏହା ଉତ୍ତାରେ ଯଦି କିଛି କାର୍ଯ୍ୟ ଅବଶିଷ୍ଟ ଥାଏ, ତେବେ ତାହା ସମାଧାନ କରି ବିଧିଅନୁସାରେ ଦକ୍ଷିଣାନ୍ୱିତ ଅଶ୍ୱମେଧ ଯାଗର ଅନୁଷ୍ଠାନ କର । ଅତଏବ ତୁମ୍ଭେ ସେହି ଯଜ୍ଞ କଲେ ନିଶ୍ଚୟ ନିଷ୍ପାପ ହେବ, ଏଥିରେ ସଂଶୟ ନାହିଁ । ୧୬

ବୈଶମ୍ପାୟନ କହିଲେ—ସେହି ଧର୍ମାତ୍ମା କୁରୁରାଜ ଯୁଧିଷ୍ଠିର ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅଶ୍ୱମେଧର ଅନୁଷ୍ଠାନ ବିଷୟରେ କୃତନିଶ୍ଚୟ ହେଲେ । ବାଗ୍ମିବର ନୃପତି ଯୁଧିଷ୍ଠିର ବ୍ୟାସଙ୍କୁ ସେହି ସମସ୍ତ ବିଷୟ ନିବେଦନ କରି ବସୁଦେବନନ୍ଦନ କୃଷ୍ଣଙ୍କ ନିକଟକୁ ଗମନ କରି ତାହାଙ୍କୁ କହିଲେ ।

ହେ ପୁରୁଷସତ୍ତମ ! ତୁମ୍ଭଦ୍ୱାରା ଦେବକୀ ସୁପୁତ୍ରବତୀ ହୋଇଅଛନ୍ତି । ହେ ମହାବାହୋ ! ହେ ଅଚ୍ୟୁତ ! ଆମ୍ଭେ ତୁମ୍ଭଙ୍କୁ ଯାହା କହୁଅଛୁଁ, ତୁମ୍ଭେ ତାହା କର । ୧୯ ।

ହେ ଯଦୁନନ୍ଦନ ! ତୁମ୍ଭର ପ୍ରତାପଦ୍ୱାରା ଆମ୍ଭେମାନେ ଅର୍ଜିତ ଭୋଗ୍ୟବସ୍ତୁ ସବୁ ଭୋଗ କରୁଅଛୁଁ । ତୁମ୍ଭେ ପରାକ୍ରମ ଓ ବୁଦ୍ଧିଦ୍ୱାରା ଏହି ପୃଥିବୀ ଜୟ କରିଅଛ । ୨୦ । ତୁମ୍ଭେ ଆମ୍ଭମାନଙ୍କର ପରମ ଗୁରୁ, ଅତଏବ ହେ ଦାଶାର୍ହ ! ତୁମ୍ଭେ ସ୍ୱୟଂ ଯଜ୍ଞରେ ଦୀକ୍ଷିତ ହୁଅ । କାରଣ, ତୁମ୍ଭେ ଦୀକ୍ଷିତ ହେଲେ ଆମ୍ଭେ ନିଷ୍ପାପ ହେବୁଁ । ୨୧ ।

ଆମ୍ଭେ ଏହିପରି ନିଶ୍ଚୟ ଜ୍ଞାନ କରିଅଛୁଁ ଯେ, ତୁମ୍ଭେ ଯଜ୍ଞ, ତୁମ୍ଭେ ଅକ୍ଷର, ତୁମ୍ଭେ ଧର୍ମ, ତୁମ୍ଭେ ପ୍ରଜାପତି, ଏବଂ ତୁମ୍ଭେ ସମସ୍ତ ପ୍ରାଣିଗଣଙ୍କ ଗତି ଅଟ । ୨୨ ।

Digitized by srujanika@gmail.com

ବାସୁଦେବ କହିଲେ—ହେ ଅରିନ୍ଦମ ! ଆପଣ ନିତାନ୍ତ ସତ୍ତ୍ୱସ୍ୱଭାବାପନ୍ନ ଓ ବିନୟୀ ବୋଲି ଆମ୍ଭଙ୍କୁ ଏପରି ପ୍ରଶଂସା କରୁଅଛନ୍ତି । ପରନ୍ତୁ ଆମ୍ଭ ମତରେ ଆପଣ ସର୍ବଭୂତର ଏକମାତ୍ର ଗତି ଅଟନ୍ତି । ୨୩ । ଆପଣ କୁରୁବୀରମାନଙ୍କର ଆଦି ହୋଇ ଧର୍ମରୂପରେ ଇହଲୋକରେ ବିରାଜମାନ ହୋଇଅଛନ୍ତି ।

ହେ ରାଜନ୍ ! ଆମ୍ଭେମାନେ ସମସ୍ତେ ଆପଣଙ୍କର ଗୁଣୀଭୂତ ହୋଇଅଛୁଁ । ଆମ୍ଭେମାନେ ଆପଣଙ୍କୁ ଆମ୍ଭମାନଙ୍କର ଗୁରୁ ବୋଲି ଜାଣୁଁ । ୨୪ ।

ଅତଏବ ହେ ଭାରତ ! ଆମ୍ଭେ କହୁଅଛୁଁ ଆପଣ ଯଜ୍ଞ କରନ୍ତୁ । ଆପଣ ଏହି ଯଜ୍ଞରେ ଦୀକ୍ଷିତ ହୋଇ ଯାହା ଯାହା କରିବାକୁ ଇଚ୍ଛାହୁଏ, ତାହା ଆମ୍ଭମାନଙ୍କୁ ଆଦେଶ କରନ୍ତୁ । ୨୫ ।

ହେ ଅନଘ ! ଆମ୍ଭେ ଆପଣଙ୍କ ନିକଟରେ ସତ୍ୟ ପ୍ରତିଜ୍ଞା କରି କହୁଅଛୁଁ ଯେ ଆମ୍ଭେ, ଭୀମ, ଅର୍ଜୁନ ଏବଂ ମାଦ୍ରୀସୁତ ନକୁଳ-ସହଦେବ ଆମ୍ଭେମାନେ ଆପଣଙ୍କର ସମସ୍ତ କାର୍ଯ୍ୟ କରିବୁଁ ।

ହେ ରାଜନ୍ ! ଆପଣଙ୍କର ଇଷ୍ଟସାଧନ ହେଲେ, ସମସ୍ତଙ୍କର ଅଭିଳାଷ ପୂର୍ଣ୍ଣ ହେବ । ୨୬ ।

---

# ଦ୍ୱିସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଧର୍ମପୁତ୍ର ମେଧାବୀ ଯୁଧିଷ୍ଠିର କୃଷ୍ଣଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ବ୍ୟାସଙ୍କୁ ଆହ୍ୱାନ ପୂର୍ବକ କହିଲେ ଯେ, ଆପଣ ଅଶ୍ୱମେଧର କାଳ ଯଥାର୍ଥରୂପେ ବିଦିତ ଅଛନ୍ତି । ଅତଏବ ଆପଣ ସେହି କାଳରେ ଆମ୍ଭଙ୍କୁ ଦୀକ୍ଷିତ କରିବା ହେଉନ୍ତୁ । କାରଣ ଆମ୍ଭର ଯଜ୍ଞ ଆପଣଙ୍କ ଆୟତ୍ତ ଅଟେ । ୨ ।

ବ୍ୟାସ କହିଲେ—ହେ କୌନ୍ତେୟ ! ଯେଉଁ ସମୟରେ ଯେଉଁ କାର୍ଯ୍ୟର ଅନୁଷ୍ଠାନ କରିବାକୁ ହେବ ପୈଲ, ଯାଜ୍ଞବଲ୍କ୍ୟ ଓ ଆମ୍ଭେ, ତିନିଜଣ ନିଶ୍ଚୟ ତାହା ସମ୍ପାଦନ କରିବୁଁ । ୩ ।

Digitized by srujanika@gmail.com

ହେ ପୁରୁଷପ୍ରବର ! ଚୈତ୍ରପୂର୍ଣ୍ଣିମାରେ ତୁମ୍ଭର ଦୀକ୍ଷା ହେବ । ଅତଏବ ତୁମ୍ଭେମାନେ ଯଜ୍ଞୀୟ ସମ୍ଭାର ସବୁ ଆହରଣ କର । ୪ । ଅଶ୍ୱବିଦ୍ୟାବିତ୍ ସୂତ ଏବଂ ବ୍ରାହ୍ମଣଗଣ ତୁମ୍ଭର ଯଜ୍ଞସିଦ୍ଧି ନିମିତ୍ତ ମେଧ୍ୟ ଅଶ୍ୱ ପରୀକ୍ଷା କରନ୍ତୁ । ୫ ।

ହେ ପାର୍ଥିବ ! ଅଶ୍ୱ ପରୀକ୍ଷିତ ହେଲାପରେ ଶାସ୍ତ୍ରାନୁସାରେ ତାହାକୁ ପରିତ୍ୟାଗ କର । ସେହି ଅଶ୍ୱ ତୁମ୍ଭର ପ୍ରଦୀପ୍ତ ଯଶୋରାଶି ପ୍ରଦର୍ଶନ କରି ସସାଗରା ଧରଣୀ ପରିଭ୍ରମଣ ପୂର୍ବକ ପ୍ରତ୍ୟାଗତ ହେଉ । ୬ ।

ବୈଶମ୍ପାୟନ କହିଲେ—ହେ ରାଜେନ୍ଦ୍ର ! ପାଣ୍ଡୁନନ୍ଦନ ପାର୍ଥିବ ଯୁଧିଷ୍ଠିର ବ୍ରହ୍ମବାଦୀ ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତାହା କରିବି, ଏହିପରି ସ୍ୱୀକାର କରି ବ୍ୟାସଙ୍କ ବଚନାନୁସାରେ ସମସ୍ତ କାର୍ଯ୍ୟ କଲେ । ୭ ।

ହେ ରାଜେନ୍ଦ୍ର ! ସମ୍ଭାରସବୁ ସଞ୍ଚିତ ହୁଅନ୍ତେ ତେତେବେଳେ ଅମେୟାତ୍ମା ଧର୍ମସୁତ ନରନାଥ ଯୁଧିଷ୍ଠିର ସେହି ସଞ୍ଚିତ ସମ୍ଭାର ସବୁ ଏକତ୍ରିତ କରି ବ୍ୟାସଙ୍କୁ ନିବେଦନ କଲେ । ତଦନନ୍ତର ମହାତେଜା ବ୍ୟାସ ଧର୍ମନନ୍ଦନ ରାଜା ଯୁଧିଷ୍ଠିରଙ୍କୁ କହିଲେ ଯେ, କାଳ ଓ ଯୋଗ ଅନୁସାରେ ଆମ୍ଭେମାନେ ତୁମ୍ଭର ଦୀକ୍ଷାନିମିତ୍ତ ସଜ୍ଜିତ ହେଲୁଁ ।

କାଷ୍ଠଖଡ୍‌ଗ, କୂର୍ଚ୍ଚ, ଆସନନିମିତ୍ତ କୁଶମୁଷ୍ଟି ଏବଂ ଯଜ୍ଞର ଅନ୍ୟାନ୍ୟ ଉପକରଣ ସାମଗ୍ରୀସବୁ ସୁବର୍ଣ୍ଣଦ୍ୱାରା ନିର୍ମିତ କରାଅ, ଏବଂ ଅଦ୍ୟ ପୃଥିବୀ-ମଧ୍ୟରେ ଯଥାକ୍ରମରେ ଅଶ୍ୱକୁ ବିସର୍ଜନ କର, ଏବଂ ଅଶ୍ୱ ବିଧି ଓ ଶାସ୍ତ୍ରାନୁସାରେ ଯେଉଁପରି ଉତ୍ତମରୂପେ ରକ୍ଷିତ ହୁଏ, ତାହାର ଉପାୟ କର ।୧୧।

ଯୁଧିଷ୍ଠିର କହିଲେ—ହେ ବ୍ରହ୍ମନ୍ ! ଅଶ୍ୱ ଉତ୍ସୃଷ୍ଟ ହୋଇ ଯେଉଁ ପ୍ରକାରରେ ପୃଥିବୀ ମଧ୍ୟରେ ଇଚ୍ଛାନୁସାରେ ବିଚରଣ କରିପାରିବ, ଆପଣ ତାହାର ଉପାୟ ବିଧାନ କରନ୍ତୁ । ହେ ମୁନେ ! ଅଶ୍ୱ ଇଚ୍ଛାନୁସାରେ ପୃଥିବୀରେ ବିଚରଣ କଲେ, କେଉଁ ବ୍ୟକ୍ତି ତାହାକୁ ରକ୍ଷାକରିବେ, ତାହା ଆପଣ ନିଶ୍ଚୟ କରି କହିବା ହେଉନ୍ତୁ । ୧୩ ।

ବୈଶମ୍ପାୟନ କହିଲେ—ହେ ରାଜେନ୍ଦ୍ର ! କୃଷ୍ଣଦ୍ୱୈପାୟନ ବ୍ୟାସ ଯୁଧିଷ୍ଠିରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରିଥିଲେ ଯେ, ଭୀମସେନାନୁଜ

Digitized by srujanika@gmail.com

ସର୍ବଧନୁର୍ଦ୍ଧାରଶ୍ରେଷ୍ଠ କୃଷ୍ଣ, ଧୃଷ୍ଟ, ସେହି ଅର୍ଜୁନ ଅଶ୍ୱକୁ ପାଳନ କରିବେ । ନିବାତକବଚାନ୍ତକ ଧନଞ୍ଜୟ ପୃଥିବୀ ଜୟ କରିବାକୁ ସମର୍ଥ । ତାହାଙ୍କ ନିକଟରେ ଦିବ୍ୟ ଅସ୍ତ୍ରମାନ ଅଛି । ୧୬ ।

ହେ ନୃପଶ୍ରେଷ୍ଠ ! ସେ ଧର୍ମାର୍ଥକୁଶଳ, ସର୍ବବିଦ୍ୟାବିଶାରଦ । ସୁତରାଂ ସେ ଶାସ୍ତ୍ରାନୁସାରେ ତୁମ୍ଭର ହୟ ବିଚରଣ କରାଇବେ । ୧୭ । ସେହି ଶ୍ୟାମ ରାଜୀବଲୋଚନ ଅଭିମନ୍ୟୁଜନକ ମହାବାହୁ ମହାବୀର ରାଜପୁତ୍ର ଅର୍ଜୁନ ଏହି ଅଶ୍ୱକୁ ରକ୍ଷାକରିବେ । ୧୮ ।

ହେ ବିଶାମ୍ପତେ ! ଅମିତବିକ୍ରମ କୁନ୍ତୀନନ୍ଦନ ତେଜସ୍ୱୀ ଭୀମସେନ ଏବଂ ନକୁଳ ମଧ୍ୟ ରାଷ୍ଟ୍ର ରକ୍ଷା କରିବାକୁ ସମର୍ଥ ଅଟନ୍ତି । ୧୯ । ମହାଯଶା ବୁଦ୍ଧିମାନ୍ ସହଦେବ କୁଟୁମ୍ବଗଣଙ୍କର ତତ୍ତ୍ୱାବଧାରଣ କାର୍ଯ୍ୟ ଯଥାବିଧାନରେ ସମାଧାନ କରିବେ । ୨୦ ।

ବ୍ୟାସ ଏହିପରି କହନ୍ତେ କୁରୁକୁଳୋଦ୍‌ବହ ଯୁଧିଷ୍ଠିର ସେହି ସମସ୍ତ କାର୍ଯ୍ୟ ଯଥାବିଧାନରେ ସମାଧାନ କଲେ । ସେ ଅର୍ଜୁନଙ୍କୁ ଅଶ୍ୱରକ୍ଷା କାର୍ଯ୍ୟରେ ନିଯୁକ୍ତ କଲେ । ୨୧ ।

ଯୁଧିଷ୍ଠିର କହିଲେ—ହେ ଅର୍ଜୁନ ! ଆସ, ତୁମ୍ଭେ ଅଶ୍ୱର ରକ୍ଷାକାର୍ଯ୍ୟରେ ସର୍ବତୋଭାବରେ ଯତ୍ନପରାୟଣ ହୁଅ । ହେ ବୀରବର ! ତୁମ୍ଭ ବିନା ଅନ୍ୟ କୌଣସି ଜନ ଏହାକୁ ରକ୍ଷାକରିବା ନିମିତ୍ତ ସମର୍ଥ ନୁହନ୍ତି । ୨୨ ।

ହେ ଅନଘ ! ମହାବାହୋ ! ଯଦି କୌଣସି ନରପାଳ ତୁମ୍ଭର ପ୍ରତିକୂଳାଚରଣରେ ପ୍ରବୃତ୍ତ ହେବେ, ତେବେ ସେମାନଙ୍କର ତୁମ୍ଭ ସହିତ ଯେପରି ଯୁଦ୍ଧ ନହେବ ସେହିପରି କରିବ, ଏବଂ ସେହି ନରପାଳ-ଗଣଙ୍କୁ ଆମ୍ଭର ଏହି ଯଜ୍ଞବୃତ୍ତାନ୍ତ କହି ସେମାନଙ୍କୁ ଯଜ୍ଞ ସମୟରେ ଆସିବାର ନିମନ୍ତ୍ରଣ କରିବ । ୨୪ ।

ବୈଶମ୍ପାୟନ କହିଲେ—ଧର୍ମାତ୍ମା ଯୁଧିଷ୍ଠିର ଭ୍ରାତା ସବ୍ୟସାଚୀଙ୍କୁ ଏହିପରି କହି ଭୀମ ଏବଂ ନକୁଳଙ୍କୁ ପୁରରକ୍ଷା ବିଷୟରେ ନିଯୁକ୍ତ କଲେ, ଏବଂ

Digitized by srujanika@gmail.com

ମହୀପାଳ ଧୃତରାଷ୍ଟ୍ରଙ୍କ ଅନୁମତି ନେଇ ଯୋଧପତି ସହଦେବଙ୍କୁ କୁଟୁମ୍ବମାନଙ୍କ ତତ୍ତ୍ୱାବଧାନର ଭାର ଅର୍ପଣକଲେ । ୨୬ ।

---

# ଦ୍ୱିସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଦୀକ୍ଷା ସମୟ ଉପସ୍ଥିତ ହେବାରୁ ସେହି ମହାଋତ୍ୱିକ୍‌ଗଣ ଅଶ୍ୱମେଧ ନିମିତ୍ତ ରାଜାଙ୍କୁ ଯଥାବିଧାନରେ ଦୀକ୍ଷିତ କରାଇଲେ । ୧ ।

ପାଣ୍ଡୁନନ୍ଦନ ମହାତେଜା ଧର୍ମରାଜ ପଶୁବନ୍ଧନର କାଷ୍ଠସମୂହ ସଂଗ୍ରହ କରି ଋତ୍ୱିକ୍‌ଗଣଙ୍କ ସହିତ ସମଧିକ ଶୋଭିତ ହେଲେ । ୨ ।

ବ୍ରହ୍ମବାଦୀ ଅମିତତେଜା ସ୍ୱୟଂ ବ୍ୟାସ ବିଧି ଓ ଶାସ୍ତ୍ରାନୁସାରେ ଅଶ୍ୱମେଧ ନିମିତ୍ତ ସେହି ଅଶ୍ୱକୁ ଉନ୍ମୁକ୍ତ କରାଇଲେ । ୩ ।

ରାଜନ୍ ! ଧର୍ମରାଜ ରାଜା ଯୁଧିଷ୍ଠିର ଦୀକ୍ଷିତ ହୋଇ କଣ୍ଠଦେଶରେ ସ୍ୱର୍ଣ୍ଣମାଳା ଓ ସ୍ୱର୍ଣ୍ଣକଣ୍ଠୀ ଧାରଣ କରି ତେତେବେଳେ ପ୍ରଦୀପ୍ତ ପାବକ ସଦୃଶ ଦୀପ୍ତ ହେଲେ । ୪ । ଅପିଚ ସେହି ଦ୍ୟୁତିମାନ୍ ଧର୍ମରାଜ କ୍ଷୌମ ବସ୍ତ୍ରପରିଧାନ ଓ କୃଷ୍ଣାଜିନ ଧାରଣ କରି, ହସ୍ତରେ ଦଣ୍ଡ ଗ୍ରହଣକରି ଅଧ୍ୱରରେ ଅଧିଷ୍ଠିତ ପ୍ରଜାପତିଙ୍କ ସଦୃଶ ଶୋଭାପ୍ରାପ୍ତ ହେଲେ । ୫ । ହେ ବଂଶାପତେ ! ତାହାଙ୍କ ଋତ୍ୱିକ୍‌ଗଣ ତାଦୃଶ ବେଶ ଧାରଣ କରି ତାହାଙ୍କ ସଦୃଶ ଶୋଭିତ ହେଲେ ।

ଧନଞ୍ଜୟ ଅର୍ଜ୍ଜୁନ ଶ୍ୱେତ ଅଶ୍ୱରେ ଆରୋହଣ କରି ସେହି କୃଷ୍ଣସାର ଅଶ୍ୱର ଅନୁସରଣ କରି ପ୍ରଜ୍ୱଳିତ ଅନଳ ସଦୃଶ ଶୋଭା ଧାରଣ କଲେ । ୬ ।

ହେ ନରେନ୍ଦ୍ର ! ଅର୍ଜ୍ଜୁନ ଅଶ୍ୱର ଅନୁଗାମୀ ହେବାରୁ ବେଦପାରଗ ବହୁଳ ବ୍ରାହ୍ମଣଗଣ ଏବଂ ଅନ୍ୟାନ୍ୟ ପୁରୁଷଗଣ ତାହାଙ୍କୁ କହିଲେ—ହେ ଅର୍ଜ୍ଜୁନ ! ତୁମ୍ଭେ ସ‌ଂପ୍ରତି ଗମନ କର । ତୁମ୍ଭର ମଙ୍ଗଳ ହେଉ, ପୁନଶ୍ଚ ଆଗମନ କର ।

Digitized by srujanika@gmail.com

ଏହି ଯେଉଁ ଭୟଙ୍କର ନିହ୍ରାଦଯୁକ୍ତ ଧନୁ ଦୃଷ୍ଟ ହେଉଅଛି, ଏହାର ନାମ ଗାଣ୍ଡୀବ । ଆମ୍ଭେମାନେ ସମର ସମୟରେ ଏହାକୁ ଏପ୍ରକାର ଦେଖି ନଥିଲୁ ।

ହେ ମହୀପାଳ ! ଗୋଧା ଓ ଅଙ୍ଗୁଳିତ୍ରଧାରୀ ଅର୍ଜୁନ ଧର୍ମରାଜଙ୍କ ଆଦେଶାନୁସାରେ ଗାଣ୍ଡୀବ ଧନୁ ନିକ୍ଷେପ କରି ହର୍ଷ ସତ୍କାରରେ ସେହି ଅଶ୍ୱର ଅନୁଗମନ କଲେ । ୮ ।

ହେ ରାଜନ୍ ! ଆବାଳ-ବୃଦ୍ଧ ପୁରବାସୀଗଣ ଅଶ୍ୱ ଓ ଅଶ୍ୱର ଅନୁସରଣକାରୀ କୁରୁକୁଳଶ୍ରେଷ୍ଠ ଧନଞ୍ଜୟଙ୍କୁ ଦର୍ଶନ କରିବା ନିମିତ୍ତ ଗମନ କରିବାରୁ ତେତେବେଳେ ସେମାନଙ୍କର ପରସ୍ପର ଗାତ୍ରସମ୍ମର୍ଦ୍ଦନଦ୍ୱାରା ଅତିଶୟ ଉଷ୍ମା ଉତ୍ପନ୍ନ ହେଲା । ୧୦ ।

ମହାରାଜ ! ତଦନନ୍ତର ସେହି ଅଶ୍ୱ ଓ ଅଶ୍ୱର ଅନୁସାରୀ ଅର୍ଜୁନଙ୍କ ଦର୍ଶନାଭିଳାଷୀ ପୁରୁଷଗଣଙ୍କ କୋଳାହଳ ଶବ୍ଦରେ ଦଶଦିକ୍ ଓ ଗଗନମଣ୍ଡଳ ପରିପୂର୍ଣ୍ଣ ହେଲା ।

ସେମାନେ କହୁଥିଲେ ଯେ, ଏହି ପ୍ରଦୀପ୍ତ ଅଶ୍ୱ ଗମନ କରୁଅଛି । ଏହାର ପଶ୍ଚାତ୍ ଭାଗରେ ସେହି ମହାବାହୁ କୁନ୍ତୀପୁତ୍ର ଧନଞ୍ଜୟ ଉତ୍ତମ ଧନୁ ଧାରଣ କରି ଗମନ କରୁଅଛନ୍ତି । ୧୨ ।

ମହାବୁଦ୍ଧି ଜିଷ୍ଣୁ ଧନଞ୍ଜୟ ସେମାନଙ୍କର ଏହି ବାକ୍ୟ ଶ୍ରବଣ କରୁଥିଲେ ।

ହେ ଭରତ ! ଅପର ପୁରୁଷମାନେ ଧନଞ୍ଜୟଙ୍କୁ କହୁଥିଲେ ଯେ, ହେ ଅର୍ଜୁନ ! ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ଗମନ କର, ପୁନଶ୍ଚ ପ୍ରତ୍ୟାଗମନ କର । ୧୩ ।

ହେ ନରଶ୍ରେଷ୍ଠ ! ଅନ୍ୟାନ୍ୟ ବ୍ୟକ୍ତିମାନେ କହୁଥିଲେ ଯେ, ଆମ୍ଭେମାନେ ଯୁଦ୍ଧ ସମୟରେ ଅର୍ଜୁନଙ୍କୁ ଏପ୍ରକାର ଦେଖିନଥିଲୁଁ ଏବଂ ଭୀମ ନିହ୍ରାଦଯୁକ୍ତ ଗାଣ୍ଡୀବ ଧନୁକୁ ଦେଖିନଥିଲୁ ।

ହେ ଅର୍ଜୁନ ! ତୁମ୍ଭେ ଗମନ କର, ତୁମ୍ଭର ମଙ୍ଗଳ ହେଉ, ଅରିଷ୍ଟ ଦୂର ହେଉ ଏବଂ ତୁମ୍ଭର ପଥ ଭୟରହିତ ହେଉ । ୧୫ । ଆମ୍ଭେମାନେ

Digitized by srujanika@gmail.com

ଏହିପରି ପ୍ରାର୍ଥନା କରୁଅଛୁଁ ଯେ, ତୁମ୍ଭେ ପ୍ରତ୍ୟାବୃତ୍ତ ହେଲେ, ଆମ୍ଭେମାନେ ତୁମ୍ଭଙ୍କୁ ପୁନଶ୍ଚ ଦର୍ଶନ କରିବୁଁ ।

ହେ ଭରତର୍ଷଭ ! ମହାବୁଦ୍ଧି ଅର୍ଜୁନ ପୁରୁଷ ଓ ସ୍ତ୍ରୀଗଣଙ୍କର ଏତାଦୃଶ ମଧୁର ବାକ୍ୟ ଶ୍ରବଣ ପୂର୍ବକ ଗମନ କରୁଥିଲେ ।

ହେ ବଂଶାପତେ ! ଧର୍ମରାଜଙ୍କ ଆଦେଶାନୁସାରେ ଶାନ୍ତି ନିମିତ୍ତ ଯଜ୍ଞ କର୍ମରେ କୁଶଳ ଯାଜ୍ଞବଲ୍କ୍ୟଙ୍କ ଶିଷ୍ୟ ବେଦପାରଗ ବ୍ରାହ୍ମଣଗଣ ଏବଂ କ୍ଷତ୍ରିୟଗଣ ମହାତ୍ମା ଧନଞ୍ଜୟଙ୍କ ସହିତ ଗମନ କଲେ । ୧୯ ।

ହେ ସତ୍ତମ ! ମହାରାଜ ! ପାଣ୍ଡବଗଣଙ୍କ ଅସ୍ତ୍ର ପ୍ରଭାବରେ ଯେଉଁ ସମସ୍ତ ଦେଶ ଜିତ ହୋଇଥିଲା, ଅଶ୍ୱ ସେହି ଦେଶ ସମୂହରେ ବିଚରଣ କରୁଥିଲା । ୨୦ ।

ହେ ବୀର ! ସେଠାରେ ପାଣ୍ଡୁପୁତ୍ର ଅର୍ଜୁନଙ୍କର ଯେଉଁ ବିଚିତ୍ର ମହାଯୁଦ୍ଧ ଉପସ୍ଥିତ ହୋଇଥିଲା, ତାହା ତୁମ୍ଭଙ୍କୁ କହିବା । ୨୧ ।

ହେ ମହୀପତେ ! ସେହି ଅଶ୍ୱ ପୃଥିବୀ ପ୍ରଦକ୍ଷିଣ କରି ଯେଉଁରୂପେ ଉତ୍ତରରୁ ପୂର୍ବକୁ ଆସିଥିଲା, ତାହା ଶ୍ରବଣ କରିବା ହେଉନ୍ତୁ । ୨୨ ।

ମହାରାଜ ! ସେହି ଅଶ୍ୱ ଓ ଶ୍ୱେତଅଶ୍ୱାରୋହୀ ମହାରଥ ଅର୍ଜୁନ କ୍ରମେ କ୍ରମେ ରାଜାମାନଙ୍କର ରାଷ୍ଟ୍ରସବୁ ପରିମର୍ଦ୍ଦନ ପୂର୍ବକ ଭ୍ରମଣ କରୁଥିଲେ । ତେତେବେଳେ ଯେଉଁ ସମସ୍ତ ହତବାନ୍ଧବ କ୍ଷତ୍ରିୟଗଣ ତାହାଙ୍କ ସହିତ ଯୁଦ୍ଧ କରିଥିଲେ, ତାହା ଗଣିହୁଏ ନାହିଁ । ୨୪ ।

ରାଜନ୍ ! ପୂର୍ବ ନିର୍ଜିତ ଧନୁର୍ଦ୍ଧାରୀ ବହୁଶତ କିରାତ, ଯବନ, ବହୁବିଧ ମ୍ଳେଚ୍ଛ ଏବଂ ପ୍ରହୃଷ୍ଟ ନରବାହନ ଆର୍ଯ୍ୟ ପୃଥିବୀପାଳଗଣ ଏମାନେ ଯୁଦ୍ଧ-ଦୁର୍ମଦ ହୋଇ ପାଣ୍ଡୁପୁତ୍ରଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ତଦୀୟ ନିକଟରେ ଉପନୀତ ହେଲେ । ୨୬ ।

ହେ ରାଜନ୍ ! ମହୀପତେ ! ତେତେବେଳେ ନାନା ଦେଶ ସମାଗତ ମହୀପାଳଗଣଙ୍କ ସହିତ ଅର୍ଜୁନଙ୍କର ଯେଉଁପରି ଯୁଦ୍ଧ ହୋଇଥିଲା ଏବଂ ସେହି ସମରରେ ଉଭୟ ପକ୍ଷର ଯେଉଁ ସମସ୍ତ ମହାସୈନ୍ୟ ପ୍ରତପ୍ତ ହୋଇଥିଲେ, ତାହା ଅମ୍ଭେ ତୁମ୍ଭଙ୍କୁ ବିଶେଷରୂପେ କହିବୁଁ । ୨୮ ।

—o—

Digitized by srujanika@gmail.com

# ଚତୁଃସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ମହାରାଜ ! ପୂର୍ବେ ପାଣ୍ଡବ କିରୀଟିଙ୍କର ତ୍ରିଗର୍ତ୍ତ ଦେଶୀୟ ବୀରମାନଙ୍କ ସହିତ ଯେଉଁ ଯୁଦ୍ଧ ହୋଇଥିଲା ଓ ସେହି ଯୁଦ୍ଧରେ ଯେଉଁ ସମସ୍ତ ଲୋକେ ନିହତ ହୋଇଥିଲେ, ସେମାନଙ୍କର ମହାରଥ, ପୁତ୍ର ଓ ନପ୍ତାମାନେ କିରୀଟିଙ୍କ ସଙ୍ଗେ ଯୁଦ୍ଧ କଲେ । ୧ ।

ସେହି ମହାବୀର ତ୍ରିଗର୍ତ୍ତମାନେ ପାଣ୍ଡବଗଣଙ୍କ ଯଜ୍ଞୀୟ ଅଶ୍ୱ ଆସିଅଛି ବୋଲି ଜାଣିପାରି ତୂଣୀର ବନ୍ଧନ ପୂର୍ବକ ଅଶ୍ୱରେ ଆରୋହଣ କରି ସେହି ଅଶ୍ୱକୁ ପରିବେଷ୍ଟନ ପୂର୍ବକ ଗ୍ରହଣ କରିବାର ଉପକ୍ରମ କଲେ ।

ତଦନନ୍ତର ଅରିନ୍ଦମ କିରୀଟୀ ତତ୍‌କ୍ଷଣେ ସେମାନଙ୍କ ଅଭିପ୍ରାୟ ଅବଗତ ହୋଇ ସାନ୍ତ୍ୱନା ପୂର୍ବକ ସେମାନଙ୍କୁ ନିବାରଣ କଲେ । ୪ । ସେମାନେ ଅର୍ଜ୍ଜୁନଙ୍କ ବାକ୍ୟକୁ ଅନାଦର କରି ଶରନିକ୍ଷେପ କରୁଥିଲେ । ଅର୍ଜ୍ଜୁନ ତମ ଓ ରଜଦ୍ୱାରା ସମାଚ୍ଛନ୍ନ ସେହି ଶରସମୂହକୁ ନିବାରଣ କଲେ । ୫ । ଏବଂ ହାସ୍ୟକରି କହିଲେ ଯେ, ହେ ଅଧର୍ମଜ୍ଞଗଣ ! ତୁମ୍ଭେମାନେ ଯଦି ନିଜ ନିଜ ଜୀବନର ଶ୍ରେୟ ବିବେଚନା କର, ତେବେ ନିବୃତ୍ତ ହୁଅ । ୬ ।

ଗମନ କାଳରେ ଧର୍ମରାଜ ଅର୍ଜ୍ଜୁନଙ୍କୁ କହିଥିଲେ ଯେ, ହେ ପାର୍ଥ ! ହତବାନ୍ଧବ ପାର୍ଥିବଗଣ ତୁମ୍ଭର ପ୍ରତିକୂଳାଚାରୀ ହେଲେ, ତୁମ୍ଭେ ସେମାନଙ୍କୁ ନିହତ କରିବ ନାହିଁ ।

ସେ ଧର୍ମରାଜଙ୍କର ଏହି ବାକ୍ୟ ସ୍ମରଣ କରି ସେମାନଙ୍କୁ କହିଲେ କି, ତୁମ୍ଭେମାନେ ନିବୃତ୍ତ ହୁଅ । କିନ୍ତୁ ସେମାନେ ନିବୃତ୍ତ ହେଲେ ନାହିଁ । ୮ ।

ତଦନନ୍ତର ଧନଞ୍ଜୟ ଶରଜାଳଦ୍ୱାରା ତ୍ରିଗର୍ତ୍ତରାଜ ସୂର୍ଯ୍ୟବର୍ମାଙ୍କୁ ଜୟକରି ହାସ୍ୟକଲେ ।

ତଦନନ୍ତର ସେମାନେ ରଥ ଓ ରଥନେମିର ଶବ୍ଦରେ ଦିଙ୍ମଣ୍ଡଳକୁ ପରିପୂରିତ କରି ଧନଞ୍ଜୟଙ୍କ ନିକଟକୁ ଆଗମନ କଲେ । ୧୦ ।

ହେ ରାଜେନ୍ଦ୍ର ! ତଦନନ୍ତର ସୂର୍ଯ୍ୟବର୍ମା ନିଜର ହସ୍ତଲାଘବ ପ୍ରଦର୍ଶନ ପୂର୍ବକ ପାର୍ଥଙ୍କ ପ୍ରତି ନତ ପର୍ବଶତ ଶର ମୋଚନ କଲେ ଏବଂ ତାହାଙ୍କ

Digitized by srujanika@gmail.com

ଅନୁଗାମୀ ଅନ୍ୟାନ୍ୟ ମହାଶସ୍ତ୍ରଧାରୀ ପୁରୁଷଗଣ ଧନଞ୍ଜୟଙ୍କ ବଧ ବାସନାରେ ବହୁଳ ବାଣବର୍ଷଣ କଲେ । ୧୨ ।

ରାଜନ୍ ! ସେତେବେଳେ ପାଣ୍ଡୁନନ୍ଦନ ଅର୍ଜ୍ଜୁନ ଅମୋଘ ଜ୍ୟାମୁଖ-ନିର୍ମୁକ୍ତ ବହୁଶତ ଶରଦ୍ୱାରା ସେମାନଙ୍କର ଶରନିକର ଛେଦନ କରି ସେମାନଙ୍କୁ ଭୂତଳରେ ନିପାତିତ କଲେ । ୧୩ ।

ସୂର୍ଯ୍ୟବର୍ମା ନିପାତିତ ହେଲାରୁ ତାହାଙ୍କ ଅନୁଜ ଯୁବା ତେଜସ୍ୱୀ କେତୁବର୍ମା ଭ୍ରାତାଙ୍କ ନିମିତ୍ତ ଯଶସ୍ୱୀ ଧନଞ୍ଜୟଙ୍କ ସହିତ ଯୁଦ୍ଧ କଲେ । ୧୪ ।

ପରବୀରଘାତୀ ବୀଭତ୍ସୁ ଅର୍ଜ୍ଜୁନ କେତୁବର୍ମାଙ୍କୁ ଯୁଦ୍ଧରେ ସମାଗତ ହେବାର ଦର୍ଶନ କରି ଶାଣିତ ଶରନିକରଦ୍ୱାରା ତାହାଙ୍କୁ ବିନଷ୍ଟ କଲେ । ୧୫ । କେତୁବର୍ମା ଅଭିହତ ହେଲାରୁ ମହାରଥ ଧୃତବର୍ମା ଶୀଘ୍ର ରଥାରୋହଣ ପୂର୍ବକ ଆଗମନ କରି ଜିଷ୍ଣୁ ଅର୍ଜ୍ଜୁନଙ୍କୁ ଶରଦ୍ୱାରା ଆଚ୍ଛାଦନ କଲେ । ମହାତେଜା ଗୁଡ଼ାକେଶ ଅର୍ଜ୍ଜୁନ ସେହି ବାଳକ ଧୃତବର୍ମାଙ୍କ ଲଘୁହସ୍ତତା ଦର୍ଶନ କରି ପରମ ପରିତୋଷ ପ୍ରାପ୍ତ ହେଲେ । ୧୭ ।

ଧୃତବର୍ମା ଶରବର୍ଷଣ କରୁଥିବା ସମୟରେ ଶକ୍ରସୁତ ଧନଞ୍ଜୟ ତାହାଙ୍କର ଶରଗ୍ରହଣ ଓ ସନ୍ଧାନକୁ ଲକ୍ଷ୍ୟ କରିବାକୁ ସମର୍ଥ ହେଲେ ନାହିଁ । ପ୍ରତ୍ୟୁତ ସେ ଧୃତବର୍ମାଙ୍କୁ ହର୍ଷଯୁକ୍ତ କରାଇ ମୁହୂର୍ତ୍ତିକ କାଳ ମନେ ମନେ ତାହାଙ୍କୁ ପ୍ରଶଂସା କଲେ । ୧୯ ।

ମହାବାହୁ କୁରୁବୀର ଧନଞ୍ଜୟ ପନ୍ନଗ ସଦୃଶ କ୍ରୁଦ୍ଧ ସେହି ଧୃତବର୍ମାଙ୍କୁ ଉପହାସ କଲାପରି ପ୍ରୀତିବଶତଃ ତଦୀୟ ପ୍ରାଣ ସଂହାର କଲେ ନାହିଁ । ୨୦ ।

ସେତେବେଳେ ଧୃତବର୍ମା ଅମିତତେଜସ୍ୱୀ ପାର୍ଥକର୍ତ୍ତୃକ ତାଦୃଶ ଭାବରେ ରକ୍ଷିତ ହୋଇ ତାହାଙ୍କ ପ୍ରତି ପ୍ରଦୀପ୍ତ ଶର ବିମୋଚନ କଲେ । ୨୧ ।

ଧନଞ୍ଜୟଙ୍କ ହସ୍ତ ଧୃତବର୍ମାକର୍ତ୍ତୃକ ଅତିଶୟ ବିଦ୍ଧ ହେବାରୁ ମୋହ-ବଶତଃ ତଦୀୟ ହସ୍ତରୁ ଗାଣ୍ଡୀବ ଧନୁ ଭୂତଳରେ ପତିତ ହେଲା । ୨୨ ।

ହେ ବିଭୋ ! ଭାରତ ! ସବ୍ୟସାଚୀଙ୍କ ହସ୍ତରୁ ଗାଣ୍ଡୀବ ପତିତ ହେଲାରୁ ସେ ଇନ୍ଦ୍ରଚାପ ସଦୃଶ ଶୋଭା ପାଇଲା । ୨୩ ।

Digitized by srujanika@gmail.com

ରାଜନ୍ ! ମହାଯୁଦ୍ଧରେ ସେହି ଦିବ୍ୟ ମହାଧନୁ ନିପତିତ ହେଲାରୁ ଧୃତବର୍ମା ଉଚ୍ଚୈଃସ୍ୱରରେ ହାସ୍ୟକଲେ । ୨୪ । ଅନନ୍ତର ଜିଷ୍ଣୁ ଧନଞ୍ଜୟ କ୍ରୋଧାର୍ଦ୍ଦିତ ହୋଇ ହସ୍ତର ରୁଧିର ମାର୍ଜନ କରି ସେହି ଦିବ୍ୟ ଧନୁ ଗ୍ରହଣ ପୂର୍ବକ ଶରବୃଷ୍ଟି କଲେ । ୨୫ ।

ତଦନନ୍ତର ଧନଞ୍ଜୟଙ୍କ ତାଦୃଶ କର୍ମର ପ୍ରଶଂସାକାରୀ ନାନାବିଧ ପ୍ରାଣିଗଣଙ୍କ କୋଳାହଳ ଶବ୍ଦ ଗଗନମଣ୍ଡଳରେ ଉତ୍ଥିତ ହେଲା । ୨୬ ।

ତ୍ରିଗର୍ତ୍ତବାସୀ ଯୋଧଗଣ କାଳାନ୍ତକ ଯମସଦୃଶ କ୍ରୁଦ୍ଧ ସେହି ଜିଷ୍ଣୁ ଧନଞ୍ଜୟଙ୍କୁ ପରିବେଷ୍ଟନ କଲେ । ୨୭ । ପରିଶେଷରେ ସେମାନେ ଧୃତବର୍ମାଙ୍କ ସାହାଯ୍ୟ ନିମିତ୍ତ ତାହାଙ୍କ ନିକଟକୁ ଗମନ କରି ଗୁଡ଼ାକେଶଙ୍କୁ ନିନ୍ଦାକଲେ ।

ତେତେବେଳେ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ମହେନ୍ଦ୍ର ବଜ୍ରସଦୃଶ ବହୁଶତ ଆୟସ ଶରଦ୍ୱାରା ସେମାନଙ୍କର ଅଷ୍ଟାଦଶସଂଖ୍ୟକ ସେନା ସଂହାର କଲେ । ୨୯ ।

ଧନଞ୍ଜୟ ସେହି ସମସ୍ତ ସୈନ୍ୟ ପ୍ରଭଗ୍ନ ହେବାର ଦେଖି ଉଚ୍ଚୈଃ-ସ୍ୱରରେ ହାସ୍ୟକରି ତ୍ୱରା ସହକାରରେ ଆଶୀବିଷାକାର ଶରବୃନ୍ଦଦ୍ୱାରା ଶତ୍ରୁଗଣଙ୍କୁ ସଂହାର କଲେ । ୩୦ ।

ରାଜନ୍ ! ସେହି ତ୍ରିଗର୍ତ୍ତବାସୀ ମହାରଥଗଣ ଧନଞ୍ଜୟଙ୍କ ଶରରେ ଅର୍ଦ୍ଦିତ ଓ ପ୍ରଭଗ୍ନଚିତ୍ତ ହୋଇ ନାନାଦିଗକୁ ପଳାୟନ କଲେ । ୩୧ ।

ତଦନନ୍ତର ସେମାନେ ସଂଶପ୍ତକନିସୂଦନ ପୁରୁଷପ୍ରବର ଧନଞ୍ଜୟଙ୍କ ନିକଟକୁ ଆଗମନ କରି ତାହାଙ୍କୁ କହିଲେ ଯେ, ହେ ପାର୍ଥ ! ଆମ୍ଭେମାନେ ସମସ୍ତେ ଆପଣଙ୍କ କିଙ୍କର ଓ ବଶବର୍ତ୍ତୀ ହେଲୁଁ । ୩୨ । ଆମ୍ଭେମାନେ ପ୍ରେଷ୍ୟରୂପରେ ଅବସ୍ଥିତ ହୋଇଅଛୁଁ । ଆପଣ ଆମ୍ଭମାନଙ୍କୁ ଆଜ୍ଞା କରନ୍ତୁ । ହେ କୌରବନନ୍ଦନ ! ଆମ୍ଭେମାନେ ଆପଣଙ୍କର ସମସ୍ତ ପ୍ରିୟକାର୍ଯ୍ୟ କରିବୁଁ । ୩୩ ।

Digitized by srujanika@gmail.com

ତେତେବେଳେ ଧନଞ୍ଜୟ ସେହି ତ୍ରିଗର୍ତ୍ତବାସିମାନଙ୍କୁ ଏହିପ୍ରକାର ଆଦେଶ କଲେ ଯେ, ହେ ନୃପଗଣ ! ଆମ୍ଭେ ତୁମ୍ଭର ଜୀବନ ରକ୍ଷାକଲୁଁ, ତୁମ୍ଭେମାନେ ଆମ୍ଭର ଶାସନ ପ୍ରତିଗ୍ରହ କର । ୩୪ ।

---

# ପଞ୍ଚସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ଭରତଶ୍ରେଷ୍ଠ ! ଅନନ୍ତର ପାଣ୍ଡୁପୁତ୍ରଙ୍କର ସେହି ତୁରଗୋତ୍ତମ ପ୍ରାଗ୍‌ଜ୍ୟୋତିଷ ଦେଶକୁ ଗମନ କରି ବିଚରଣ କଲା । ସେହି ଦେଶର ରାଜା ଥିଲେ ଭଗଦତ୍ତାତ୍ମଜ ମହାବୀର ବଜ୍ରଦତ୍ତ । ସେହି ଅଶ୍ୱ ସ୍ୱୀୟ ଦେଶମଧ୍ୟରେ ବିଚରଣ କରିବାର ଜାଣି ତାହାକୁ ଗ୍ରହଣ କରିବାର ଉପକ୍ରମ କଲେ ।

ହେ ନୃପ ! ସେହି ଭଗଦତ୍ତସୁତ ବଜ୍ରଦତ୍ତ ନଗରରୁ ନିର୍ଗତ ହୋଇ ସମାଗତ ଅଶ୍ୱକୁ ଉନ୍ମଥନ କରି ନଗରାଭିମୁଖେ ଗମନକଲେ । ୩ ।

ତେତେବେଳେ କୁରୁଶ୍ରେଷ୍ଠ ମହାବାହୁ ଧନଞ୍ଜୟ ତାହା ଲକ୍ଷ୍ୟକରି ସହସା ଗାଣ୍ଡୀବ ଧନୁରୁ ଶର ନିକ୍ଷେପ କରି ସତ୍ୱର ତାହାଙ୍କପ୍ରତି ଧାବିତ ହେଲେ । ୪ ।

ତଦନନ୍ତର ବୀର ବଜ୍ରଦତ୍ତ ଗାଣ୍ଡୀବନିର୍ମୁକ୍ତ ଶରସମୂହଦ୍ୱାରା ଆହତ ଓ ବିମୋହିତ ହୋଇ ଅଶ୍ୱ ପରିତ୍ୟାଗପୂର୍ବକ ପାର୍ଥଙ୍କପ୍ରତି ଧାବିତ ହେଲେ । ୫ ।

ଅନନ୍ତର ସେହି ରଣକର୍କଶ ନୃପବର ବଜ୍ରଦତ୍ତ ଶରଦ୍ୱାରା ଦଂଶିତ ହୋଇ ପୁନଶ୍ଚ ନଗରରେ ପ୍ରବେଶ କରି ମହାମାତଙ୍ଗାରୂଢ଼ ହୋଇ ନଗରରୁ ନିର୍ଗତ ହେଲେ । ୬ ।

ତେତେବେଳେ ତାହାଙ୍କ ମସ୍ତକୋପରି ପାଣ୍ଡୁର ଆତପତ୍ର ଧୃତ ହୋଇଥିଲା ଏବଂ ଅଂଗରେ ଶ୍ୱେତ ଚାମର ସଂଚାଳିତ ହେଉଥିଲା । ସେହି ମହାରଥ ପାର୍ଥଙ୍କ ନିକଟରେ ଉପସ୍ଥିତ ହୋଇ ବାଲ୍ୟ ଓ ମୋହବଶତଃ ସମରରେ ବୀଭତ୍ସୁଙ୍କୁ ଯୁଦ୍ଧନିମିତ୍ତ ଆହ୍ୱାନ କଲେ । ୮ ।

Digitized by srujanika@gmail.com

ହେ ରାଜନ୍ ! ସେହି ବଜ୍ରଦତ୍ତ ଅତିଶୟ କ୍ରୁଦ୍ଧ ହୋଇ ଶ୍ୱେତାଶ୍ୱ ଧନଞ୍ଜୟଙ୍କ ନିକଟକୁ ଅଚଳ ସଦୃଶ, ଶାସ୍ତ୍ରାନୁସାରେ କଳ୍ପିତ ସମରରେ ଅବିବଶ, ଯୁଦ୍ଧଦୁର୍ମଦ, ମହାମେଘବତ୍ ମଦସ୍ରାବୀ ମତ୍ତମାତଙ୍ଗ ସଞ୍ଚାଳନ କଲେ । ତେତେବେଳେ ସେହି ମହାବଳ ମାତଙ୍ଗରାଜ ବଜ୍ରଦତ୍ତକର୍ଣ୍ଣିକ ଅଙ୍କୁଶଦ୍ୱାରା ତାଡ଼ିତ ହୋଇ ଆକାଶପଥରେ ଉଡ୍ଡୀନ ହେଲାପରି ପ୍ରତିଭାତ ହେଲା ।

ହେ ରାଜନ୍ ! ଭାରତ ! ଧନଞ୍ଜୟ ସେହି ସମାଗତ ହସ୍ତିକୁ ଦେଖି ଅତିଶୟ କ୍ରୁଦ୍ଧ ହେଲେ ଏବଂ ଭୂତଳରେ ଅବସ୍ଥାନ କରି ସେହି ବାରଣୋପରିସ୍ଥ ବଜ୍ରଦତ୍ତଙ୍କ ସହିତ ଯୁଦ୍ଧକଲେ । ୧୨ ।

ତେତେବେଳେ ବଜ୍ରଦତ୍ତ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଅତିବେଗବାନ୍ ଶଲଭଦଳ ସଦୃଶ ଅଗ୍ନିସମ ଧନଞ୍ଜୟଙ୍କ ପ୍ରତି ତୋମରନିକର ନିକ୍ଷେପ କଲେ ।୧୩। ତେତେବେଳେ ଅର୍ଜୁନ ଆକାଶଗାମୀ ଗାଣ୍ଡୀବପ୍ରଭବ ଶରସମୂହ-ଦ୍ୱାରା ସମୀପାଗତ ସେହି ତୋମରସମୂହକୁ ଶୂନ୍ୟମଧ୍ୟରେ ପ୍ରତ୍ୟେକରେ ଦୁଇ ତିନି ଖଣ୍ଡ କରି ଛେଦନ କଲେ । ୧୪ । ଭଗଦତ୍ତାତ୍ମଜ ବଜ୍ରଦତ୍ତ ତୋମର-ମାନଙ୍କୁ ସେହିରୂପେ ଛିନ୍ନ ହେବାର ଦେଖି ଅତିଶୀଘ୍ର ଅସକ୍ତ ଇଷୁମାନଙ୍କୁ ପାର୍ଥଙ୍କ ପ୍ରତି ନିକ୍ଷେପକଲେ । ୧୫ ।

ଅନନ୍ତର ଅର୍ଜୁନ କ୍ରୁଦ୍ଧ ହୋଇ ଅତିସତ୍ୱର ବଜ୍ରଦତ୍ତଙ୍କ ପ୍ରତି ସୁବର୍ଣ୍ଣପୁଙ୍ଖ ଅଜିହ୍ମଗାମୀ ଶରବୃନ୍ଦ ନିକ୍ଷେପ କଲେ । ୧୬ । ସେହି ମହାତେଜା ବଜ୍ରଦତ୍ତ ମହାଯୁଦ୍ଧରେ ଅର୍ଜୁନଙ୍କ ଶରରେ ବିଦ୍ଧ ଓ ଅତିଶୟ ଆହତ ହୋଇ ପୃଥିବୀରେ ପତିତ ହେଲେ । କିନ୍ତୁ ତାହାଙ୍କର ସ୍ମୃତି ଲୋପ ହେଲାନାହିଁ । ୧୭ । ତଦନନ୍ତର ସେହି ଜୟାର୍ଥୀ ବଜ୍ରଦତ୍ତ ମୋହ ପରିତ୍ୟାଗ କରି ଅବ୍ୟଗ୍ରଚିତ୍ତରେ ପୁନଶ୍ଚ ସମରରେ ବିଜୟଙ୍କପ୍ରତି ବାରଣପ୍ରବରଙ୍କୁ ପ୍ରେରଣ କଲେ । ୧୮ ।

କିନ୍ତୁ ଧନଞ୍ଜୟ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଆଶୀବିଷ ସଦୃଶ ପ୍ରଜ୍ୱଳିତ ଜ୍ୱଳନସମ ବାଣଗଣଙ୍କୁ ସେହି ବାରଣ ପ୍ରତି ପ୍ରେରଣ କଲେ । ୧୯ ।

Digitized by srujanika@gmail.com

ସେତେବେଳେ ସେହି ବାରଣବର ବାଣଦ୍ୱାରା ବିଦ୍ଧହୋଇ ରୁଧିର କ୍ଷରଣ କରି ଗୈରିକାକ୍ତ ବହୁପ୍ରସ୍ରବଣଯୁକ୍ତ ପର୍ବତ ସଦୃଶ ଶୋଭିତ ହେଲା ।

---

## ଷଟ୍‌ସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ଭରତର୍ଷଭ ! ପୂର୍ବେ ଯେଉଁପରି ବୃତ୍ରାସୁରଙ୍କ ସହିତ ଶତକ୍ରତୁଙ୍କର ସଂଗ୍ରାମ ହୋଇଥିଲା, ତଦ୍‌ବତ୍ ନରେନ୍ଦ୍ର ବଜ୍ରଦତ୍ତଙ୍କ ସହିତ ଅର୍ଜୁନଙ୍କର ଏହିରୂପେ ତିନିଦିନ ସେହି ସମର ହୋଇଥିଲା । ୧ ।

ତଦନନ୍ତର ଚତୁର୍ଥ ଦିବସରେ ମହାବଳ ବଜ୍ରଦତ୍ତ ଉଚ୍ଚୈଃସ୍ୱରରେ ହାସ୍ୟ କରି ଅର୍ଜୁନଙ୍କୁ କହିଲେ ଯେ, ହେ ଅର୍ଜୁନ ! ତୁମ୍ଭେ ରହ, ଆମ୍ଭର ଜୀବନ ଥିଲେ ତୁମ୍ଭେ ଆମ୍ଭନିକଟରୁ ପରିତ୍ରାଣ ପାଇବ ନାହିଁ । ଆଜ ଆମ୍ଭେ ତୁମ୍ଭଙ୍କୁ ବିନଷ୍ଟ କରି ତୁମ୍ଭ ରୁଧିରରେ ବିଧି ଅନୁସାରେ ପିତାଙ୍କ ଉଦକକ୍ରିୟା ସମାଧାନ କରିବୁଁ । ୩ । ତୁମ୍ଭେ ତୁମ୍ଭର ପିତୃସଖା ମଦୀୟ ପିତା ବୃଦ୍ଧ ଭଗଦତ୍ତଙ୍କୁ ନିହତ କରିଅଛ । ଆମ୍ଭେ ଶିଶୁ, ଅଦ୍ୟ ଆମ୍ଭ ସହିତ ଯୁଦ୍ଧକର । ୪ ।

ହେ କୌରବ ! ନରନାଥ ବଜ୍ରଦତ୍ତ କ୍ରୋଧ ସହିତ ଅର୍ଜୁନଙ୍କୁ ଏହିପରି କହି, ତାହାଙ୍କ ପ୍ରତି ବାରଣ ପ୍ରେରଣ କଲେ । ୫ । ସେହି ନାଗେନ୍ଦ୍ର ଧୀମାନ୍ ବଜ୍ରଦତ୍ତକର୍ତ୍ତୃକ ପ୍ରେରିତ ହୋଇ ଅର୍ଜୁନଙ୍କ ଉପରକୁ ମଦବାରି ନିକ୍ଷେପ କରି କରି ମହାବେଗରେ ତାହାଙ୍କ ପ୍ରତି ଧାବମାନ ହେଲା । ୬ ।

ବାରିଦବୃନ୍ଦ ଯେଉଁପରି ବାରିବର୍ଷଣଦ୍ୱାରା ନୀଳଗିରିକୁ ସେଚନ କରେ, ତଦ୍‌ବତ୍ ସେହି ନାଗରାଜ ହସ୍ତାଗ୍ରପ୍ରମୁକ୍ତ ଶୀକରସମୂହଦ୍ୱାରା ଗୁଡ଼ାକେଶଙ୍କୁ ସେଚନକଲା । ୭ । ନାଗେନ୍ଦ୍ରରାଜ ବଜ୍ରଦତ୍ତକର୍ତ୍ତୃକ ପ୍ରେରିତ ହୋଇ ମେଘସଦୃଶ ବାରମ୍ବାର ଗର୍ଜନ କରି ଅର୍ଜୁନଙ୍କ ପ୍ରତି ଧାବିତ ହେଲା । ୮ ।

Digitized by srujanika@gmail.com

ରାଜନ୍ ! ବଜ୍ରଦତ୍ତପ୍ରେରିତ ସେହି ନାଗେନ୍ଦ୍ର ନୃତ୍ୟ କଲାପ୍ରାୟ ଅତିବେଗରେ ଗମନ କରି କୌରବମାନଙ୍କ ମହାରଥ ଅର୍ଜୁନଙ୍କ ନିକଟରେ ପ୍ରବିଷ୍ଟ ହେଲା । ୯ ।

ଶତ୍ରୁସୂଦନ ଧନଞ୍ଜୟ ବଜ୍ରଦତ୍ତଙ୍କ ବାରଣକୁ ସମାଗତ ହେବାର ଦର୍ଶନ କରି ଗାଣ୍ଡୀବ ଅବଲମ୍ବନପୂର୍ବକ ବିଚଳିତ ହେଲେ ନାହିଁ । ୧୦ ।

ସେ ଭଗଦତ୍ତଙ୍କ ପୂର୍ବ ବୈର ସ୍ମରଣକରି ବଳପୂର୍ବକ କ୍ରୋଧକରି ଭୂପତି ବଜ୍ରଦତ୍ତଙ୍କ ହସ୍ତିକୁ କାର୍ଯ୍ୟବିଘ୍ନକାରୀ ବୋଲି ବିବେଚନା କଲେ । ୧୧ ।

ଅନନ୍ତର ବେଳାଭୂମି ଯେଉଁପରି ମକରାଳୟକୁ ନିବାରଣ କରେ, ତଦ୍‌ବତ୍ ସେ କ୍ରୁଦ୍ଧ ହୋଇ ଶରଜାଲଦ୍ୱାରା ସେହି ବାରଣକୁ ନିବାରଣ କଲେ । ୧୨ । ଶ୍ରୀମାନ୍ ନାଗରାଜ ଅର୍ଜୁନଙ୍କଦ୍ୱାରା ନିବାରିତ ଓ ଶରବୃନ୍ଦଦ୍ୱାରା ବିଚ୍ଛିନ୍ନ ହୋଇ କଣ୍ଟକାବୃତ ଶଲ୍ଲକୀ ସଦୃଶ ଶୋଭିତ ହେଲା । ୧୩ ।

ଭଗଦତ୍ତସୁତ ନୃପତି ବଜ୍ରଦତ୍ତ ଅର୍ଜୁନଙ୍କଦ୍ୱାରା ନିବାରିତ ବାରଣକୁ ଦେଖି କ୍ରୋଧମୂର୍ଚ୍ଛିତ ହୋଇ ଅର୍ଜୁନଙ୍କପ୍ରତି ଶାଣିତ ବାଣସମୂହ ବିସର୍ଜନ କଲେ । ୧୪ ।

ମହାବାହୁ ଅର୍ଜୁନ ଶତ୍ରୁସଂହାରକ ଶରସମୂହଦ୍ୱାରା ସେହି ବାଣସମୂହ ନିବାରଣ କରିବାରୁ ତେତେବେଳେ ତାହା ଅତି ଅଦ୍ଭୁତ ବୋଧହେଲା । ୧୫ ।

ତଦନନ୍ତର ପ୍ରାଗ୍‌ଜ୍ୟୋତିଷାଧିପତି ରାଜା ବଜ୍ରଦତ୍ତ କ୍ରୁଦ୍ଧ ହୋଇ ପୁନଶ୍ଚ ପର୍ବତ ସଦୃଶ ବଳବାନ୍ ବାରଣକୁ ପ୍ରେରଣ କଲେ । ପାକଶାସନ-ପୁତ୍ର ଧନଞ୍ଜୟ ସେହି ନାଗେନ୍ଦ୍ରକୁ ଆଗମନ କରିବାର ଦେଖି ବଳପୂର୍ବକ ବାରଣ ପ୍ରତି ଅଗ୍ନି ସଦୃଶ ନାରାଚ ନିକ୍ଷେପ କଲେ । ୧୭ ।

ହେ ରାଜନ୍ ! ସେହି ବାରଣ ନାରାଚଦ୍ୱାରା ମର୍ମସ୍ଥାନରେ ଅତିଶୟ ଆଘାତପ୍ରାପ୍ତ ହୋଇ ବଜ୍ରଭଗ୍ନ ଅର୍ଥାତ୍ ବଜ୍ରବିଦାରିତ ଅଚଳ ସଦୃଶ ସହସା ଭୂତଳରେ ପତିତ ହେଲା । ୧୮ । ତେତେବେଳେ ସେହି ଗଜ ଧନଞ୍ଜୟଙ୍କ ଶରାଘାତରେ ନିପତିତ ହୋଇ ବଜ୍ରବିଦାରିତ ପୃଥିବୀପ୍ରବିଷ୍ଟ ପର୍ବତ ସଦୃଶ ଶୋଭା ଧାରଣ କଲା । ୧୯ ।

Digitized by srujanika@gmail.com

ବଜ୍ରଦତ୍ତଙ୍କ ନାଗ ନିପତିତ ହେବାରୁ ପାର୍ଥ ଭୂତଳରେ ଥାଇ ନୃପତି ବଜ୍ରଦତ୍ତଙ୍କୁ କହିଲେ, ତୁମ୍ଭର ଭୟ ନାହିଁ । ଆମ୍ଭେ ପ୍ରସ୍ଥିତ ହେବା ସମୟରେ ମହାତେଜା ଯୁଧିଷ୍ଠିର ଆମ୍ଭଙ୍କୁ କହିଥିଲେ ଯେ, ହେ ଧନଞ୍ଜୟ ! ନୃପତିଗଣ ତୁମ୍ଭର ପ୍ରତିକୂଳାଚରଣ କଲେ, ତୁମ୍ଭେ ସମରରେ କଦାପି ସେମାନଙ୍କୁ ଏବଂ ସୈନ୍ୟମାନଙ୍କୁ ସଂହାର କରିବ ନାହିଁ । ପ୍ରତ୍ୟୁତ ସେମାନଙ୍କୁ କହିବ ଯେ, ହେ ନୃପଗଣ ! ଆପଣମାନେ ସୁହୃଦ୍‌ଗଣଙ୍କ ସହିତ ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞରେ ଅଧିଷ୍ଠିତ ହେବେ । ୨୩ ।

ହେ ନରାଧିପ ! ଆମ୍ଭେ ଭ୍ରାତାଙ୍କ ଆଦେଶାନୁସାରେ ତୁମ୍ଭଙ୍କୁ ସଂହାର କରିବୁଁ ନାହିଁ । ତୁମ୍ଭର ଭୟ ନାହିଁ । ତୁମ୍ଭେ ଗାତ୍ରୋତ୍ଥାନ ପୂର୍ବକ କୁଶଳରେ ଗମନ କର । ୨୪ ।

ମହାରାଜ ! ଚୈତ୍ରୀ ପୂର୍ଣ୍ଣିମା ଉପସ୍ଥିତ ହେଲେ ଧୀମାନ୍ ଧର୍ମରାଜଙ୍କର ଅଶ୍ୱମେଧ ଯଜ୍ଞ ହେବ । ତେତେବେଳେ ଆପଣମାନେ ସେଠାରେ ଉପସ୍ଥିତ ହେବେ । ୨୫ ।

ତେତେବେଳେ ଭଗଦତ୍ତନନ୍ଦନ ରାଜା ବଜ୍ରଦତ୍ତ ପାର୍ଥଙ୍କଦ୍ୱାରା ନିର୍ଜିତ ହୋଇ ଏବଂ ତଦୀୟ ବାକ୍ୟ ଶ୍ରବଣ କରି, ତାହାହେଉ, ଏହି କଥା କହିଲେ । ୨୬ ।

---

# ସପ୍ତସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ମହାରାଜ ! ତଦନନ୍ତର ହତାବଶିଷ୍ଟ ରାଜବଂଶୀୟମାନଙ୍କ ସହିତ କିରୀଟିଙ୍କର ଯୁଦ୍ଧ ହେଲା । ୧ ।

ଯଜ୍ଞୀୟ ଅଶ୍ୱ ସିନ୍ଧୁଦେଶରେ ପ୍ରବିଷ୍ଟ ହୁଅନ୍ତେ ମହାବୀର ଅର୍ଜୁନ ତାହାର ପଶ୍ଚାତ୍ ପଶ୍ଚାତ୍ ସେଠାରେ ଉପସ୍ଥିତ ହେଲେ । ତେତେବେଳେ ସିନ୍ଧୁଦେଶୀୟ ଭୂପାଳଗଣ ଶ୍ୱେତାଶ୍ୱ ଅର୍ଜୁନ ରାଜ୍ୟମଧ୍ୟରେ ଉପସ୍ଥିତ ହୋଇଥିବାର ଶ୍ରବଣ କରି ଅସହ୍ୟତାବଶତଃ ଯୁଦ୍ଧନିମିତ୍ତ ପାର୍ଥଙ୍କ ଅଭିମୁଖକୁ ଗମନ କଲେ । ୨ । ତେତେବେଳେ ସିନ୍ଧୁଦେଶୀୟ ଭୂପାଳଗଣ

Digitized by srujanika@gmail.com

ନିଜ ରାଜ୍ୟ ମଧ୍ୟରେ ବିଚରଣ କରୁଥିବା ବିଷସଦୃଶ ଅଶ୍ୱକୁ ଧାରଣ କରିଲେ, ଏବଂ ଯୁଦ୍ଧବିଷୟରେ ଖ୍ୟାମାନୁଜ ପାର୍ଥଙ୍କଠାରୁ କିଛିମାତ୍ର ଭୀତ ହେଲେ ନାହିଁ । ୩ ।

ମହାବଳପରାକ୍ରାନ୍ତ ରଥାରୂଢ଼ ସୈନ୍ଧବଗଣ କୁରୁକ୍ଷେତ୍ର ଯୁଦ୍ଧରେ ପୂର୍ବେ ସିନ୍ଧୁରାଜ ଜୟଦ୍ରଥଙ୍କ ନିଧନ ଓ ସ୍ୱକୀୟ ପରାଜୟ ବୃତ୍ତାନ୍ତ ସ୍ମରଣ କରି ହିଂସାପରାୟଣ ହୋଇ ଯଜ୍ଞୀୟ ଅଶ୍ୱର ଅନୁଗାମୀ ପଦାତିରୂପେ ଦଣ୍ଡାୟମାନ ଧନୁଷ୍ପାଣି ଅର୍ଜୁନଙ୍କ ନିକଟବର୍ତ୍ତୀ ହୋଇ ତାହାଙ୍କ ଚତୁର୍ଦ୍ଦିଗରେ ପରିବେଷ୍ଟନ କଲେ । ୪ ।

ତଦନନ୍ତର ସେହି ମହାବୀର୍ଯ୍ୟଶାଳୀ ରାଜବୃନ୍ଦ ଯୁଦ୍ଧରେ ନିଜ ନିଜ ନାମ, ଗୋତ୍ର ଓ ବିବିଧ କର୍ମ କୀର୍ତ୍ତନ କରି ନରବର ଅର୍ଜୁନଙ୍କୁ ଶରବୃନ୍ଦଦ୍ୱାରା ଆଚ୍ଛାଦନ କଲେ । ୫ ।

ରାଜଗଣ ଯୁଦ୍ଧରେ ଜୟାଭିଳାଷୀ ହୋଇ ବାରଣନିବାରଣ ଶରବୃନ୍ଦ ନିକ୍ଷେପ କରି କୁନ୍ତୀପୁତ୍ର ଧନଞ୍ଜୟଙ୍କୁ ନିବାରଣ କଲେ । ୬ । ସେହି ବୀରଗଣ ରଥାରୂଢ଼ ହୋଇ ପଦାତି କୃଷ୍ଣକାୟ ଯୁଦ୍ଧରେ ଉଗ୍ରକର୍ମା ଅର୍ଜୁନଙ୍କୁ ଅବଲୋକନ କରି ସମସ୍ତେ ଏକସମୟରେ ଯୁଦ୍ଧକଲେ । ୮ ।

ତଦନନ୍ତର ସେହି ବୀରବୃନ୍ଦ ନିବାତକବଚହନ୍ତକ ସଂଶପ୍ତକନିହନ୍ତା ସୈନ୍ଧବ ରାଜଗଣଙ୍କ ସଂହାରକର୍ତ୍ତା ବୀର ଅର୍ଜୁନଙ୍କୁ ଶରାଘାତ କଲେ । ୯ । ସେମାନେ ସହସ୍ର ରଥ ଓ ଅୟୁତ ଅଶ୍ୱଦ୍ୱାରା ବୀଭତ୍ସୁଙ୍କୁ ପରିବେଷ୍ଟନ ପୂର୍ବକ ହୃଷ୍ଟମନା ହେଲେ । ୧୦ ।

ହେ କୌରବ୍ୟ ! ସେହି ବୀରଗଣ ଯୁଦ୍ଧରେ ସବ୍ୟସାଚୀକର୍ତ୍ତୃକ ବୀର ସିନ୍ଧୁରାଜ ଜୟଦ୍ରଥଙ୍କ ବଧବୃତ୍ତାନ୍ତ ସ୍ମରଣ କରି ସହସ୍ର ରଥ ଓ ଅୟୁତ ଅଶ୍ୱଦ୍ୱାରା ବୀଭତ୍ସୁ ଅର୍ଜୁନଙ୍କୁ ପରିବେଷ୍ଟନ କରି ଅତିଶୟ ହୃଷ୍ଟମନା ହେଲେ । ୧୧ ।

ତଦନନ୍ତର ସେମାନେ ପର୍ଜନ୍ୟ ସଦୃଶ ଶରବୃଷ୍ଟି କରୁଥିଲେ । ଅତଏବ ପାର୍ଥ ସେହି ଶରଜାଳଦ୍ୱାରା ସମାଚ୍ଛନ୍ନ ହୋଇ ମେଘମଧ୍ୟସ୍ଥିତ ସୂର୍ଯ୍ୟଦେବଙ୍କ ସଦୃଶ ଶୋଭିତ ହେଲେ । ୧୨ ।

Digitized by srujanika@gmail.com

ହେ ଭାରତ ! ସେହି ପାଣ୍ଡବଶ୍ରେଷ୍ଠାର୍ଜୁନ ଶରବୃନ୍ଦରେ ସମାବୃତ ହୋଇ ପଞ୍ଜରମଧ୍ୟସ୍ଥିତ ପକ୍ଷିସଦୃଶ ଶୋଭିତ ହେଲେ । ୧୩ ।

ତଦନନ୍ତର କୁନ୍ତୀପୁତ୍ର ଶରପୀଡ଼ିତ ହେବାରୁ ତ୍ରିଲୋକମଧ୍ୟରେ ହାହାକାର ଶବ୍ଦ ସମୁତ୍ଥିତ ହେଲା ଏବଂ ସୂର୍ଯ୍ୟ ପ୍ରଭାଶୂନ୍ୟ ହେଲେ । ୧୪ ।

ମହାରାଜ ! ବାୟୁ ପ୍ରବଳ ବେଗରେ ସଞ୍ଚାରିତ ହେଲା । ରାହୁ ଏକାବେଳରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଗ୍ରାସ କଲେ । ୧୫ ।

ହେ ରାଜନ୍ ! ସେତେବେଳେ ଉଲ୍‌କାସମୂହ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହୋଇ ସୂର୍ଯ୍ୟଙ୍କୁ ସର୍ବତୋଭାବରେ ଆଚ୍ଛାଦନ କଲେ । ମହାଗିରି କୈଳାସ ପର୍ବତ କମ୍ପିତ ହେଲା । ୧୬ । ସପ୍ତର୍ଷି ଓ ଦେବର୍ଷିଗଣ ଦୁଃଖଶୋକସମନ୍ୱିତ ଓ ଭୀତ ହୋଇ ଦୀର୍ଘ ଓ ଅତି ଉଷ୍ଣ ନିଶ୍ୱାସ ପରିତ୍ୟାଗ କଲେ । ୧୭ । ଉଲ୍‌କାସମୂହ ଚନ୍ଦ୍ରମଣ୍ଡଳସ୍ଥ ଶଶ ଓ ଚନ୍ଦ୍ରମଣ୍ଡଳକୁ ଭେଦକରି ଆକାଶରୁ ପତିତ ହେଲା । ଦିଙ୍ମଣ୍ଡଳ ଧୂମାଚ୍ଛନ୍ନ ହେବାରୁ ତାହାସବୁ ବିପରୀତ ଭାବ ଧାରଣ କଲା । ୧୮ । ନଭୋମଣ୍ଡଳରେ ଅକସ୍ମାତ୍ ବିଦ୍ୟୁତ୍ ଓ ଇନ୍ଦ୍ରଧନୁ-ସମ୍ବଳିତ ରାସଭାରୁଣବର୍ଣ୍ଣବିଶିଷ୍ଟ ମେଘବୃନ୍ଦ ଉଦିତ ହୋଇ ମାଂସ ଓ ଶୋଣିତ ବୃଷ୍ଟିକଲେ । ୧୯ ।

ହେ ଭରତଶ୍ରେଷ୍ଠ ! ବୀରବର ଧନଞ୍ଜୟ ଶରବୃଷ୍ଟିଦ୍ୱାରା ସମାବୃତ ହେବାରୁ ସେତେବେଳେ ନାନାବିଧ ଅଦ୍ଭୁତ ଘଟନା ସବୁ ଉପସ୍ଥିତ ହେଲା । ୨୦ ।

ଅର୍ଜୁନ ସେମାନଙ୍କ ଶରଜାଳଦ୍ୱାରା ସମାଚ୍ଛନ୍ନ ହେବାରୁ ମୋହବଶତଃ ତାହାଙ୍କ ହସ୍ତରୁ ଗାଣ୍ଡୀବ ଧନୁ ଓ ହସ୍ତର ଜ୍ୟାଘାତନିବାରକ ଚର୍ମ୍ମପଟ୍ଟିକା ପତିତ ହେଲା । ୨୧ ।

ମହାରଥାର୍ଜୁନ ମୋହପ୍ରାପ୍ତ ଓ ଗତସତ୍ତ୍ୱ ହୁଅନ୍ତେ ସିନ୍ଧୁରାଜଗଣ ତାହାଙ୍କ ପ୍ରତି ଶୀଘ୍ର ଶରଜାଳ ବିମୋଚନ କରୁଥିଲେ । ୨୨ ।

ତଦନନ୍ତର ଦ୍ୟୁଲୋକବାସୀ ଦେବଗଣ ପାର୍ଥ ମୋହପ୍ରାପ୍ତ ହେବାର ଜାଣି ବ୍ୟାକୁଳ ଚିତ୍ତରେ ତାହାଙ୍କ ଶାନ୍ତିକରଣର ଅନୁଷ୍ଠାନରେ ପ୍ରବୃତ୍ତ ହେଲେ । ୨୩ ।

Digitized by srujanika@gmail.com

ତଦନନ୍ତର ଦେବର୍ଷି, ବ୍ରହ୍ମର୍ଷି ଓ ସପ୍ତର୍ଷିଗଣ ଧୀମାନ୍ ପାର୍ଥଙ୍କ ବିଜୟ ଲାଭ ନିମିତ୍ତ ବିଜୟମନ୍ତ୍ର ଜପକଲେ । ୨୪ ।

ହେ ପାର୍ଥିବ ! ତଦନନ୍ତର ପାର୍ଥ ଦେବଗଣକର୍ତ୍ତୃକ ତେଜଃପ୍ରାପିତ ହେବାରୁ ସେହି ପରମାସ୍ତ୍ରବେତ୍ତା ଧୀମାନ୍ ଧନଞ୍ଜୟ ଅଚଳ ସଦୃଶ ସମରରେ ଅବସ୍ଥାନ କଲେ । ୨୫ ।

ତଦନନ୍ତର ସେ ଦିବ୍ୟ ଧନୁକୁ ଆକର୍ଷଣ କଲେ । ଯନ୍ତ୍ରସଦୃଶ ବାରମ୍ବାର ତହିଁରୁ ମହାନ୍ ଶବ୍ଦ ଉତ୍ଥିତ ହେଲା । ୨୬ ।

ଅନନ୍ତର ପୁରନ୍ଦର ଯେଉଁପରି ବାରି ବର୍ଷଣ କରନ୍ତି, ତଦ୍‌ବତ୍ ପାର୍ଥ ଦିବ୍ୟଧନୁଦ୍ୱାରା ପ୍ରତିକୂଳାଗ୍ରସ୍ତ ଅମିତ୍ରଗଣଙ୍କ ପ୍ରତି ଶର ବର୍ଷଣ କଲେ । ୨୭ ।

ସରାଜକ ସିନ୍ଧୁଦେଶୀୟ ଯୋଧଗଣ ଅର୍ଜୁନନିକ୍ଷିପ୍ତ ଶରସମୂହରେ ସମାଚ୍ଛନ୍ନ ହୋଇ ଶଲଭଦ୍ୱାରା ସମାକୀର୍ଣ୍ଣ ପାଦପକୁଳ ସଦୃଶ ଅଦୃଶ୍ୟ ହେଲେ । ୨୮ ।

ସୈନ୍ଧବଗଣ ତାହାଙ୍କ ଶବ୍ଦରେ ବିତ୍ରସ୍ତ, ଭୟାର୍ତ୍ତ ଓ ଶୋକାର୍ତ୍ତ ହୋଇ ଅଶ୍ରୁବାରି ପରିତ୍ୟାଗ ପୂର୍ବକ ପଳାୟନ କଲେ । ୨୯ ।

ହେ ରାଜନ୍ ! ତତ୍ସମୟରେ ବଳବାନ୍ ଅର୍ଜୁନ ଶରନିକରଦ୍ୱାରା ସୈନ୍ଧବଗଣଙ୍କୁ ସମାଚ୍ଛନ୍ନ କରି ସଂଗ୍ରାମ ମଧ୍ୟରେ ଅଲାତଚକ୍ର ସଦୃଶ ପରିଭ୍ରମଣ କଲେ । ୩୦ ।

ଅମିତ୍ରଘାତୀ ଅର୍ଜୁନ ବଜ୍ରଧାରୀ ମହେନ୍ଦ୍ରଙ୍କ ସଦୃଶ ସମସ୍ତ ଦିଗମାନଙ୍କରେ ଇନ୍ଦ୍ରଜାଲ ସଦୃଶ ବାଣଜାଳ ବିସର୍ଜନ କଲେ । ୩୧ ।

ହେ ରାଜନ୍ ! କୌରବଶ୍ରେଷ୍ଠ ଅର୍ଜୁନ ଶରବୃଷ୍ଟିଦ୍ୱାରା ମେଘବୃନ୍ଦ ସଦୃଶ ସୈନ୍ଧବ ସୈନ୍ୟଗଣଙ୍କୁ ବିଦାରଣ କରି ଶାରଦୀୟ ସୂର୍ଯ୍ୟ ସଦୃଶ ସୈନ୍ଧବ ସୈନ୍ୟଗଣ ମଧ୍ୟରେ ଶୋଭିତ ହେଲେ । ୩୨ ।



Digitized by srujanika@gmail.com

# ଅଷ୍ଟସପ୍ତତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ଦୁର୍ଦ୍ଧର୍ଷ ଗାଣ୍ଡୀବୀ ବୀର ଧନଞ୍ଜୟ ଯୁଦ୍ଧ ନିମିତ୍ତ ସମରରେ ଉପସ୍ଥିତ ହୋଇ ହିମାଳୟ ସଦୃଶ ଶୋଭିତ ହେଲେ । ୧ ।

ହେ ଭରତ ! ତଦନନ୍ତର ସୈନ୍ଧବ ସୈନ୍ୟଗଣ ସମଧିକ ଫରନ୍ତ ସହକାରରେ ପୁନଶ୍ଚ ସମରରେ ଉପସ୍ଥିତ ହୋଇ ଶରବର୍ଷଣ କଲେ । ୨ ।

ମହାବାହୁ କୁନ୍ତୀତନୟ ମୁମୂର୍ଷୁ ସୈନ୍ଧବଗଣଙ୍କୁ ପୁନଶ୍ଚ ସମରରେ ସମୁପସ୍ଥିତ ହେବାର ଦେଖି ହାସ୍ୟକରି ମଧୁର ବାକ୍ୟରେ କହିଲେ ଯେ, ହେ ବୀରଗଣ ! ତୁମ୍ଭେମାନେ ସମଧିକ ଶକ୍ତି ସହକାରରେ ଯୁଦ୍ଧକର । ଆମ୍ଭଙ୍କୁ ଜୟ କରିବା ବିଷୟରେ ଯତ୍ନକର । ୩ । ଏବଂ ସମସ୍ତ କାର୍ଯ୍ୟ ସୁନ୍ଦରରୂପେ ସମ୍ପାଦନ କର । ତୁମ୍ଭମାନଙ୍କର ମହାଭୟ ଆଗତପ୍ରାୟ ହୋଇଅଛି । ଆମ୍ଭେ ଏକାକୀ ଶରଜାଲ ନିବାରଣ କରି ତୁମ୍ଭମାନଙ୍କ ସଙ୍ଗେ ଯୁଦ୍ଧ କରୁଅଛୁଁ । ୪ । ତୁମ୍ଭେମାନେ ଯୁଦ୍ଧମନା ହୋଇ କିୟତ୍କାଳ ଅବସ୍ଥାନ କର । ଆମ୍ଭେ ଶୀଘ୍ର ତୁମ୍ଭମାନଙ୍କ ଦର୍ପ ଚୂର୍ଣ୍ଣ କରିବୁଁ ।

ହେ ଭରତ ! ଗାଣ୍ଡୀବୀ ରୋଷବଶତଃ ଏହି କଥା କହି ତେତେବେଳେ ଜ୍ୟେଷ୍ଠଭ୍ରାତା ଯେଉଁ କଥା କହିଥିଲେ, 'ହେ ତାତ ! ସମରରେ ଜିଗୀଷୁ କ୍ଷତ୍ରିୟଗଣଙ୍କୁ ବିନଷ୍ଟ କରିବ ନାହିଁ, କେବଳ ଜୟ କରିବ', ତାହା ସ୍ମରଣ କରି ଏହିପ୍ରକାର ଚିନ୍ତା କଲେ ଯେ, ଧର୍ମରାଜ ନରେନ୍ଦ୍ର ନରହତ୍ୟା କରିବାକୁ ନିଷେଧ କରିଅଛନ୍ତି । ସଂପ୍ରତି ତାହାଙ୍କ ବାକ୍ୟ ରକ୍ଷାକରିବା ଆମ୍ଭର କର୍ତ୍ତବ୍ୟ-କର୍ମ ଅଟେ । ଶୁଭମୟ ସେହି ବାକ୍ୟ କିରୂପେ ମିଥ୍ୟା ହେବ ? ୮ । ଯଦି ନରପତିଗଣ ଆମ୍ଭଙ୍କୁ ନିହତ ନକରିବେ ତେବେ ତାହାଙ୍କ ଆଦେଶ ପ୍ରତିପାଳିତ ହେବ ।

ପୁରୁଷପ୍ରବର ଫାଲ୍‌ଗୁନ ପାର୍ଥ ଏହିପ୍ରକାର ଚିନ୍ତାକରି ଯୁଦ୍ଧଦୁର୍ମଦ ସେହି ସୈନ୍ଧବଗଣଙ୍କୁ କହିଲେ ଯେ, ହେ ବୀରଗଣ ! ତୁମ୍ଭମାନଙ୍କର ଯେଉଁ ଉପାୟରେ ଶ୍ରେୟୋଲାଭ ହେବ, ଆମ୍ଭେ ତୁମ୍ଭମାନଙ୍କୁ ତାହା କହୁଅଛୁଁ ।

Digitized by srujanika@gmail.com

ତୁମ୍ଭେମାନେ ଆମ୍ଭ ନିକଟରେ ପରାଜୟ ସ୍ୱୀକାର ପୂର୍ବକ ଆମ୍ଭର ଶରଣାଗତ ହେଲେ, ଆମ୍ଭେ ତୁମ୍ଭମାନଙ୍କୁ ସଂହାର କରିବୁ ନାହିଁ । ତୁମ୍ଭେମାନେ ଆମ୍ଭର ଏହି କଥା ଶୁଣି ନିଜ ନିଜ ହିତସାଧନ କର । ୧୧ । ଯଦି ଏହାର ଅନ୍ୟଥା କର, ତେବେ ଆମ୍ଭ ଶରରେ ପୀଡ଼ିତ ହୋଇ ଅତ୍ୟନ୍ତ କ୍ଲେଶ ପାଇବ । କୁରୁପୁଙ୍ଗବ ପାର୍ଥ, ସେହି ବୀରଗଣଙ୍କୁ ଏହି କଥା କହି ଅତ୍ୟନ୍ତ କ୍ରୁଦ୍ଧ ବିଜିଗୀଷୁ ସୈନ୍ଧବଗଣଙ୍କ ସହିତ କ୍ରୋଧ ସହକାରରେ ଯୁଦ୍ଧ କଲେ । ୧୨ ।

ରାଜନ୍ ! ତେତେବେଳେ ସୈନ୍ଧବଗଣ ଅର୍ଜୁନଙ୍କ ପ୍ରତି ଶତସହସ୍ର ନତପର୍ବ ଶରସମୂହ ଉନ୍ମୋଚନ କରୁଥିଲେ । ଧନଞ୍ଜୟ ନିଶିତ ଶରନିକରଦ୍ୱାରା ସମାଗତ କ୍ରୂର ଆଶୀବିଷ ସଦୃଶ ବିଷାକ୍ତ ସେହି ଶରସମୂହକୁ ଶୂନ୍ୟପଥରେ ଛେଦନ କରୁଥିଲେ ।

ତତ୍ପରେ ସେ ଯୁଦ୍ଧରେ ଶାଣିତ ଶରନିକରଦ୍ୱାରା ସୈନ୍ଧବମାନଙ୍କର କଙ୍କପତ୍ରସମନ୍ୱିତ ଶିଳାଶାଣିତ ଶରବୃନ୍ଦକୁ ସତ୍ୱର ଛେଦନ କରି ପ୍ରତ୍ୟେକ ବୀରଙ୍କୁ ଶରନିକରଦ୍ୱାରା ବିଦ୍ଧ କଲେ ।

ଅନନ୍ତର ସିନ୍ଧୁରାଜଗଣ ସିନ୍ଧୁରାଜ ଜୟଦ୍ରଥଙ୍କ ବଧବୃତ୍ତାନ୍ତ ସ୍ମରଣ ପୂର୍ବକ ପୁନଶ୍ଚ ଧନଞ୍ଜୟଙ୍କ ପ୍ରତି ପ୍ରାସ ଓ ଶକ୍ତିସମୂହ ପରିତ୍ୟାଗ କଲେ ।

ମହାବଳ କିରୀଟୀ ସେମାନଙ୍କ ପ୍ରାସ ଓ ଶକ୍ତିସମୂହକୁ ଶୂନ୍ୟ ମଧ୍ୟରେ ଛେଦନ କରି ସେହି ସୈନ୍ଧବ ବୀରଗଣଙ୍କ ସଂକଳ୍ପ ବ୍ୟର୍ଥ ପୂର୍ବକ ଆକ୍ରୋଶ ପ୍ରକାଶ କଲେ, ଏବଂ ନତପର୍ବ ଭଲ୍ଲ ଅସ୍ତ୍ରଦ୍ୱାରା ସମାଗତ ବିଜୟାକାଂକ୍ଷୀ ସେହି ସୈନ୍ଧବ ସୈନ୍ୟଗଣଙ୍କର ମସ୍ତକ ଛେଦନ କଲେ ।

ସେମାନେ ନିବର୍ତ୍ତିତ ଓ ପୁନଶ୍ଚ ଅତିବେଗରେ ଅଭିମୁଖକୁ ଆଗତ ହେଉଥିଲେ । ପରିପୂର୍ଣ୍ଣ ପୟୋନିଧି ସଦୃଶ ତୁମୁଳ ଶବ୍ଦ ଉତ୍ପନ୍ନ ହେଲା । ତେତେବେଳେ ସେମାନେ ଅମିତତେଜା ପାର୍ଥକର୍ତ୍ତୃକ ବଧ୍ୟମାନ ହୋଇ ବଳ ଓ ଉତ୍ସାହ ସହକାରରେ ଅର୍ଜୁନଙ୍କ ସହିତ ଯୁଦ୍ଧ କଲେ ।

ତଦନନ୍ତର ସେମାନେ ବାହନ ଓ ସେନାବୃନ୍ଦ ସହିତ ଯୁଦ୍ଧରେ ଅର୍ଜୁନଙ୍କ ଶରଘାତଦ୍ୱାରା ସଂଜ୍ଞାଶୂନ୍ୟ ଓ କ୍ଲାନ୍ତ ହେଲେ ।

Digitized by srujanika@gmail.com

ଅନନ୍ତର ଧୃତରାଷ୍ଟ୍ରଦୁହିତା ଦୁଃଶଳା ସିନ୍ଧୁରାଜଗଣଙ୍କ ଅତିଗ୍ଲାନିଯୁକ୍ତ ବୋଧକରି ସୈନ୍ୟବୃନ୍ଦର ଶାନ୍ତି ସଂସ୍ଥାପନ ନିମିତ୍ତ ପୌତ୍ର ସୁରଥସୁତ ସହିତ ରଥରେ ଆରୋହଣ କରି ପାର୍ଥଙ୍କ ନିକଟକୁ ଗମନ ପୂର୍ବକ ଆର୍ତ୍ତସ୍ୱରରେ ରୋଦନ କଲେ । ୨୪ ।

ଧନଞ୍ଜୟ ମଧ୍ୟ ତାହା ଦର୍ଶନ କରି ଧନୁ ପରିତ୍ୟାଗ କଲେ । ପ୍ରଭୁ ପାର୍ଥ ଧନୁ ପରିତ୍ୟାଗ ପୂର୍ବକ ସମ୍ମାନ ସହକାରରେ ଭଗିନୀ ଦୁଃଶଳାଙ୍କୁ କହିଲେ— ହେ ଭଗିନି ! ଆମ୍ଭେ କ'ଣ କରିବା କହ ।

ସେତେବେଳେ ଦୁଃଶଳା ତାହାଙ୍କୁ କହିଲେ—ହେ ଭରତଶ୍ରେଷ୍ଠ ! ତୁମ୍ଭର ଭଗିନେୟପୁତ୍ର ଏହି ଶିଶୁ ତୁମ୍ଭଙ୍କୁ ଅଭିବାଦନ କରୁଅଛି । ହେ ପୁରୁଷ-ପ୍ରବର ! ପାର୍ଥ ! ତୁମ୍ଭେ ଏହାଠାରେ କୃପାଦୃଷ୍ଟି ନିକ୍ଷେପକର ।

ହେ ରାଜନ୍ ! ଅର୍ଜୁନ ଦୁଃଶଳାଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ—ହେ ଭଦ୍ରେ ! ଏହାର ପିତା ଆମ୍ଭ ଭଗିନେୟ କେଉଁଠାରେ ଅଛନ୍ତି ?

ଅର୍ଜୁନ ଏହିପରି କହିଲାରୁ ଦୁଃଶଳା ତାହାଙ୍କୁ କହିଲେ—ହେ ଭ୍ରାତ ! ଏହି ଶିଶୁର ପିତା ପିତୃଶୋକରେ ସନ୍ତପ୍ତ ଓ ଆର୍ତ୍ତ ହୋଇ ବିଷାଦବଶତଃ ଯେଉଁପରି ମୃତ୍ୟୁପ୍ରାପ୍ତ ହୋଇଅଛନ୍ତି, ତାହା ଆମ୍ଭନିକଟରୁ ଶ୍ରବଣ କର ।

ହେ ଅନଘ ! ସେହି ସୁରଥ, ଯୁଦ୍ଧରେ ତାହାଙ୍କ ପିତା ତୁମ୍ଭଦ୍ୱାରା ନିହତ ହୋଇଅଛନ୍ତି ଏବଂ ତୁମ୍ଭେ ଅଶ୍ୱାନୁସାରୀ ହୋଇ ଯୁଦ୍ଧ ନିମିତ୍ତ ଏହି ସ୍ଥାନକୁ ଆଗମନ କରିଅଛ, ଏହି ବାର୍ତ୍ତା ଶ୍ରବଣ କରି ପିତାଙ୍କ ମୃତ୍ୟୁ ହେତୁରୁ ଦୁଃଖରେ ଅତିଶୟ ଆର୍ତ୍ତହୋଇ ପ୍ରାଣ ପରିତ୍ୟାଗ କଲେ । ୩୦ ।

ହେ ପ୍ରଭୋ ! ଅନଘ ! ଆମ୍ଭର ସୁରଥ, ବୀଭତ୍ସୁ ଆସିଅଛନ୍ତି ଏହି କଥା ଏବଂ ତୁମ୍ଭର ନାମ ଶ୍ରବଣ କରି ବିଷାଦରେ ଅତିଶୟ ଆର୍ତ୍ତ ହୋଇ ପୃଥିବୀରେ ପତିତ ଓ ମୃତ ହେଲେ ।

ହେ ପାର୍ଥ ! ମୁଁ ପୁତ୍ରକୁ ସେଠାରେ ପତିତ ଓ ମୃତ ହେବାର ଦେଖି ତାହାଙ୍କର ଏହି ବାଳକପୁତ୍ରଙ୍କ ସମଭିବ୍ୟାହାରରେ ତୁମ୍ଭର ଶରଣାଗତ

Digitized by srujanika@gmail.com

ହେବାକୁ ଆସିଅଛୁ । ୩୨ । ସେହି ଧୃତରାଷ୍ଟ୍ରସୁତା ଦୀନା ଦୁଃଶଳା ଆର୍ତ୍ତସ୍ୱରରେ ଏହିପରି କହି ଲୋତକ ଜଳ ବିସର୍ଜନ ପୂର୍ବକ ଦୀନଭାବରେ ଅବସ୍ଥିତ ଅଧୋମୁଖ ପାର୍ଥଙ୍କୁ ପୁନଶ୍ଚ କହିଲେ । ୩୩ ।

ହେ ଧର୍ମଜ୍ଞ ! କୁରୁକୁଳୋଦ୍‌ଭବ ! କୁରୁରାଜ ଦୁର୍ଯ୍ୟୋଧନ ଓ ଜୟଦ୍ରଥଙ୍କୁ ବିସ୍ମୃତ ହୋଇ ସ୍ୱସା ଏବଂ ସ୍ୱସ୍ରୀୟସୁତଙ୍କୁ କୃପାବଲୋକନ ପୂର୍ବକ ତୁମ୍ଭର ଦୟାକରିବାର ବିଧେୟ ।

ପରବୀରଘାତୀ ପରୀକ୍ଷିତ ଅଭିମନ୍ୟୁଙ୍କଠାରୁ ଯେଉଁପରି ଜନ୍ମଗ୍ରହଣ କରିଅଛନ୍ତି, ଆମ୍ଭର ଏହି ମହାଭୁଜ ପୌତ୍ର ମଧ୍ୟ ସେହିପରି ସୁରଥଙ୍କ ଠାରୁ ଜନ୍ମିଅଛନ୍ତି । ହେ ନରବ୍ୟାଘ୍ର ! ଆମ୍ଭେ ସେହି ପୌତ୍ରଙ୍କୁ ଘେନି ସୈନ୍ୟମାନଙ୍କ ଶାନ୍ତି ନିମିତ୍ତ ତୁମ୍ଭ ନିକଟକୁ ଆସିଅଛୁଁ ।

ହେ ମହାବାହୋ ! ସେହି ମନ୍ଦଭାଗ୍ୟ ସୁରଥଙ୍କ ପୁତ୍ର ତୁମ୍ଭ ନିକଟକୁ ଆସିଅଛି, ତୁମ୍ଭେ ଏହାଠାରେ ଅନୁଗ୍ରହ ପ୍ରକାଶ କର ।

ହେ ଅରିନ୍ଦମ ! ଏହି ବାଳକ ଶାନ୍ତି ନିମିତ୍ତ ତୁମ୍ଭ ନିକଟରେ ଅବନତ ମସ୍ତକରେ ଏହି ପ୍ରାର୍ଥନା କରୁଅଛି ଯେ, ତୁମ୍ଭେ ଶାନ୍ତହୁଅ ।

ହେ ପାର୍ଥ ! ଅଜ୍ଞାନ ହତବନ୍ଧୁ ଏହି ବାଳକଠାରେ ଅନୁଗ୍ରହ କର । ଏହାଠାରେ କ୍ରୁଦ୍ଧ ହୁଅନା ।

ହେ ଧର୍ମଜ୍ଞ ! ସେହି ଅନାର୍ଯ୍ୟ ଅତ୍ୟନ୍ତ ଅପରାଧୀ ନୃଶଂସ ଏହି ବାଳକର ପିତାମହଙ୍କୁ ବିସ୍ମୃତ ହୋଇ ଏହାଠାରେ ପ୍ରସନ୍ନ ହେବାର ତୁମ୍ଭର ବିଧେୟ ।

ଦୁଃଶଳା ଏହିପରି କରୁଣ ବାକ୍ୟରେ କହିବାରୁ ଧନଞ୍ଜୟ, ନୃପତି ଧୃତରାଷ୍ଟ୍ର ଓ ଦେବୀ ଗାନ୍ଧାରୀଙ୍କୁ ସ୍ମରଣ କରି ଦୁଃଖ ଓ ଶୋକରେ ଅତିଶୟ ଆର୍ତ୍ତ ହୋଇ କ୍ଷତ୍ରିୟଧର୍ମକୁ ଅତିଶୟ ନିନ୍ଦାକରି କହିଲେ ଯେ, ସେହି କ୍ଷୁଦ୍ରଚିତ୍ତ ରାଜ୍ୟଲୁବ୍‌ଧ ମାନୀ ଦୁର୍ଯ୍ୟୋଧନଙ୍କୁ ଧିକ୍ । ତାହାରି ହେତୁରୁ ମତ୍‌କର୍ତ୍ତୃକ ଏହି ବାନ୍ଧବସମୂହ ଯମସଦନକୁ ପ୍ରେରିତ ହୋଇଅଛନ୍ତି । ଅର୍ଜୁନ ଏହିପ୍ରକାର ବହୁଳ ସାନ୍ତ୍ୱନା ବାକ୍ୟ କହି ବାଳକଠାରେ ଅନୁଗ୍ରହ ପ୍ରକାଶ ପୂର୍ବକ ପ୍ରୀତଚିତ୍ତରେ ଦୁଃଶଳାଙ୍କୁ ଅଭିନନ୍ଦିତ କରାଇ ଗୃହକୁ ପ୍ରେରଣ କଲେ । ୪୪ ।

Digitized by srujanika@gmail.com

ଶୁଭାନନା ଦୁଃଶଳା ତନ୍ନିମିତ୍ତ ସମସ୍ତଙ୍କୁ ଯୁଦ୍ଧରେ ନିବାରଣ କରି ପାର୍ଥଙ୍କୁ ଅଭିବାଦନ କରି ଗୃହକୁ ଗମନ କଲେ । ୪୫ ।

ଧନଞ୍ଜୟ ଏହିରୂପେ ସୈନ୍ଧବ ବୀରଗଣଙ୍କୁ ନିଃଶେଷରେ ଜୟକରି କାମଗୃହୀ ଅଶ୍ୱର ଅନୁଧାବନ କଲେ । ୪୬ ।

ପିନାକୀ ଦେବ ଯେଉଁପରି ଆକାଶରେ ମୃଗର ଅନୁସରଣ କରିଥିଲେ, ତଦ୍‌ବତ୍ ସେହି ବୀର ଧନଞ୍ଜୟ ବିଧିପୂର୍ବକ ଯଜ୍ଞୀୟ ଅଶ୍ୱର ଅନୁଗମନ କଲେ । ୪୭ ।

ସେହି ଯଜ୍ଞୀୟ ବାଜୀ ପାର୍ଥଙ୍କ କର୍ମ ବର୍ଦ୍ଧିତ କରି ଇଚ୍ଛାନୁସାରେ ଯଥାକ୍ରମେ ସମସ୍ତ ଦେଶରେ ବିଚରଣ କଲା । ୪୮ ।

ହେ ପୁରୁଷଶ୍ରେଷ୍ଠ ! ସେହି ଅଶ୍ୱ ଏହିରୂପେ ବିଚରଣ କରି କ୍ରମେ କ୍ରମେ ପାର୍ଥଙ୍କ ସହିତ ମଣିପୂରପତିଙ୍କ ଦେଶରେ ଉପସ୍ଥିତ ହେଲା । ୪୯ ।

---

## ଏକୋନାଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ମହାତ୍ମା ଧନଞ୍ଜୟ ମଣିପୂରରେ ଉପସ୍ଥିତ ହେବାରୁ ତାହାଙ୍କ ପୁତ୍ର ମଣିପୂରର ଅଧୀଶ୍ୱର ବଭ୍ରୁବାହନ ପିତା ଅର୍ଜୁନଙ୍କ ଆଗମନବାର୍ତ୍ତା ଶ୍ରବଣ କରି ବ୍ରାହ୍ମଣମାନଙ୍କୁ ଅଗ୍ରସର କରାଇ ଅର୍ଘ ଉପହାର ସହିତ ବିନୀତ ଭାବରେ ତାହାଙ୍କ ନିକଟକୁ ଗମନ କଲେ । ୧ ।

ମଣିପୂରେଶ୍ୱର ବଭ୍ରୁବାହନ ଏହିରୂପେ ତାହାଙ୍କ ସମୀପରେ ଉପନୀତ ହେବାରୁ ମେଧାବୀ ଧନଞ୍ଜୟ କ୍ଷତ୍ରିୟଧର୍ମ ସ୍ମରଣ ପୂର୍ବକ ତାହାଙ୍କୁ ଅଭିନନ୍ଦନ କଲେ ନାହିଁ । ୨ । ପ୍ରତ୍ୟୁତ ସେହି ଧର୍ମାତ୍ମା ଫାଲ୍‌ଗୁନ କ୍ରୋଧ ସହିତ ତାହାଙ୍କୁ କହିଲେ ଯେ, ହେ ପୁତ୍ର ! ତୁମ୍ଭର ପ୍ରକ୍ରିୟା ଯୁକ୍ତିଯୁକ୍ତ ହୋଇନାହିଁ । ତୁମ୍ଭେ କ୍ଷତ୍ରିୟଧର୍ମର ବହିର୍ଭୂତ । ହେ ପୁତ୍ର ! ଆମ୍ଭେ ଯୁଧିଷ୍ଠିରଙ୍କର ଯଜ୍ଞୀୟ ଅଶ୍ୱ ରକ୍ଷା କରିବାକୁ ତୁମ୍ଭ ରାଜ୍ୟକୁ ଆଗମନ କରିଅଛୁଁ । ତୁମ୍ଭେ କି ନିମିତ୍ତ ଆମ୍ଭ ସହିତ ଯୁଦ୍ଧ କରୁନାହିଁ ? ହେ ଦୁର୍ବୁଦ୍ଧେ !

Digitized by srujanika@gmail.com

ତୁମ୍ଭେ କ୍ଷତ୍ରିୟଧର୍ମର ବହିର୍ଭୂତ ହୋଇଅଛ । ଆମ୍ଭେ ଯୁଦ୍ଧ ନିମିତ୍ତ ଉପସ୍ଥିତ ହୋଇଅଛୁଁ । ତୁମ୍ଭେ ଯଦି ଆମ୍ଭ ସହିତ ଯୁଦ୍ଧ ନକରି ସାମଦ୍ୱାରା ପ୍ରତିଗ୍ରହ କରୁଅଛ, ତେବେ ତୁମ୍ଭଙ୍କୁ ଧିକ୍ । ୫ ।

ହେ ଦୁର୍ମତେ ! ଆମ୍ଭେ ଯୁଦ୍ଧ ନିମିତ୍ତ ସମାଗତ ହୋଇଅଛୁଁ । ତୁମ୍ଭେ ସ୍ତ୍ରୀଲୋକ ସଦୃଶ ପ୍ରତିଗ୍ରହ କରୁଅଛ । ହେ ନରାଧମ ! ଆମ୍ଭେ ଯଦି ନ୍ୟସ୍ତଶସ୍ତ୍ର ହୋଇ ତୁମ୍ଭ ନିକଟକୁ ଆଗତ ହୋଇଥାଆନ୍ତୁ, ତେବେ ତୁମ୍ଭର ଏତାଦୃଶ ପ୍ରକ୍ରିୟା ଯୁକ୍ତିଯୁକ୍ତ ହୁଅନ୍ତା । ୬ ।

ପନ୍ନଗନନ୍ଦିନୀ ଉଲୂପୀ, ଭର୍ତ୍ତା ଅର୍ଜ୍ଜୁନ ପୁତ୍ର ବଭ୍ରୁବାହନଙ୍କୁ ଏହିରୂପେ କହୁଥିବାର ଜାଣି ତାହା ଅସହ୍ୟ ବୋଧ କରି ପାତାଳଭେଦପୂର୍ବକ ପୁତ୍ରଙ୍କ ସମୀପକୁ ଆଗମନ କଲେ । ୮ ।

ହେ ପ୍ରଭୋ ! ଉଲୂପୀ ଯୁଦ୍ଧାର୍ଥୀ ପିତୃକର୍ତ୍ତୃକ ବାରମ୍ବାର ତର୍ଜ୍ଜ୍ୟମାନ ବିମର୍ଷ ପୂର୍ବକ ଅଧୋମୁଖେ ଅବସ୍ଥିତ ପୁତ୍ର ବଭ୍ରୁବାହନଙ୍କୁ ଦର୍ଶନ କଲେ ।୯।

ତଦନନ୍ତର ସେହି ମନୋହରାଙ୍ଗୀ ଉରଗନନ୍ଦିନୀ ଉଲୂପୀ ଧର୍ମ-ବିଶାରଦ ପୁତ୍ରଙ୍କ ନିକଟକୁ ଆଗମନ କରି ତାହାଙ୍କୁ ଧର୍ମଯୁକ୍ତ ବାକ୍ୟ କହିଲେ ଯେ, ହେ ପୁତ୍ର ! ଆମ୍ଭେ ପନ୍ନଗକନ୍ୟା ଉଲୂପୀ । ତୁମ୍ଭେ ଆମ୍ଭଙ୍କୁ ମାତା ବୋଲି ଜ୍ଞାନକର । ଆମ୍ଭେ ଯାହା କହୁଅଛୁ ତୁମ୍ଭେ ତାହା କଲେ ତୁମ୍ଭର ପରମ ଧର୍ମ ହେବ । ୧୧ ।

ହେ ତାତ ! ତୁମ୍ଭେ ଏହି ଯୁଦ୍ଧଦୁର୍ମଦ କୁରୁଶ୍ରେଷ୍ଠ ପିତାଙ୍କ ସହିତ ଯୁଦ୍ଧକର । ତାହାହେଲେ ଏ ତୁମ୍ଭଠାରେ ନିଶ୍ଚୟ ପ୍ରୀତ ହେବେ, ଏହି ବିଷୟରେ ସଂଶୟ ନାହିଁ । ୧୨ ।

ହେ ଭରତଶ୍ରେଷ୍ଠ ! ମହାତେଜା ! ବଭ୍ରୁବାହନ ମାତାକର୍ତ୍ତୃକ ଏହିରୂପେ କଥିତ ଓ ଦୁର୍ମର୍ଷିତ ହୋଇ ଯୁଦ୍ଧନିମିତ୍ତ ମନଃ ସମାଧାନ କଲେ । ୧୩ ।

ତଦନନ୍ତର ସେ କାଞ୍ଚନନିର୍ମିତ ପ୍ରଭାସମନ୍ୱିତ ବର୍ମ ଓ ଶିରସ୍ତ୍ରାଣ ପରିଧାନ ପୂର୍ବକ ଶତତୂଣୀରସମନ୍ୱିତ ସର୍ବ ଉପକରଣବିଶିଷ୍ଟ ହୋଇ ମନ ସଦୃଶ ବେଗଗାମୀ ଉତ୍ତମ ଅଶ୍ୱଯୁକ୍ତ ରଥରେ ଆରୋହଣ କଲେ ।

Digitized by srujanika@gmail.com

ରାଜା ବଭ୍ରୁବାହନ ଚନ୍ଦ୍ର ଓ ଉପସ୍କରଯୁକ୍ତ ପରମଶୋଭାନ୍ୱିତ ହେମଭାଣ୍ଡଦ୍ୱାରା ପରିଷ୍କୃତ ମରମାର୍ଜିତ ଅତ୍ୟନ୍ତ ଉନ୍ନତ ସିଂହଧ୍ୱଜସମନ୍ୱିତ ସୁବର୍ଣ୍ଣନିର୍ମିତ ରଥରେ ଆରୋହଣ କରି ପାର୍ଥଙ୍କ ନିକଟକୁ ଗମନ କଲେ ।୧୬।

ତଦନନ୍ତର ବୀରବର ବଭ୍ରୁବାହନ ପାର୍ଥରକ୍ଷିତ ଯଜ୍ଞୀୟ ଅଶ୍ୱ ସମୀପକୁ ଗମନ କରି ଅଶ୍ୱଶିକ୍ଷାବିଶାରଦ ପୁରୁଷଗଣଦ୍ୱାରା ରକ୍ଷିତ ସେହି ଅଶ୍ୱକୁ ଗ୍ରହଣ କଲେ । ୧୭ ।

ଧନଞ୍ଜୟ ଅଶ୍ୱକୁ ବଭ୍ରୁବାହନକର୍ତ୍ତୃକ ଗୃହୀତ ହେବାର ଦର୍ଶନ କରି ପ୍ରୀତଚିତ୍ତ ହୋଇ ଭୂତଳରେ ଅବସ୍ଥାନ କରି ଯୁଦ୍ଧରେ ରଥସ୍ଥ ପୁତ୍ରକୁ ନିବାରଣ କଲେ । ୧୮ ।

ରାଜା ବଭ୍ରୁବାହନ ସମରରେ ଆଶୀବିଷ ସଦୃଶ ବିଷାକ୍ତ ଶାଣିତ ଶରବୃନ୍ଦଦ୍ୱାରା ବୀର ଧନଞ୍ଜୟଙ୍କୁ ପୀଡ଼ା ପ୍ରଦାନ କଲେ । ୧୯ ।

ଏହିରୂପେ ସୁରାସୁର ସମର ସଦୃଶ ସେହି ପ୍ରିୟମାଣ ପିତା ଓ ପୁତ୍ର ଉଭୟଙ୍କ ଅନୁପମ ତୁମୁଳ ସଂଗ୍ରାମ ଉପସ୍ଥିତ ହେଲା । ୨୦ ।

ଅନନ୍ତର ବଭ୍ରୁବାହନ ହାସ୍ୟକରି କିରୀଟିଙ୍କ ଜତ୍ରୁଦେଶରେ ଆନତ-ପର୍ବ ଶର ନିକ୍ଷେପ କଲେ । ସେହି ଶର ବଲ୍ମୀକପ୍ରବିଷ୍ଟ ପନ୍ନଗ ସଦୃଶ ପୁଙ୍ଖ ସହିତ ଶରୀର ମଧ୍ୟରେ ପ୍ରବିଷ୍ଟ ହେଲା ।

ତଦନନ୍ତର ସେହି ଶର କୁନ୍ତୀପୁତ୍ର ଅର୍ଜ୍ଜୁନଙ୍କୁ ଭେଦକରି ମହୀତଳରେ ପ୍ରବିଷ୍ଟ ହେଲା । ୨୨ ।

ଧୈର୍ଯ୍ୟଶାଳୀ ଧନଞ୍ଜୟ ପ୍ରଗାଢ଼ ବେଦନାଯୁକ୍ତ ହୋଇ ସୁଦ୍ଧା ଦିବ୍ୟ-ତେଜ ଧାରଣ ପୂର୍ବକ ଦିବ୍ୟ ଧନୁ ଅବଲମ୍ବନ କରି ମୃତଜନ ସଦୃଶ ଅଚେତନ ହେଲେ । ୨୩ ।

ଅନନ୍ତର ମହାଦ୍ୟୁତି ଶକ୍ରସୁତ ପୁରୁଷପ୍ରବର ଧନଞ୍ଜୟ ସଂଜ୍ଞାଲାଭ କରି ପୁତ୍ରଙ୍କୁ କହିଲେ, ହେ ବତ୍ସ ! ଚିତ୍ରାଙ୍ଗଦାତନୟ ! ମହାବାହୋ ! ବଭ୍ରୁବାହନ ! ତୁମ୍ଭେ ଧନ୍ୟ ଧନ୍ୟ !! ହେ ପୁତ୍ର ! ଆମ୍ଭେ ତୁମ୍ଭର ଉଦୃଶ କର୍ମ ଦେଖି ପରମ ପ୍ରୀତ ହେଲୁଁ । ୨୫ ।

Digitized by srujanika@gmail.com

ହେ ବତ୍ସ ! ତୁମ୍ଭେ କ୍ଷଣମାତ୍ର ଯୁଦ୍ଧରେ ସ୍ଥିର ହୁଅ । ଆମ୍ଭେ ତୁମ୍ଭର ବାଣସବୁ ବିମୋଚନ କରିବୁଁ । ଶତ୍ରୁହନ୍ତା ଅର୍ଜୁନ ଏହି କଥା କହି ନାରାଚ ବର୍ଷଣ କଲେ ।

ରାଜା ବଭ୍ରୁବାହନ ଭଲ୍ଲଦ୍ୱାରା ସେହି ଗାଣ୍ଡୀବନିର୍ମୁକ୍ତ ବଜ୍ରସଦୃଶ ନାରାଚସମୂହକୁ ଦୁଇ ତିନି ଖଣ୍ଡ କରି ଛେଦନ କଲେ । ୨୭ ।

ପାର୍ଥ ଦିବ୍ୟ ଶର ଓ କ୍ଷୁରଅସ୍ତ୍ରଦ୍ୱାରା ବଭ୍ରୁବାହନଙ୍କ ରଥରୁ ସୁବର୍ଣ୍ଣ ତାଳ ସଦୃଶ ହେମ ପରିଷ୍କୃତ ଧ୍ୱଜକୁ ଅପହରଣ କଲେ ।

ହେ ରାଜନ୍ ! ଅରିନ୍ଦମ ପାଣ୍ଡବ ପୁନଶ୍ଚ ହାସ୍ୟକରି ତତ୍ପରେ ମହାକାୟ ମହାବେଗଶାଳୀ ଅଶ୍ୱମାନଙ୍କୁ ନିର୍ଜୀବ କଲେ । ୨୯ ।

ରାଜା ବଭ୍ରୁବାହନ ଅତିଶୟ କ୍ରୁଦ୍ଧ ହୋଇ ରଥରୁ ଅବତରଣ କରି ପରମକୋପରେ ପଦାତିରୂପରେ ପିତାଙ୍କ ସଙ୍ଗେ ଯୁଦ୍ଧ କଲେ । ୩୦ ।

ଇନ୍ଦ୍ରଙ୍କ ପୁତ୍ର ପାର୍ଥପ୍ରବର ଅର୍ଜୁନ ପୁତ୍ରଙ୍କ ବିକ୍ରମରେ ପରମ ପ୍ରିୟମାଣ ହୋଇ ପୁତ୍ରଙ୍କୁ ଅତିଶୟ ପୀଡ଼ା ପ୍ରଦାନ କଲେ । ୩୧ ।

ବଳବାନ୍ ବଭ୍ରୁବାହନ ପିତାଙ୍କ ବିମୁଖ ହେବାର ବିବେଚନା କରି ଆଶୀବିଷାକାର ଶରନିକରଦ୍ୱାରା ପୁନଶ୍ଚ ତାହାଙ୍କୁ ପୀଡ଼ା ପ୍ରଦାନ କଲେ ।୩୨।

ଅନନ୍ତର ବଭ୍ରୁବାହନ ବାଲ୍ୟବଶତଃ ସୁପୁଙ୍ଖ ନିଶିତ ପତ୍ରିଦ୍ୱାରା ପିତାଙ୍କ ହୃଦୟ ବିଦ୍ଧ କଲେ । ୩୩ । ସେହି ଶର ପାଣ୍ଡବଙ୍କ ମର୍ମଭେଦ ପୂର୍ବକ ପ୍ରବିଷ୍ଟ ହୋଇ ଅତିଶୟ ଦୁଃଖଦାୟକ ହେଲା ।

ହେ ରାଜନ୍ ! କୁରୁନନ୍ଦନ ଅର୍ଜୁନ ପୁତ୍ରକର୍ତ୍ତୃକ ସେହି ପତ୍ରିଦ୍ୱାରା ଅତିଶୟ ବିଦ୍ଧ ହେବାରୁ ଅତ୍ୟନ୍ତ ବିମୋହିତ ହୋଇ ମହୀତଳରେ ନିପତିତ ହେଲେ । କୁରୁକୁଳଧୁରନ୍ଧର ଧନଞ୍ଜୟ ନିପତିତ ହେବାରୁ ଚିତ୍ରାଙ୍ଗଦା-ପୁତ୍ର ବଭ୍ରୁବାହନ ମଧ୍ୟ ପିତାଙ୍କୁ ସମରରେ ନିହତ ହେବାର ଦେଖି ଶରସମ୍ପାତ କରି ମୋହିତ ହେଲେ । ୩୬ ।

Digitized by srujanika@gmail.com

ଅର୍ଜ୍ଜୁନ ପୂର୍ବେ ବାଣବୃନ୍ଦଦ୍ୱାରା ତାହାଙ୍କୁ ଗାଢ଼ରୂପେ ବିଦ୍ଧ କରିଥିଲେ । ସେହି କାରଣରୁ ସେ ମଧ୍ୟ ରଣାଙ୍ଗଣରେ ପୃଥିବୀକୁ ଆଲିଙ୍ଗନ କରି ପତିତ ହେଲେ । ୩୭ ।

ମଣିପୁରପତିଙ୍କ ମାତା ଚିତ୍ରାଙ୍ଗଦା ପତି ଓ ପୁତ୍ରଙ୍କୁ ନିହତ ହେବାର ଏବଂ ଭୂତଳରେ ପତିତ ହେବାର ଦର୍ଶନ କରି ଅତ୍ୟନ୍ତ ତ୍ରସ୍ତହୋଇ ରଣାଙ୍ଗଣରେ ପ୍ରବେଶ କଲେ ଏବଂ ପତିଙ୍କୁ ନିହତ ହେବାର ଦେଖି ଅତିଶୟ କମ୍ପିତ ଓ ଶୋକସନ୍ତପ୍ତ ହୃଦୟରେ ରୋଦନ କଲେ । ୩୯ ।

---

# ଅଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! କମଳଲୋଚନା ସେହି ଚିତ୍ରାଙ୍ଗଦା ଦୁଃଖରେ ସନ୍ତପ୍ତ ହୋଇ ବହୁତର ବିଳାପ କରି ବିମୋହିତ ଓ ମହୀତଳରେ ପତିତା ହେଲେ । ୧ ।

କ୍ଷଣକ ଉତ୍ତାରେ ସେହି ମନୋହରାଙ୍ଗୀ ଚିତ୍ରାଙ୍ଗଦା ଦେବୀ ସଂଜ୍ଞାଲାଭ କରି ପନ୍ନଗଦୁହିତା ଉଲୂପୀଙ୍କୁ ଦର୍ଶନ ପୂର୍ବକ ତାହାଙ୍କୁ କହିଲେ । ୨ ।

ହେ ଉଲୂପୀ ! ଦେଖ, ତୁମ୍ଭ ହେତୁରୁ ଆମ୍ଭ ବାଳକପୁତ୍ର ବଭ୍ରୁବାହନ ଦ୍ୱାରା ସମିତିଞ୍ଜୟ ସ୍ୱାମୀ ଯୁଦ୍ଧରେ ନିହତ ହୋଇ ଶୟନ କରିଅଛନ୍ତି । ୩ ।

ହେ ଉଲୂପୀ ! ତୁମ୍ଭେ ଆର୍ଯ୍ୟଧର୍ମଜ୍ଞା ଏବଂ ପ୍ରଧାନ ପତିବ୍ରତା । ତୁମ୍ଭ ହେତୁରୁ ନିଶ୍ଚୟ ଏହି ପତି ରଣରେ ନିହତ ଓ ପତିତ ହୋଇଅଛନ୍ତି । ୪ ।

ଧନଞ୍ଜୟ ଯଦି ତୁମ୍ଭ ନିକଟରେ ଅନେକ ଅପରାଧ କରି ଥାଆନ୍ତି, ତୁମ୍ଭ ନିକଟରେ ଆମ୍ଭେ ଏହି ପ୍ରାର୍ଥନା କରୁଅଛୁଁ ଯେ, ତୁମ୍ଭେ ଅଦ୍ୟ କ୍ଷମା ପ୍ରଦାନ କରି ଧନଞ୍ଜୟଙ୍କୁ ପ୍ରାଣଦାନ କର । ୫ ।

ହେ ଆର୍ଯ୍ୟେ ! ତୁମ୍ଭେ ତ୍ରିଲୋକ ମଧ୍ୟରେ ଧର୍ମଜ୍ଞା ବୋଲି ଖ୍ୟାତିଲାଭ କରିଅଛ, ତଥାପି ପୁତ୍ରଦ୍ୱାରା ପତିଙ୍କୁ ନିହତ କରାଇ ଅନୁଶୋଚନା କରୁନାହିଁ ।

Digitized by srujanika@gmail.com

ହେ ପନ୍ନଗନନ୍ଦନ ! ଆମ୍ଭର ପୁତ୍ର ହତ ହେବାରୁ ଆମ୍ଭେ ଶୋକ କରୁନାହୁଁ ! ତୁମ୍ଭେ ପୁତ୍ରଦ୍ୱାରା ଯାହାଙ୍କୁ ଆଜି ସମରାଙ୍ଗଣରେ ନିପାତିତ କରାଇଅଛ, ଆମ୍ଭେ କେବଳ ତାହାଙ୍କ ନିମିତ୍ତ ଅନୁତାପ କରୁଅଛୁଁ । ୭ ।

ଯଶସ୍ୱିନୀ ଦେବୀ ଚିତ୍ରାଙ୍ଗଦା ଉରଗତନୟା ଉଲୂପୀଙ୍କୁ ଏହିରୂପେ କହି ସ୍ୱାମିଙ୍କ ନିକଟକୁ ଗମନପୂର୍ବକ ତାହାଙ୍କୁ କହିଲେ । ୮ ।

ହେ ପ୍ରିୟ ! ଆପଣ କୁରୁକୁଳର ପରମ ପ୍ରିୟ । ଆପଣ ଉତ୍ଥିତ ହୁଅନ୍ତୁ । ହେ ମହାବାହୋ ! ଆମ୍ଭେ ଆପଣଙ୍କର ଏହି ଅଶ୍ୱକୁ ପରିତ୍ୟାଗ କରୁଅଛୁଁ । ୯ ।

ହେ ବିଭୋ ! ଧର୍ମରାଜଙ୍କ ଯଜ୍ଞୀୟ ଅଶ୍ୱର ଅନୁସରଣ କରିବା କାର୍ଯ୍ୟ ଆପଣଙ୍କର କର୍ତ୍ତବ୍ୟ ଅଟେ । ଆପଣ ତାହା ନକରି କେଉଁ କାରଣରୁ ମହୀତଳରେ ଶୟନ କରିଅଛନ୍ତି ? ୧୦ ।

ହେ କୁରୁନନ୍ଦନ ! ଆମ୍ଭର ଏବଂ କୁରୁବଂଶୀୟମାନଙ୍କ ପ୍ରାଣ ଆପଣଙ୍କ ଅଧୀନ । ଅସଂଖ୍ୟ ପ୍ରାଣିଗଣଙ୍କ ପ୍ରାଣରକ୍ଷାକର୍ତ୍ତା ହୋଇ ଆପଣ ସଂପ୍ରତି ସ୍ୱୟଂ କି ନିମିତ୍ତ ପ୍ରାଣତ୍ୟାଗ କରିଅଛନ୍ତି ? ୧୧ ।

ଚିତ୍ରାଙ୍ଗଦା କହିଲେ—ହେ ଉଲୂପୀ ! ତୁମ୍ଭେ ଭୂତଳରେ ନିପତିତ ଏହି ପତିଙ୍କୁ ଉତ୍ତମରୂପେ ଅବଲୋକନ କର । ତୁମ୍ଭେ ପୁତ୍ରଦ୍ୱାରା ଏହାଙ୍କ ବିନାଶସାଧନ କରି ଅନୁତାପ କରୁନାହଁ । ୧୨ ।

ଏହି ବାଳକ ମୃତ୍ୟୁର ବଶବର୍ତ୍ତୀ ହୋଇ ଭୂତଳରେ ଶୟନ କରି ଥାଆନ୍ତୁ । କିନ୍ତୁ ଲୋହିତଲୋଚନ ଗୁଡ଼ାକେଶ ବିଜୟ ପୁନର୍ଜୀବିତ ହୁଅନ୍ତୁ । ୧୩ ।

ହେ ଶୁଭଗେ ! ମନୁଷ୍ୟମାନଙ୍କର ବହୁଭାର୍ଯ୍ୟତା ଅପରାଧ ବୋଲି ପରିଗଣିତ ହୁଏ ନାହିଁ । ଅତଏବ ଏ ବହୁସଂଖ୍ୟକ ନାରୀଗଣଙ୍କ ପାଣିଗ୍ରହଣ କରିଅଛନ୍ତି ବୋଲି ଅନାଦର ନକର । ବିଧାତା ପରିଣୟନ କାର୍ଯ୍ୟର ସଂଘଟନକର୍ତ୍ତା । ତାହାଙ୍କ ନିୟମାନୁସାରେ ଧନଞ୍ଜୟଙ୍କ ସହିତ ତୁମ୍ଭର ପରିଣୟ ହୋଇଅଛି ।

Digitized by srujanika@gmail.com

ସମ୍ପ୍ରତି ତୁମ୍ଭେ ସେହି ପରିଣୟକୁ ସାର୍ଥକ କର । ତୁମ୍ଭେ ପୁତ୍ରଦ୍ୱାରା ପତିଙ୍କୁ ନିହତ କରାଇଅଛ, କିନ୍ତୁ ଅଦ୍ୟ ଆମ୍ଭଙ୍କୁ ଯଦି ପତିଙ୍କୁ ଜୀବିତ ହେବାର ଦର୍ଶନ ନକରାଇବ, ତେବେ ଆମ୍ଭେ ଜୀବନ ପରିତ୍ୟାଗ କରିବୁ ।

ହେ ଦେବି ! ଆମ୍ଭେ ପତି ଓ ପୁତ୍ର ବିରହରେ ଅତ୍ୟନ୍ତ ଦୁଃଖିତା ହୋଇ-ଅଛୁଁ । ଏହି ସ୍ଥାନରେ ତୁମ୍ଭ ସମକ୍ଷରେ ନିଶ୍ଚୟ ପ୍ରାୟୋପବେଶନ ପୂର୍ବକ ପ୍ରାଣପରିତ୍ୟାଗ କରିବୁଁ । ୧୭ ।

ହେ ଜନାଧିପ ! ଶୋକବିହ୍ୱଳା ଚିତ୍ରାଙ୍ଗଦା ପନ୍ନଗକୁମାରୀ ସପତ୍ନୀଙ୍କୁ ଏହିପ୍ରାୟ କହି ପ୍ରାୟୋପବେଶନ ପୂର୍ବକ ତୂଷ୍ଣୀଂଭାବରେ ଅବସ୍ଥାନ କଲେ । ୧୮ ।

ବୈଶମ୍ପାୟନ କହିଲେ—ଅନନ୍ତର ପୁତ୍ରାକାଙ୍କ୍ଷିଣୀ ଚିତ୍ରାଙ୍ଗଦା ଉଚ୍ଛ୍ୱାସ ସହିତ ବହୁଳ ବିଳାପ କରି, ବିଳାପରୁ ବିରତ ହୋଇ ଭର୍ତ୍ତାଙ୍କ ପାଦଦ୍ୱୟ ଗ୍ରହଣପୂର୍ବକ ଧ୍ୟାନଭାବରେ ଉପବେଶନ କଲେ । ୧୯ ।

ଅନନ୍ତର ରାଜା ବଭ୍ରୁବାହନ ପୁନଶ୍ଚ ସଂଜ୍ଞାଲାଭ କରି ରଣଭୂମିରେ ଉପବିଷ୍ଟ ମାତାଙ୍କୁ ଅବଲୋକନ କରି କହିଲେ, ୨୦ ।

ଯଦି ସତତ ସୁଖୋଷିତା ଆମ୍ଭ ମାତା ଭୂତଳରେ ନିପତିତ ମହାବୀର ମୃତ ପତିଙ୍କୁ ଅନୁଶୟନ କରିଅଛନ୍ତି, ତେବେ ଏହା ଅପେକ୍ଷା ଦୁଃଖତର ଅନ୍ୟ କେଉଁ ବିଷୟ ଅଛି ?

ହା ! ମାତା ଯୁଦ୍ଧରେ ଆମ୍ଭଦ୍ୱାରା ସମରରେ ନିହତ ଶତ୍ରୁହନ୍ତା ସର୍ବଶସ୍ତ୍ରଧାରିପ୍ରବର ଦୁର୍ମରଣସଦୃଶ ମୃତ ପତିଙ୍କୁ ଦର୍ଶନ କରିଅଛନ୍ତି ! ୨୨ ।

ଆହା ! ବ୍ୟୂଢ଼ୋରସ୍କ ମହାବାହୁ ପତିଙ୍କ ରଣରେ ନିହତ ହେବାର ଦର୍ଶନ କରି ଏହାଙ୍କର ଦୃଢ଼ ହୃଦୟ ସମ୍ପ୍ରତି ବିଦୀର୍ଣ୍ଣ ହୋଇନାହିଁ ! ୨୩ ।

ଯଦି ଆମ୍ଭେ ଏବଂ ଆମ୍ଭ ମାତା, ଆମ୍ଭେ ଦୁହେଁ ପ୍ରାଣପରିତ୍ୟାଗ କରିନାହୁଁ, ତେବେ ଆମ୍ଭଙ୍କୁ ଜଣାଯାଏ ଯେ, ଇହଲୋକରେ ମୃତ୍ୟୁର ସମୟ ଉପସ୍ଥିତ ନହେଲେ କଦାପି ପୁରୁଷର ମୃତ୍ୟୁ ହୁଏନାହିଁ । ୨୪ ।

Digitized by srujanika@gmail.com

ହା ! ଆମ୍ଭେ ପୁତ୍ର ହୋଇ ଯଦି ସ୍ୱହସ୍ତରେ ନିହତ ପିତାଙ୍କର କବଚ ଭେଦିକଲୁଁ ତେବେ କୁରୁବୀରଙ୍କର ଏହି କାଞ୍ଚନ କବଚକୁ ଧିକ୍ । ୨୫ ।

ହେ ବ୍ରାହ୍ମଣଗଣ ! ମହାସ୍ତ୍ର ପିତା ବୀରବର ଧନଞ୍ଜୟ ମାଦୃଶ ପୁତ୍ରକର୍ତ୍ତୃକ ନିପାତିତ ହୋଇ ବୀରଶଯ୍ୟାରେ ଶୟନ କରିଅଛନ୍ତି, ଆପଣମାନେ ସମସ୍ତେ ଅବଲୋକନ କରିବା ହେଉନ୍ତୁ । ୨୬ ।

ଏ ଯଦି ଯୁଦ୍ଧରେ ଆମ୍ଭକର୍ତ୍ତୃକ ନିହତ ହେଲେ, ତେବେ ଅଶ୍ୱାନୁସାରୀ କୁରୁପ୍ରଧାନ ଏହି ଧନଞ୍ଜୟଙ୍କ ଶାନ୍ତି ନିମିତ୍ତ ଯେଉଁ ସମସ୍ତ ବ୍ରାହ୍ମଣ ଯୁଧିଷ୍ଠିର-କର୍ତ୍ତୃକ ପ୍ରେରିତ ହୋଇଅଛନ୍ତି, ସେମାନେ କେଉଁପରି ଶାନ୍ତି କରି-ଅଛନ୍ତି ? ୨୭ । ଆମ୍ଭେ ନୃଶଂସ ସଦୃଶ ରଣାଙ୍ଗଣରେ ପିତୃହତ୍ୟା କରି ମହାପାପୀ ହୋଇଅଛୁଁ । ଅତଏବ ଅଦ୍ୟ ଆମ୍ଭର ଏହି ବିଷୟରେ କେଉଁପ୍ରକାର ପ୍ରାୟଶ୍ଚିତ୍ତ କରିବାର ବିଧେୟ, ତାହା ବିପ୍ରଗଣ ଆଦେଶ କରନ୍ତୁ । ୨୮ ।

ଆମ୍ଭେ ଯଦି ଅତ୍ୟନ୍ତ ନିଷ୍ଠୁର ହୋଇ ପିତୃହତ୍ୟା କରିଅଛୁଁ, ତେବେ ଅଦ୍ୟ ଏହାଙ୍କ ଚର୍ମ ପରିଧାନ ପୂର୍ବକ ଏହି ସ୍ଥାନରେ ଦ୍ୱାଦଶବର୍ଷ ଦୁଃଖରେ କାଳଯାପନ କରିବାର ଆମ୍ଭର ବିଧେୟ । ୨୯ । ଏବଂ ଆମ୍ଭେ ଯଦି ପିତାଙ୍କ ମସ୍ତକ ଓ କପାଳରେ ଶରସନ୍ଧାନ କରି ଏହାଙ୍କୁ ସଂହାର କରିଅଛୁଁ, ତେବେ ଆମ୍ଭର ଅନ୍ୟ ପ୍ରାୟଶ୍ଚିତ୍ତ ଆଉ କିଛି ଦେଖାଯାଉନାହିଁ । ୩୦ ।

ହେ ନାଗୋତ୍ତମସୁତେ ! ଦେଖ, ଆମ୍ଭେ ତୁମ୍ଭର ଭର୍ତ୍ତାଙ୍କୁ ନିହତ କରିଅଛୁଁ । ଅଦ୍ୟ ଆମ୍ଭେ ଯୁଦ୍ଧରେ ଅର୍ଜୁନଙ୍କୁ ସଂହାର କରି ତୁମ୍ଭର ପ୍ରିୟକର୍ମ-ସାଧକ ହୋଇଅଛୁଁ । ୩୧ ।

ହେ ଶୁଭେ ! ଅତଃପର ଆମ୍ଭେ ନିଜ ଦେହ ଧାରଣ କରିବାକୁ ସମର୍ଥ ହୋଇନାହୁଁ । ସେହି କାରଣରୁ ଆମ୍ଭେ ଅଦ୍ୟ ପିତୃନିଷେବିତ ସ୍ଥାନକୁ ଗମନ କରିବୁଁ । ୩୨ ।

ହେ ମାତଃ ! ଆମ୍ଭେ ଏବଂ ଗାଣ୍ଡୀବଧନ୍ୱା ଅର୍ଜୁନ ମୃତ ହେଲାରୁ ତୁମ୍ଭେ ପ୍ରୀତିଲାଭ କର । ଅମ୍ଭେ ସତ୍ୟପଥ ଅବଲମ୍ବନ କରି ପରମାତ୍ମାଙ୍କୁ ପ୍ରାପ୍ତହେବୁଁ । ୩୩ ।

Digitized by srujanika@gmail.com

ମହାରାଜ ! ଦୁଃଖ ଓ ଶୋକରେ ସମାହତ ରାଜା ବଭ୍ରୁବାହନ ଏହିରୂପେ କହି ସଲିଳଦ୍ୱାରା ଆଚମନ କରି ଦୁଃଖିତ ହୋଇ କହିଲେ । ୩୪ ।

ହେ ସର୍ବଭୂତ ସ୍ଥାବର ଓ ଚରସମୂହ ! ତୁମ୍ଭେମାନେ ସମସ୍ତେ ଶ୍ରବଣକର ।

ହେ ମାତଃ ! ଭୁଜଗୋତ୍ତମସୁତେ ! ଆମ୍ଭେ ତୁମ୍ଭଙ୍କୁ ସତ୍ୟ କହୁଅଛୁଁ, ଆମ୍ଭ ପିତା ବିଜୟ ଯଦି ଉତ୍‌ଥିତ ନହେବେ, ତେବେ ଆମ୍ଭେ ଏହି ସମରାଙ୍ଗଣରେ କଳେବର ଶୋଷଣ କରିବୁଁ । ୩୬ ।

ଆମ୍ଭେ ପିତୃହତ୍ୟା କରିଥିବାରୁ ଆମ୍ଭର ଅନ୍ୟ କୌଣସି ପ୍ରକାର ନିଷ୍କୃତି ନାହିଁ । ଆମ୍ଭେ ଗୁରୁବଧରେ ଅର୍ଦ୍ଦିତ ହୋଇ ନିଶ୍ଚୟ ନରକକୁ ଗମନ କରିବୁଁ । ୩୭ ।

ପୁରୁଷ କ୍ଷତ୍ରିୟବୀରର ବଧକରି ଶତ ଗୋଦାନ କଲେ ସେହି ପାପରୁ ମୁକ୍ତ ହୋଇ ନିଷ୍କୃତି ଲାଭ କରିପାରନ୍ତି । ପରନ୍ତୁ ଆମ୍ଭେ ପିତୃହତ୍ୟା କରିଅଛୁଁ । ସୁତରାଂ ଯଥାର୍ଥ ଆମ୍ଭର ନିଷ୍କୃତି ଦୁର୍ଲଭ ଅଟେ । ୩୮ ।

ଏହି ମହାତେଜା ଧର୍ମାତ୍ମା ପାଣ୍ଡୁପୁତ୍ର ଧନଞ୍ଜୟ ଆମ୍ଭ ପିତା । ବିଶେଷତଃ ଏକାକୀ ଏହାଙ୍କୁ ସଂହାର କରିଥିବାରୁ ଆମ୍ଭର ନିଷ୍କୃତି କେଉଁପରି ହେବ ?୩୯।

ହେ ନରନାଥ, ମହାମତି ଧନଞ୍ଜୟସୁତ ବଭ୍ରୁବାହନ ଏହିପ୍ରକାର କହି ଆଚମନ କରି ପ୍ରାୟୋପବେଶନ ଅବଲମ୍ବନ ପୂର୍ବକ ତୂଷ୍ଣୀଂଭାବରେ ଅବସ୍ଥାନ କଲେ । ୪୦ ।

ବୈଶମ୍ପାୟନ କହିଲେ—ମହାରାଜ ! ତେତେବେଳେ ପିତୃଶୋକ-ସମାବିଷ୍ଟ ମଣିପୁରେଶ୍ୱର ରାଜା ବଭ୍ରୁବାହନ ମାତା ଚିତ୍ରାଙ୍ଗଦାଙ୍କ ସହିତ ପ୍ରାୟୋପବିଷ୍ଟ ହେବାରୁ ଉଲୂପୀ ସଞ୍ଜୀବନୀ ମଣିର ବିଷୟ ଚିନ୍ତା କଲମାତେ ସେହି ପନ୍ନଗପରାୟଣ ମଣି ତତ୍‌କ୍ଷଣାତ୍ ସେଠାରେ ଉପବିଷ୍ଟ ହେଲା । ୪୨ ।

ହେ କୌରବ୍ୟ ! ପନ୍ନଗରାଜଦୁହିତା ଉଲୂପୀ ସେହି ମଣି ଗ୍ରହଣ କରି ସୈନିକମାନଙ୍କ ଚିତ୍ତବିନୋଦନ ବାକ୍ୟ କହିଲେ । ୪୩ ।

Digitized by srujanika@gmail.com

ଉଲୂପୀ ବଭ୍ରୁବାହନଙ୍କୁ କହିଲେ—ହେ ପୁତ୍ର ! ଆଉ ଶୋକ କରନା । ଉତ୍‌ଥିତ ହୁଅ । ଜିଷ୍ଣୁ ତୁମ୍ଭଦ୍ୱାରା ଜିତ ହୋଇନାହାନ୍ତି । ଏ ଇନ୍ଦ୍ର ସହିତ ସୁରଗଣ ଓ ସମସ୍ତ ପୁରୁଷଗଣଙ୍କର ଅଜେୟ । ପରନ୍ତୁ ଆମ୍ଭେ ଅଦ୍ୟ ପୁରୁଷ-ପ୍ରବର ଯଶସ୍ୱୀ ତୁମ୍ଭ ପିତାଙ୍କ ପ୍ରିୟ ନିମିତ୍ତ ଏହି ମୋହିନୀ ମାୟା ପ୍ରଦର୍ଶନ କଲୁଁ । ୪୫ ।

ହେ ରାଜନ୍ ! କୌରବ୍ୟ ! ତୁମ୍ଭେ ପୁତ୍ର ବୋଲି ତୁମ୍ଭର ବଳ ଜାଣିବା ନିମିତ୍ତ ଏହି ପରବୀରହନାଶୀ ଧନଞ୍ଜୟ ତୁମ୍ଭ ସଙ୍ଗେ ଯୁଦ୍ଧ କରିବାକୁ ଆସି ଅଛନ୍ତି ।

ହେ ପୁତ୍ର ! ଆମ୍ଭେ ତନ୍ନିମିତ୍ତ ତୁମ୍ଭଙ୍କୁ ଯୁଦ୍ଧ ଅର୍ଥରେ ପ୍ରେରଣ କରିଥିଲୁ । ଅତଏବ ହେ ପ୍ରଭୋ ! ଏହି ବିଷୟରେ ତୁମ୍ଭେ ଅଣୁପରିମାଣରେ ନିଜର ପାପ ଆଶଙ୍କା କରନା । ୪୭ ।

ହେ ପ୍ରଭୋ ! ଏହି ମହାତ୍ମା ପୁରାଣ ଋଷି ଶାଶ୍ୱତ ଓ ଅକ୍ଷର । ଅତଏବ ହେ ପୁତ୍ର ! ଶକ୍ର ମଧ୍ୟ ଯୁଦ୍ଧରେ ଏହାଙ୍କୁ ଜୟ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୪୮ ।

ହେ ଜନନାଥ ! ଯାହା ନିତ୍ୟ ବାରମ୍ବାର ମୃତ ପନ୍ନଗଗଣଙ୍କୁ ଜୀବିତ କରାଏ, ଆମ୍ଭେ ସେହି ଦିବ୍ୟମଣି ଆନୟନ କରିଅଛୁଁ । ୪୯ ।

ହେ ରାଜନ୍ ! ତୁମ୍ଭେ ଏହି ମଣିକି ନେଇ ତୁମ୍ଭ ପିତାଙ୍କ ବକ୍ଷସ୍ଥଳରେ ସଂସ୍ଥାପନ କର । ତାହାହେଲେ ତୁମ୍ଭେ ଏହି ପାଣ୍ଡବ ପାର୍ଥଙ୍କୁ ଜୀବିତ ହେବାର ଦେଖି ପାରିବ । ୫୦ ।

ସେତେବେଳେ ନିଷ୍ପାପ ଅମିତତେଜା ବଭ୍ରୁବାହନ ଉଲୂପୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ପିତୃସ୍ନେହବଶତଃ ଶୀଘ୍ର ପାର୍ଥଙ୍କ ବକ୍ଷସ୍ଥଳରେ ସେହି ମଣି ସଂସ୍ଥାପନ କଲେ । ୫୧ ।

ସେହି ମଣି ପାର୍ଥଙ୍କ ବକ୍ଷଦେଶରେ ନ୍ୟସ୍ତ ହେବାରୁ ବୀରବର ପ୍ରଭୁ ଜିଷ୍ଣୁ ଉଜ୍ଜୀବିତ ହୋଇ ଚିରପ୍ରସୁପ୍ତ ପୁରୁଷସଦୃଶ ଲୋହିତ ଲୋଚନଯୁଗଳ ମାର୍ଜନ କରି ଉତ୍‌ଥିତ ହେଲେ । ୫୨ ।

Digitized by srujanika@gmail.com

ତଦନନ୍ତର ବଭ୍ରୁବାହନ ମହାତ୍ମା ମନସ୍ୱୀ ପିତାଙ୍କୁ ଉତ୍ଥିତ, ଲବ୍ଧ-ସଂଜ୍ଞ ଓ ସ୍ୱସ୍ଥ ହେବାର ସନ୍ଦର୍ଶନ କରି ତାହାଙ୍କୁ ସ୍ତବ କଲେ । ୫୩ ।

ହେ ପ୍ରଭୋ ! ଲକ୍ଷ୍ମୀବାନ୍ ପୁରୁଷପ୍ରବର ପାର୍ଥ ପୁନଶ୍ଚ ଉତ୍ଥିତ ହେବାରୁ ପାକଶାସନ ଦିବ୍ୟ ଓ ପୁଣ୍ୟ ଗନ୍ଧଯୁକ୍ତ ପୁଷ୍ପରାଶି ବର୍ଷଣ କଲେ ।୫୪।

ଆକାଶ ମଧ୍ୟରେ ମେଘର ଗମ୍ଭୀର ଶବ୍ଦ ଅନାହତ ଦୁନ୍ଦୁଭିଗଣର ଧ୍ୱନି ଏବଂ ଉଚ୍ଚୈଃସ୍ୱରରେ 'ସାଧୁ' ଧ୍ୱନି ଉତ୍ଥିତ ହେଲା । ୫୫ ।

ତଦନନ୍ତର ମହାବାହୁ ଧନଞ୍ଜୟ ସର୍ବତୋଭାବରେ ଆଶ୍ୱାସପ୍ରାପ୍ତ ଓ ଉତ୍ଥିତ ହୋଇ ବଭ୍ରୁବାହନଙ୍କୁ ଆଲିଙ୍ଗନ କରି ତାଙ୍କର ମସ୍ତକ ଆଘ୍ରାଣ କଲେ । ୫୬ ।

କିଛିଦୂରରେ ଉଲୂପୀଙ୍କ ସହିତ ଅବସ୍ଥିତା ଶୋକାର୍ତ୍ତା ବଭ୍ରୁବାହନଙ୍କ ମାତା ଚିତ୍ରାଙ୍ଗଦାଙ୍କୁ ଦର୍ଶନ କରି ବଭ୍ରୁବାହନଙ୍କୁ ପଚାରିଲେ, ହେ ବତ୍ସ ! ଶତ୍ରୁନାଶନ ! ଏହି ରଣଭୂମିରେ ଥିବା ସମସ୍ତ ଲୋକେ କେଉଁ କାରଣରୁ ଶୋକ, ହର୍ଷ ଓ ବିସ୍ମୟଯୁକ୍ତ ହୋଇଅଛନ୍ତି ? ତୁମ୍ଭେ ଯଦି ଜାଣିଅଛ, ତେବେ ଆମ୍ଭଙ୍କୁ କହ । ତୁମ୍ଭ ଜନନୀ ଚିତ୍ରାଙ୍ଗଦା ଓ ନାଗେନ୍ଦ୍ରଦୁହିତା ଉଲୂପୀ କି ନିମିତ୍ତ ରଣଭୂମିକୁ ଆଗମନ କରିଅଛନ୍ତି ? ୫୯ ।

ଆମ୍ଭର ବଚନାନୁସାରେ ତୁମ୍ଭେ ଯେଉଁ ଯୁଦ୍ଧ କରିଅଛ, ତାହା ଆମ୍ଭେ ଜାଣୁ । ପରନ୍ତୁ ସ୍ତ୍ରୀଗଣଙ୍କର ଆଗମନ କାରଣ ଜାଣିବାକୁ ଇଚ୍ଛା କରୁଅଛୁଁ ।୬୦।

ତେତେବେଳେ ମଣିପୁରପତି ଧୀମାନ୍ ବଭ୍ରୁବାହନ ଅର୍ଜ୍ଜୁନଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅବନତମସ୍ତକରେ ତାହାଙ୍କୁ ପ୍ରସନ୍ନ କରାଇ କହିଲେ, ଆପଣ ଉଲୂପୀଙ୍କୁ ସମସ୍ତ ବିଷୟ ପଚାରନ୍ତୁ । ୬୧ ।

---

Digitized by srujanika@gmail.com

# ଏକାଶୀତିତମ ଅଧ୍ୟାୟ

ଅର୍ଜ୍ଜୁନ କହିଲେ—ହେ କୌରବ୍ୟକୁଳନନ୍ଦନ ! ତୁମ୍ଭେ ମଣିପୁରପତି ବଭ୍ରୁବାହନଙ୍କ ଜନନୀ ହୋଇ କି ନିମିତ୍ତ ରଣାଙ୍ଗଣକୁ ଆଗମନ କରିଅଛ ? ୧ ।

ହେ ଚପଳାପାଙ୍ଗି ! ଭୁଜଗାତ୍ମଜେ ! ତୁମ୍ଭେ କି ଏହି ରାଜା ବଭ୍ରୁବାହନଙ୍କ କୁଶଳ କାମନା କରିଅଛ, ନା ଆମ୍ଭର ମଙ୍ଗଳ ଇଚ୍ଛା କରିଅଛ ?

ହେ ପୃଥୁଳଶ୍ରୋଣି ! ପ୍ରିୟଦର୍ଶନେ ! ଆମ୍ଭେ ପଚାରୁଅଛୁଁ, ଆମ୍ଭେ ତ ଅଜ୍ଞାନବଶତଃ ତୁମ୍ଭର ଅପ୍ରିୟ ଆଚରଣ କରିନାହୁଁ ଏବଂ ବଭ୍ରୁବାହନ ତ କୌଣସି ଅପ୍ରିୟ ଆଚରଣ କରିନାହାନ୍ତି ? ଏହି ବରାରୋହା ରାଜପୁତ୍ରୀ ତୁମ୍ଭର ସପତ୍ନୀ ଚୈତ୍ରବାହିନୀ ଚିତ୍ରାଙ୍ଗଦା ତ ତୁମ୍ଭର କୌଣସି ଅପରାଧ କରି ନାହାନ୍ତି ? ୪ ।

ଉରଗରାଜଦୁହିତା ଉଲୂପୀ ଅର୍ଜୁନଙ୍କ ବାକ୍ୟ ଶ୍ରବଣ କରି ଈଷତ୍ ହାସ୍ୟ କରି ତାହାଙ୍କୁ କହିଲେ—ଆପଣ, କି ବଭ୍ରୁବାହନଙ୍କ ଜନନୀ ଆମ୍ଭର ପ୍ରେଷ୍ୟବର୍ତ୍ତୀ ଅଟନ୍ତି ? ଏହି ଚିତ୍ରାଙ୍ଗଦା, କି ଆପଣମାନେ କେହି ଆମ୍ଭଠାରେ କୌଣସି ଅପରାଧ କରିନାହାଁନ୍ତି ? ପରନ୍ତୁ ଆମ୍ଭେ ଯେଉଁରୂପେ ଯାହା କରିଅଛୁଁ ଆମ୍ଭର ସେହି କାର୍ଯ୍ୟସବୁ ଶ୍ରବଣ କରିବା ହେଉନ୍ତୁ ।

ହେ ବିଭୋ ! ଆମ୍ଭେ ଅବନତମସ୍ତକରେ ଆପଣଙ୍କୁ ପ୍ରସନ୍ନ କରାଉଅଛୁଁ । ଆପଣ ଆମ୍ଭଠାରେ କୋପ କରିବେ ନାହିଁ ।

ହେ କୌରବ୍ୟ ! ବିଭୋ ! ଆମ୍ଭେ ଆପଣଙ୍କ ପ୍ରିୟ ନିମିତ୍ତ ଏହିରୂପେ କର୍ମ କରିଅଛୁଁ ।

ହେ ମହାବାହୋ !, ଧନଞ୍ଜୟ ! ପୂର୍ବେ ଯାହା ହୋଇଅଛି ତାହା ସମ୍ୟକ୍ ରୂପେ ଶ୍ରବଣ କରିବା ହେଉନ୍ତୁ । ଆପଣ ମହାଭାରତ ଯୁଦ୍ଧରେ ଯେଉଁ ଅଧର୍ମ ଆଚରଣ ପୂର୍ବକ ଶାନ୍ତନୁନନ୍ଦନ ଭୀଷ୍ମଙ୍କୁ ବିନଷ୍ଟକରି ପାପଯୁକ୍ତ ହୋଇଥିଲେ, ଅଦ୍ୟ ସେହି ପାପରୁ ନିଷ୍କୃତି ପାଇଲେ ।

Digitized by srujanika@gmail.com

ହେ ଭାରବର ! ଆପଣ ଯୁଦ୍ଧ କରି ଭୀଷ୍ମଙ୍କ ନିପାତସାଧନ କରିପାରି ନଥାନ୍ତେ ବୋଲି ଶିଖଣ୍ଡିଯୁକ୍ତ ରଥ ଆଶ୍ରୟ କରି ତାହାଙ୍କୁ ନିହତ କରିଅଛନ୍ତି । ଆପଣ ଯଦି ତାହାର ଶାନ୍ତି ନକରି ଜୀବନ ବିସର୍ଜନ କରନ୍ତେ, ତେବେ ସେହି କର୍ମର ପାପରେ ଆପଣ ନିଶ୍ଚୟ ନରକରେ ନିପତିତ ହୁଅନ୍ତେ ।

ସଂପ୍ରତି ଆପଣ ପୁତ୍ର ନିକଟରେ ପରାଜିତ ହେବାରୁ ଆପଣଙ୍କର ସେହି ପାପ ବିନଷ୍ଟ ହେଲା । ଅତଃପର ଆପଣ ଆଉ ନରକଗାମୀ ହେବେ ନାହିଁ ।

ପୂର୍ବେ ଭାଗୀରଥୀ ଓ ବସୁଗଣ ଭବଦୀୟ ପାପଶାନ୍ତିର ଏହି ଉପାୟ ନିର୍ଦ୍ଦେଶ କରିଅଛନ୍ତି ।

ହେ ମହାମତେ ! ବସୁଧାପତେ ! ଭୀଷ୍ମ ନିହତ ହେବାରୁ ଗଙ୍ଗା ଏବଂ ବସୁଗଣ ପାପଶାନ୍ତିର ଏହି ଉପାୟ କରିଥିଲେ । ତନ୍ନିମିତ୍ତ ଆପଣ ପୁତ୍ରର ଆଘାତ ପ୍ରାପ୍ତ ହେଲେ ।

ହେ ନୃପ ! ପୂର୍ବେ ଶାନ୍ତନୁଙ୍କ ପୁତ୍ର ନିହତ ହେବାରୁ ବସୁଗଣ ଗଙ୍ଗାତୀର ଆଶ୍ରୟ କରି ଯେତେବେଳେ ଆପଣଙ୍କୁ ଶାପ ପ୍ରଦାନ କଲେ, ସେତେବେଳେ ଆମ୍ଭେ ତାହା ଶ୍ରବଣ କରିଥିଲୁଁ । ମହାନଦୀ, ବସୁଗଣ ଭାଗୀରଥୀଙ୍କ ନିକଟକୁ ଆଗମନ କରି ସମସ୍ତେ ସମବେତ ହୋଇ ତାହାଙ୍କୁ ଏହି ଘୋରତର ବାକ୍ୟ କହିଲେ—ହେ ଭାମିନି ! ସବ୍ୟସାଚୀ ସମରରେ ସଂଗ୍ରାମ ନ କରି ଅନ୍ୟ ବ୍ୟକ୍ତିର ସହଯୋଗରେ ଶାନ୍ତନୁପୁତ୍ର ଭୀଷ୍ମଙ୍କୁ ବିନଷ୍ଟ କରିଅଛନ୍ତି । ଏହି ନିମିତ୍ତ ଅଦ୍ୟ ଆମ୍ଭେମାନେ ଧନଞ୍ଜୟଙ୍କୁ ଶାପଯୁକ୍ତ କଲୁଁ । ଭାଗୀରଥୀ ତାହା ଶ୍ରବଣ କରି ତଥାସ୍ତୁ ବୋଲି ତତ୍କ୍ଷଣାତ୍ କହିଲେ । ସେତେବେଳେ ଆମ୍ଭେ ସେଠାରେ ଉପସ୍ଥିତ ଥିଲୁଁ । ବସୁଗଣ ଆପଣଙ୍କୁ ଶାପପ୍ରଦାନ କରିବାର ଦେଖି ବ୍ୟଥିତ ଚିତ୍ତରେ ପିତୃଗୃହରେ ପ୍ରବେଶ କରି ପିତାଙ୍କ ନିକଟରେ ସେହି ବୃତ୍ତାନ୍ତ ନିବେଦନ କଲୁଁ ।

ପିତା ଆମ୍ଭମୁଖରୁ ଉକ୍ତ ବାକ୍ୟ ଶ୍ରବଣ କଲାମାତ୍ରେ ଅତ୍ୟନ୍ତ ବିଷଣ୍ଣ ହୋଇ ବସୁମାନଙ୍କ ନିକଟକୁ ଗମନପୂର୍ବକ ବାରମ୍ବାର ଆପଣଙ୍କ ମଙ୍ଗଳ ପ୍ରାର୍ଥନା କଲେ ।

Digitized by srujanika@gmail.com

ତେତେବେଳେ ବସୁଗଣ ଭଗୀରଥୀଙ୍କ ଅନୁମତି ଗ୍ରହଣ ପୂର୍ବକ ଆମ୍ଭ ପିତାଙ୍କୁ କହିଲେ, ହେ ନାଗରାଜ ! ମହାଭାଗ ! ତାହାଙ୍କ ପୁତ୍ର ମଣିପୁରପତି ଯୁବା ବଭ୍ରୁବାହନ ଯେତେବେଳେ ରଣମଧ୍ୟରେ ଶରଦ୍ୱାରା ତାହାଙ୍କୁ ଭୂତଳରେ ପତିତ କରାଇବେ, ତେତେବେଳେ ସେ ଶାପମୁକ୍ତ ହେବେ । ୧୮-୨୦ ।

ପିତା ବସୁଗଣଙ୍କ ନିକଟକୁ ଆଗମନ କରି ଆମ୍ଭଙ୍କୁ ଏହି କଥା କହିଥିଲେ । ଆମ୍ଭେ ତେତେବେଳେ ପିତାଙ୍କ ନିକଟରୁ ଏହା ଶ୍ରବଣ କରିଥିଲୁଁ ବୋଲି ଆପଣ ଶାପରୁ ମୁକ୍ତହେଲେ ।

ଦେବରାଜ ହେଲେ ସୁଦ୍ଧା ଆପଣଙ୍କୁ ଯୁଦ୍ଧରେ ପରାଜୟ କରିପାରନ୍ତି ନାହିଁ । ପରନ୍ତୁ ଆତ୍ମା ପୁତ୍ରରୂପେ ଉତ୍ପନ୍ନ ହୁଅନ୍ତି । ସେହିକାରଣରୁ ଆପଣ ପୁତ୍ରକର୍ତ୍ତୃକ ପରାଜିତ ହୋଇଅଛନ୍ତି ।

ହେ ବୀରେ ! ଏ ବିଷୟରେ ଆମ୍ଭର କିଛିମାତ୍ର ଦୋଷ ହୋଇ ପାରିବ ନାହିଁ । ପରନ୍ତୁ ଆପଣ କି ପ୍ରକାର ମନେକରନ୍ତି, ତାହା ଆମ୍ଭେ କହିପାରୁ ନାହୁଁ । ୨୧ ।

ବିଜୟ ଉଲୂପୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ ପ୍ରସନ୍ନ ଚିତ୍ତରେ କହିଲେ—ହେ ଦେବି ! ତୁମ୍ଭେ ଯେଉଁ କର୍ମ କରିଅଛ ତାହାସବୁ ଆମ୍ଭର ପ୍ରିୟ ଅଟେ ବୋଲି ଆମ୍ଭେ ବୋଧ କରୁଅଛୁଁ ।

ଧନଞ୍ଜୟ ଉଲୂପୀଙ୍କୁ ଏହି କଥା କହି ଚିତ୍ରାଙ୍ଗଦାଙ୍କ ସମକ୍ଷରେ ମଣିପୁର-ପତି ପୁତ୍ର ବଭ୍ରୁବାହନଙ୍କୁ କହିଲେ—ହେ ବତ୍ସ ! ଆଗାମୀ ଚୈତ୍ର ପୂର୍ଣ୍ଣିମାରେ ଯୁଧିଷ୍ଠିରଙ୍କର ଅଶ୍ୱମେଧ ଯଜ୍ଞ ହେବ । ହେ ନୃପ ! ତୁମ୍ଭେ ମାତୃଦ୍ୱୟ ଓ ଅମାତ୍ୟଗଣଙ୍କ ସହିତ ସେଠାକୁ ଗମନ କରିବ । ୨୪ । ଧୀମାନ୍ ରାଜା ବଭ୍ରୁବାହନ ଧନଞ୍ଜୟଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଲୋତକପୂର୍ଣ୍ଣ ନୟନରେ ପିତାଙ୍କୁ କହିଲେ, ୨୫ ।

ହେ ଧର୍ମଜ୍ଞ ! ଆପଣଙ୍କ ଆଦେଶାନୁସାରେ ଆମ୍ଭେ ଅଶ୍ୱମେଧ ମହାଯଜ୍ଞକୁ ଗମନ କରି ଦ୍ୱିଜାତିଗଣଙ୍କର ପରିବେଷକ ହେବୁଁ । ୨୬ । ପରନ୍ତୁ ହେ ଧାର୍ମିକବର ! ଆପଣ ଆମ୍ଭଠାରେ ଅନୁଗ୍ରହ କରି ଏହି ସ୍ୱକୀୟ ଭାର୍ଯ୍ୟା-

Digitized by srujanika@gmail.com

ଦସ୍ୟୁଙ୍କ ସହିତ ନିଜପୁରରେ ପ୍ରବେଶ କରିବା ହେଉନ୍ତୁ । ଏହି ବିଷୟରେ କିଞ୍ଚିନ୍ମାତ୍ର ବିଚାର କରନ୍ତୁ ନାହିଁ ।

ହେ ପ୍ରଭୁ ନରପୁଙ୍ଗବ ! ସ୍ତ୍ରୀପୁ ଭବନରେ ଏକ ରାତି ସୁଖରେ ବାସକରି ପରଦିନ ପୁନଶ୍ଚ ଅଶ୍ୱର ଅନୁଗମନ କରିବେ । ୨୮ ।

କପିକେତନ କୁନ୍ତୀପୁତ୍ର ଧନଞ୍ଜୟ ପୁତ୍ରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଚିତ୍ରାଙ୍ଗଦାଙ୍କ ପୁତ୍ର ବଭ୍ରୁବାହନଙ୍କୁ କହିଲେ—ହେ ମହାବାହୋ ! ଆମ୍ଭେ ତୁମ୍ଭର ଅଭିପ୍ରାୟ ବିଦିତ ହୋଇଅଛୁଁ । ପରନ୍ତୁ ହେ ପୃଥୁଲୋଚନ ! ଆମ୍ଭେ ଯେଉଁରୂପେ ଦୀକ୍ଷିତ ହୋଇଅଛୁଁ, ସେହିରୂପେ ପରିଭ୍ରମଣ କରିବୁଁ । ସଂପ୍ରତି ତୁମ୍ଭ ପୁରରେ ପ୍ରବେଶ କରିପାରିବୁଁ ନାହିଁ ।

ହେ ନରେନ୍ଦ୍ର ! ଏହି ଯଜ୍ଞୀୟ ଅଶ୍ୱ ଇଚ୍ଛାନୁସାରେ ବିଚରଣ କରିବ । ଏହାର ଗତିରୋଧ ହେବ ନାହିଁ । ସୁତରାଂ ଅଶ୍ୱ ନରହିଲେ ଆମ୍ଭେ ରହି ପାରିବୁ ନାହିଁ । ତୁମ୍ଭର ମଙ୍ଗଳ ହେଉ । ସଂପ୍ରତି ଆମ୍ଭେ ଗମନ କରୁଅଛୁଁ । ଆମ୍ଭର ନିର୍ଦ୍ଧାରିତ ସ୍ଥାନ ନାହିଁ । ୩୧ ।

ଭରତସତ୍ତମ ପାକଶାସନଙ୍କ ପୁତ୍ର ଧନଞ୍ଜୟ ସେଠାରେ ପୁତ୍ରକର୍ତ୍ତୃକ ବିଧିବତ୍ ପୂଜିତ ଏବଂ ଭାର୍ଯ୍ୟାଦ୍ୱୟଙ୍କର ଅନୁଜ୍ଞା ପ୍ରାପ୍ତ ହୋଇ ଅଶ୍ୱର ଅନୁଗମନ କଲେ ।

---

# ଦ୍ୱ୍ୟଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! ସେହି ଅଶ୍ୱ ଏହି ସସାଗରା ବସୁନ୍ଧରା ପର୍ଯ୍ୟଟନ କରି ହସ୍ତିନା ନଗରାଭିମୁଖ ହୋଇ ପ୍ରତ୍ୟାଗମନ କଲା । ୧ । କିରୀଟୀ ଇଚ୍ଛାନୁଗାମୀ ଅଶ୍ୱର ଅନୁସରଣ କରି କ୍ରମଶଃ ମଗଧଦେଶର ରାଜଭବନ ନିକଟରେ ପ୍ରବିଷ୍ଟ ହେଲେ । ୨ ।

ହେ ପ୍ରଭୋ ! କ୍ଷତ୍ରିୟଧର୍ମରେ ଅବସ୍ଥିତ ମହାବୀର ସହଦେବତନୟ ମେଘସନ୍ଧି ଧନଞ୍ଜୟଙ୍କୁ ସମୀପାଗତ ସନ୍ଦର୍ଶନ କରି ସମର ନିମିତ୍ତ ଆହ୍ୱାନ କଲେ । ୩ ।

Digitized by srujanika@gmail.com

ତଦନନ୍ତର ସେ ରଥାରୋହଣ କରି ସଶର ଶରାସନ ଓ ତଳ ଧାରଣ ପୂର୍ବକ ନିଜପୁରରୁ ନିଷ୍କ୍ରାନ୍ତ ହୋଇ ପଦାତି ଧନଞ୍ଜୟଙ୍କ ନିକଟରେ ଉପସ୍ଥିତ ହେଲେ । ୪ ।

ହେ ମହାରାଜ ! ମହାତେଜା ମେଘସନ୍ଧି ଧନଞ୍ଜୟଙ୍କୁ ପ୍ରାପ୍ତ ହୋଇ ବାଲଭାବ ବଶତଃ ବିନାକୌଶଳରେ ଧନଞ୍ଜୟଙ୍କୁ କହିଲେ, ୫ ।

ହେ ଭାରତ ! ଆପଣ କି ସ୍ତ୍ରୀମଧ୍ୟଗୃହୀ ନପୁଂସକ ମନୁଷ୍ୟ ସଦୃଶ ଏହି ଲୋକ ମଧ୍ୟରେ ଅଶ୍ୱ ବିଚରଣ କରାଇବେ ? ଆମ୍ଭେ ଏହି ଅଶ୍ୱକୁ ହରଣ କରୁଅଛୁଁ । ଆପଣ ଏହାର ବିମୋକ୍ଷଣ ବିଷୟରେ ଯତ୍ନଶୀଳ ହେଉନ୍ତୁ । ୬ ।

ଆପଣ ଯଦି ଯୁଦ୍ଧରେ ଆମ୍ଭ ପିତୃପିତାମହଗଣଙ୍କ ଅନୁନୟ କରିନାହାନ୍ତି, ତଥାପି ଆମ୍ଭେ ମଧ୍ୟ ଆପଣଙ୍କର ରଣାତିଥ୍ୟ କରିବୁଁ । ଅତଏବ ଆପଣ ଆମ୍ଭଙ୍କୁ ପ୍ରହାର କରନ୍ତୁ ଏବଂ ଆମ୍ଭେ ମଧ୍ୟ ଆପଣଙ୍କୁ ପ୍ରହାର କରିବୁଁ । ୭ ।

ପାଣ୍ଡୁନନ୍ଦନ ଧନଞ୍ଜୟ ମେଘସନ୍ଧିଙ୍କ ମୁଖରୁ ଏତାଦୃଶ ବାକ୍ୟ ଶ୍ରବଣ ପୂର୍ବକ ହାସ୍ୟ କରି ତାହାଙ୍କୁ ଏହି କଥା କହିଲେ ଯେ, ବିଘ୍ନକର୍ତ୍ତାଙ୍କୁ ନିବାରଣ କରିବାର ଆମ୍ଭ ବ୍ରତ ଅଟେ । ୮ ।

ହେ ନୃପତେ ! ଜ୍ୟେଷ୍ଠ ଭ୍ରାତା ଆମ୍ଭପ୍ରତି ଏହି ଭାର ଅର୍ପଣ କରିଅଛନ୍ତି । ଏହା ଆପଣ ବିଶେଷରୂପେ ଅବଗତ ହୋଇଅଛନ୍ତି । ଆପଣ ସାମର୍ଥ୍ୟାନୁସାରେ ଆମ୍ଭଙ୍କୁ ପ୍ରହାର କରନ୍ତୁ । ତହିଁରେ ଆମ୍ଭେ କ୍ରୁଦ୍ଧ ହେବୁନାହିଁ । ୯ ।

ମଗଧେଶ୍ୱର ପାଣ୍ଡବଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ପ୍ରଥମେ ବର୍ଷଣକାରୀ ସହସ୍ରାକ୍ଷ ସଦୃଶ ପାଣ୍ଡବଙ୍କ ପ୍ରତି ଶତସହସ୍ର ବାଣ ବର୍ଷଣ କଲେ । ୧୦ ।

ହେ ଭରତର୍ଷଭ ! ତଦନନ୍ତର ଗାଣ୍ଡୀବଧାରୀ ବୀର ଧନଞ୍ଜୟ ଗାଣ୍ଡୀବ-ନିର୍ମୁକ୍ତ ଶରସମୂହଦ୍ୱାରା ମଗଧେଶ୍ୱରଙ୍କର ସଯତ୍ନ ପ୍ରମୁକ୍ତ ବାଣବୃନ୍ଦକୁ ବ୍ୟର୍ଥ କଲେ । କପିକେତନ କୁନ୍ତୀତନୟ ମଗଧାଧିପତିଙ୍କ ବାଣସମୂହକୁ

Digitized by srujanika@gmail.com

ବ୍ୟର୍ଥକରି ପ୍ରଦୀପ୍ତାସ୍ୟ ପନ୍ନଗ ସଦୃଶ ପ୍ରଜ୍ୱଳିତ ଶରସମୂହ ମୋଚନ କଲେ । ୧୨ । ପରନ୍ତୁ ପାର୍ଥ ମଗଧେଶ୍ୱରଙ୍କ ଶରୀର ଓ ସାରଥିପ୍ରତି ଶରନିକ୍ଷେପ ନକରି ତାହାଙ୍କ ଧ୍ୱଜ, ପତାକା, ଦଣ୍ଡ, ରଥ, ଯନ୍ତ୍ର, ଅଶ୍ୱ ଏବଂ ଅନ୍ୟାନ୍ୟ ରଥାଙ୍ଗମାନଙ୍କରେ ଶରବର୍ଷଣ କଲେ । ୧୩ ।

ମଗଧେଶ୍ୱରଙ୍କ ଶରୀର ସବ୍ୟସାଚୀକର୍ତ୍ତୃକ ରକ୍ଷିତ ହେବାରୁ ସେ ନିଜ ବୀର୍ଯ୍ୟବଳରେ ଶରୀର ରକ୍ଷିତ ହୋଇଅଛି ବୋଲି ମନେକରି ପାର୍ଥଙ୍କ ପ୍ରତି ଶର ନିକ୍ଷେପ କଲେ । ୧୪ ।

ତଦନନ୍ତର ଗାଣ୍ଡୀବଧନ୍ୱା ପାର୍ଥ ମଗଧରାଜକର୍ତ୍ତୃକ ଅତିଶୟ ଆହତ ହୋଇ ବସନ୍ତ କାଳର ପୁଷ୍ପିତ ପଲାଶବୃକ୍ଷ ସଦୃଶ ଶୋଭାପାଇଲେ ।

ହେ କୌରବ୍ୟ ! ପାଣ୍ଡବଶ୍ରେଷ୍ଠଙ୍କଦ୍ୱାରା ମଗଧରାଜ ଅବଧମାନ ହେବାରୁ ସେ ପାର୍ଥଙ୍କୁ ଆହତ କରି ଲୋକପ୍ରସିଦ୍ଧ ବୀରଗଣଙ୍କ ଦର୍ଶନ ନିମିତ୍ତ ଅବସ୍ଥାନ କଲେ । ୧୬ ।

ତଦନନ୍ତର ସବ୍ୟସାଚୀ କ୍ରୁଦ୍ଧ ହୋଇ ବଳପୂର୍ବକ ଧନୁ ଆକର୍ଷଣ କରି ମଗଧରାଜଙ୍କ ଅଶ୍ୱଗଣଙ୍କୁ ନିର୍ଜୀବ ଏବଂ ସାରଥିର ମସ୍ତକ ଅପହରଣ କଲେ । ଏବଂ କ୍ଷୁରଦ୍ୱାରା ତାହାଙ୍କ ବିଚିତ୍ର ମହାଧନୁ, ହସ୍ତାବାପ, ପତାକା ଓ ଧ୍ୱଜ ଛେଦନ ପୂର୍ବକ ଭୂତଳରେ ନିକ୍ଷେପ କଲେ ।

ମଗଧରାଜ ଶରଦ୍ୱାରା ବ୍ୟଥିତ ଏବଂ ଅଶ୍ୱ ଓ ସାରଥିବିହୀନ ହୋଇ ଗଦା ଗ୍ରହଣ କରି ଅତିବେଗରେ ପାର୍ଥଙ୍କ ପ୍ରତି ଧାବିତ ହେଲେ ।

ପାର୍ଥ ଗୃଧ୍ରପୁଙ୍ଖବିରାଜିତ ଶରବୃନ୍ଦଦ୍ୱାରା ସେହି ସମାଗତ ମଗଧ-ରାଜଙ୍କର ହେମ ପରିଷ୍କୃତ ଗଦା ବହୁଖଣ୍ଡ କରି ଛେଦନ କଲେ । ସେହି ଗଦା ଶକଳୀଭୂତ ଓ ମଣିବନ୍ଧଚ୍ୟୁତ ହୋଇ ବିମୁକ୍ତା ବ୍ୟାଳୀ ସଦୃଶ ଭୂତଳରେ ପତିତ ହେଲା । ୨୧ ।

ମଗଧରାଜ ବିରଥ ନିର୍ଧନୁଷ୍କ ଏବଂ ଗଦାବର୍ଜିତ ହେବାରୁ ସମରାଗ୍ରଣୀ ଧୀମାନ୍ ଧନଞ୍ଜୟ ପୁନଶ୍ଚ ତାହାଙ୍କୁ ତାଡ଼ନ କରିବାକୁ ଇଚ୍ଛା କଲେନାହିଁ ।

Digitized by srujanika@gmail.com

ତଦନନ୍ତର କପିକେତନ ସେହି ବମନସ୍କ କ୍ଷତ୍ରିୟଧର୍ମରେ ଅବସ୍ଥିତ ମଗଧରାଜଙ୍କୁ ସାନ୍ତ୍ୱନା କରି କହିଲେ—ହେ ପୁତ୍ର ! ତୁମ୍ଭେ ବାଳକ ହୋଇ ସମରରେ ଏତାଦୃଶ ମହତ୍ କର୍ମ କରିବାରୁ କ୍ଷାତ୍ରଧର୍ମ ପର୍ଯ୍ୟାପ୍ତରୂପେ ଦର୍ଶିତ ହେଲା । ସ୍ୱପ୍ରନ୍ତି ଗମନ କର । ୨୩ ।

ହେ ରାଜନ୍ ! ନୃପଗଣଙ୍କୁ ବଧ କରିବାକୁ ଯୁଧିଷ୍ଠିରଙ୍କର ନିଷେଧ ଥିବାରୁ ତୁମ୍ଭେ ସମରରେ ଆମ୍ଭଠାରେ ଅପରାଧ କରିଥିଲେ ସୁଦ୍ଧା ଜୀବିତ ହୋଇ ରହିଅଛ । ୨୪ ।

ତେତେବେଳେ ମଗଧରାଜ ଆପଣାକୁ ଯଥାର୍ଥରୂପେ ପରାଜିତ ବୋଲି ମନେ କରି କୃତାଞ୍ଜଳିପୂର୍ବରେ ପାର୍ଥଙ୍କ ନିକଟକୁ ଗମନ କରି ତାହାଙ୍କୁ ପ୍ରତ୍ୟର୍ଚ୍ଚନା ପୂର୍ବକ କହିଲେ—ହେ ପାର୍ଥ ! ଆମ୍ଭେ ଆପଣଙ୍କ ନିକଟରେ ପରାଜିତ ହୋଇଅଛୁଁ । ଆପଣଙ୍କ ସହିତ ଆଉ ଯୁଦ୍ଧ କରିବାକୁ ଇଚ୍ଛା ନାହିଁ । ଅତଃପର ଆପଣଙ୍କର ଯାହା କରିବାକୁ ହେବ ଆପଣ ଆମ୍ଭଙ୍କୁ ଆଦେଶ କରନ୍ତୁ, ଆମ୍ଭେ ତାହା କରିବୁଁ । ୨୭ ।

ଅର୍ଜ୍ଜୁନ ମଗଧରାଜଙ୍କୁ ଆଶ୍ୱାସିତ କରାଇ ପୁନଶ୍ଚ ତାହାଙ୍କୁ କହିଲେ— ହେ ରାଜନ୍ ! ଆଗାମୀ ଚୈତ୍ର ପୂର୍ଣ୍ଣିମାରେ ରାଜା ଯୁଧିଷ୍ଠିରଙ୍କର ଅଶ୍ୱମେଧ ଯଜ୍ଞ ହେବ । ତେତେବେଳେ ତୁମ୍ଭେ ସେଠାକୁ ଗମନ କରିବ । ୨୮ ।

ମଗଧରାଜ ସହଦେବତନୟ ମେଘସନ୍ଧି ଅର୍ଜ୍ଜୁନଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତାହା ସ୍ୱୀକାର ପୂର୍ବକ ବୀରବର ଫାଲ୍‌ଗୁନ ଓ ଅଶ୍ୱକୁ ଯଥାବିଧାନରେ ଅର୍ଚ୍ଚନା କଲେ । ୨୯ ।

ତଦନନ୍ତର ବୀରସିଂହ ଧନଞ୍ଜୟ ଇଚ୍ଛାନୁସାରେ ସମୁଦ୍ରତୀର ମାର୍ଗରେ କ୍ରମଶଃ ବଙ୍ଗ, ପୁଣ୍ଡ୍ର ଓ କୋଶଳ ପ୍ରଭୃତି ଦେଶମାନଙ୍କରେ ପୁନଶ୍ଚ ଅଶ୍ୱର ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ୩୦ ।

ରାଜନ୍ ! ଅର୍ଜ୍ଜୁନ ଗାଣ୍ଡୀବ ଧନୁଦ୍ୱାରା ସେହି ସେହି ଦେଶସମୂହର ମ୍ଲେଚ୍ଛ ପ୍ରଭୃତି ସୈନ୍ୟମାନଙ୍କୁ ଜୟ କଲେ । ୩୧ ।

---

Digitized by srujanika@gmail.com

# ତ୍ର୍ୟଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ରାଜନ୍ ! ଶ୍ୱେତବାହନ ପାର୍ଥ ମଗଧରାଜ-କର୍ତ୍ତୃକ ଅର୍ଚ୍ଚିତ ହୋଇ ଦକ୍ଷିଣ ଦେଶକୁ ଗମନ ପୂର୍ବକ ସେହି ଅଶ୍ୱ ଅନୁସରଣ କଲେ । ୧ ।

ତଦନନ୍ତର ସେହି କାମଗାମୀ ବଳବାନ୍ ଅଶ୍ୱ ପ୍ରତ୍ୟାବୃତ୍ତ ହୋଇ ଚେଦିମାନଙ୍କର ଶୁକ୍ତିନାମ୍ନୀ ରମଣୀୟ ପୁରୀରେ ପ୍ରବିଷ୍ଟ ହେଲେ । ୨ ।

ସେଠାରେ ମହାବଳ ପାର୍ଥ ଶିଶୁପାଳସୁତ ଶରଭକର୍ତ୍ତୃକ ଯୁଦ୍ଧ କରି ପୂଜିତ ହେଲେ । ୩ ।

ତଦନନ୍ତର ସେହି ତୁରଗୋତ୍ତମ ଅର୍ଚ୍ଚିତ ହୋଇ କାଶୀ, ଅଙ୍ଗ, କୋଶଳ, କିରାତ ଓ ତଙ୍ଗଣ ଦେଶକୁ ଗମନ କଲା । ୪ ।

କୁନ୍ତୀତନୟ ଧନଞ୍ଜୟ ସେଠାରେ ଯଥାକ୍ରମରେ ପୂଜା ପ୍ରତିଗ୍ରହ କରି ପୁନଶ୍ଚ ଦଶାର୍ଣ୍ଣ ଦେଶକୁ ଗମନ କଲେ । ସେଠାରେ ବଳବାନ୍ ଅରିମର୍ଦ୍ଦନ ଚିତ୍ରାଙ୍ଗଦଙ୍କ ସହିତ ବିଜୟୀଙ୍କର ଅତିଭୟଙ୍କର ଯୁଦ୍ଧ ହେଲା । ପୁରୁଷପ୍ରବର କିରୀଟୀ ଚିତ୍ରାଙ୍ଗଦଙ୍କୁ ବଶୀଭୂତ କରି ନିଷାଦରାଜ ଏକଲବ୍ୟଙ୍କ ରାଜ୍ୟକୁ ଗମନ କଲେ । ୭ ।

ସେଠାରେ ଏକଲବ୍ୟସୁତ ଯୁଦ୍ଧ କରି ଅଶ୍ୱ ଗ୍ରହଣ କଲାରୁ ଅର୍ଜ୍ଜୁନ ନିଷାଦମାନଙ୍କ ସହିତ ରୋମହର୍ଷଣକାରୀ ସଂଗ୍ରାମ କଲେ । ୮ ।

ତଦନନ୍ତର ଯୁଦ୍ଧଦୁର୍ଦ୍ଧର୍ଷ ସମରରେ ଅପରାଜିତ କୁନ୍ତୀତନୟ ଯଜ୍ଞବିଘ୍ନ ନିମିତ୍ତ ସମାଗତ ଏକଲବ୍ୟସୁତଙ୍କୁ ଜୟ କଲେ । ୯ ।

ହେ ମହାରାଜ ! ପାକଶାସନପୁତ୍ର ପାର୍ଥ ନିଷାଦରାଜତନୟଙ୍କୁ ଜୟ କରି ତତ୍‌କର୍ତ୍ତୃକ ପରମ ଆଦରରେ ପୂଜିତ ହୋଇ ପୁନଶ୍ଚ ଦକ୍ଷିଣ ସମୁଦ୍ର ତୀରକୁ ଗମନ କଲେ । ୧୦ । ସେଠାରେ ଦ୍ରାବିଡ଼, ଆନ୍ଧ୍ର, ରୌଦ୍ରକର୍ମା ମାହିଷକ ଏବଂ କୋଲ୍ଲଗିରେୟମାନଙ୍କ ସହିତ କିରୀଟିଙ୍କର ଯୁଦ୍ଧ ହେଲା ।୧୧।

Digitized by srujanika@gmail.com

ବିଜୟୀ ଅନନ୍ତଶକ୍ତି କର୍ମଦ୍ୱାରା ସେମାନଙ୍କୁ ଜୟକରି ତୁରଙ୍ଗମର ବଶବର୍ତ୍ତୀ ହୋଇ ସୁରାଷ୍ଟ୍ର ଅଭିମୁଖରେ ଗମନ କଲେ ।

ତଦନନ୍ତର ଅଶ୍ୱ ଗୋକର୍ଣ୍ଣ ଦେଶରେ ପ୍ରବିଷ୍ଟ ହୋଇ ପ୍ରଭାସକୁ ଗମନ କରି ସେଠାରୁ ବୃଷ୍ଣିବୀରପାଳିତା ରମଣୀୟା ଦ୍ୱାରବତୀ ନଗରୀରେ ଉପନୀତ ହେଲେ । ୧୩ ।

ଶ୍ରୀମାନ୍ କୁରୁରାଜଙ୍କ ଯଜ୍ଞୀୟ ଅଶ୍ୱ ଦ୍ୱାରବତୀ ନଗରୀରେ ଉପନୀତ ହେଲାରୁ ଯାଦବକୁମାରଗଣ ତାହାକୁ ଉନ୍ମଥନ କଲେ । ୧୪ । ପରନ୍ତୁ ବୃଷ୍ଣି-ଅନ୍ଧକପତି ଉଗ୍ରସେନ ପୁରରୁ ବହିର୍ଗତ ହୋଇ କୁମାରଗଣଙ୍କୁ ନିବାରଣ କଲେ । ୧୫ ।

ତଦନନ୍ତର ସେ କଂସାରିଙ୍କ ମାତୁଳ ବସୁଦେବଙ୍କ ସହିତ ମିଳିତ ହୋଇ କୁରୁଶ୍ରେଷ୍ଠ ଅର୍ଜ୍ଜୁନଙ୍କ ନିକଟକୁ ଗମନ କରି ପ୍ରୀତିପୂର୍ବକ ଯଥାବିଧାନରେ ତାହାଙ୍କୁ ପରମ ଆଦର ସହିତ ଅଭ୍ୟର୍ଥନା କରି ଅବସ୍ଥିତ ହେଲେ ।

ତଦନନ୍ତର ଅର୍ଜ୍ଜୁନ ସେହି ଦୁହିଁଙ୍କ ଅନୁମତି ଗ୍ରହଣ କରି ଅଶ୍ୱର ପଶ୍ଚାଦ୍‌ଗାମୀ ହେଲେ । ୧୭ ।

ତଦନନ୍ତର ଅଶ୍ୱ ସମୁଦ୍ରର ପଶ୍ଚିମ ଦେଶରେ ବିଚରଣ କରି ପ୍ରୀତହୋଇ କ୍ରମେ କ୍ରମେ ପଞ୍ଚନଦ ପ୍ରଦେଶକୁ ଗମନ କଲା । ୧୮ ।

ହେ କୌରବ୍ୟ ! ଅଶ୍ୱ ସେହି ପ୍ରଦେଶରୁ ଇଚ୍ଛାନୁସାରେ ଗାନ୍ଧାର ଦେଶକୁ ଗମନ କଲା । ଅର୍ଜ୍ଜୁନ ମଧ୍ୟ ତାହାର ପଶ୍ଚାତ୍ ଗମନ କଲେ । ୧୯ ।

ସେଠାରେ ପୂର୍ବବୈରାନୁସାରୀ ଗାନ୍ଧାରରାଜ ଶକୁନିପୁତ୍ରଙ୍କ ସହିତ ସବ୍ୟସାଚୀଙ୍କର ତୁମୁଳ ସଂଗ୍ରାମ ହେଲା । ୨୦ ।



Digitized by srujanika@gmail.com

# ଚତୁରଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଗାନ୍ଧାର ଅଧିପତି ମହାରଥ ବୀରବର ଶକୁନିପୁତ୍ର ପତାକା, ଧ୍ୱଜ, ମାଳା, ହସ୍ତୀ, ଅଶ୍ୱ ଓ ରଥଯୁକ୍ତ ମହାସୈନ୍ୟ-ସମୂହରେ ସମାବୃତ ହୋଇ ଯୁଦ୍ଧ ନିମିତ୍ତ ଗୁଡ଼ାକେଶ ଅର୍ଜୁନଙ୍କ ନିକଟକୁ ଗମନ କଲେ । ଯୋଧଗଣ ନୃପତି ଶକୁନିଙ୍କ ନିଧନରେ ଅତିଶୟ କ୍ରୁଦ୍ଧ ହୋଇ ଶରଯୁକ୍ତ ଶରାସନ ଗ୍ରହଣ ପୂର୍ବକ ସମସ୍ତେ ସମବେତ ହୋଇ ପୃଥାପୁତ୍ର ଧନଞ୍ଜୟଙ୍କ ଅଭିମୁଖକୁ ଗମନ କଲେ ।

ସମରରେ ଅପରାଜିତ ଧର୍ମାତ୍ମା ବୀଭତ୍ସୁ ଅର୍ଜୁନ ସେମାନଙ୍କୁ ଯୁଧିଷ୍ଠିରଙ୍କର ହିତକର ବାକ୍ୟ କହିବାରୁ ସେମାନେ ସେହି ବାକ୍ୟ ଗ୍ରହଣ କଲେ ନାହିଁ ।

ତଦନନ୍ତର ପାଣ୍ଡୁପୁତ୍ର ପାର୍ଥ ସାନ୍ତ୍ୱନା ବାକ୍ୟରେ ସେମାନଙ୍କୁ ନିବାରଣ କଲାରୁ ଯେତେବେଳେ ସେମାନେ ତାହା ନଶୁଣି ଅମର୍ଷ ବଶତଃ ସମସ୍ତେ ଅଶ୍ୱକୁ ଗ୍ରହଣ କରିବାକୁ ଗମନ କଲେ, ସେତେବେଳେ ସେ ଅତିଶୟ କ୍ରୁଦ୍ଧ ହୋଇ ଅବଲୀଳାକ୍ରମେ ଗାଣ୍ଡୀବନିର୍ମୁକ୍ତ ଦୀପ୍ତାଗ୍ର କ୍ଷୁରଅସ୍ତ୍ରଦ୍ୱାରା ସେମାନଙ୍କ ମସ୍ତକ ଛେଦନ କଲେ ।

ହେ ମହାରାଜ ! ଯୋଦ୍ଧୃଗଣ ପାର୍ଥକର୍ତ୍ତୃକ ଆହତ ଓ ଶରବୃଷ୍ଟିଦ୍ୱାରା ଅତିଶୟ ପୀଡ଼ିତ ହୋଇ ଅଶ୍ୱ ପରିତ୍ୟାଗ କରି ସମ୍ଭ୍ରମ ସହିତ ନିବୃତ୍ତ ହେଲେ ।

ତଦନନ୍ତର ତେଜସ୍ୱୀ ପାଣ୍ଡୁନନ୍ଦନ ଅର୍ଜୁନ ପୁନଶ୍ଚ ଗାନ୍ଧାର ଯୋଦ୍ଧୃଗଣକର୍ତ୍ତୃକ ନିଃଶେଷରେ ରୁଦ୍ଧହୋଇ ବାରମ୍ବାର ଶର ନିକ୍ଷେପ କରି ସେମାନଙ୍କ ମସ୍ତକ ଛେଦନ କଲେ ।

ଅର୍ଜୁନ ଯୁଦ୍ଧରେ ଗାନ୍ଧାରସୈନ୍ୟମାନଙ୍କୁ ସର୍ବତୋଭାବରେ ସଂହାର କରୁଥିବା ସମୟରେ ରାଜା ଶକୁନିପୁତ୍ର ଯୁଦ୍ଧକରି ପାର୍ଥଙ୍କୁ ନିବାରଣ କଲେ ।

କ୍ଷାତ୍ରଧର୍ମରେ ବ୍ୟବସ୍ଥିତ ରାଜା ଶକୁନିପୁତ୍ର ସମର କରୁଥିବା ସମୟରେ ପାର୍ଥ ତାହାଙ୍କୁ କହିଲେ ଯେ, ହେ ରାଜନ୍ ! ରାଜା ଯୁଧିଷ୍ଠିରଙ୍କର

Digitized by srujanika@gmail.com

ଆଦେଶାନୁସାରେ ରାଜଗଣ ଆମ୍ଭର ବଧ୍ୟ ନୁହନ୍ତି । ଅତଏବ ଆଜି ଯୁଦ୍ଧର ପ୍ରୟୋଜନ ନାହିଁ । ଅଦ୍ୟ ତୁମ୍ଭର ପରାଜୟ ନହେଉ । ୧୦ । ପାର୍ଥ ଶକୁନି-ପୁତ୍ରଙ୍କୁ ଏହିପରି କହିବାରୁ ସେ ଅଜ୍ଞାନବଶତଃ ବିମୋହିତ ହୋଇ ସେହି ବାକ୍ୟ ଅନାଦର କରି ଶକ୍ରସମକର୍ମଗୃଶ୍ୱ ଅର୍ଜୁନଙ୍କୁ ବାଣବୃନ୍ଦଦ୍ୱାରା ସମାଚ୍ଛନ୍ନ କଲେ । ୧୧ ।

ଅମେୟାତ୍ମା ପୃଥାତନୟ ଅର୍ଜୁନ ଯେଉଁରୂପେ ଜୟଦ୍ରଥଙ୍କ ମସ୍ତକଚ୍ଛେଦନ କରିଥିଲେ, ସେହିରୂପେ କଙ୍କପତ୍ରବିଭୂଷିତ ଅର୍ଦ୍ଧଚନ୍ଦ୍ରଦ୍ୱାରା ଶକୁନିପୁତ୍ରଙ୍କ ଶିରସ୍ତ୍ରାଣ ଅପହରଣ କଲେ । ୧୨ ।

ସମସ୍ତ ଗାନ୍ଧାର ସୈନ୍ୟ ତାହା ଦର୍ଶନ କରି ପରମ ବିସ୍ମୟ-ପ୍ରାପ୍ତ ହେଲେ । ଅର୍ଜୁନଙ୍କର ଇଚ୍ଛା ଥିଲେ ସୁଦ୍ଧା ସେ ଶକୁନିପୁତ୍ରଙ୍କୁ ସଂହାର କଲେ ନାହିଁ । ସେହି କାରଣରୁ ସମସ୍ତେ ତାହାଙ୍କୁ ରାଜା ବୋଲି ବୋଧକଲେ । ୧୩ ।

ତଦନନ୍ତର ଗାନ୍ଧାର ରାଜପୁତ୍ର ପଳାୟନପରାୟଣ ହୋଇ ତ୍ରସ୍ତ କ୍ଷୁଦ୍ର ମୃଗଗଣଙ୍କ ସଦୃଶ ସେହି ଭୀତ ସୈନ୍ୟଗଣଙ୍କ ସହିତ ପଳାୟନ କଲେ । ୧୪ ।

ଯୋଦ୍ଧୃଗଣ ପଳାୟନ କରୁଥିବା ସମୟରେ ପୃଥାପୁତ୍ର ଅର୍ଜୁନ ସନ୍ନତ-ପର୍ବସମନ୍ୱିତ ଭଲ୍ଲାସ୍ତ୍ର ଦ୍ୱାରା ସେମାନଙ୍କ ମସ୍ତକଚ୍ଛେଦନ କଲେ । ୧୫ ।

ପାର୍ଥପ୍ରେରିତ ଗାଣ୍ଡୀବନିର୍ମୁକ୍ତ ପୃଥୁଳ ଶରସମୂହଦ୍ୱାରା ଉଚ୍ଛ୍ରିତ ବାହୁବୃନ୍ଦ ବିଚ୍ଛିନ୍ନ ହେବାରୁ କେହି କେହି ତାହା ବୋଧ କରି ପାରିଲେ ନାହିଁ । ୧୬ । ନର, ଗଜ ଓ ଅଶ୍ୱସମନ୍ୱିତ ବଳବୃନ୍ଦ ମଧ୍ୟରେ କେହି ବିଦ୍ରୁତ, କେହି ପତିତ, କେହି ଅବା ବିଧ୍ୱସ୍ତ ହୋଇ ବାରମ୍ବାର ଆବର୍ତ୍ତିତ ହେଉଥିଲେ ।

ଯେଉଁ ସମସ୍ତ ଶତ୍ରୁଗଣ ଧନଞ୍ଜୟଙ୍କ ସହିତ ସମର କରିବାକୁ ସମର୍ଥ, ସେମାନେ ନିପାତିତ ହେବାରୁ ସେହି ପ୍ରଧାନକର୍ମା ବୀରବର ପାର୍ଥଙ୍କ ସମ୍ମୁଖରେ କେହି ଦୃଷ୍ଟ ହେଲେ ନାହିଁ । ୧୮ ।

ତଦନନ୍ତର ଗାନ୍ଧାର ରାଜାଙ୍କର ଜନନୀ ଭୀତା ହୋଇ ବୃଦ୍ଧ ମନ୍ତ୍ରିଗଣଙ୍କ ସମଭିବ୍ୟାହାରରେ ଉତ୍କୃଷ୍ଟ ଅର୍ଘ୍ୟ ହସ୍ତରେ ନେଇ ଅର୍ଜୁନଙ୍କ ନିକଟକୁ ଗମନ କଲେ । ୧୯ ।

Digitized by srujanika@gmail.com

ସେ ଅବ୍ୟଗ୍ରଚିତ୍ତ ଯୁଦ୍ଧଦୁର୍ମଦ ପୁତ୍ରଙ୍କୁ ଯୁଦ୍ଧରୁ ନିବାରଣ କରି ସେହି ଅକ୍ଲିଷ୍ଟକର୍ମା ଜିଷ୍ଣୁ ଧନଞ୍ଜୟଙ୍କୁ ପ୍ରସନ୍ନ କରାଇଲେ । ୨୦ ।

ପ୍ରଭୁ ବୀଭତ୍ସୁ ପାର୍ଥ ତାହାଙ୍କୁ ସମ୍ମାନ ପୂର୍ବକ ପ୍ରସନ୍ନ କଲେ, ଏବଂ ଶକୁନିପୁତ୍ରଙ୍କୁ ସାନ୍ତ୍ୱନା ପୂର୍ବକ କହିଲେ ଯେ, ହେ ମହାବାହୋ ! ଅନଘ ଶତ୍ରୁଘ୍ନ ତୁମ୍ଭେ ଯେଉଁ ବୁଦ୍ଧିର ବଶବର୍ତ୍ତୀ ହୋଇ ଆମ୍ଭ ସହିତ ପ୍ରତିଯୁଦ୍ଧ କରିବାର ଅଭିଳାଷ କରିଥିଲ, ତୁମ୍ଭ ସହିତ ଆମ୍ଭର ଭ୍ରାତୃ ସମ୍ବନ୍ଧ ଥିବାରୁ ତହିଁରେ ଆମ୍ଭେ ସନ୍ତୁଷ୍ଟ ହୋଇନାହୁଁ । ୨୨ ।

ହେ ରାଜନ୍ ! ଧୃତରାଷ୍ଟ୍ରଙ୍କ କାର୍ଯ୍ୟ ଓ ଗାନ୍ଧାରୀ ମାତାଙ୍କୁ ସ୍ମରଣ କରିବାରୁ ତୁମ୍ଭେ ଜୀବନଲାଭ କଲ, କିନ୍ତୁ ତୁମ୍ଭର ଅନୁଚରଗଣ ନିହତ ହେଲେ । ୨୩ । ଯାହାହେଉ, ତୁମ୍ଭର ଏତାଦୃଶ ବୁଦ୍ଧି ଆଉ କଦାପି ଉପସ୍ଥିତ ନୋହୁ ।

ସମ୍ପ୍ରତି ତୁମ୍ଭେ ବୈରଭାବ ପରିତ୍ୟାଗ କରି ସ୍ୱୀୟ ଭବନକୁ ପ୍ରସ୍ଥାନ କର । ଆମ୍ଭର ମହାରାଜ ଯୁଧିଷ୍ଠିର ଚୈତ୍ର ପୂର୍ଣ୍ଣିମାରେ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କରିବେ । ତୁମ୍ଭେ ସେହିଦିନ ସେଠାରେ ଉପସ୍ଥିତ ହେବ । ୨୪ ।

---

## ପଞ୍ଚାଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ପାର୍ଥ ଗାନ୍ଧାରରାଜଙ୍କୁ ଏହି କଥା କହି କାମବିହାରୀ ଅଶ୍ୱକୁ ନିବୃତ୍ତ କରି ସେଠାରୁ ଗମନ କଲେ । ଅଶ୍ୱ ନିବର୍ତ୍ତିତ ହୋଇ ହସ୍ତିନା ନଗରାଭିମୁଖେ ଗମନ କଲା । ୧ ।

ରାଜା ଯୁଧିଷ୍ଠିର ଚରଦ୍ୱାରା ଅଶ୍ୱ ଓ ଅର୍ଜୁନଙ୍କର କୁଶଳ ସହିତ ପ୍ରତ୍ୟାଗମନ ବାର୍ତ୍ତା ଶ୍ରବଣ କରି ଅତିଶୟ ହୃଷ୍ଟମନା ହେଲେ । ୨ । ଏବଂ ଗାନ୍ଧାର ରାଜ୍ୟରେ ଓ ଅନ୍ୟାନ୍ୟ ଦେଶମାନଙ୍କରେ ଜୟଙ୍କର ତାଦୃଶ କର୍ମ ଶ୍ରବଣ କରି ଅତ୍ୟନ୍ତ ପ୍ରୀତ ହେଲେ । ୩ ।

ମହାତେଜା ଧର୍ମରାଜ ଯୁଧିଷ୍ଠିର ଏହି ସମୟ ମଧ୍ୟରେ ମାଘ ଦ୍ୱାଦଶୀ ଓ ଇଷ୍ଟ ପୁଷ୍ୟା ନକ୍ଷତ୍ର ପ୍ରାପ୍ତ ହୋଇ ଭୀମ, ନକୁଳ ଓ ସହଦେବ ପ୍ରଭୃତି ସମସ୍ତ ଭ୍ରାତୃଗଣଙ୍କୁ ଆନୟନ କଲେ ।

Digitized by srujanika@gmail.com

ସେତେବେଳେ ଧାର୍ମିକପ୍ରବର ମହୀପତି ଯୁଧିଷ୍ଠିର ମହାଯୋଦ୍ଧା ବାଗ୍ମିବର ଭୀମଙ୍କୁ ସମ୍ବୋଧନ କରି କହିଲେ—ହେ ଭୀମ ! ତୁମ୍ଭ ଅନୁଜ ଧନଞ୍ଜୟ ଅଶ୍ୱ ସହିତ ହୋଇ ଯେ ଆଗମନ କରିଅଛନ୍ତି, ଏହି ସମ୍ବାଦ ତାହାଙ୍କ ଅନୁଚରଗଣ ଆସି ଆମ୍ଭଙ୍କୁ କହିଲେ । ୭ ।

ହେ ବୃକୋଦର ! ମାଘୀ ପୂର୍ଣ୍ଣିମା ଆଗତ ଓ ମାଘମାସ ନିଃଶେଷିତ ହେଲା ଏବଂ ଯଜ୍ଞ ଅନୁଷ୍ଠାନର ଅଧିକ ଦିନ ବିଳମ୍ବ ନାହିଁ । ଅଶ୍ୱ ମଧ୍ୟ ସପ୍ରତି ନିକଟବର୍ତ୍ତୀ ହୋଇଅଛି । ଅତଏବ ଅଶ୍ୱମେଧ ସିଦ୍ଧ ଓ ଯଜ୍ଞୀୟ ସ୍ଥାନ ନିରୂପଣ ନିମିତ୍ତ ତୁମ୍ଭେ ବିଦ୍ୱାନ୍ ବେଦପାରଗ ବ୍ରାହ୍ମଣଗଣଙ୍କୁ ପ୍ରେରଣ କର । ସେମାନେ ଯଜ୍ଞର ଉପଯୁକ୍ତ ସ୍ଥାନ ନିଶ୍ଚୟ କରନ୍ତୁ । ୯ ।

ଭୀମସେନ ଏହି ପ୍ରକାର ବାକ୍ୟ ଶ୍ରବଣ କରି ନରପତି ଯୁଧିଷ୍ଠିରଙ୍କ ଆଦେଶାନୁସାରେ କର୍ମ କଲେ ଏବଂ ପୁରୁଷପ୍ରବର ଗୁଡ଼ାକେଶଙ୍କ ଆଗମନ ବାର୍ତ୍ତା ଶ୍ରବଣ କରି ଅତିଶୟ ଆହ୍ଲାଦିତ ହେଲେ । ୧୦ ।

ଅନନ୍ତର ବୃକୋଦର ଯଜ୍ଞକର୍ମକୁଶଳ ବ୍ରାହ୍ମଣଗଣଙ୍କୁ ପୁରଃସର କରି ପ୍ରାଜ୍ଞ ସ୍ଥପତିଗଣଙ୍କ ସମଭିବ୍ୟାହାରରେ ଗମନକଲେ । ୧୧ ।

ସେହି କୁରୁକୁଳସମ୍ଭୂତ ଭୀମସେନ ସ୍ଥପତିଗଣଙ୍କ ଦ୍ୱାରା ଗୃହସମୂହରେ ସମାକୁଳ ପରମ ଶୋଭିତ ପ୍ରଶସ୍ତ ପ୍ରତୋଳସମନ୍ୱିତ ଯଜ୍ଞବାଟ ଯଥାବିଧାନରେ ପରିମାପିତ କଲେ ।

ତଦନନ୍ତର ଶତ ଶତ ପ୍ରାସାଦସମୂହରେ ପରିବେଷ୍ଟିତ ଉତ୍କୃଷ୍ଟ ମଣିଯୁକ୍ତ ହେମ ଓ ନାନା ରତ୍ନବିଭୂଷିତ କୁଟ୍ଟିମ ନିର୍ମାଣ କରାଇଲେ ।

ସେହି ଗୃହର ସ୍ତମ୍ଭ ଏବଂ ବୃହତ୍ ତୋରଣସମୂହ ସୁବର୍ଣ୍ଣଦ୍ୱାରା ଖଚିତ କରାଇଲେ, ଓ ଯଜ୍ଞର ଆୟତନ ସ୍ଥାନରେ ଶୁଦ୍ଧ କାଞ୍ଚନ ପ୍ରଦାନ କରି ସେହି ସେହି ସ୍ଥାନରେ ଯଥାବିଧାନରେ ଅନ୍ତଃପୁର ଓ ନାନା ଦେଶରୁ ସମାଗତ ରାଜା ଓ ବ୍ରାହ୍ମଣମାନଙ୍କ ନିମିତ୍ତ ଅନେକ ଅନେକ ଗୃହ ନିର୍ମାଣ କରାଇଲେ ।୧୬।

ହେ ମହାବାହୋ ! ତଦନନ୍ତର ସେହି ଭୀମ ରାଜା ଯୁଧିଷ୍ଠିରଙ୍କ ଆଦେଶାନୁସାରେ ଅକ୍ଲିଷ୍ଟକର୍ମା ନୃପତିମାନଙ୍କ ନିକଟକୁ ଦୂତ ପ୍ରେରଣ କଲେ । ୧୭ । ନରପତିଗଣ ଯୁଧିଷ୍ଠିରଙ୍କ ପ୍ରିୟ କାମନାରେ ଅସଂଖ୍ୟ ରତ୍ନ, ସ୍ତ୍ରୀ, ଅଶ୍ୱ ଓ ନାନାବିଧ ଆୟୁଧ ଘେନି ଆଗମନ କଲେ । ୧୮ ।

Digitized by srujanika@gmail.com

ଯେତେବେଳେ ମହାତ୍ମା ମହୀପାଳଗଣ ଶିବିର ମଧ୍ୟରେ ପ୍ରବେଶ କରୁଥିଲେ ସେତେବେଳେ ଶବ୍ଦାୟମାନ ସାଗରର ଶବ୍ଦ ସଦୃଶ ସେମାନଙ୍କ କୋଳାହଳ ଶବ୍ଦ ଗଗନମଣ୍ଡଳ ସ୍ପର୍ଶ କରୁଥିଲା । ୧୯ ।

କୁରୁନନ୍ଦନ ଧର୍ମରାଜ ରାଜା ଯୁଧିଷ୍ଠିର ସମାଗତ ନୃପତିମାନଙ୍କୁ ଅନୁପମ ଅନ୍ନ, ପାନୀୟ ଓ ଅତି ଉତ୍କୃଷ୍ଟ ଶଯ୍ୟା ପ୍ରଦାନ କରିବା ନିମିତ୍ତ ଭୃତ୍ୟବର୍ଗଙ୍କୁ ଆଦେଶ ଦେଲେ । ୨୦ । ଭରତଶ୍ରେଷ୍ଠ ଧର୍ମରାଜ ବାହନମାନଙ୍କ ନିମିତ୍ତ ତୃଣ, ଧାନ୍ୟ, ଇକ୍ଷୁ ଓ ଗୋରସ ପ୍ରଦାନ କରିବାକୁ ଆଦେଶ କଲେ । ୨୧ ।

ଧୀମାନ୍ ଧର୍ମରାଜଙ୍କର ସେହି ମହାଯଜ୍ଞକୁ ବହୁତର ବ୍ରହ୍ମବାଦୀ ବ୍ରାହ୍ମଣ ମୁନିଗଣ ସମାଗତ ହେଲେ । ହେ ନରପାଳ ! ଆଉ ଯେଉଁ ସମସ୍ତ ଦ୍ୱିଜବରଗଣ ଶିଷ୍ୟଗଣଙ୍କ ସମଭିବ୍ୟାହାରରେ ସମାଗତ ହେଲେ, କୁରୁପତି ସେହି ସମସ୍ତଙ୍କୁ ସମାଦର ସହିତ ଗ୍ରହଣ କଲେ । ୨୩ ।

ମହାତେଜା ରାଜା ଯୁଧିଷ୍ଠିର ଦମ୍ଭ ପରିତ୍ୟାଗ କରି ସ୍ୱୟଂ ସମସ୍ତଙ୍କ ଗୃହକୁ ଗମନ କଲେ, ଏବଂ ବ୍ରାହ୍ମଣ ଓ ରାଜାମାନଙ୍କ ଅନୁଗମନ କଲେ । ୨୪ ।

ତଦନନ୍ତର ସ୍ଥପତି ଓ ଅନ୍ୟାନ୍ୟ ଶିଳ୍ପିଗଣ ଯଜ୍ଞୀୟ ଗୃହ ପ୍ରଭୃତି ନିର୍ମାଣ କରି ଧର୍ମରାଜଙ୍କୁ ଜଣାଇଲେ । ୨୫ । ଧର୍ମରାଜ ସମସ୍ତ କାର୍ଯ୍ୟ ସମ୍ପାଦିତ ହେବାର ଶ୍ରବଣ କରି ଭ୍ରାତୃଗଣକର୍ତ୍ତୃକ ଆବୃତ ଓ ଅତନ୍ଦ୍ରିତ ହୋଇ ପରମ ଆନନ୍ଦିତ ହେଲେ । ୨୬ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ସେହି ଯଜ୍ଞ ଆରମ୍ଭ ହେବାରୁ ହେତୁବାଦୀ ବାଗ୍ମୀ ବ୍ରାହ୍ମଣଗଣ ପରସ୍ପର ଜିଗୀଷୁ ହୋଇ ବହୁତର ହେତୁବାଦ ସବୁ କହିଲେ । ୨୭ ।

ହେ ଭାରତ ! ନୃପତିଗଣ ଦେବେନ୍ଦ୍ର-ଯଜ୍ଞ ସଦୃଶ ଭୀମସେନକର୍ତ୍ତୃକ ବିହିତ ସେହି ଉତ୍ତମ ଯଜ୍ଞବିଧି ଓ ଇତସ୍ତତଃ ସୁବର୍ଣ୍ଣମୟ ତୋରଣସମୂହ ଦେଖିଲେ । ୨୮ । ଏବଂ ସେଠାରେ ଶଯ୍ୟା, ଆସନ, ବିହାର, ବହୁଳ ଜଳପାତ୍ର, ଘଟପାତ୍ର, କଳଶ ଓ ଶରାବ ପ୍ରଭୃତି ଯାବତୀୟ ବସ୍ତୁସବୁ ସ୍ୱର୍ଣ୍ଣମୟ ଧାତୁ ଭିନ୍ନ ଅନ୍ୟ ଧାତୁମୟ ଦେଖିଲେ ନାହିଁ ।

Digitized by srujanika@gmail.com

ନୃପଗଣ ଇଚ୍ଛାନୁସାରେ ଯଥାବିଧାନରେ ରଚିତ ହେମଭୂଷିତ ଦାରୁମୟ ମନ୍ତ୍ରସଂସ୍କୃତ ଯୂପସମୂହ ଏବଂ ସେଠାକୁ ସମାନୀତ ସ୍ଥଳଜ, ଜଳଜ ପ୍ରଭୃତି ପଶୁବୃନ୍ଦ ଦର୍ଶନ କଲେ । ୩୨ ।

ସେମାନେ ସେଠାରେ ଗୋ, ମହିଷ, ବୃଦ୍ଧାସ୍ତ୍ରୀ, ଜଳଜନ୍ତୁ, ଶ୍ୱାପଦ, ପକ୍ଷୀ, ଏବଂ ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍ଭିଜ୍ଜ, ପାର୍ବତୀୟ, ଅନୂପଜାତ ପ୍ରାଣିଗଣଙ୍କୁ ଦେଖିଲେ । ୩୪ ।

ଏହିରୂପେ ନୃପଗଣ ପଶୁ, ଗୋଧନ ଓ ଧାନ୍ୟଦ୍ୱାରା ପ୍ରମୁଦିତ ଲୋକବୃନ୍ଦ ଓ ଯଜ୍ଞବାଟ ଦର୍ଶନକରି ପରମ ବିସ୍ମୟପ୍ରାପ୍ତ ହେଲେ । ସେହି ଯଜ୍ଞରେ ସହସ୍ର ବ୍ରାହ୍ମଣ ଓ ଅନ୍ୟାନ୍ୟ ନରଗଣ ସୁସଂସ୍କୃତ ବହୁମୂଲ୍ୟ ଖାଦ୍ୟସାମଗ୍ରୀ ଭକ୍ଷଣ କଲେ । ୩୬ ।

ଦିବସ ଗତ ହେବାରୁ ମେଘଧ୍ୱନି ସମ ଶବ୍ଦାୟମାନ ଦୁନ୍ଦୁଭି ବାରମ୍ବାର ତାଡ଼ିତ ହେଲା । ୩୭ । ଧୀମାନ୍ ଧର୍ମରାଜଙ୍କ ଯଜ୍ଞ ଏହିରୂପେ ବର୍ଦ୍ଧିତ ହେଉଥିଲା । ହେ ରାଜନ୍ ! ତେତେବେଳେ ଚତୁର୍ଦ୍ଦିଗରେ ପର୍ବତାକାର ବହୁଳ ଅନ୍ନ ଉତ୍ସୃଷ୍ଟ ହେଉଥିଲା ଏବଂ ଜନଗଣ ଦଧିନଦୀ ଓ ଘୃତହ୍ରଦସମୂହ ଦର୍ଶନ କରି ବିସ୍ମିତ ହେଲେ ।

ହେ ରାଜନ୍ ! ମହାରାଜଙ୍କ ମହାଯଜ୍ଞରେ ନାନା ଜନପଦାକୀର୍ଣ୍ଣ ସମସ୍ତ ଜମ୍ବୁଦ୍ୱୀପ ଏକତ୍ର ଦୃଷ୍ଟ ହେଲା । ସେଠାକୁ ନାନା ଜାତୀୟ ପୁରୁଷଗଣ ବହୁବିଧ ପାତ୍ର ଗ୍ରହଣ କରି ଗମନ କଲେ । ସୁମାର୍ଜିତ ମଣିମୟ କୁଣ୍ଡଳ ଓ ମାଲ୍ୟଧାରୀ ଶତସହସ୍ର ପୁରୁଷ ଦ୍ୱିଜାତିଗଣଙ୍କୁ ପରିବେଷଣ କଲେ । ଯେଉଁ ସମସ୍ତ ଅନୁଚରଗଣ ଆସିଥିଲେ, ସେମାନେ ରାଜଭୋଗ୍ୟ ବିବିଧ ଅନ୍ନ ଓ ପାନୀୟ ଦ୍ରବ୍ୟସମୂହ ବ୍ରାହ୍ମଣଗଣଙ୍କୁ ଦାନ କରୁଥିଲେ ।

---



Digitized by srujanika@gmail.com

# ଷଡ଼ଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ରାଜା ଯୁଧିଷ୍ଠିର ବେଦବିଦ୍ ବ୍ରାହ୍ମଣ ଓ ପୃଥିବୀ-ପାଳଗଣଙ୍କୁ ସମାଗତ ହେବାର ସନ୍ଦର୍ଶନ କରି ଭୀମସେନଙ୍କୁ କହିଲେ— । ୧ ।

ହେ ପୁରୁଷସିଂହ ! ଏହି ଯେଉଁ ସମସ୍ତ ନରପାଳଗଣ ସମାଗତ ହୋଇଅଛନ୍ତି ଏମାନେ ପୂଜନୀୟ, ଅତଏବ ଏମାନଙ୍କ ପୂଜାକର । ୨ ।

ମହାତେଜା ଭୀମସେନ ଯଶସ୍ୱୀ ନରନାଥ ଯୁଧିଷ୍ଠିରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଯମଜ ନକୁଳ ଓ ସହଦେବଙ୍କ ସହିତ ସେହି ରାଜାମାନଙ୍କ ପୂଜାକାର୍ଯ୍ୟରେ ପ୍ରବୃତ୍ତ ହେଲେ ।

ଅନନ୍ତର ସର୍ବପ୍ରାଣିପ୍ରବର ଗୋବିନ୍ଦ ବଳଦେବଙ୍କୁ ଅଗ୍ରସର କରାଇ ଯୁଯୁଧାନ, ପ୍ରଦ୍ୟୁମ୍ନ, ଗଦ, ନିଶଠ, ସାମ୍ବ ଓ କୃତବର୍ମା ପ୍ରଭୃତି ବୃଷ୍ଣିଗଣଙ୍କ ସମଭିବ୍ୟାହାରରେ ଧର୍ମନନ୍ଦନଙ୍କ ନିକଟକୁ ଆଗମନ କଲେ ।

ମହାରଥ ଭୀମସେନ ସେମାନଙ୍କ ପୂଜାକଲେ ଏବଂ ସେମାନେ ଭୀମ-କର୍ତ୍ତୃକ ପୂଜିତ ହୋଇ ବହୁରତ୍ନସମାକୀର୍ଣ୍ଣ ଗୃହମଧ୍ୟରେ ପ୍ରବେଶ କଲେ । ୬ ।

ତଦନନ୍ତର ମଧୁସୂଦନ ଯୁଧିଷ୍ଠିରଙ୍କ ସହିତ କଥୋପକଥନ କରି ତାହାଙ୍କ ସମୀପରେ ସଂଗ୍ରାମକର୍ଷିତ ମହାବାହୁ ଅର୍ଜୁନଙ୍କୁ ଉଦ୍ଦେଶ୍ୟ କରି ନାନାବିଧ ବାକ୍ୟ କହିଲେ । ୭ ।

କୁନ୍ତୀତନୟ ଧର୍ମନନ୍ଦନ ଜଗତ୍ପତି ଯୁଧିଷ୍ଠିର ଅରିନ୍ଦମ ଦେବକୀନନ୍ଦନଙ୍କୁ ବାରମ୍ବାର ସ୍ୱାଗତବାର୍ତ୍ତା ପ୍ରଶ୍ନକଲେ । ୮ ।

ସେ ମହାବାହୁ ଧର୍ମରାଜଙ୍କୁ କହିଲେ—ହେ ପ୍ରଭୋ ! କୌନ୍ତେୟ ! ମହାବାହୋ ! ଯେଉଁ ବ୍ୟକ୍ତି ବହୁସଂଗ୍ରାମକର୍ଷିତ ସେହି ପାଣ୍ଡବଶ୍ରେଷ୍ଠ ଧନଞ୍ଜୟଙ୍କୁ ରକ୍ଷାକରିଥିଲେ, ସେହି ଦ୍ୱାରକାବାସୀ ଆପ୍ତପୁରୁଷ ଆପଣଙ୍କ ନିକଟକୁ ଆସିଅଛନ୍ତି । ସଂପ୍ରତି ଆପଣ ଅଶ୍ୱମେଧ ଯଜ୍ଞ ସିଦ୍ଧି ନିମିତ୍ତ ସମସ୍ତ କାର୍ଯ୍ୟ କରିବା ହେଉନ୍ତୁ । ୧୦ ।

ଯୁଧିଷ୍ଠିର କୃଷ୍ଣଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ—ହେ ମାଧବ ! ସେହି ଜିଷ୍ଣୁ ଧନଞ୍ଜୟ ଆମ୍ଭର ଭାଗ୍ୟବଶତଃ କୁଶଳୀ ହୋଇ ଆସିଅଛନ୍ତି । ୧୧ ।

Digitized by srujanika@gmail.com

ହେ ଯଦୁନନ୍ଦନ ! ସେହି ପାଣ୍ଡବବଳାଗ୍ରଣୀ ଧନଞ୍ଜୟ ଏହି ଯଜ୍ଞ ବିଷୟରେ ଯେଉଁ ବ୍ୟବସ୍ଥା କରିଅଛନ୍ତି, ତାହା ଆମ୍ଭେ ତୁମ୍ଭନିକଟରୁ ଜାଣିବାକୁ ଇଚ୍ଛା କରୁଅଛୁଁ । ୧୨ ।

ତେତେବେଳେ ବାଗ୍ମିବର ବୃଷ୍ଣି ଓ ଅନ୍ଧକପତି କୃଷ୍ଣ ଧର୍ମାତ୍ମା ଯୁଧିଷ୍ଠିରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ପାର୍ଥଙ୍କ ବାକ୍ୟ ସ୍ମରଣ ପୂର୍ବକ ତାହାଙ୍କୁ କହିଲେ ।

ହେ ମହାରାଜ ! ଅର୍ଜ୍ଜୁନ ଆମ୍ଭଙ୍କୁ କହିଅଛନ୍ତି ଯେ, "ହେ କୃଷ୍ଣ ! ତୁମ୍ଭେ ସମୟ ଅନୁସାରେ ରାଜା ଯୁଧିଷ୍ଠିରଙ୍କୁ ଆମ୍ଭର ଏହି ବାକ୍ୟ ଜଣାଇବ— ହେ କୌରବଶ୍ରେଷ୍ଠ ! ଏହି ଯଜ୍ଞକୁ ଯେଉଁସବୁ ମହାତ୍ମା ମହୀପାଳଗଣ ଆଗମନ କରିବେ, ଆମ୍ଭେମାନେ ବିଶେଷ କରି ସେମାନଙ୍କ ପୂଜା କରିବା । ଅପିଚ, ହେ ମାନଦ ! ଆମ୍ଭର ଏହି ବାକ୍ୟ ରାଜାଙ୍କୁ ଜଣାଇବେ ଯେ, ପୂର୍ବେ ରାଜସୂୟ ଯଜ୍ଞରେ ଅର୍ଘ୍ୟପ୍ରଦାନ ସମୟରେ ଯେଉଁ ପ୍ରକାର ଅନର୍ଥ ଉପସ୍ଥିତ ହୋଇଥିଲା, ସମ୍ପ୍ରତି ଯେଉଁ ଉପାୟରେ ତାହା ନହୁଏ, ତାହା ଆପଣ କରିବା ହେବେ, ଏବଂ ତଦ୍‌ବିଷୟରେ ଅନୁମତି ପ୍ରଦାନ କରିବା ହେବେ । ହେ ରାଜନ୍ ! ରାଜଦ୍ୱେଷବଶତଃ ଯେଉଁପରି ଏହି ପ୍ରଜାଗଣ ବିନଷ୍ଟ ନ ହୁଅନ୍ତି" । ୧୭ ।

ହେ କୌନ୍ତେୟ ! ସେହି ପୁରୁଷପ୍ରବର ଧନଞ୍ଜୟ ଏହି କଥା କହି ଆଉ ଯେଉଁ ଗୋଟିଏ କଥା କହିଅଛନ୍ତି, ତାହା ଶ୍ରବଣ କରିବା ହେଉନ୍ତୁ । ୧୮ । ସେ କହିଅଛନ୍ତି, "ଆମ୍ଭର ପରମପ୍ରିୟ ପୁତ୍ର ମଣିପୁରପତି ମହାତେଜା ବଭ୍ରୁବାହନ ଏହି ଯଜ୍ଞସ୍ଥଳରେ ଉପବିଷ୍ଟ ହେବେ । ୧୯ । ଆପଣ ଆମ୍ଭ ଅନୁରୋଧରେ ତାହାଙ୍କୁ ଯଥାବିଧାନରେ ସମାଦର କରିବେ । ହେ ପ୍ରଭୋ ! ସେ ଆମ୍ଭର ଅତ୍ୟନ୍ତ ଭକ୍ତ ଓ ନିତ୍ୟ ଅନୁରକ୍ତ" । ୨୦ ।

ଧର୍ମରାଜ ଯୁଧିଷ୍ଠିର, ଏହି ବାକ୍ୟ ଶ୍ରବଣ କରି ତାହାଙ୍କର ସେହି ବାକ୍ୟକୁ ଅଭିନନ୍ଦନ କରି ଏହି କଥା କହିଲେ । ୨୧ ।

---

Digitized by srujanika@gmail.com

# ସପ୍ତାଶୀତିତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ କୃଷ୍ଣ ! ଆମ୍ଭେ ଏହି ପ୍ରିୟବାକ୍ୟ ଶ୍ରବଣ କଲୁଁ । ହେ ପ୍ରଭୋ ! ତୁମ୍ଭର ମୁଖନିର୍ଗତ ଅମୃତରସମୟ ପବିତ୍ର ବାକ୍ୟ ମଦୀୟ ଚିତ୍ତରେ ଅତ୍ୟନ୍ତ ଆହ୍ଲାଦବର୍ଦ୍ଧନ କଲା । ୧ ।

ହେ ହୃଷୀକେଶ ! ଆମ୍ଭେ ଶୁଣିଅଛୁଁ ଯେ, ବିଜୟ ଯେଉଁ ଯେଉଁ ସ୍ଥାନକୁ ଗମନ କରିଥିଲେ, ସେହି ସେହି ସ୍ଥାନୀୟ ନରପତିଗଣଙ୍କ ସହିତ ବିଜୟଙ୍କର ପୁନଶ୍ଚ ବହୁ ଯୁଦ୍ଧ ହୋଇଥିଲା । ୨ ।

ଧୀମାନ୍ ପୃଥାତନୟ ବିଜୟ କେଉଁ କାରଣରୁ ଯେ ନିତ୍ୟ ସୁଖ-ବିବର୍ଜିତ ହୋଇଅଛନ୍ତି, ତାହା ଆମ୍ଭେ ଜାଣିପାରୁ ନାହୁଁ । ସେହିହେତୁରୁ ଆମ୍ଭ ଚିତ୍ତ ଅତିଶୟ ଦୁଃଖିତ ହେଉଅଛି । ୩ ।

ହେ ଜନାର୍ଦ୍ଦନ ! ଆମ୍ଭେ ନିର୍ଜନରେ କୁନ୍ତୀତନୟ ଜିଷ୍ଣୁ ଧନଞ୍ଜୟଙ୍କ ବିଷୟ ଚିନ୍ତାକରି ଦେଖିଲୁଁ ଯେ, ସେ ପାଣ୍ଡୁନନ୍ଦନ ସର୍ବଦା ଦୁଃଖଭୋଗ କରୁଅଛନ୍ତି । ୪ ।

ହେ କୃଷ୍ଣ ! ଯେଉଁ ଲକ୍ଷଣଦ୍ୱାରା ଦୁଃଖଭୋଗ ହୁଏ, ଧନଞ୍ଜୟଙ୍କ ସର୍ବଲକ୍ଷଣଦ୍ୱାରା ସୁପୂଜିତ ଶରୀର ମଧ୍ୟରେ କି ସେହି ଅନିଷ୍ଟସୂଚକ ଲକ୍ଷଣ ଅଛି ? ୫ । ସର୍ବଦା ଅତିଶୟ ଅସୁଖଭୋଗୀ କୁନ୍ତୀତନୟ ବୀଭତ୍ସୁଙ୍କ ଶରୀରରେ ଆମ୍ଭେ କୌଣସି ନିନ୍ଦନୀୟ ଅନିଷ୍ଟସୂଚକ ଚିହ୍ନ ଦେଖିନାହୁଁ । ହେ କୃଷ୍ଣ ! ଏହା ଯଦି ଆମ୍ଭର ଶ୍ରୋତବ୍ୟ ହୁଏ, ତେବେ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୬ ।

ଭୋଜରାଜନ୍ୟବର୍ଦ୍ଧନ ହୃଷୀକେଶ ବିଷ୍ଣୁ ଯୁଧିଷ୍ଠିରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅତି ବୃହତ୍ ଉତ୍ତର ଚିନ୍ତାକରି ରାଜାଙ୍କୁ କହିଲେ— । ୭ ।

ହେ ରାଜନ୍ ! ପୁରୁଷସିଂହ ଧନଞ୍ଜୟଙ୍କ ପିଣ୍ଡିକା ଅର୍ଥାତ୍ ଜାନୁଦ୍ୱୟର ଅଧଃସ୍ଥ ପଶ୍ଚାଦ୍ଭାଗୀୟ ମାଂସଳ ପ୍ରଦେଶ ଭିନ୍ନ ଅନ୍ୟ କୌଣସି ଅନିଷ୍ଟ ଲକ୍ଷଣ ଲକ୍ଷିତ ହୁଏ ନାହିଁ । ପିଣ୍ଡିକାଦ୍ୱୟ ଅଧିକ ଥିବାରୁ ପୁରୁଷପ୍ରବର ଧନଞ୍ଜୟ ନିତ୍ୟ ପଥଭ୍ରମଣ କରୁଅଛନ୍ତି । ଏହା ବ୍ୟତିରେକେ ଏ ଯାହାଦ୍ୱାରା ଦୁଃଖ-ଭୋଗୀ ହୁଅନ୍ତେ, ଏହାର କୌଣସି ଲକ୍ଷଣ ଦେଖାଯାଉ ନାହିଁ । ୯ ।

Digitized by srujanika@gmail.com

ତେତେବେଳେ ପୁରୁଷପ୍ରବର ଯୁଧିଷ୍ଠିର ଧୀମାନ୍ କୃଷ୍ଣଙ୍କର ଏହି ବାକ୍ୟ ଶ୍ରବଣ କରି କହିଲେ—ହେ ପ୍ରଭୋ ! ତୁମ୍ଭେ ଯାହା କହିଲ ତାହା ସତ୍ୟ ଅଟେ ।

ତେତେବେଳେ କୃଷ୍ଣା ଦ୍ରୌପଦୀ ଅସୂୟା ପ୍ରକାଶ ପୂର୍ବକ ତିର୍ଯ୍ୟକ୍‌ଭାବରେ କୃଷ୍ଣଙ୍କ ପ୍ରତି ଦୃଷ୍ଟିପାତ କଲେ ।

ଅର୍ଜ୍ଜୁନଙ୍କ ସଖା କେଶୀହା ମହାତ୍ମା ହୃଷୀକେଶ ପ୍ରଫୁଲ୍ଲଚିତ୍ତରେ ସାକ୍ଷାତ୍ ଧନଞ୍ଜୟଙ୍କ ସଦୃଶ ତାହାଙ୍କର ସେହି ପ୍ରଣୟ ଦୃଷ୍ଟିପାତକୁ ପ୍ରତିଗ୍ରହ କଲେ ।

ସେଠାରେ ଭୀମ ପ୍ରଭୃତି ଯେଉଁ ସମସ୍ତ କୁରୁ ଓ ଯାଜକଗଣ ବିଦ୍ୟମାନ ଥିଲେ, ସେମାନେ ଧନଞ୍ଜୟଙ୍କର ସେହି ବିଚିତ୍ର ଶୁଭକଥା ଶ୍ରବଣ କରି ଅତି ଆନନ୍ଦ ସହିତ କ୍ରୀଡ଼ାକଲେ । ସେମାନେ ପରସ୍ପର ଅର୍ଜ୍ଜୁନଙ୍କ କଥା କହିଲେ । ୧୩ ।

ମହାତ୍ମା ବିଜୟଙ୍କ ଆଦେଶାନୁସାରେ ଏକ ଦୂତ ସେଠାରେ ଉପସ୍ଥିତ ହେଲା । ସେହି ବୁଦ୍ଧିମାନ୍ ଦୂତ ନିକଟବର୍ତ୍ତୀ ହୋଇ କୁରୁପତି ଯୁଧିଷ୍ଠିରଙ୍କୁ ପ୍ରଣାମ କରି ପୁରୁଷପ୍ରବର ଫାଲ୍‌ଗୁନଙ୍କ ଆଗମନବାର୍ତ୍ତା ନିବେଦନ କଲା ।

ନରପତି ଦୂତର ସେହି ବାକ୍ୟ ଶ୍ରବଣ କରି ହର୍ଷବାଷ୍ପାକୁଳଲୋଚନରେ ପ୍ରିୟ ସମ୍ବାଦଦାତା ଦୂତକୁ ବହୁ ଧନ ପ୍ରଦାନ କଲେ । ଅନନ୍ତର ଦ୍ୱିତୀୟ ଦିବସରେ କୁରୁକୁଳଧୁରନ୍ଧର ପୁରୁଷପ୍ରବର ଧନଞ୍ଜୟ ଆଗମନ କରୁଥିବା ସମୟରେ ମହାନ୍ ଶବ୍ଦ ସମୁତ୍‌ଥିତ ହେଲା ।

ତଦନନ୍ତର ଚତୁର୍ଦ୍ଦିଗରେ ବର୍ତ୍ତମାନ ଉଚ୍ଚୈଃଶ୍ରବା ସଦୃଶ ବାଜିଗଣଙ୍କର ପଦରେଣୁ ଉତ୍‌ଥିତ ହେଲା । ସେଠାରେ ଅର୍ଜ୍ଜୁନ ମନୁଷ୍ୟମାନଙ୍କର ଏତାଦୃଶ ହର୍ଷକର ବାକ୍ୟ ଶ୍ରବଣ କଲେ ।

ହେ ପାର୍ଥ ! ତୁମ୍ଭେ ଭାଗ୍ୟବଶତଃ କୁଶଳୀ ହୋଇ ପ୍ରତ୍ୟାଗମନ କଲ । ତୁମ୍ଭଙ୍କୁ ଏବଂ ଯୁଧିଷ୍ଠିରଙ୍କୁ ଧନ୍ୟବାଦ ! ଅର୍ଜ୍ଜୁନଙ୍କ ବ୍ୟତିରେକେ ଏ ପ୍ରକାର କେହି ନାହାନ୍ତି, ଯେଉଁ ବ୍ୟକ୍ତି ଯୁଦ୍ଧରେ ପାର୍ଥିବଗଣଙ୍କୁ ଜୟକରି ସସାଗରା ବସୁନ୍ଧରା ମଧ୍ୟରେ ଅଶ୍ୱ ଚରାଇ ପ୍ରତ୍ୟାଗତ ହେବେ । ସଗର ପ୍ରଭୃତି ଯେଉଁ ସମସ୍ତ ମହାତ୍ମା ମହୀପାଳଗଣ ଅତୀତ ହୋଇଅଛନ୍ତି,

Digitized by srujanika@gmail.com

ସେମାନଙ୍କର ଈଦୃଶ ସୁକଠିନ କର୍ମ ଆମ୍ଭେମାନେ କଦାପି ଶ୍ରବଣ କରିନାହୁଁ । ହେ କୁରୁକୁଳଶ୍ରେଷ୍ଠ ! ତୁମ୍ଭେ ଯେଉଁ ଦୁଷ୍କର କର୍ମ କରିଅଛ, ଏତାଦୃଶ କର୍ମ ଅନ୍ୟ ଭବିଷ୍ୟତ୍ ଭୂପାଳଗଣ ଯେ କରିପାରିବେ, ତାହା ଆମ୍ଭମାନଙ୍କର ବିଶ୍ୱାସ ହେଉନାହିଁ ।

ଧର୍ମାତ୍ମା ଫାଲ୍‌ଗୁନ ପୁରୁଷମାନଙ୍କର ଏତାଦୃଶ କର୍ଣ୍ଣସୁଖକର ବାକ୍ୟ ଶ୍ରବଣ କରି ଯଜ୍ଞସ୍ଥଳରେ ପ୍ରବେଶ କଲେ ।

ତଦନନ୍ତର ରାଜା ଯୁଧିଷ୍ଠିର ଓ ଯଦୁନନ୍ଦନ କୃଷ୍ଣ ଧୃତରାଷ୍ଟ୍ରଙ୍କୁ ଅଗ୍ରସର କରାଇ ଅମାତ୍ୟଗଣଙ୍କ ସମଭିବ୍ୟାହାରରେ ତାହାଙ୍କ ନିକଟକୁ ଗମନକଲେ ।

ତେତେବେଳେ ଧର୍ମପରାୟଣ ଧନଞ୍ଜୟ ଜ୍ୟେଷ୍ଠତାତ ଧୃତରାଷ୍ଟ୍ର ଓ ଧୀମାନ୍ ଧର୍ମରାଜଙ୍କର ପଦଦ୍ୱୟ ଅଭିବାଦନ ପୂର୍ବକ ଭୀମ ପ୍ରଭୃତିଙ୍କୁ ପୂଜାକରି କେଶବଙ୍କୁ ଆଲିଙ୍ଗନ କଲେ ।

ମହାବାହୁ ଅର୍ଜୁନ ସେମାନଙ୍କଦ୍ୱାରା ଅର୍ଚ୍ଚିତ ହୋଇ ସେମାନଙ୍କୁ ପୁନଶ୍ଚ ଯଥାବିଧି ଅର୍ଚ୍ଚନା କରି, ଅବ୍ଧିତୀର ପାରଗାମୀ ପୁରୁଷ ସଦୃଶ ବିଶ୍ରାମ କଲେ ।

ଏହି ସମୟ ମଧ୍ୟରେ ଧୀମାନ୍ ରାଜା ବଭ୍ରୁବାହନ ମାତୃଦ୍ୱୟ ସହିତ କୁରୁଗଣଙ୍କ ନିକଟରେ ଉପସ୍ଥିତ ହେଲେ । ସେଠାରେ ସେ ବୃଦ୍ଧ ଓ ଅନ୍ୟାନ୍ୟ ପାର୍ଥିବଗଣଙ୍କୁ ଯଥାବିଧାନରେ ଅଭିବାଦନ କରି ସେମାନଙ୍କଦ୍ୱାରା ପ୍ରତିନନ୍ଦିତ ହୋଇ ପିତାମହୀ କୁନ୍ତୀଙ୍କ ଉତ୍ତମ ଭବନରେ ପ୍ରବେଶ କଲେ । ୨୮ ।

---

# ଅଷ୍ଟାଶୀତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ମହାବାହୁ ବଭ୍ରୁବାହନ ପାଣ୍ଡବମାନଙ୍କର ସୁଶୋଭିତ ଗୃହରେ ପ୍ରବେଶ କରି ବିନୟ ପୂର୍ବକ ତାହାଙ୍କୁ ଅଭିବାଦନ କଲେ । ୧ ।

ତଦନନ୍ତର ଦେବୀ ଚିତ୍ରାଙ୍ଗଦା ଓ କୌରବ୍ୟବଧୂ ନାଗନନ୍ଦିନୀ ଉଲୂପୀ ଉଭୟେ ଏକତ୍ରିତ ହୋଇ ବିନୟ ସହକାରରେ ପୃଥା ଓ କୃଷ୍ଣା ଦ୍ରୌପଦୀଙ୍କୁ

Digitized by srujanika@gmail.com

ଅଭିବାଦନ କରି ସୁଭଦ୍ରା ପ୍ରଭୃତି ଅନ୍ୟାନ୍ୟ କୁରୁନାରୀଗଣଙ୍କୁ ନ୍ୟାୟାନୁସାରେ ଅଭିବାଦନ କଲେ ।

ତଦନନ୍ତର କୁନ୍ତୀ, ଦ୍ରୌପଦୀ, ସୁଭଦ୍ରା ଓ ଅନ୍ୟାନ୍ୟ କୁରୁନାରୀଗଣ ସେହି ଦୁହିଙ୍କୁ ବିବିଧ ରତ୍ନ ଦାନକଲେ । ସେହି ଦୁହେଁ ମହାମୂଲ୍ୟ ଶଯ୍ୟନ ଓ ଆସନରେ ଉପବେଶନ କଲେ । ୪ । ପାର୍ଥଙ୍କ ହିତ କାମନାରେ ସ୍ୱୟଂ କୁନ୍ତୀ ସେହି ଦୁହିଙ୍କୁ ସୁନ୍ଦରରୂପେ ସମାଦର କଲେ ।

ମହାତେଜା ରାଜା ବଭ୍ରୁବାହନ କୁରୁବୃଦ୍ଧଗଣକର୍ତ୍ତୃକ ସମ୍ମାନିତ ହୋଇ ମହୀପାଳ ଧୃତରାଷ୍ଟ୍ରଙ୍କୁ ଯଥାବିଧି ଅଭ୍ୟର୍ଥନା କଲେ ।

ତଦନନ୍ତର ରାଜା ଯୁଧିଷ୍ଠିର ଓ ଭୀମ ପ୍ରଭୃତି ପାଣ୍ଡବଗଣଙ୍କ ନିକଟକୁ ଗମନ କରି ସେମାନଙ୍କୁ ବିନୟ ପୂର୍ବକ ଅଭିବାଦନ କଲେ ।

ସେ ପାଣ୍ଡବଗଣକର୍ତ୍ତୃକ ପ୍ରେମସହିତ ଆଲିଙ୍ଗିତ ଓ ସମ୍ମାନିତ ହେଲେ । ୭ । ଏବଂ ମହାରଥ ପାଣ୍ଡବଗଣ ପରମ ପ୍ରୀତିଚିତ୍ତରେ ତାହାଙ୍କୁ ଧନ ଦାନ କଲେ ।

ତଦନନ୍ତର ମହୀପତି ବଭ୍ରୁବାହନ ପ୍ରଦ୍ୟୁମ୍ନଙ୍କ ସଦୃଶ ଚକ୍ର ଓ ଗଦାଧର କୃଷ୍ଣଙ୍କୁ ବିନୟ ସହିତ ଅଭ୍ୟର୍ଥନା କଲେ ।

କୃଷ୍ଣ ସେହି ରାଜା ବଭ୍ରୁବାହନଙ୍କୁ ଦିବ୍ୟ ଅଶ୍ୱଯୁକ୍ତ ହେମ ପରିଷ୍କୃତ ସୁଶୋଭିତ ମହାମୂଲ୍ୟ ରଥ ପ୍ରଦାନ କଲେ । ଧର୍ମରାଜ, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଏମାନେ ତାହାଙ୍କୁ ପୃଥକ୍‌ରୂପେ ସମ୍ମାନିତ କରି ବିପୁଳ ଅର୍ଥ ପ୍ରଦାନ କଲେ ।

ତଦନନ୍ତର ତୃତୀୟ ଦିବସରେ ମହାମୁନି ବାଗ୍ମୀ ସତ୍ୟବତୀନନ୍ଦନ ଯୁଧିଷ୍ଠିରଙ୍କ ନିକଟକୁ ଆଗମନ କରି ତାହାଙ୍କୁ କହିଲେ—ହେ କୌନ୍ତେୟ ! ତୁମ୍ଭେ ଆଜଠାରୁ ଯଜ୍ଞ କର । ଯଜ୍ଞୀୟ ମୁହୂର୍ତ୍ତ ଉପସ୍ଥିତ ହେବାରୁ ଯାଜକଗଣ ଯାଗ କରିବା ନିମିତ୍ତ ତୁମ୍ଭଙ୍କୁ ଆଦେଶ କରୁଅଛନ୍ତି ।

ହେ ରାଜେନ୍ଦ୍ର ! ପ୍ରଭୂତ କାଞ୍ଚନ ସଞ୍ଚିତ ହୋଇଥିବାରୁ ତୁମ୍ଭର ଏହି ଯଜ୍ଞ ବହୁ ସୁବର୍ଣ୍ଣାନ୍ୱିତ ବୋଲି ଖ୍ୟାତ ହୋଇଅଛି । ୧୩ । ଅତଏବ ଏହି ବିଭୁ

Digitized by srujanika@gmail.com

ସମ୍ପୂର୍ଣ୍ଣରୂପେ ସମ୍ପନ୍ନ ହେବ । ହେ ମହାରାଜ ! ଏହି ଯଜ୍ଞରେ ତିନଗୁଣ ଦକ୍ଷିଣା ପ୍ରଦାନ କର ଏବଂ ତିନଗୁଣ ଯଜ୍ଞକାରକ ବ୍ରାହ୍ମଣ ନିଯୁକ୍ତ କର । ହେ ନରନାଥ ! ତାହାହେଲେ ତୁମ୍ଭେ ଏହି ଯଜ୍ଞରେ ତିନଗୋଟି ଅଶ୍ୱମେଧର ଫଳ ଲାଭ କରି ଜ୍ଞାତିବଧଜନିତ ପାପରୁ ମୁକ୍ତ ହେବ । ୧୫ ।

ହେ କୁରୁନନ୍ଦନ ! ଅଶ୍ୱମେଧ ଯଜ୍ଞାନ୍ତରେ ସ୍ନାନ କଲେ ପରମ ପବିତ୍ରତା ଲାଭହୁଏ । ଅତଏବ ତୁମ୍ଭେ ପରମ ପବିତ୍ରତା ଲାଭକରିବ ।

ଅନନ୍ତର ତେଜସ୍ୱୀ ଧର୍ମାତ୍ମା ଧର୍ମରାଜ ଅମିତବୁଦ୍ଧି ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଅଶ୍ୱମେଧ ସିଦ୍ଧିନିମିତ୍ତ ଦୀକ୍ଷିତ ହେଲେ । ୧୭ ।

ତଦନନ୍ତର ମହାବାହୁ ରାଜା ଯୁଧିଷ୍ଠିର ଅଶ୍ୱମେଧ ମହାକ୍ରତୁକୁ ବହୁ-ଅନ୍ନ, ବହୁଦକ୍ଷିଣ, ସର୍ବକାମସମନ୍ୱିତ ଓ ସର୍ବଗୁଣାନ୍ୱିତ କଲେ । ୧୮ ।

ହେ ରାଜନ୍ ! ସେହି ଯଜ୍ଞରେ ସର୍ବଶାସ୍ତ୍ରବିଶାରଦ ବେଦପାରଗପୂର୍ଣ ଯାଜକଗଣ ପରିକ୍ରମ କରି ଉତ୍ତମ ଶିକ୍ଷା ଓ ବିଧି ଅନୁସାରେ ସମସ୍ତ କାର୍ଯ୍ୟ କଲେ । ୧୯ । ସେମାନଙ୍କର ସେହି ସେହି କାର୍ଯ୍ୟର କୌଣସି ଅଂଶ ସ୍ଖଳିତ ବା ଅକୃତ ହେଲନାହିଁ । ପ୍ରତ୍ୟୁତ ଦ୍ୱିଜବରମାନେ କ୍ରମ ଓ ଯୋଗ୍ୟତା ଅନୁସାରେ ସମସ୍ତ କାର୍ଯ୍ୟ କଲେ । ୨୦ ।

ହେ ରାଜନ୍ ! ଦ୍ୱିଜଗଣ ପ୍ରବର୍ଗ୍ୟ ଅର୍ଥାତ୍ ଅଶ୍ୱମେଧର ବିହିତ ଧର୍ମାଖ୍ୟ ରୁକ୍‌ସମୂହ ଏକତ୍ରିତ କରି ଅର୍ଥାତ୍ ବହ୍ନିସ୍ଥାପନ କରି ଯଥାବିଧାନରେ ସୋମବଲ୍ଲୀ କୁଟ୍ଟନ କଲେ । ୨୧ ।

ସୋମପାୟୀ ବ୍ରାହ୍ମଣଗଣ ଶାସ୍ତ୍ରାନୁସାରେ ସେହି ସୋମଲତାରୁ ରସବହିର୍ଗତ କରି ଆନୁପୂର୍ବ ପ୍ରାତଃସବନ କଲେ । ୨୨ ।

ସେହି ଯଜ୍ଞରେ ଯେଉଁ ସମସ୍ତ ଜନ ବିଦ୍ୟମାନ ଥିଲେ, ତନ୍ମଧ୍ୟରେ କେହି କୃପଣ, ଦରିଦ୍ର, କ୍ଷୁଧିତ, ଦୁଃଖିତ ଅବା ପ୍ରାକୃତ ଲୋକ ନଥିଲେ । ୨୩ । ଶତ୍ରୁନାଶନ ମହାତେଜା ଭୀମସେନ ରାଜାଙ୍କ ଆଦେଶାନୁସାରେ ସର୍ବଦା ଭୋଜନାର୍ଥିବ୍ୟକ୍ତିଗଣଙ୍କୁ ଭୋଜ୍ୟବସ୍ତୁ ପ୍ରଦାନ କଲେ । ୨୪ ।

Digitized by srujanika@gmail.com

ସମ୍ବର ଅର୍ଥାତ୍ ଇଷ୍ଟକସଂଚୟନାଖ୍ୟ ସ୍ଥଣ୍ଡିଲରଚନାକୁଶଳ ଯାଜକଗଣ ପ୍ରଭୃତିଙ୍କ ଶାସ୍ତ୍ରଦୃଷ୍ଟି ପୂର୍ବକ ସମସ୍ତ କାର୍ଯ୍ୟ କଲେ । ୨୫ ।

ଧୀମାନ୍ ଧର୍ମରାଜଙ୍କ ଯଜ୍ଞରେ ଷଡ଼ଙ୍ଗ ଅନଭିଜ୍ଞ ସଦସ୍ୟ ଏବଂ ବ୍ରତବିହୀନ ଓ ବାଦରେ ଅବିଚକ୍ଷଣ ଉପାଧ୍ୟାୟ ନଥିଲେ । ୨୬ ।

ହେ ଭରତଶ୍ରେଷ୍ଠ ! ତଦନନ୍ତର ଯୂପର ଉଚ୍ଛ୍ରାୟ ସମୟ ଉପସ୍ଥିତ ହେବାରୁ ଯାଜକଗଣ କୁରୁପତିଙ୍କ ଯଜ୍ଞରେ ଛଅଗୋଟି ବିଲ୍ୱ, ଛଅଗୋଟି ଖଦିର, ଛଅଗୋଟି ପଲାଶ, ଦୁଇଗୋଟି ଦେବଦାରୁ ଏବଂ ଗୋଟିଏ ଶ୍ଳେଷ୍ମାତ୍ମକ କାଷ୍ଠଦ୍ୱାରା ଯୂପ ନିର୍ମାଣ କରାଇଲେ । ୨୮ ।

ହେ ଭରତଶ୍ରେଷ୍ଠ ! ତଦନନ୍ତର ଭୀମ ଧର୍ମରାଜଙ୍କ ଆଦେଶାନୁସାରେ ଶୋଭାନିମିତ୍ତ କାଞ୍ଚନଦ୍ୱାରା ବହୁ ଯୂପ ନିର୍ମାଣ କରାଇଲେ । ୨୯ ।

ହେ ରାଜର୍ଷେ ! ସୁରଲୋକରେ ସପ୍ତର୍ଷିଗଣପରିବେଷ୍ଟିତ ମହେନ୍ଦ୍ରାନୁଗତ ଦେବଗଣଙ୍କ ସଦୃଶ ସେହି ସୁବର୍ଣ୍ଣମୟ ଯୂପସମୂହ ବିଚିତ୍ର ବସ୍ତ୍ରଦ୍ୱାରା ଶୋଭିତ ହୋଇ ଅତିଶୟ ବିରାଜିତ ହେଲା । ୩୦ ।

ସେହି ଯଜ୍ଞରେ ଅଗ୍ନିଚୟନ ନିମିତ୍ତ କାଞ୍ଚନମୟ ଇଷ୍ଟକାସମୂହ ବିରଚିତ ହେବାରୁ ଦକ୍ଷ ପ୍ରଜାପତିଙ୍କ ଅଗ୍ନିଚୟନ ସଦୃଶ ସେହି ଅଗ୍ନିଚୟନ ସବୁ ସୁଶୋଭିତ ହେଲା । ୩୧ ।

ସ୍ଥଣ୍ଡିଲଚତୁଷ୍ଟୟସମନ୍ୱିତ ସେହି ଯଜ୍ଞର ବେଦି ଅଷ୍ଟାଦଶ ହସ୍ତପରିମିତ, ରୁକ୍ମପକ୍ଷସମନ୍ୱିତ, ତ୍ରିକୋଣ ଓ ଗରୁଡ଼ାକାରରେ ବିରଚିତ ହେଲା ।

ତତ୍ପରେ ମନୀଷିଗଣକର୍ତ୍ତୃକ ଶାସ୍ତ୍ରାନୁସାରେ ଦେବଗଣଙ୍କ ଉଦ୍ଦେଶ୍ୟରେ ଯେଉଁ ସମସ୍ତ ପଶୁ, ପକ୍ଷୀ, ବୃଷ ଓ ଜଳଚର ନିଯୁକ୍ତ ହୋଇଥିଲେ, ଋତ୍ୱିକ୍‌ଗଣ ସେହି ଅଗ୍ନିଚୟନ କର୍ମରେ ସେହି ସମସ୍ତ ପଶୁ ପ୍ରଭୃତିଙ୍କୁ ଅଭିଯୋଗ କଲେ । ୩୪ । ମହାତ୍ମା କୁନ୍ତୀତନୟଙ୍କ ଯଜ୍ଞରେ ଶ୍ରେଷ୍ଠ ଅଶ୍ୱ ଓ ତାହାଛଡ଼ା ତିନଶତ ପଶୁ ଯୂପରେ ନିବଦ୍ଧ ହୋଇଥିଲେ । ୩୫ ।

ଯୁଧିଷ୍ଠିରଙ୍କ ଯଜ୍ଞରେ ଦେବତା ଓ ଋଷିଗଣଙ୍କ ସମାଗମ, ଗନ୍ଧର୍ବଗଣଙ୍କ ସଙ୍ଗୀତ ଓ ଅପ୍‌ସରାଗଣଙ୍କର ନୃତ୍ୟ ହେଉଥିବାରୁ ତାହା ଅତିଶୟ ଶୋଭା

Digitized by srujanika@gmail.com

ପାଉଥିଲା । ୩୬ । ସେହି ଯଜ୍ଞ କିଂପୁରୁଷସମୂହରେ ସମାକୀର୍ଣ୍ଣ, କିନ୍ନରକୁଳରେ ଉପଶୋଭିତ ଏବଂ ଚତୁର୍ଦିଗରେ ସିଦ୍ଧ ଓ ବିପ୍ରବୃନ୍ଦଙ୍କ ନିବାସକୁଳରେ ବେଷ୍ଟିତ ହୋଇଥିଲା । ୩୭ ।

ସେହି ସଭା ମଧ୍ୟରେ ସର୍ବଶାସ୍ତ୍ରପ୍ରଣେତା ଯଜ୍ଞସାଧନରେ କୁଶଳ ଦ୍ୱିଜବର ବ୍ୟାସ ଓ ତାହାଙ୍କ ଶିଷ୍ୟଗଣ ଉପବିଷ୍ଟ ହୋଇଥିଲେ । ୩୮ । ମହାଦ୍ୟୁତି ଗୀତକୋବିଦ ନାରଦ, ତୁମ୍ବୁରୁ, ବିଶ୍ୱାବସୁ, ଚିତ୍ରସେନ ଏବଂ ନୃତ୍ୟଗୀତବିଶାରଦ ଗନ୍ଧର୍ବଗଣ ଯଜ୍ଞକର୍ମାବସାନରେ ସେହି ବିପ୍ରବର୍ଗଙ୍କୁ ଆନନ୍ଦିତ କରାଉଥିଲେ । ୪୦ ।

---

# ଊନନବତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଯାଜକ ଦ୍ୱିଜାତିଗଣ ଅନ୍ୟାନ୍ୟ ରମଣୀୟ ପଶୁବୃନ୍ଦଙ୍କୁ ଯଥାବିଧାନରେ ସଂସ୍କାର କରି ଶାସ୍ତ୍ରାନୁସାରେ ସେହି ଅଶ୍ୱର ବଧ ସାଧନ କଲେ । ୧ ।

ତଦନନ୍ତର ଯାଜକଗଣ ଯଥାବିଧାନରେ ଅଶ୍ୱକୁ ବଧ କରି ମନ୍ତ୍ର, ଦ୍ରବ୍ୟ ଓ ଶ୍ରଦ୍ଧାସମନ୍ୱିତା ମନସ୍ୱିନୀ ଦ୍ରୁପଦନନ୍ଦିନୀଙ୍କୁ ଯଥାବିଧାନରେ ଉପବେଶନ କରାଇଲେ ।

ହେ ଭରତଶ୍ରେଷ୍ଠ ! ତଦନନ୍ତର ଦ୍ୱିଜାତିଗଣ ଶାସ୍ତ୍ରାନୁସାରେ ସେହି ଅଶ୍ୱର ବକ୍ଷଃସ୍ଥଳରୁ ମେଦ ଉତ୍ତୋଳନ କରି ଅବ୍ୟଗ୍ରଚିତ୍ତରେ ତାହା ଅଗ୍ନିରେ ସଂସ୍କାର କଲେ ଅର୍ଥାତ୍ ପାକ କଲେ ।

ସେତେବେଳେ ଧର୍ମରାଜ ଅନୁଜଗଣଙ୍କ ସହିତ ସର୍ବପାପବିନାଶକ ସେହି ମେଦର ଧୂମଯୁକ୍ତ ଗନ୍ଧକୁ ଶାସ୍ତ୍ରାନୁସାରେ ଆଘ୍ରାଣ କଲେ । ହେ ନରନାଥ ! ସେହି ଧୀର ଷୋଡ଼ଶସଂଖ୍ୟକ ଋତ୍ୱିକ୍‌ଗଣ ଉକ୍ତ ଅଶ୍ୱର ଅବଶିଷ୍ଟ ଅଙ୍ଗସମୂହକୁ ଅଗ୍ନିରେ ହୋମକଲେ ।

Digitized by srujanika@gmail.com

ଶିଷ୍ୟଗଣସମନ୍ୱିତ ଭଗବାନ୍ ବ୍ୟାସ ଶକ୍ରସମ ତେଜସ୍ୱୀ ଧର୍ମରାଜଙ୍କର ସେହି ଯଜ୍ଞକୁ ଏହିରୂପେ ସମାଧାନ କରି ବାକ୍ୟଦ୍ୱାରା ରାଜା ଯୁଧିଷ୍ଠିରଙ୍କୁ ବର୍ଦ୍ଧିତ କଲେ ।

ତଦନନ୍ତର ଯୁଧିଷ୍ଠିର ବ୍ରାହ୍ମଣଗଣଙ୍କୁ ଯଥାବିଧାନରେ ସହସ୍ର କୋଟି ନିଷ୍କ ଦାନକରି ବ୍ୟାସଙ୍କୁ ବସୁନ୍ଧରା ପ୍ରଦାନ କଲେ ।

ହେ ରାଜନ୍ ! ସତ୍ୟବତୀସୁତ ବ୍ୟାସ ବସୁନ୍ଧରା ପ୍ରତିଗ୍ରହ କରି ଭରତଶ୍ରେଷ୍ଠ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—ହେ ରାଜସତ୍ତମ ! ଆମ୍ଭେ ତୁମ୍ଭ ପ୍ରଦତ୍ତ ଏହି ବସୁଧା ପ୍ରତିଗ୍ରହ କରି ପୁନଶ୍ଚ ଏହା ତୁମ୍ଭ ହସ୍ତରେ ଅର୍ପଣ କରୁଅଛୁଁ । ୯ ।

ବ୍ରାହ୍ମଣଗଣ ଧନ ପ୍ରାପ୍ତହେଲେ ପରମ ପରିତୁଷ୍ଟ ହୁଅନ୍ତି । ଅତଏବ ସେମାନଙ୍କୁ ଏବଂ ଆମ୍ଭଙ୍କୁ ଏହାର ମୂଲ୍ୟ ପ୍ରଦାନ କର ।

ଅନୁଜଗଣସମନ୍ୱିତ ମହାମନା ଯୁଧିଷ୍ଠିର ମହାତ୍ମା ମହୀପାଳମାନଙ୍କ ସମକ୍ଷରେ ସେହି ବ୍ରାହ୍ମଣମାନଙ୍କୁ କହିଲେ ଯେ, ହେ ବିପ୍ରଗଣ ! ଅଶ୍ୱମେଧ ମହାଯଜ୍ଞରେ ପୃଥିବୀ ଦକ୍ଷିଣା ବିହିତ ଅଟେ, ଏହି ନିମିତ୍ତ ଆମ୍ଭେ ଅର୍ଜୁନକର୍ତ୍ତୃକ ଅର୍ଜିତା ଏହି ବସୁନ୍ଧରା ଋତ୍ୱିକ୍‌ମାନଙ୍କୁ ପ୍ରଦାନ କରୁଅଛୁଁ ।

ହେ ବିପ୍ରବରଗଣ ! ଆପଣମାନେ ଏହି ପୃଥିବୀକୁ ବିଭାଗ କରି ଗ୍ରହଣ କରିବା ହେଉନ୍ତୁ । ଆମ୍ଭେ ବନରେ ପ୍ରବେଶ କରିବୁଁ । ୧୨ ।

ଆମ୍ଭେ ଚତୁର୍ହୋତ୍ର ପ୍ରମାଣାନୁସାରେ ଏହି ପୃଥିବୀକୁ ଚାରିଭାଗରେ ବିଭକ୍ତ କରିଥିବାରୁ ଏହା ବ୍ରହ୍ମସ୍ୱ ହୋଇଅଛି । ପୁନଶ୍ଚ ଏହା ଗ୍ରହଣ କରିବାକୁ ଇଚ୍ଛା କରୁନାହୁଁ । ହେ ବିପ୍ରଗଣ ! ଆମ୍ଭେ ଯାହା କହିଲୁଁ, ଆମ୍ଭ ଭ୍ରାତୃଗଣଙ୍କର ମଧ୍ୟ ଏହିରୂପ ଅଭିପ୍ରାୟ ଅଟେ ।

ଯୁଧିଷ୍ଠିର ଏହିପ୍ରକାର କହିଲାରୁ, ତାହାଙ୍କ ଭ୍ରାତୃଗଣ ଓ ଦ୍ରୌପଦୀ ସମସ୍ତେ "ମହାରାଜ ଯାହା କହିଲେ, ଆମ୍ଭମାନଙ୍କର ମଧ୍ୟ ସେହି ଅଭିପ୍ରାୟ" ଏହି ପ୍ରକାର କହିଲେ । ଏହି ବାକ୍ୟ ଶ୍ରବଣ କରି ତେତେବେଳେ ସମସ୍ତଙ୍କ ଗାତ୍ର ରୋମାଞ୍ଚିତ ହେଲା ।

Digitized by srujanika@gmail.com

ହେ ଭାରତ ! ତଦନନ୍ତର ଅନ୍ତରୀକ୍ଷରେ 'ସାଧୁ ସାଧୁ' ଶବ୍ଦ ଏବଂ ସଭାମଧ୍ୟରେ ଦ୍ୱିଜଗଣଙ୍କର ପ୍ରଶଂସାବାଦ ପ୍ରାଦୁର୍ଭୂତ ହେଲା । ମୁନିବର କୃଷ୍ଣ-ଦ୍ୱୈପାୟନ ଏବଂ କୃଷ୍ଣ ବ୍ରାହ୍ମଣଗଣଙ୍କ ମଧ୍ୟରେ ଯୁଧିଷ୍ଠିରଙ୍କୁ ସମ୍ୟକ୍‌ରୂପେ ପୂଜାକରି ପୁନଶ୍ଚ କହିଲେ ଯେ, ହେ ଯୁଧିଷ୍ଠିର ! ଆମ୍ଭେ ତୁମ୍ଭଙ୍କୁ ଏହା ପୁନଶ୍ଚ ଦାନକଲୁଁ । ୧୭ । ତୁମ୍ଭେ ବ୍ରାହ୍ମଣଗଣଙ୍କୁ ପୃଥିବୀ ପରିବର୍ତ୍ତରେ ହିରଣ୍ୟ ଦାନ କର । ଏହି ବସୁନ୍ଧରା ତୁମ୍ଭର ହେଉ ।

ତଦନନ୍ତର ବାସୁଦେବ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ ଯେ, ହେ ରାଜନ୍ ! ଭଗବାନ୍ ବ୍ୟାସ ଯାହା କହିଲେ, ଆପଣ ତାହା କରିବା ହେଉନ୍ତୁ ।

କୁରୁପତି ଯୁଧିଷ୍ଠିର ବ୍ୟାସ ଓ କୃଷ୍ଣଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଭ୍ରାତୃଗଣଙ୍କ ସହିତ ପ୍ରସନ୍ନଚିତ୍ତରେ ଯଜ୍ଞର ତ୍ରିଗୁଣ କୋଟି ହିରଣ୍ୟ ଦକ୍ଷିଣା ବ୍ରାହ୍ମଣଗଣଙ୍କୁ ଦାନ କଲେ ।

ହେ ଭରତସତ୍ତମ ! ମରୁତ୍ତ ଯଜ୍ଞର ଅନୁକରଣକାରୀ କୁରୁରାଜ ଯାହା କଲେ, ଏହି ଲୋକ ମଧ୍ୟରେ ତାହାଙ୍କ ବ୍ୟତିରେକେ ଅନ୍ୟ କୌଣସି ନୃପତି ତାଦୃଶ କାର୍ଯ୍ୟ କରିବାକୁ ସମର୍ଥ ହେବେନାହିଁ ।

ମୁନିସତ୍ତମ ବିଦ୍ୱାନ୍ ବ୍ୟାସ ଯୁଧିଷ୍ଠିରଙ୍କ ପ୍ରଦତ୍ତ ରତ୍ନ ପ୍ରତିଗ୍ରହ କରି ଏବଂ ତାହା ଚାରିଭାଗରେ ବିଭକ୍ତ କରି ଋତ୍ୱିକ୍‌ଗଣଙ୍କୁ ପ୍ରଦାନ କଲେ । ୨୨ ।

ଯୁଧିଷ୍ଠିର ପୃଥିବୀର ମୂଲ୍ୟ ସ୍ୱରୂପ ସେହି ହିରଣ୍ୟ ଦାନ କରି ଭ୍ରାତୃଗଣଙ୍କ ସହିତ ନିଷ୍ପାପ ହୋଇ ସ୍ୱର୍ଗ ଜୟକରି ଅତିଶୟ ଆନନ୍ଦିତ ହେଲେ ।

ସେତେବେଳେ ଋତ୍ୱିକ୍‌ଗଣ ଅପରିସୀମ ଆନନ୍ଦ ଓ ଉତ୍ସାହ ସହିତ ଦ୍ୱିଜାତି ଯୁଧିଷ୍ଠିରଙ୍କ ନିକଟରୁ ସେହି ଅପର୍ଯ୍ୟାପ୍ତ ସୁବର୍ଣ୍ଣ ବିଭାଗକରି ନେଲେ, ଏବଂ ଯଜ୍ଞବାଟରେ ଯେଉଁ ସମସ୍ତ ସୁବର୍ଣ୍ଣମୟ ବିଭୂଷଣ, ତୋରଣ, ଯୂପ, ଘଟ, ପାତ୍ର ଓ ଇଷ୍ଟକା ବିଦ୍ୟମାନ ଥିଲା, ଦ୍ୱିଜଗଣ ଧର୍ମରାଜଙ୍କ ଆଦେଶାନୁସାରେ ସେହି ସମସ୍ତ ଦ୍ରବ୍ୟ ମଧ୍ୟ ବିଭାଗ କରି ନେଲେ । ୨୫ ।

ତଦନନ୍ତର କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ମ୍ଲେଚ୍ଛଗଣ ସେହି ଦ୍ୱିଜାତିମାନଙ୍କ ବସ୍ତୁ ଆହରଣ କରି ନେଲେ । ୨୬ ।

Digitized by srujanika@gmail.com

ତଦନନ୍ତର ସେହି ଧୀମାନ୍ ଧର୍ମରାଜ ବସୁଦ୍ୱାରା ବ୍ରାହ୍ମଣଗଣଙ୍କର ତୃପ୍ତିସାଧନ କଲେ । ସେମାନେ ସମସ୍ତେ ସମଧିକ ସନ୍ତୁଷ୍ଟ ହୋଇ ନିଜ ନିଜ ନିକେତନକୁ ଗମନ କଲେ । ୨୭ ।

ମହାଦ୍ୟୁତି ଭଗବାନ୍ ବ୍ୟାସ ମହାମୂଲ୍ୟ ହିରଣ୍ୟର ପରିମାଣାନୁସାରେ ସ୍ୱୀୟ ଅଂଶ କୁନ୍ତୀଙ୍କୁ ପ୍ରଦାନ କଲେ । ୨୮ । ପୃଥା ଶ୍ୱଶୁର ବ୍ୟାସଙ୍କ ନିକଟରୁ ପ୍ରୀତିଦାନ ପ୍ରାପ୍ତ ହୋଇ ପ୍ରୀତଚିତ୍ତରେ ସେହି ବସୁଦ୍ୱାରା ସୁମହତ୍ ପୁଣ୍ୟକର୍ମ କଲେ । ୨୯ ।

ରାଜା ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ଅବଭୃଥ ସ୍ନାନକୁ ଗମନ କରି ନିଷ୍ପାପ ହୋଇ ତ୍ରିଦଶଗଣଙ୍କଦ୍ୱାରା ପରିବେଷ୍ଟିତ ମହେନ୍ଦ୍ରଙ୍କ ସଦୃଶ ଶୋଭା ଧାରଣ କଲେ । ୩୦ ।

ହେ ମହାରାଜ ! ପାଣ୍ଡବଗଣ ଚତୁର୍ଦ୍ଦିଗରେ ମହୀପାଳସମୂହରେ ପରିବୃତହୋଇ ତାରାଗଣପରିବେଷ୍ଟିତ ଗ୍ରହଗଣଙ୍କ ସଦୃଶ ଶୋଭିତ ହେଲେ । ୩୧ ।

ତଦନନ୍ତର ଯୁଧିଷ୍ଠିର ମହୀପାଳଗଣଙ୍କୁ ବିବିଧ ରତ୍ନ, ହସ୍ତୀ, ଅଶ୍ୱ, ଅଳଂକାର, ସ୍ତ୍ରୀ, ବସ୍ତ୍ର ଓ କାଞ୍ଚନସମୂହ ପ୍ରଦାନ କଲେ । ୩୨ ।

ହେ ରାଜନ୍ ! ପୃଥାପୁତ୍ର ଯୁଧିଷ୍ଠିର ପାର୍ଥିବମଣ୍ଡଳଙ୍କୁ ସେହି ଅପର୍ଯ୍ୟାପ୍ତ ଧନ ବିସର୍ଜନ କରି ବିଶ୍ରବାନନ୍ଦନ କୁବେରଙ୍କ ସଦୃଶ ଶୋଭିତ ହେଲେ । ୩୩ ।

ତେତେବେଳେ ବୀରବର ରାଜା ବଭ୍ରୁବାହନଙ୍କୁ ନିକଟକୁ ଆନୟନ କରାଇ ତାହାଙ୍କୁ ବିପୁଳ ବିତ୍ତ ପ୍ରଦାନ କରି ଗୃହକୁ ପ୍ରସ୍ଥାନ କରାଇଲେ । ୩୪ । ଏବଂ ଭଗିନୀ ଦୁଃଶଳାଙ୍କ ପ୍ରୀତିନିମିତ୍ତ ତଦୀୟ ପୌତ୍ର ସେହି ବାଳକଙ୍କୁ ପ୍ରୀତିପୂର୍ବକ ସିନ୍ଧୁରାଜ୍ୟରେ ଅଭିଷିକ୍ତ କରାଇଲେ । ୩୫ ।

ବଶୀକୃତମନା କୁରୁରାଜ ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ସମାଗତ ସୁବିଭକ୍ତ ସୁପୂଜିତ ନୃପତିଗଣଙ୍କୁ ନିଜ ନିଜ ଗୃହକୁ ପ୍ରେରଣ କରି ମହାତ୍ମା ଗୋବିନ୍ଦ, ମହାବଳ ବଳଦେବ ଏବଂ ପ୍ରଦ୍ୟୁମ୍ନ ପ୍ରଭୃତି ବୃଷ୍ଣିବଂଶୀୟ ବୀରଗଣଙ୍କୁ ଯଥୋଚିତ ସତ୍କାର ପୂର୍ବକ ପ୍ରସ୍ଥାନ କରାଇଲେ ।

Digitized by srujanika@gmail.com

ହେ ଭରତର୍ଷଭ ! ଧୀମାନ୍ ଧର୍ମରାଜଙ୍କ ପ୍ରଭୂତ ଅନ୍ନ, ଧନ, ରତ୍ନ, ମୈରେୟ, ସୁରବାଞ୍ଛିତ ବସ୍ତୁସାଗର, ଘୃତର ପଙ୍କିଳ ହ୍ରଦ, ଅନ୍ନ-ପର୍ବତ ଓ ରସସମୂହର କର୍ଦ୍ଦମଯୁକ୍ତ ନଦୀସମନ୍ୱିତ ହୋଇ ସେହି ମହାଯଜ୍ଞ ଏହିରୂପେ ନିଷ୍ପନ୍ନ ହୋଇଥିଲା । ୪୦ । ଅଧିକନ୍ତୁ ସେହି ଯଜ୍ଞରେ ଏତେ ଖାଣ୍ଡବ ରାଗ ଖାଦ୍ୟ ଅର୍ଥାତ୍ ଶୁଣ୍ଠୀ, ପିପ୍ପଳୀ ଓ ଶର୍କରାଯୁକ୍ତ ମୁଦ୍ଗର ଖାଦ୍ୟସାମଗ୍ରୀ-ପ୍ରସ୍ତୁତ ଭୋଜନ ଦ୍ରବ୍ୟ ଓ ଯେତେ ପଶୁ ବଧ ହୋଇଥିଲା ଜନଗଣ ତାହା ପ୍ରମାଣ କରି ପାରିଲେ ନାହିଁ । ୪୧ ।

ସେତେବେଳେ ଯଜ୍ଞସ୍ଥଳ ମତ୍ତ ପ୍ରମତ୍ତ ମୁଦିତ ପୁରୁଷ ଓ ଯୁବତୀ ଜନରେ ସଙ୍କୁଳ ଏବଂ ମୃଦଙ୍ଗ ଓ ଶଙ୍ଖ ଶବ୍ଦରେ ଶବ୍ଦିତ ହେବାରୁ ତାହା ଅତିଶୟ ମନୋରମ ହୋଇଥିଲା । ୪୨ ।

ନାନା ଦେଶବାସୀ ପୁରୁଷଗଣ "ଦାନ କର, ଭୋଜନ କର" ଅନବରତ ଏହି ବାକ୍ୟ ଭିନ୍ନ ଅନ୍ୟ କିଛି କହୁନଥିଲେ ଏବଂ ସେହି ଯଜ୍ଞ ହୃଷ୍ଟପୁଷ୍ଟ ଜନ-ସମୂହରେ ସମାକୁଳ ହେବାରୁ ମହାନ୍ ଉତ୍ସବ ହୋଇଥିଲା । ଭରତଶ୍ରେଷ୍ଠ ଯୁଧିଷ୍ଠିର ଧନଧାରା ଓ ଅଭିଲଷିତ ରତ୍ନରୂପ ରସବର୍ଷଣ କରି କୃତାର୍ଥ ହୋଇ ପୁରମଧ୍ୟରେ ପ୍ରବେଶ କଲେ । ୪୪ ।

---

# ନବତିତମ ଅଧ୍ୟାୟ

ଜନମେଜୟ ପଚାରିଲେ—ଆମ୍ଭର ପିତାମହ ଧୀମାନ୍ ଧର୍ମରାଜଙ୍କ ଯଜ୍ଞରେ ଯାହା କିଛି ଅଦ୍ଭୁତ କାର୍ଯ୍ୟ ହୋଇଥିଲା, ଆପଣ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧ ।

ବୈଶମ୍ପାୟନ କହିଲେ—ହେ ରାଜେନ୍ଦ୍ର ! ପ୍ରଭୋ ! ଅଶ୍ୱମେଧ ମହାଯଜ୍ଞ ନିବୃତ୍ତ ହେବାରୁ ଯେଉଁ ଉତ୍ତମ ଆଶ୍ଚର୍ଯ୍ୟ ବ୍ୟାପାର ହୋଇଥିଲା, ଆପଣ ତାହା ଶ୍ରବଣ କରିବା ହେଉନ୍ତୁ । ୨ ।

ହେ ଭରତସତ୍ତମ ! ଦ୍ୱିଜବର ବିପ୍ରଗଣ, ଜ୍ଞାତି, ବନ୍ଧୁ, ସମ୍ବନ୍ଧୀ, ଦୀନ, ଅନ୍ଧ ଓ ସମସ୍ତ ଦରିଦ୍ରପାତ୍ରଗଣ ତର୍ପିତ ହେବାରୁ ଯୁଧିଷ୍ଠିରଙ୍କ ମହାଦାନ ସର୍ବତ୍ର ପ୍ରଚାରିତ ହେଲା ।

Digitized by srujanika@gmail.com

ହେ ଭରତ ! ତେତେବେଳେ ଯୁଧିଷ୍ଠିରଙ୍କ ମସ୍ତକୋପର ପୁଷ୍ପବୃଷ୍ଟି ପତିତ ହେଉଥିଲା ।

ହେ ଅନଘ ! ବସୁଧାଧିପ ! ସେଠାରେ ରୁକ୍ମପାର୍ଶ୍ୱ, ଅତ୍ୟନ୍ତ ପ୍ରଗଲ୍‌ଭ ବିଲବାସୀ ବୃହଦାକାର ନୀଲଲୋଚନ ଗୋଟିଏ ନକୁଳ ପ୍ରବିଷ୍ଟ ହୋଇ ବଜ୍ରାଶନି ଶବ୍ଦ ସମ ଧ୍ୱନି କଲା । ୫ ।

ସେହି ନକୁଳ ଥରେ ମାତ୍ର ତାଦୃଶ ଶବ୍ଦକରି ମୃଗ ଓ ପକ୍ଷିକୁଳଙ୍କୁ ତ୍ରାସିତ କରାଇ ମନୁଷ୍ୟବାକ୍ୟରେ କହିଲା ଯେ, ହେ ନରାଧିପଗଣ ! ଆପଣମାନେ ଏହି ଯେଉଁ ଅଶ୍ୱମେଧ ଯଜ୍ଞ କରିଅଛନ୍ତି, ଏହା କୁରୁକ୍ଷେତ୍ରନିବାସୀ ଏକ ଉଞ୍ଛବୃତ୍ତି ବଦାନ୍ୟ ବ୍ରାହ୍ମଣଙ୍କ ଏକ ପ୍ରସ୍ଥ ସକ୍ତୁ ପ୍ରଦାନର ସମାନ ହୋଇ ନାହିଁ । ୭ ।

ହେ ରାଜନ୍ ! ବ୍ରାହ୍ମଣଗଣ ନକୁଳର ତାଦୃଶ ବାକ୍ୟ ଶ୍ରବଣ କରି ସମସ୍ତେ ଅତିଶୟ ବିସ୍ମୟାବିଷ୍ଟ ହେଲେ । ୮ ।

ତଦନନ୍ତର ସେହି ସମସ୍ତ ଦ୍ୱିଜଗଣ ଏକତ୍ରିତ ହୋଇ ସେହି ନକୁଳକୁ ପଚାରିଲେ—ହେ ନକୁଳ ! ତୁମ୍ଭେ କେଉଁଠାରୁ ଆଗମନ କରି ଏହି ସାଧୁ ସମାଗମସମନ୍ୱିତ ଯଜ୍ଞସ୍ଥଳରେ ପ୍ରବିଷ୍ଟ ହେଲ ? ୯ ।

ତୁମ୍ଭର ବଳ, ବୁଦ୍ଧି, ଶାସ୍ତ୍ରଜ୍ଞାନ ଓ ଆଶ୍ରୟ କିପ୍ରକାର ଅଟେ ? ତୁମ୍ଭେ ଯେ ଆମ୍ଭମାନଙ୍କର ଯଜ୍ଞ ନିନ୍ଦାକଲ, ଆମ୍ଭେମାନେ ତୁମ୍ଭଙ୍କୁ କେଉଁପ୍ରକାର ଜାଣିପାରିବୁଁ ? ୧୦ ।

ଆମ୍ଭେମାନେ ଆଗମକୁ ଅତିକ୍ରମ ନକରି ଶାସ୍ତ୍ର ଓ ନ୍ୟାୟାନୁସାରେ ବିବିଧ ଯଜ୍ଞୀୟ ସାମଗ୍ରୀଦ୍ୱାରା ଏହି ଯଜ୍ଞକ୍ରିୟା ସମ୍ପୂର୍ଣ୍ଣରୂପେ ସମ୍ପାଦନ କରିଅଛୁଁ । ୧୧ ।

ଏହି ଯଜ୍ଞରେ ପୂଜନୀୟ ବ୍ୟକ୍ତିଗଣ ଶାସ୍ତ୍ରଦୃଷ୍ଟି ଅନୁସାରେ ଯଥାବିଧି ପୂଜିତ ହୋଇଅଛନ୍ତି । ମନ୍ତ୍ରୋଚ୍ଚାରଣ ପୂର୍ବକ ଆହୁତିଦ୍ୱାରା ହୁତାଶନରେ ହୁତ ଓ ବିନାମତ୍ସରରେ ଦେୟ ବସ୍ତୁସମୂହ ପ୍ରଦତ୍ତ ହୋଇଅଛି । ୧୨ ।

Digitized by srujanika@gmail.com

ବହୁବିଧ ଦାନଦ୍ୱାରା ବ୍ରାହ୍ମଣଗଣ, ନ୍ୟାୟଯୁଦ୍ଧଦ୍ୱାରା କ୍ଷତ୍ରିୟଗଣ, ଶ୍ରାଦ୍ଧଦ୍ୱାରା ପିତାମହଗଣ, ପାଳନଦ୍ୱାରା ବୈଶ୍ୟଗଣ, କାମଦ୍ୱାରା ବରସ୍ତ୍ରୀଗଣ, ଅନୁଗ୍ରହଦ୍ୱାରା ଶୂଦ୍ରଗଣ, ଦାନଶେଷଦ୍ୱାରା ଅନ୍ୟାନ୍ୟ ଜାତୀୟ ନରଗଣ ସନ୍ତୁଷ୍ଟ ହୋଇଅଛନ୍ତି । ୧୪ ।

ଆମ୍ଭମାନଙ୍କ ନୃପତିଙ୍କର ଶୁଦ୍ଧାଚାରଦ୍ୱାରା ଜ୍ଞାତି ଓ ସମ୍ବନ୍ଧୀଗଣ, ପବିତ୍ର ହବନୀୟ ବସ୍ତୁଦ୍ୱାରା ଦେବଗଣ ଏବଂ ରକ୍ଷଣଦ୍ୱାରା ଶରଣାଗତ ଜନଗଣ ସନ୍ତୁଷ୍ଟ ହୋଇଅଛନ୍ତି । ୧୫ ।

ବ୍ରାହ୍ମଣଗଣ ଇଚ୍ଛାପୂର୍ବକ ତୁମ୍ଭଙ୍କୁ ଏହି କଥା ପଚାରୁଅଛନ୍ତି ଯେ, ତୁମ୍ଭେ ଏହି ଯଜ୍ଞବିଷୟରେ ଦ୍ୱିଜାତିଗଣଙ୍କର ଯେଉଁ ପ୍ରକୃତ କାର୍ଯ୍ୟ ଶ୍ରବଣ ଓ ଦର୍ଶନ କରିଅଛ, ତାହା ସତ୍ୟକରି କହ । ୧୬ ।

ତୁମ୍ଭେ ପ୍ରାଜ୍ଞ ଓ ଦିବ୍ୟରୂପ ଧାରଣ ପୂର୍ବକ ବିପ୍ରଗଣଙ୍କ ନିକଟରେ ଉପସ୍ଥିତ ହୋଇଅଛ । ଅତଏବ ତୁମ୍ଭେ ଯାହା କହିବ, ତାହା ଆମ୍ଭମାନଙ୍କର ଶ୍ରଦ୍ଧେୟ । ସେହି କାରଣରୁ ସେହି ସମସ୍ତ ବିଷୟ ଆମ୍ଭମାନଙ୍କୁ କହିବା ହେଉନ୍ତୁ । ୧୭ ।

ବ୍ରାହ୍ମଣଗଣ ନକୁଳକୁ ଏହିପରି ପ୍ରଶ୍ନ କଲାରୁ ସେ ହାସ୍ୟକରି କହିଲା— ହେ ଦ୍ୱିଜଗଣ ! ଆମ୍ଭେ ଗର୍ବିତ ହୋଇ ଆପଣମାନଙ୍କ ନିକଟରେ କଦାପି ମିଥ୍ୟା ବାକ୍ୟ କହୁନାହୁଁ । ୧୮ ।

ହେ ଦ୍ୱିଜବରଗଣ ! ତୁମ୍ଭମାନଙ୍କ ଯଜ୍ଞ ସକ୍ତୁପ୍ରସ୍ଥର ସମାନ ନୁହେ, ଆମ୍ଭେ ଏହି ଯେଉଁ କଥା କହିଲୁଁ, ତାହା ତୁମ୍ଭେମାନେ ଶ୍ରବଣ କର । ପରନ୍ତୁ ଆମ୍ଭେ ସେହି କୁରୁକ୍ଷେତ୍ରନିବାସୀ ଉଞ୍ଛବୃତ୍ତି ବଦାନ୍ୟ ବ୍ରାହ୍ମଣଙ୍କର ଯେଉଁ ଅଦ୍ଭୁତ ଅତ୍ୟୁତ୍ତମ ସକ୍ତୁପ୍ରସ୍ଥ ଦେଖିଅଛୁଁ ଓ ଅନୁଭବ କରିଅଛୁଁ, ଯଦ୍ଦ୍ୱାରା ସେହି ବ୍ରାହ୍ମଣ ପତ୍ନୀ, ପୁତ୍ର ଓ ସ୍ନୁଷାଙ୍କ ସହିତ ସ୍ୱର୍ଗକୁ ଗମନ କରିଅଛନ୍ତି ଏବଂ ଯାହାଦ୍ୱାରା ଆମ୍ଭର ଅର୍ଦ୍ଧଶରୀର କାଞ୍ଚନୀକୃତ ହୋଇଅଛି, ତାହା ଆମ୍ଭର ଅବଶ୍ୟ ବକ୍ତବ୍ୟ ଅଟେ । ଅତଏବ ତୁମ୍ଭମାନଙ୍କୁ ବିସ୍ତାର ପୂର୍ବକ ଯଥାର୍ଥରୂପେ କହୁଅଛୁଁ । ତୁମ୍ଭେମାନେ ଅବ୍ୟଗ୍ରଚିତ୍ତ ହୋଇ ତାହା ଶ୍ରବଣ କର । ୨୨ ।

Digitized by srujanika@gmail.com

ନକୁଳ କହିଲା—ହେ ବିପ୍ରଗଣ ! ନ୍ୟାୟଲବ୍ଧ ସୂକ୍ଷ୍ମ ବିପ୍ରଦତ୍ତ ସେହି ସକ୍ତୁପ୍ରସ୍ଥର ଯେଉଁ ଉତ୍ତମ ଫଳ ହୋଇଅଛି, ଆମ୍ଭେ ତାହା ତୁମ୍ଭମାନଙ୍କୁ କହୁଅଛୁଁ । ତୁମ୍ଭେମାନେ ସ୍ଥିରମନା ହୋଇ ତାହା ଶ୍ରବଣ କର । ୨୩ ।

ଅସଂଖ୍ୟ ଧାର୍ମିକଗଣରେ ପରିବୃତ ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ କୌଣସି ବ୍ରାହ୍ମଣ କପୋତ ସଦୃଶ ଉଞ୍ଛବୃତ୍ତି ଅବଲମ୍ବନ ପୂର୍ବକ ବାସ କରିଥିଲେ । ୨୪ ।

ସେହି ଧର୍ମାତ୍ମା ଜିତେନ୍ଦ୍ରିୟ ସଦାଚାରସମ୍ପନ୍ନ ଦ୍ୱିଜବର ଭାର୍ଯ୍ୟା, ପୁତ୍ର ଓ ପୁତ୍ରବଧୂଙ୍କ ସହିତ ସର୍ବଦା ତପସ୍ୟା କରୁଥିଲେ ଏବଂ ଦିବସର ଷଷ୍ଠଭାଗରେ ସେମାନଙ୍କ ସହିତ ଭୋଜନ କରୁଥିଲେ ।

କୌଣସି କୌଣସି ସମୟରେ ଦିନରେ ଭକ୍ଷ୍ୟଲାଭ ବିଷୟରେ ସମର୍ଥ ହେଉନଥିଲେ । ସୁତରାଂ ସେହି ସେହି ଦିନ ସେ ପରିବାରବର୍ଗଙ୍କ ସହିତ ଉପବାସୀ ହୋଇ ପରଦିବସ ଷଷ୍ଠଭାଗରେ ଆହାର କରୁଥିଲେ ।

ଏହିରୂପେ କିୟତ୍ ଦିବସ ଅତୀତ ହେବାରୁ ସେଠାରେ ଦାରୁଣ ଦୁର୍ଭିକ୍ଷ ସମୁପସ୍ଥିତ ହେଲା । ସୁତରାଂ ଦିବସର ଷଷ୍ଠଭାଗରେ ଭକ୍ଷ୍ୟଦ୍ରବ୍ୟ ସଞ୍ଚିତ ନଥିବାରୁ ସେ ଅନ୍ୟ ସମୟରେ ଭୋଜନ କରୁଥିଲେ ।

ହେ ବିପ୍ରଗଣ ! ତେତେବେଳେ ଶସ୍ୟ ସମାବେଶ ନିଃଶେଷିତ ହେବାରୁ ତାହାଙ୍କର କିଛିମାତ୍ର ସଞ୍ଚିତ ବସ୍ତୁ ରହିଲା ନାହିଁ । ସେହି କାରଣରୁ ସେ ଦ୍ରବ୍ୟହୀନ ହେଲେ । ୨୮ ।

କୌଣସି କୌଣସି ସମୟରେ ତାହାଙ୍କର ଭୋଜନଦ୍ରବ୍ୟ ନଥିବାରୁ ସେ ସପରିବାରରେ ଅତ୍ୟନ୍ତ କ୍ଷୁଧିତ ହେଉଥିଲେ । ୨୯ । ସେହି ସମୟରେ ସେହି ତପସ୍ୱୀ ବିପ୍ର ଜ୍ୟେଷ୍ଠମାସରେ ପ୍ରଚଣ୍ଡ ପ୍ରତାପସମନ୍ୱିତ ମଧ୍ୟାହ୍ନ ସମୟରେ ଉଞ୍ଛବୃତ୍ତିଦ୍ୱାରା ଶସ୍ୟକଣ ସଞ୍ଚୟ କରି ଅତିଶୟ ତୃଷାର୍ତ୍ତ ଓ କ୍ଷୁଧାର୍ତ୍ତ ହେଲେ । ୩୦ ।

ସେ ଉଞ୍ଛ ଅର୍ଥାତ୍ ଶସ୍ୟକଣ ପ୍ରାପ୍ତ ନ ହେବାରୁ ପରିଜନଗଣଙ୍କ ସହିତ କ୍ଷୁଧାବିଷ୍ଟ ହେଲେ । ଅତିକଷ୍ଟରେ ସେହି ସମୟ ଯାପନ କରି ତଦନନ୍ତର ଦିବସର ଷଷ୍ଠଭାଗ ଶେଷ ହେବାରୁ ଯବପ୍ରସ୍ଥ ଉପାର୍ଜନ କଲେ । ୩୨ ।

Digitized by srujanika@gmail.com

ତାହାଙ୍କ ପରିବାରଗଣ ତଦ୍ଦର୍ଶନରେ ମହା ଆହ୍ଲାଦିତ ହୋଇ ସେହି ଯବଦ୍ୱାରା ସକ୍ତୁ ପ୍ରସ୍ତୁତ କଲେ । ଅନନ୍ତର ସେହି ବ୍ରାହ୍ମଣ ଓ ତାହାଙ୍କ ପରିବାରଗଣ ଜପ, ଆହ୍ନିକ କ୍ରିୟା ଓ ହୋମ କ୍ରିୟା ଯଥାବିଧାନରେ ସମ୍ପାଦନ ପୂର୍ବକ ପ୍ରତ୍ୟେକେ ଭାଗ ପରିମାଣରେ ସକ୍ତୁ ବିଭାଗ କରି ନେବା ସମୟରେ କୌଣସି ଦ୍ୱିଜ ଅତିଥି ହୋଇ 'ଭୋଜନ କରାଅ' ବୋଲି କହି ସେଠାରେ ଉପସ୍ଥିତ ହେଲେ । ୩୪ ।

ହେ ଦ୍ୱିଜସତ୍ତମଗଣ ! ସେହି ବିଶୁଦ୍ଧଚିତ୍ତ, ଦାନ୍ତ, ଶ୍ରଦ୍ଧା ଓ ଦମଶମ-ଗୁଣାନ୍ୱିତ, ଅସୂୟା-କ୍ରୋଧ-ମତ୍ସର-ମାନ ଓ ମଦବର୍ଜିତ, ଧର୍ମଜ୍ଞ, ସାଧୁ-ତପସ୍ୱିଗଣ ସେହି ସମାଗତ ଅତିଥିଙ୍କୁ ଦର୍ଶନ କରି ସାତିଶୟ ସନ୍ତୁଷ୍ଟଚିତ୍ତ ହୋଇ ତାହାଙ୍କୁ ଅଭିବାଦନ କରି ସ୍ୱାଗତ ଓ ବ୍ରହ୍ମଚର୍ଯ୍ୟ ସହିତ ଗୋତ୍ର ପ୍ରଭୃତି ପ୍ରଶ୍ନ କଲେ ।

ସେମାନେ ପରସ୍ପର ଗୋତ୍ରାଦି ପରିଜ୍ଞାତ ହୋଇ ସେହି କ୍ଷୁଧାର୍ତ୍ତ ଅତିଥିଙ୍କୁ କୁଟୀର ମଧ୍ୟରେ ପ୍ରବେଶ କରାଇ କହିଲେ—ହେ ଅନଘ ! ଆପଣଙ୍କ ନିମିତ୍ତ ଆମ୍ଭଦ୍ୱାରା ପ୍ରଦତ୍ତ ଏହି ପାଦ୍ୟ, ଅର୍ଘ୍ୟ, ଆସନ ଏବଂ ନ୍ୟାୟୋପାର୍ଜିତ ପବିତ୍ର ସକ୍ତୁ ପ୍ରସ୍ତୁତ ହୋଇଅଛି ।

ହେ ପ୍ରଭୋ ! ଦ୍ୱିଜବର ! ଆପଣ ଅନୁଗ୍ରହପୂର୍ବକ ଏହାସବୁ ପ୍ରତିଗ୍ରହ କରିବା ହେଉନ୍ତୁ । ଆପଣଙ୍କର ମଙ୍ଗଳ ହେଉ । ୩୯ ।

ହେ ରାଜେନ୍ଦ୍ର ! ସେହି ଦ୍ୱିଜବର ତପୋଧନ ବ୍ରାହ୍ମଣକର୍ତ୍ତୃକ ଏହିରୂପେ ଉକ୍ତ ହୋଇ କୁଡ଼ବ ପରିମିତ ସକ୍ତୁ ପ୍ରତିଗ୍ରହ ପୂର୍ବକ ଭୋଜନ କରି ତୁଷ୍ଟିଲାଭ କଲେ ନାହିଁ । ୪୦ ।

ସେହି ଉଞ୍ଛବୃତ୍ତି ବ୍ରାହ୍ମଣ ଅତିଥିଙ୍କୁ କ୍ଷୁଧାର୍ତ୍ତ ହୋଇଥିବାର ଦର୍ଶନ କରି ତାହାଙ୍କ ତୁଷ୍ଟି ନିମିତ୍ତ ପୁନଶ୍ଚ ଆହାର ଅନ୍ୱେଷଣ କଲେ । ବ୍ରାହ୍ମଣ ଅତିଥିଙ୍କ ଆହାର ନିମିତ୍ତ ଚିନ୍ତିତ ହେବାରୁ ତାହାଙ୍କ ଭାର୍ଯ୍ୟା ତାହାଙ୍କୁ କହିଲେ ଯେ, ହେ ନାଥ ! ଆପଣ ଆମ୍ଭ ଭାଗ ଅତିଥିଙ୍କୁ ପ୍ରଦାନ କରିବା ହେଉନ୍ତୁ । ତାହାହେଲେ ଏହି ଦ୍ୱିଜବର ପରିତୁଷ୍ଟ ହୋଇ ଅଭିଲଷିତ ପ୍ରଦେଶକୁ ଗମନ କରିବେ । ୪୨ ।

Digitized by srujanika@gmail.com

ଦ୍ୱିଜସତ୍ତମ ସାଧ୍ୱୀ ଭାର୍ଯ୍ୟାଙ୍କର ଏହି କଥା ଶ୍ରବଣ କରି ତାହାଙ୍କୁ କ୍ଷୁଧାବିଷ୍ଟ ହୋଇଥିବାର ଜାଣିପାରି ସେହି ସକ୍ତୁ ଗ୍ରହଣ ବିଷୟରେ ଅଭିନନ୍ଦନ କଲେ ନାହିଁ । ୪୩ ।

ତେତେବେଳେ ସେହି ବିଦ୍ୱାନ୍ ବିପ୍ରବର ନିଜ ଅନୁମାନ ଅନୁସାରେ ସେହି ବୃଦ୍ଧା ତପସ୍ୱିନୀ ପରିଶ୍ରାନ୍ତା ତ୍ୱକ୍ ଓ ଅସ୍ଥିଭୂତା କମ୍ପାନ୍ୱିତା ଭାର୍ଯ୍ୟାଙ୍କୁ କ୍ଷୁଧାତୁରା ଜାଣି ତାହାଙ୍କୁ କହିଲେ ଯେ, ହେ ଶୋଭନାଙ୍ଗି ! କୀଟପତଙ୍ଗ ଓ କୁରଙ୍ଗ ଜାତିମାନେ ନିଜ ନିଜ ରମଣୀଗଣଙ୍କୁ ରକ୍ଷଣ ଓ ପୋଷଣ କରନ୍ତି । ଅତଏବ ତୁମ୍ଭର ଏପ୍ରକାର କହିବାର ଉଚିତ ନୁହେ । ଦେଖ, ପୁରୁଷ ପତ୍ନୀ-କର୍ତ୍ତୃକ ଅନୁକମ୍ପମାନ୍ୟ, ପୁଷ୍ଟ ଓ ରକ୍ଷିତ ହୁଅନ୍ତି । ୪୭ ।

ଧର୍ମ, ଅର୍ଥ, କାମ, ସାଂସାରିକ କାର୍ଯ୍ୟସମୂହ, ଶୁଶ୍ରୂଷା, କୁଳସନ୍ତତି ଏବଂ ଆପଣାର ଓ ପିତୃଗଣଙ୍କ ଧର୍ମ ଏହାସବୁ ପତ୍ନୀଙ୍କ ଅଧୀନ ।

ଯେଉଁ ନର କାର୍ଯ୍ୟଅନଭିଜ୍ଞ, ଭାର୍ଯ୍ୟାଙ୍କର ରକ୍ଷଣରେ ଅକ୍ଷମ, ସେହି ଜନ ମହତ୍ ଅଯଶ ଓ ନରକ ପ୍ରାପ୍ତ ହୁଅନ୍ତି, ଏବଂ ପ୍ରପାପ୍ତ ଯଶରୁ ବଞ୍ଚିତ ହୋଇ ଉତ୍କୃଷ୍ଟ ଲୋକସମୂହ ପ୍ରାପ୍ତ ହୁଅନ୍ତି ନାହିଁ ।

ତପସ୍ୱିନୀ ବ୍ରାହ୍ମଣୀ ପତିଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ—ହେ ଦ୍ୱିଜ ! ଆମ୍ଭ ଦୁହିଙ୍କର ଧର୍ମ ଓ ଅର୍ଥ ଏହି ଉଭୟ ସମାନ ଅଟେ । ୪୯ । ଅତଏବ ଆପଣ ଆମ୍ଭଠାରେ ପ୍ରସନ୍ନ ହୋଇ ଏହି ଚତୁର୍ଥ ଭାଗ ସକ୍ତୁପ୍ରସ୍ଥ ପ୍ରତିଗ୍ରହ କରିବା ହେଉନ୍ତୁ ।

ହେ ଦ୍ୱିଜସତ୍ତମ ! ସତ୍ୟ, ରତି, ଧର୍ମ ଓ ସ୍ୱର୍ଗ ଗୁଣଦ୍ୱାରା ନିର୍ଜିତ ହୁଅନ୍ତି । ୫୦ । ସ୍ତ୍ରୀମାନଙ୍କର ପତି ସର୍ବବିଷୟ ସାଧନ କରନ୍ତି । ସେହି କାରଣରୁ ସେ ସର୍ବଦା ଅଭିଳଷିତ । ମାତାଙ୍କର ରକ୍ତ ଏବଂ ପିତାଙ୍କ ବୀର୍ଯ୍ୟରେ ସମ୍ଭୂତ ସ୍ତ୍ରୀଗଣଙ୍କର ପତି କେବଳ ପରମଦୈବତ ଅଟନ୍ତି । ଭର୍ତ୍ତା ପ୍ରସନ୍ନ ଥିଲେ, ସ୍ତ୍ରୀଗଣଙ୍କର ରତି ଓ ପୁତ୍ର ସ୍ୱରୂପ ଫଳ ଉତ୍ପନ୍ନ ହୁଏ । ଆପଣ ମୋତେ ପାଳନ କରୁଅଛନ୍ତି ବୋଲି ପତି, ଏବଂ ଭରଣ କରନ୍ତି ବୋଲି ଭର୍ତ୍ତା ଅଟନ୍ତି । ୫୨ । ପୁତ୍ରଦାନ କରିଥିବା ହେତୁରୁ ବରଦ ହୋଇଅଛନ୍ତି । ଅତଏବ ଆପଣ ଆମ୍ଭର ସକ୍ତୁ ପ୍ରଦାନ କରିବା ହେଉନ୍ତୁ । ୫୩ ।

Digitized by srujanika@gmail.com

ଆପଣ ଜରାପରଗତ, କ୍ଷୁଧାର୍ତ୍ତ, ଅତିଶୟ ଦୁର୍ବଳ, ବୃଦ୍ଧ ଓ ଉପବାସ ଦ୍ୱାରା ପରିଶ୍ରାନ୍ତ ହୋଇ ଅତ୍ୟନ୍ତ କୃଶ ହୋଇଅଛନ୍ତି ।

ତପସ୍ୱୀ ବ୍ରାହ୍ମଣପତ୍ନୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସକ୍ତୁ ପ୍ରତିଗ୍ରହ ପୂର୍ବକ ଅତିଥିଙ୍କୁ କହିଲେ—ହେ ଦ୍ୱିଜ ! ସଜ୍ଜନବର ' ପୁନଶ୍ଚ ଆପଣ ଏହି ସକ୍ତୁ ପ୍ରତିଗ୍ରହ କରିବା ହେଉନ୍ତୁ ।

ଅତିଥି ବ୍ରାହ୍ମଣ ପୁନଶ୍ଚ ପ୍ରତିଗ୍ରହ ପୂର୍ବକ ତାହା ଭକ୍ଷଣ କରି ତୁଷ୍ଟ ନ ହେବାରୁ ଉଞ୍ଛବୃତ୍ତି ବ୍ରାହ୍ମଣ ତାହା ଦର୍ଶନକରି ଅତିଶୟ ଚିନ୍ତିତ ହେଲେ । ୫୫ ।

ତଦନନ୍ତର ପୁତ୍ର କହିଲେ, ହେ ସତ୍ତମ ! ଆପଣ ଆମ୍ଭର ଏହି ସକ୍ତୁ ନେଇ ବିପ୍ରଙ୍କୁ ପ୍ରଦାନ କରିବା ହେଉନ୍ତୁ । ଏହା ସୁକୃତ ବୋଲି ଜାଣି ଆମ୍ଭେ ଦାନ କଲୁଁ । ୫୬ ।

ବିଶେଷତଃ ସର୍ବଦା ଯତ୍ନ ସହିତ ଆପଣଙ୍କୁ ପ୍ରତିପାଳନ କରିବାର ଆମ୍ଭର ଅବଶ୍ୟ କର୍ତ୍ତବ୍ୟକର୍ମ ଅଟେ । କାରଣ, ବୃଦ୍ଧ ପିତାଙ୍କ ପ୍ରତିପାଳନ କେବଳ ସାଧୁମାନଙ୍କର ଅଭିଲଷିତ ।

ହେ ବିପ୍ରର୍ଷେ ! ତ୍ରିଲୋକମଧ୍ୟରେ ଏହି ଶ୍ରୁତି ନିତ୍ୟ ବିଦ୍ୟମାନ ଅଛି ଯେ ବୃଦ୍ଧ ପିତାଙ୍କ ପ୍ରତିପାଳନ କେବଳ ସାଧୁମାନଙ୍କର ଅଭିଲଷିତ । ୫୭ ।

ହେ ବିପ୍ରର୍ଷେ ! ତ୍ରିଲୋକ ମଧ୍ୟରେ ଏହି ଶ୍ରୁତି ନିତ୍ୟ ବିଦ୍ୟମାନ ଅଛି ଯେ ବୃଦ୍ଧ ପିତାଙ୍କ ପ୍ରତିପାଳନ ପୁତ୍ରଙ୍କର ପରମ ପ୍ରୟୋଜନ ଅଟେ । ୫୮ ।

ଆପଣ କେବଳ ପ୍ରାଣଧାରଣଦ୍ୱାରା ତପସ୍ୟା କରିପାରନ୍ତି । ଦେହିମାନଙ୍କ ଦେହମଧ୍ୟରେ ପ୍ରାଣ ପରମଧର୍ମ ରୂପେ ଅବସ୍ଥାନ କରେ । ୫୯ ।

ପିତା କହିଲେ—ହେ ପୁତ୍ର ! ତୁମ୍ଭେ ସହସ୍ରବର୍ଷୀୟ ହେଲେ ସୁଦ୍ଧା ଆମ୍ଭେ ତୁମ୍ଭଙ୍କୁ ବାଳକ ବୋଲି ବୋଧ କରୁଅଛୁଁ । ପିତା ପୁତ୍ରଉତ୍ପାଦନ କରି ସେହି ପୁତ୍ରଙ୍କ ହେତୁରୁ କୃତକୃତ୍ୟ ହୁଅନ୍ତି । ୬୦ ।

ହେ ବତ୍ସ ! ଆମ୍ଭେ ଜାଣୁଁ ଯେ, ବାଳକମାନଙ୍କର କ୍ଷୁଧା ବଳବତୀ ଅଟେ । ଆମ୍ଭେ ବୃଦ୍ଧ, ସୁତରାଂ କ୍ଷୁଧା ଧାରଣ କରି ପାରିବୁଁ । ହେ ପୁତ୍ର !

Digitized by srujanika@gmail.com

ଆମ୍ଭର ବୟସ ଜୀର୍ଣ୍ଣ ହୋଇଥିବାରୁ ଆମ୍ଭଙ୍କୁ କ୍ଷୁଧା ବାଧା ଦେଇ ପାରିବନାହିଁ । ଆମ୍ଭେ ଦୀର୍ଘକାଳ ହେଲା ତପସ୍ୟା କରିଅଛୁଁ । ଅତଏବ ଆମ୍ଭେ ମରଣଠାରୁ ଭୟପ୍ରାପ୍ତ ହେଉନାହୁଁ । ୭୨ ।

ପୁତ୍ର କହିଲେ—ହେ ତାତ ! ଏହିପରି ଶ୍ରୁତି ଅଛି ଯେ, ପୁତ୍ର ପିତାଙ୍କୁ ପୁନ୍ନାମ ନରକରୁ ପରିତ୍ରାଣ କରନ୍ତି । ଆମ୍ଭେ ଆପଣଙ୍କ ପୁତ୍ର, ଅତଏବ ଆପଣଙ୍କୁ ରକ୍ଷା କରିବାର ଆମ୍ଭର ସର୍ବତୋଭାବରେ କର୍ତ୍ତବ୍ୟ । ଆମ୍ଭେ ଆପଣଙ୍କର ଆତ୍ମାସ୍ୱରୂପ, ସୁତରାଂ ଆମ୍ଭଦ୍ୱାରା ଆତ୍ମରକ୍ଷା କଲେ ଆପଣଙ୍କର ଆତ୍ମାଦ୍ୱାରା ଆତ୍ମରକ୍ଷା କରିବାର ହେବ । ଅତଏବ ଆପଣ ଅଚିରାତ୍ ଏହି ସକ୍ତୁ ନେଇ ଅତିଥିଙ୍କୁ ପ୍ରଦାନ ପୂର୍ବକ ଆତ୍ମରକ୍ଷା କରିବା ହେଉନ୍ତୁ । ୭୩ ।

ପିତା କହିଲେ—ହେ ବତ୍ସ ! ଆମ୍ଭେ ତୁମ୍ଭଙ୍କୁ ନାନା ପ୍ରକାର ପରୀକ୍ଷା କରିଅଛୁଁ । ତୁମ୍ଭେ ରୂପଶୀଳ ଓ ଦମଗୁଣଦ୍ୱାରା ଆମ୍ଭ ସଦୃଶ ଅଟ । ଅତଏବ ତୁମ୍ଭର ସକ୍ତୁ ଗ୍ରହଣ କଲୁଁ । ୭୪ । ଦ୍ୱିଜସତ୍ତମ ଏହି କଥା କହି ପ୍ରସନ୍ନଚିତ୍ତରେ ସହାସ୍ୟବଦନରେ ସକ୍ତୁ ଗ୍ରହଣ ପୂର୍ବକ ତାହା ଅତିଥିଙ୍କୁ ପ୍ରଦାନକଲେ । ପରନ୍ତୁ ଅତିଥି, ସେହି ସକ୍ତୁ ଭୋଜନ କରି ସନ୍ତୁଷ୍ଟ ନ ହେବାରୁ ସେହି ଧର୍ମାତ୍ମା ଉଞ୍ଛବୃତ୍ତି ବ୍ରାହ୍ମଣ ଅତି ଲଜ୍ଜିତ ହେଲେ । ୭୬ ।

ସାଧ୍ୱୀ ପୁତ୍ରବଧୂ ବ୍ରାହ୍ମଣଙ୍କ ପ୍ରିୟ କାମନାରେ ସ୍ୱୀୟ ସକ୍ତୁ ଗ୍ରହଣ ପୂର୍ବକ ହୃଷ୍ଟଚିତ୍ତରେ ଶ୍ୱଶୁରଙ୍କୁ କହିଲେ—ହେ ବିପ୍ର ! ଆପଣଙ୍କ ସନ୍ତାନଙ୍କଠାରୁ ଆମ୍ଭର ସନ୍ତାନ ହେବ । ଅତଏବ ଆପଣ ଆମ୍ଭର ଏହି ସକ୍ତୁ ଗ୍ରହଣ ପୂର୍ବକ ଅତିଥିଙ୍କୁ ପ୍ରଦାନ କରିବା ହେଉନ୍ତୁ । ୭୮ ।

ଆପଣଙ୍କ ପ୍ରସାଦରେ ଆମ୍ଭର ସମସ୍ତ ବିଷୟ ଅକ୍ଷୟ ହେଉ । ନରଗଣ ଯେଉଁ ସ୍ଥାନମାନଙ୍କୁ ଗମନ କରି ଶୋକରୁ ବିମୁକ୍ତ ହୁଅନ୍ତି, ସେହି ସ୍ଥାନସବୁ ପୌତ୍ରଦ୍ୱାରା ଲଭ ହୁଏ । ୭୯ ।

ଯେଉଁପରି ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ଏବଂ ଦକ୍ଷିଣାଗ୍ନି, ଗାର୍ହପତ୍ୟ ଓ ଆହବନୀୟ ଏହି ଅଗ୍ନିତ୍ରୟ ଅକ୍ଷୟ ସ୍ୱର୍ଗଜନକ । ପୁତ୍ର, ପୌତ୍ର ଓ ପ୍ରପୌତ୍ର ଏହି ତିନ ବ୍ୟକ୍ତି ମଧ୍ୟ ତତ୍ସଦୃଶ ଅଟନ୍ତି ।

Digitized by srujanika@gmail.com

ପୁରୁଷ ପୁତ୍ରଦ୍ୱାରା ପିତୃଗଣଙ୍କ ଋଣରୁ ମୁକ୍ତିଲାଭ କରନ୍ତି । ପୁତ୍ର ଓ ପୌତ୍ରଦ୍ୱାରା ଉତ୍ତମ ଲୋକସମୂହ ପ୍ରାପ୍ତ ହୁଅନ୍ତି । ୭୧ ।

ଶ୍ୱଶୁର କହିଲେ—ହେ ସୁବ୍ରତାଗ୍ରେ ! ତୁମ୍ଭର ସମସ୍ତ ଅଙ୍ଗ ବାତାତପଦ୍ୱାରା ବିଶୀର୍ଣ୍ଣ ଓ ବିବର୍ଣ୍ଣ ହୋଇଅଛି, ଏବଂ ତୁମ୍ଭେ କ୍ଷୁଧାକର୍ଷିତା ଓ ହତଚେତନ ହୋଇଅଛ । ଆମ୍ଭେ ତୁମ୍ଭଙ୍କୁ ଏତାଦୃଶ ଦର୍ଶନ କରି ଧର୍ମୋପଘାତକ ହୋଇ କେଉଁରୂପେ ତୁମ୍ଭର ସକ୍ତୁସବୁ ଗ୍ରହଣ କରିବୁଁ ? ହେ କଲ୍ୟାଣି ! ହେ କଲ୍ୟାଣଚରିତେ ! ତୁମ୍ଭେ ଆମ୍ଭଙ୍କୁ ଏତାଦୃଶ ବାକ୍ୟ କହିନା । ୭୩ ।

ହେ ଶୁଭେ ! ତୁମ୍ଭେ ବ୍ରତବତୀ, ଶୌଚଶୀଳା, ତପସ୍ୟା ଓ କୃଚ୍ଛ୍ରବୃତ୍ତି-ଶାଳିନୀ ଅଟ । ଅତଏବ ଅଦ୍ୟ ଦିବସର ଷଷ୍ଠଭାଗରେ ତୁମ୍ଭେ ନିରାହାରରେ ରହିବାର ଆମ୍ଭେ କେଉଁପରି ଦର୍ଶନ କରିବୁଁ । ୭୪ ।

ହେ ବାନ୍ଧବନନ୍ଦନ ! ତୁମ୍ଭେ ବାଳା ନାରୀ । କ୍ଷୁଧାର ବିଶେଷ ଉଦ୍‌ବେଗ ହେବାରୁ ତୁମ୍ଭର ଅତିଶୟ କଷ୍ଟ ହେଉଅଛି । ଅତଏବ ସମ୍ପ୍ରତି ତୁମ୍ଭଙ୍କୁ ରକ୍ଷା କରିବାର ଆମ୍ଭର ଅବଶ୍ୟ କର୍ତ୍ତବ୍ୟକର୍ମ ଅଟେ । କାରଣ, ତୁମ୍ଭେ ଉପବାସରେ ପରିଶ୍ରାନ୍ତା ହୋଇଅଛ । ୭୫ ।

ବଧୂ କହିଲେ—ହେ ପ୍ରଭୋ ! ଆପଣ ଆମ୍ଭ ଗୁରୁଙ୍କର ଗୁରୁ, ସୁତରାଂ ପରମଦୈବତ ସ୍ୱରୂପ ଅଟନ୍ତି । ଅତଏବ ଆପଣ ଆମ୍ଭର ସକ୍ତୁ ଗ୍ରହଣ କରିବା ହେଉନ୍ତୁ । ୭୬ ।

ହେ ବିପ୍ର ! ଆମ୍ଭର ଦେହ, ପ୍ରାଣ ତ ଧର୍ମଗୁରୁଙ୍କ ଶୁଶ୍ରୂଷା ନିମିତ୍ତ ପ୍ରସ୍ତୁତ ହୋଇଅଛି । ଅତଏବ ଆମ୍ଭେ ଆପଣଙ୍କ ପ୍ରସାଦରେ ଶୁଭପ୍ରଦ ଲୋକସମୂହ ଗ୍ରହଣ କରିବୁଁ । ୭୭ ।

ହେ ଦ୍ୱିଜ ! ଆପଣ ଆମ୍ଭଙ୍କୁ ଦୃଢ଼ଭକ୍ତା ବୋଲି ମନେକରି ଅଥବା 'ଏହି ବଧୂଟି ଆମ୍ଭର' ଏହି ବିବେଚନା କରି ଆମ୍ଭର ସକ୍ତୁ ଗ୍ରହଣ କରିବା ହେଉନ୍ତୁ । ୭୮ ।

ଶ୍ୱଶୁର କହିଲେ—ହେ ସାଧ୍ୱି ! ତୁମ୍ଭେ ଧର୍ମପରାୟଣା ଓ ବ୍ରତଯୁକ୍ତା ହୋଇ ଗୁରୁବୃତ୍ତି ଅବେକ୍ଷଣ କରୁଅଛ ବୋଲି ଏହି ଶୀଳବୃତ୍ତିଦ୍ୱାରା ଅତିଶୟ

Digitized by srujanika@gmail.com

ଶୋଭା ପାଉଅଛ । ଅତଏବ ତୁମ୍ଭେ ବଞ୍ଚନାର ପାତ୍ରୀ ନୁହ । ତୁମ୍ଭର ସକ୍ତୁ ଗ୍ରହଣ କରିବୁଁ । ପରନ୍ତୁ ଅଦ୍ୟାବଧି ଆମ୍ଭେ ତୁମ୍ଭଙ୍କୁ ଧର୍ମଶୀଳା ସ୍ତ୍ରୀମାନଙ୍କ ମଧ୍ୟରେ ପ୍ରଧାନ ବୋଲି ଗଣନା କଲୁଁ । ୮୦ । ସେ ଏହି କଥା କହି ତାହାଙ୍କ ସକ୍ତୁସମୂହ ଗ୍ରହଣ ପୂର୍ବକ ଅତିଥିଙ୍କୁ ପ୍ରଦାନ କଲେ ।

ତଦନନ୍ତର ଅତିଥି ସେହି ବିପ୍ରବର ସାଧୁ ମହାତ୍ମା ବ୍ରାହ୍ମଣଙ୍କ ପ୍ରତି ସନ୍ତୁଷ୍ଟ ହେଲେ । ୮୧ । ସେ ପ୍ରୀତଚିତ୍ତ ହୋଇ ସେହି ଦ୍ୱିଜବରଙ୍କୁ କହିଲେ—

ତେତେବେଳେ ପୁରୁଷବିଗ୍ରହ ଧର୍ମସ୍ୱରୂପ ସେହି ବାଗ୍ମୀ ଦ୍ୱିଜବର ଅତିଥି ବ୍ରାହ୍ମଣଙ୍କୁ କହିଲେ—ହେ ଦ୍ୱିଜସତ୍ତମ ! ଆମ୍ଭେ ଆପଣଙ୍କର ନ୍ୟାଯ୍ୟୋପାର୍ଜିତ ଯଥାଶକ୍ତିବିସୃଷ୍ଟ ବିଶୁଦ୍ଧ ଦାନଦ୍ୱାରା ପରମ ପରିତୋଷ ପ୍ରାପ୍ତହେଲୁଁ । ସୁରଲୋକରେ ସ୍ୱର୍ଗବାସିଗଣ ଆପଣଙ୍କର ଏହି ଦାନକୁ ଆଶ୍ଚର୍ଯ୍ୟ ଦାନ ବୋଲି ଘୋଷଣା କରୁଅଛନ୍ତି । ୮୩ । ଦେଖିବା ହେଉନ୍ତୁ, ପୁଷ୍ପବୃଷ୍ଟି ଗଗନରୁ ଭୂତଳରେ ପତିତ ହେଉଅଛି । ଦେବର୍ଷି, ଗନ୍ଧର୍ବ ଓ ଦେବଦୂତଗଣ ଦେବଗଣଙ୍କୁ ଅଗ୍ରସର କରି, ସ୍ତବକରି ଆପଣଙ୍କ ଦାନରେ ବିସ୍ମିତ ହୋଇ ଅବସ୍ଥାନ କରିଅଛନ୍ତି ।

ହେ ଦ୍ୱିଜ ! ଆପଣ ଶୀଘ୍ର ସୁରପୁରକୁ ଗମନ କରିବା ହେଉନ୍ତୁ । ବ୍ରହ୍ମଲୋକବାସୀ ବିମାନସ୍ଥ ବ୍ରହ୍ମର୍ଷିଗଣ ଆପଣଙ୍କ ଦର୍ଶନକୁ ଆକାଂକ୍ଷା କରୁଅଛନ୍ତି । ପିତୃଲୋକସ୍ଥ ସମସ୍ତ ପିତୃଗଣ ଆପଣଙ୍କଦ୍ୱାରା ତାରିତ ହୋଇ-ଅଛନ୍ତି । ୮୬ । ଅନେକ ଅନେକ ବ୍ୟକ୍ତି ବହୁଯୁଗରେ ବ୍ରହ୍ମଚର୍ଯ୍ୟ, ଦାନ, ଯଜ୍ଞ ଓ ତପସ୍ୟା କରି ସୁଦ୍ଧା ସୁରପୁରକୁ ଗମନ କରିବା ନିମିତ୍ତ ସମର୍ଥ ହୁଅନ୍ତି ନାହିଁ । ୮୭ ।

ହେ ସୁବ୍ରତ ଦ୍ୱିଜ ! ଆପଣ ପରମ ଶ୍ରଦ୍ଧା ସହକାରରେ ଅସଙ୍କର ଧର୍ମାଚରଣ କରି ଯେଉଁ ତପସ୍ୟା କରିଅଛନ୍ତି, ସେହି ପୁଣ୍ୟରେ ସ୍ୱର୍ଗକୁ ଗମନ କରିବା ହେଉନ୍ତୁ । ୮୮ ।

ହେ ବ୍ରାହ୍ମଣସତ୍ତମ ! ଯେତେବେଳେ ଆପଣ ଶୁଦ୍ଧଚିତ୍ତରେ ଏହି ସକ୍ତୁ-ସବୁ ଦାନ କରିଅଛନ୍ତି, ତେତେବେଳେ ସେହି ଦାନଦ୍ୱାରା ଦେବଗଣ ପରିତୁଷ୍ଟ ହୋଇଅଛନ୍ତି । ୮୯ ।

Digitized by srujanika@gmail.com

କ୍ଷୁଧା ପ୍ରଜ୍ଞା ଓ ଧର୍ମବୁଦ୍ଧିକୁ ନାଶକରେ । ଜ୍ଞାନ କ୍ଷୁଧାର ପରଗତ ହେଲେ ଧୈର୍ଯ୍ୟ ଦୂରୀଭୂତ ହୁଏ । ତଥାପି ଆପଣ ଏତାଦୃଶ କଷ୍ଟକର ସମୟରେ ନିଜ କର୍ମଦ୍ୱାରା ସ୍ୱର୍ଗ ଜୟ କଲେ । ଏହାଦ୍ୱାରା ଆମ୍ଭଙ୍କୁ ବୋଧ ହେଉଅଛି ଯେ, ଯେଉଁ ବ୍ୟକ୍ତି ବୁଭୁକ୍ଷା ପରାଜୟ କରି ପାରନ୍ତି, ସେ ନିଶ୍ଚୟ ସ୍ୱର୍ଗଜୟ କରିବାକୁ ସମର୍ଥ ହୁଅନ୍ତି । ୯୧ ।

ଯେତେବେଳେ ପୁରୁଷ ଦାନ କରିବାକୁ ଅଭିଳାଷୀ ହୁଅନ୍ତି, ତେତେବେଳେ ତାହାଙ୍କ ଧର୍ମ କଦାପି ଅବସନ୍ନ ହୁଏ ନାହିଁ । ଆପଣ ଏହି ବିବେଚନା କରି ପୁତ୍ର ଓ କଳତ୍ରସ୍ନେହ ପରିହାର ପୂର୍ବକ ଧର୍ମକୁ ଗୁରୁଜ୍ଞାନ କରି ତୃଷ୍ଣାକୁ ତୁଚ୍ଛ ବୋଲି ଜାଣିଅଛନ୍ତି ।

ମନୁଷ୍ୟମାନଙ୍କର ଦ୍ରବ୍ୟାଗମ ଅତିଶୟ ସୂକ୍ଷ୍ମ, ସତ୍ପାତ୍ର ଦାନ ଅପେକ୍ଷା କାଳ ସୂକ୍ଷ୍ମ, କାଳ ଅପେକ୍ଷା ଶ୍ରଦ୍ଧା ଏବଂ ଶ୍ରଦ୍ଧା ଅପେକ୍ଷା ସ୍ୱର୍ଗଦ୍ୱାର ପରମ ସୂକ୍ଷ୍ମରୂପେ ବର୍ଣ୍ଣିତ ହୋଇଅଛି ।

ଏହି କାରଣରୁ ନରଗଣ ମୋହବଶତଃ ତାହା ଦର୍ଶନ କରି ପାରନ୍ତି ନାହିଁ । ୯୪ । ମନୁଷ୍ୟ ଧର୍ମାନୁସାରେ ଦ୍ରବ୍ୟ ଉପାର୍ଜନ କରି ଶ୍ରଦ୍ଧା ସହକାରରେ ଉପଯୁକ୍ତ ସମୟରେ ସତ୍ପାତ୍ରରେ ତାହା ଦାନ କଲେ ମହା ଫଳ ଲଭ କରି ପାରନ୍ତି ।

ଶ୍ରଦ୍ଧା ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠ ନାହିଁ । ସ୍ୱର୍ଗଦ୍ୱାର ଅତି ଦୁର୍ଗମ ସ୍ଥାନ । ଲୋଭ ସେହି ଦ୍ୱାରର ଅର୍ଗଳ ସ୍ୱରୂପ । ମୋହାନ୍ଧ ବ୍ୟକ୍ତିଗଣ ତାହା ଦର୍ଶନ କରି ପାରନ୍ତି ନାହିଁ । ତପୋନୁଷ୍ଠାନନିରତ ଜିତେନ୍ଦ୍ରିୟ ବ୍ରାହ୍ମଣଗଣ ଶକ୍ତି ଅନୁସାରେ ଦାନକରି ଅନାୟାସରେ ତାହା ଦର୍ଶନ ପୂର୍ବକ ତହିଁରେ ଗମନ କରନ୍ତି ।

ଯାହାଙ୍କର ସହସ୍ର ସୁବର୍ଣ୍ଣ ସଞ୍ଚିତ ଥାଏ ସେ ଶତ ସୁବର୍ଣ୍ଣ ଦାନକଲେ ଯେଉଁ ଫଳ ଲଭ କରନ୍ତି, ଯାହାଙ୍କର ଶତ ସୁବର୍ଣ୍ଣ ସଞ୍ଚିତ ଥାଏ ସେ ଦଶ ସୁବର୍ଣ୍ଣ ଦାନକରି ଯେଉଁ ଫଳ ପ୍ରାପ୍ତ ହୁଅନ୍ତି, ଏବଂ ଯାହାଙ୍କର କିଛିମାତ୍ର ସଞ୍ଚିତ ଧନ ନଥାଏ, ସେ ଉପଯୁକ୍ତ ପାତ୍ରରେ ଏକ ଅଞ୍ଜଳି ଜଳ ଦାନକଲେ ସୁଦ୍ଧା ସେହିମାନଙ୍କ ସଦୃଶ ଫଳଲଭ କରିବାକୁ ସମର୍ଥ ହୁଅନ୍ତି ।

Digitized by srujanika@gmail.com

ହେ ବିପ୍ର ! ଅକିଞ୍ଚନ ନରପତି ରନ୍ତିଦେବ ଶୁଦ୍ଧଚିତ୍ତରେ ଜଳପ୍ରଦାନ କରି ନାକପୃଷ୍ଠକୁ ଗମନ କରିଥିଲେ ।

ହେ ତାତ ! ଧର୍ମ ନ୍ୟାୟଲବ୍‌ଧ, ଶ୍ରଦ୍ଧାପୂତ, ସୂକ୍ଷ୍ମ ଅର୍ଥାତ୍ ଅଳ୍ପମାତ୍ର ଦାନଦ୍ୱାରା ଯେଉଁରୂପେ ପରିତୁଷ୍ଟ ହୁଅନ୍ତି, ତଦ୍‌ବତ୍ ମହାଫଳଜନକ ପ୍ରଭୂତ ଦାନରେ ପରିତୁଷ୍ଟ ହୁଅନ୍ତି ନାହିଁ ।

ନୃଗ ନାମକ ନରପତି ଦ୍ୱିଜେନ୍ଦ୍ରଗଣଙ୍କୁ ସହସ୍ରସଂଖ୍ୟକ ଗୌ ପ୍ରଦାନ କରିଥିଲେ । ତନ୍ମଧ୍ୟରେ ଅଜ୍ଞାନବଶତଃ ଗୋଟିଏ ପରକୀୟ ଗୌ ପ୍ରଦତ୍ତ ହେବାରୁ ସେ ନରକଗାମୀ ହୋଇଥିଲେ ।

ହେ ସୁବ୍ରତ ! ଉଶୀନର ତନୟ ନରପତି ଶିବି ଆତ୍ମମାଂସ ପ୍ରଦାନ କରି ପୁଣ୍ୟକୃତ ଲୋକସମୂହ ପ୍ରାପ୍ତ ହୋଇ ସୁରଲୋକରେ ବିବିଧ ଭୋଗ କରିଥିଲେ ।

ହେ ବିପ୍ର ! ଯଥାନ୍ୟାୟରେ ସଞ୍ଚିତ ବିବିଧ ଯଜ୍ଞ ଏବଂ ସ୍ୱୀୟ ଶକ୍ତିଦ୍ୱାରା ଉପାର୍ଜିତ ପୁଣ୍ୟ ସାଧୁପୁରୁଷମାନଙ୍କର ବିଭବ ଅଟେ । କ୍ରୋଧବଶତଃ ପୁରୁଷଙ୍କର ଦାନଫଳ ବିଫଳ ହୁଏ ଏବଂ ଲୋଭହେତୁରୁ ସ୍ୱର୍ଗଗମନ ରୋଧ ହୁଏ । ୧୦୨ ।

ନ୍ୟାୟବୃତ୍ତି, ଦାନପରାୟଣ ଜନ କେବଳ ତପସ୍ୟାଦ୍ୱାରା ସ୍ୱର୍ଗ ଭୋଗ କରନ୍ତି । ପରନ୍ତୁ ଅନ୍ୟ ବ୍ୟକ୍ତି ବିପୁଳ ଦକ୍ଷିଣାଯୁକ୍ତ ରାଜସୂୟ ପ୍ରଭୃତି ବିବିଧ ଯଜ୍ଞ କଲେ ସୁଦ୍ଧା ସ୍ୱର୍ଗଭୋଗ ବିଷୟରେ ସମର୍ଥ ହୁଅନ୍ତି ନାହିଁ । ୧୦୩ ।

ହେ ବିପ୍ର ! ଆପଣ ସକ୍ତୁପ୍ରସ୍ଥଦ୍ୱାରା ଅକ୍ଷୟ ବ୍ରହ୍ମଲୋକ ଜୟ କରି ଅଛନ୍ତି । ବହୁଶତ ଅଶ୍ୱମେଧ ଯଜ୍ଞ ଆପଣଙ୍କର ଏତାଦୃଶ ଫଳଜନକ ହୋଇ-ନଥାନ୍ତା । ୧୦୪ ।

ହେ ଦ୍ୱିଜବର ! ଆପଣ ନିଷ୍ପାପ ହୋଇଅଛନ୍ତି । ସୁତରାଂ ଅଦ୍ୟାବଧି ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେ । ଏହି ଦିବ୍ୟ ଯାନ ଉପସ୍ଥିତ ହୋଇଅଛି । ଆପଣ ଏଥିରେ ଆରୋହଣପୂର୍ବକ ସ୍ୱଚ୍ଛନ୍ଦରେ ବ୍ରହ୍ମଲୋକକୁ ଗମନ କରିବା ହେଉନ୍ତୁ ।

Digitized by srujanika@gmail.com

ହେ ଦ୍ୱିଜବର ! ତୁମ୍ଭେ ସୁଖରେ ଆରୋହଣ କର । ଆମ୍ଭେ ଧର୍ମ, ତୁମ୍ଭେ ଆମ୍ଭଙ୍କୁ ଦର୍ଶନ କର । ତୁମ୍ଭେ ଯେଉଁରୂପେ ନିଜ ଦେହ ପବିତ୍ର କଲ, ଏହାଦ୍ୱାରା ଲୋକ ମଧ୍ୟରେ ତୁମ୍ଭର କୀର୍ତ୍ତି ଚିରସ୍ଥାୟିନୀ ହେବ । ସଂପ୍ରତି ତୁମ୍ଭେ ଭାର୍ଯ୍ୟା, ପୁତ୍ର ଓ ପୁତ୍ରବଧୂଙ୍କ ସହିତ ସୁରପୁରକୁ ଗମନ କର ।

ଧର୍ମ ଏହିପରି କହିବାରୁ ଦ୍ୱିଜବର ଭାର୍ଯ୍ୟା, ପୁତ୍ର ଏବଂ ପୁତ୍ରବଧୂଙ୍କ ସହିତ ଦିବ୍ୟ ଯାନରେ ଆରୋହଣ କରି ସୁରଲୋକକୁ ଗମନ କଲେ ।

ଆମ୍ଭେ ସେହି ବ୍ରାହ୍ମଣଙ୍କ ଗୃହମଧ୍ୟରେ ବାସ କରିଥିଲୁଁ । ତେତେବେଳେ ବିଳରୁ ନିଃସୃତ ହେଲୁ ଏବଂ ସେହି ଅତିଥିଙ୍କ ଭୁକ୍ତାବଶିଷ୍ଟ ସଳିଳସିକ୍ତ ସକ୍ତୁ ଉପରେ ବିଲୁଣ୍ଠିତ ହେଲୁଁ । ତେତେବେଳେ ସେହି ଉଞ୍ଛବୃତ୍ତି ବ୍ରାହ୍ମଣଙ୍କର ତପସ୍ୟା, ଉଦ୍‌ବୃତ୍ତ ସକ୍ତୁର ଆଘ୍ରାଣ ଓ ତପୋମୟ ଆଶ୍ରମରେ ଆକାଶରୁ ନିପତିତ ହୋଇଥିବା ଦିବ୍ୟ ପୁଷ୍ପସମୂହର ଗନ୍ଧ ପ୍ରଭାବରେ ଆମ୍ଭର ମସ୍ତକ ଓ ଅର୍ଦ୍ଧଶରୀର ସୁବର୍ଣ୍ଣମୟ ହେଲା । ତୁମ୍ଭେମାନେ ଅବଲୋକନ କର ।

ହେ ଦ୍ୱିଜବରଗଣ ! ଆମ୍ଭର ଅପର ପାର୍ଶ୍ୱ ଏହିପରି କେଉଁରୂପେ ହେବ ଏହିକଥା ଭାବନାକରି ଆମ୍ଭେ ହୃଷ୍ଟଚିତ୍ତରେ ତପୋବନ ଓ ଯଜ୍ଞସ୍ଥଳମାନଙ୍କରେ ବାରମ୍ବାର ଭ୍ରମଣ କରୁଅଛୁଁ । କିନ୍ତୁ କୌଣସି ସ୍ଥାନରେ ଆମ୍ଭର ଅଭୀଷ୍ଟ ସିଦ୍ଧ ହେଲା ନାହିଁ । ଧୀମାନ୍ କୁରୁରାଜ ଧର୍ମରାଜଙ୍କର ଯଜ୍ଞବୃତ୍ତାନ୍ତ ଶ୍ରବଣ କରି ଆଶ୍ୱାସିତ ହୋଇ ଆଗମନ କଲୁଁ, ପରନ୍ତୁ ଆମ୍ଭେ କାଞ୍ଚନମୟ ହେଲୁଁ ନାହିଁ ।

ହେ ଦ୍ୱିଜବରବୃନ୍ଦ ! ସେହି କାରଣରୁ ଆମ୍ଭେ ହାସ୍ୟକରି କହିଲୁଁ ଯେ, ତୁମ୍ଭମାନଙ୍କ ଯଜ୍ଞ ସର୍ବତୋଭାବରେ ସକ୍ତୁପ୍ରସ୍ଥର ସଦୃଶ ହୋଇନାହିଁ । ତେତେବେଳେ ଆମ୍ଭେ ସକ୍ତୁପ୍ରସ୍ଥ ପ୍ରଭାବଦ୍ୱାରା କାଞ୍ଚନୀକୃତ ହୋଇଥିଲୁଁ ବୋଲି, ଏହି ମହାଯଜ୍ଞ ତତ୍‌ସଦୃଶ ହୋଇନାହିଁ ବୋଲି ବୋଧ କରୁଅଛୁଁ ।

ନକୁଳ ଯଜ୍ଞସ୍ଥଳରେ ସେହି ଦ୍ୱିଜବରଗଣଙ୍କୁ ଏହିରୂପେ କହି ସେମାନଙ୍କ ଦର୍ଶନପଥ ଅତିକ୍ରମ କଲାରୁ ଦ୍ୱିଜଗଣ ମଧ୍ୟ ନିଜ ନିଜ ନିକେତନ-ଗାମୀ ହେଲେ । ୧୧୭ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ହେ ପରପୁରଂଜୟ ! ଏହି ମହା କ୍ରତୁ ଅଶ୍ୱମେଧରେ ଯେଉଁ ଆଶ୍ଚର୍ଯ୍ୟ ବ୍ୟାପାର ହୋଇଥିଲା, ଆମ୍ଭେ ତାହାସବୁ ଆପଣଙ୍କୁ କହିଲୁଁ । ୧୧୮ ।

ହେ ରାଜନ୍ ! ଯଜ୍ଞ କେବଳ ସର୍ବୋତ୍କୃଷ୍ଟ ବୋଲି ଗର୍ବ କରିବା କଦାପି ଆପଣଙ୍କର ଉଚିତ ନୁହେ । କାରଣ, ସହସ୍ର କୋଟି ଋଷି ତପୋବଳରେ ସୁରଲୋକକୁ ଗମନ କରିଅଛନ୍ତି । ୧୧୯ । ସର୍ବଭୂତରେ ଅଦ୍ରୋହ, ସନ୍ତୋଷ, ସୁଶୀଳତା, ସରଳ ବ୍ୟବହାର, ତପସ୍ୟା, ଇନ୍ଦ୍ରିୟପରାଜୟ ଓ ସତ୍ୟ ଏବଂ ଦାନ ଏହାସବୁ ଯଜ୍ଞସଦୃଶ ବୋଲି ସାଧୁସମ୍ମତ ହୋଇ ଅଛନ୍ତି । ୧୨୦ ।

---

# ଏକନବତିତମ ଅଧ୍ୟାୟ

ଜନମେଜୟ ପଚାରିଲେ—ହେ ପ୍ରଭୋ ! ଯଦି ଭୂପତିଗଣ ଯଜ୍ଞ ଅନୁଷ୍ଠାନ, ମହର୍ଷିଗଣ ତପୋନୁଷ୍ଠାନ ଓ ଅନ୍ୟାନ୍ୟ ବିଶୁଦ୍ଧବୁଦ୍ଧି ବ୍ରାହ୍ମଣଗଣ ଶମ, ଦମ ଓ ଶାନ୍ତିଗୁଣ ଅବଲମ୍ବନ କରି ଉତ୍କୃଷ୍ଟ ଗତି ପ୍ରାପ୍ତହୁଅନ୍ତି, ତେବେ ଆମ୍ଭ ବିବେଚନାରେ ଏହିପରି ନିଶ୍ଚୟ ହେଉଅଛି ଯେ, ଇହଲୋକରେ ଯଜ୍ଞଫଳ ସଦୃଶ ଅନ୍ୟ କିଛି ଦେଖା ଯାଉନାହିଁ ।

ହେ ଦ୍ୱିଜସତ୍ତମ ! ଅନେକ ଅନେକ ନରପତି ପ୍ରଭୂତ ଯଜ୍ଞ କରି ଇହଲୋକରେ ପରମ ଯଶ ପ୍ରାପ୍ତହୋଇ ପରଲୋକରେ ସୁରପୁରକୁ ଗମନ କରିଅଛନ୍ତି । ୨ ।

ମହାତେଜା ସହସ୍ରଲୋଚନ ସୁରରାଜ ପ୍ରଭୂ ଭୂରିଦକ୍ଷିଣ ବହୁଳ ଯଜ୍ଞ କରି ଇହଲୋକରେ ପରମ ଯଶ ପ୍ରାପ୍ତ ହୋଇ ପରଲୋକରେ ସୁରପୁରକୁ ଗମନ କରିଅଛନ୍ତି । ୩ । ମହାତେଜା ସହସ୍ରଲୋଚନ ସୁରରାଜ ପ୍ରଭୂ ଭୂରିଦକ୍ଷିଣ ବହୁଳ ଯଜ୍ଞ କରି ଅଖିଳ ସୁରରାଜ୍ୟ ଲାଭ କରିଅଛନ୍ତି । ୪ ।

Digitized by srujanika@gmail.com

ହେ ଦ୍ୱିଜବର ! ସମୃଦ୍ଧି ଓ ବିକ୍ରମ ବିଷୟରେ ସୁରରାଜଙ୍କ ସଦୃଶ ଭୀମାର୍ଜ୍ଜୁନ ପୁରଃସର ମହାତ୍ମା ଯୁଧିଷ୍ଠିର ଯେଉଁ ଅଶ୍ୱମେଧ ଯଜ୍ଞ କରିଥିଲେ, ସେହି ଯଜ୍ଞକୁ ନକୁଳ କେଉଁ କାରଣରେ ନିନ୍ଦାକଲା ? ୭ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ଭାରତ ! ଯଜ୍ଞର ପ୍ରଧାନବିଧି ଓ ଫଳ ଆମ୍ଭେ ଯଥାତଥରୂପେ ଆପଣଙ୍କୁ କହୁଅଛୁଁ, ଶ୍ରବଣ କରିବା ହେଉନ୍ତୁ । ୭ ।

ପୂର୍ବେ ଯଜ୍ଞକାଳୀ ଦେବରାଜଙ୍କ ବିସ୍ତୃତ ଯଜ୍ଞରେ ଋତ୍ୱିକ୍‌ଗଣ କର୍ମରେ ବ୍ୟଗ୍ର ଥିଲେ । ସେହି ଗୁଣଶାଳୀ ଯଜ୍ଞରେ ବହ୍ନି ଓ ଦେବଗଣ ଆହୂତ ଓ ମହର୍ଷିଗଣ ଉପସ୍ଥିତ ହେଲେ । ୯ ।

ଗୁଣଯୁକ୍ତ ହୋତାଗଣ ହୁତାଶନରେ ଆହୁତି ପ୍ରଦାନ କଲେ । ଦେବଗଣ ଆହୂତ ହେଲେ ଏବଂ ଅଧ୍ୱର୍ଯ୍ୟୁଗଣ ଉତ୍କୃଷ୍ଟ ସ୍ୱରରେ ଯଜୁର୍ବେଦ ପାଠକଲେ ।

ଅନନ୍ତର ପଶୁବଧର ସମୟ ଉପସ୍ଥିତ ହେଲାରୁ ମହର୍ଷିଗଣ ନିତାନ୍ତ ଦୀନଭାବାପନ୍ନ ପଶୁଗଣଙ୍କୁ ଦେଖି ଦୟାର୍ଦ୍ର ଚିତ୍ତରେ ଇନ୍ଦ୍ରଙ୍କ ସମୀପକୁ ଗମନ କରି କହିଲେ ଯେ, ହେ ଦେବରାଜ ! ଏହି ବିଧି ଶୁଭଜନକ ନୁହେଁ । ହେ ପୁରନ୍ଦର ! ଆପଣ ମହାନ୍ ଧର୍ମ କରିବାକୁ ଅଭିଳାଷୀ ହୋଇଅଛନ୍ତି, କିନ୍ତୁ ଆପଣ ଏହା ବିଶେଷରୂପେ ଜ୍ଞାତ ହୋଇ ନାହାନ୍ତି । କାରଣ, ପଶୁଗଣ ଯଜ୍ଞରେ ବିଧିଦୃଷ୍ଟ ନୁହନ୍ତି । ୧୩ ।

ହେ ପ୍ରଭୋ ! ହିଂସା ଯଦି ଧର୍ମ ବୋଲି ଉକ୍ତ ହୋଇନାହିଁ, ତେବେ ଏହି ଯଜ୍ଞ ଧର୍ମକୃତ ହେଉନାହିଁ । ଅତଏବ ଆପଣଙ୍କର ଏହି ସମାରମ୍ଭ ଧର୍ମର ଉପଘାତକ ହେଉଅଛି । ୧୪ ।

ହେ ସୁରରାଜ ! ଆପଣ ଯଦି ଧର୍ମ ଇଚ୍ଛା କରନ୍ତି ତେବେ ଋତ୍ୱିକ୍‌ଗଣଙ୍କ ଆଗମାନୁସାରେ ଆପଣ ଯଜ୍ଞ କରନ୍ତୁ । ୧୫ । ସେହି ବିଧିଦୃଷ୍ଟ ଯଜ୍ଞଦ୍ୱାରା ଆପଣଙ୍କର ଅତି ଉତ୍କୃଷ୍ଟ ଧର୍ମ ହେବ । ହେ ସହସ୍ରାକ୍ଷ ! ଆପଣ ହିଂସା ପରିତ୍ୟାଗ କରି ତ୍ରିବର୍ଷୋଷିତ ବୀଜଦ୍ୱାରା ଯଜ୍ଞ କରିବା ହେଉନ୍ତୁ । ୧୬ ।

Digitized by srujanika@gmail.com

ହେ ଶକ୍ର ! ଏହି ଧର୍ମ ମହାଗୁଣ ଓ ମହାଫଳଜନକ ବୋଲି ବିହିତ ହୋଇଅଛି ।

ଶତକ୍ରତୁ ମାନ ଓ ମୋହର ବଶବର୍ତ୍ତୀ ହୋଇ ତତ୍ତ୍ୱଦର୍ଶୀ ଋଷିଗଣଙ୍କ ବାକ୍ୟ ପ୍ରତିଗ୍ରହ କଲେ ନାହିଁ ।

ହେ ଭାରତ ! ଶକ୍ରଙ୍କ ଯଜ୍ଞରେ ସେହି ତପସ୍ୱିଗଣଙ୍କର ଅତିଶୟ ବିବାଦ ଉପସ୍ଥିତ ହେଲା । ୧୮ । କେହି କେହି କହିଲେ ଜଙ୍ଗମ, ଓ କେହି କେହି କହିଲେ ସ୍ଥାବରଦ୍ୱାରା ଯଜ୍ଞ କରିବା ଉଚିତ । ଏହି କଥା କହି ସେମାନେ ବିବାଦ କରି ଖିନ୍ନ ହେଲେ ।

ତେତେବେଳେ ଋଷିଗଣ ପୁରନ୍ଦରଙ୍କ ସହିତ ମିଳିତ ହୋଇ ନରପତି ବସୁଙ୍କୁ ପ୍ରଶ୍ନ କଲେ—ହେ ମହାଭାଗ ! ନୃପସତ୍ତମ ! ଯଜ୍ଞର ଆଗମ କି ପ୍ରକାର ଅଟେ ? ଏବଂ ମୁଖ୍ୟପଶୁ କିମ୍ୱା ବୀଜ ଅଥବା ରସଦ୍ୱାରା ଯଜ୍ଞ କରିବା ଉଚିତ ? ୨୧ ।

ପୃଥିବୀପତି ବସୁ ସେମାନଙ୍କ ବାକ୍ୟ ଶ୍ରବଣ କରି ବଳାବଳ ବିଚାର ନକରି କହିଲେ ଯେ, ଯଥୋପନୀତ ବସ୍ତୁଦ୍ୱାରା ଯଜ୍ଞ କରିବାର ବିହିତ । ୨୨ ।

ଚେଦୀଶ୍ୱର ନରପତି ବସୁ ପ୍ରଶ୍ନ ସମ୍ବନ୍ଧରେ ଏହିପ୍ରକାର ମିଥ୍ୟାବାକ୍ୟ କହିବାରୁ ଅଚିରାତ୍ ରସାତଳକୁ ଗମନ କଲେ । ୨୩ ।

ସେହି ନିମିତ୍ତ ସଂଶୟସ୍ଥଳରେ ସ୍ୱୟମ୍ଭୂ ପ୍ରଭୁ ପ୍ରଜାପତିଙ୍କ ବିନା ବହୁଜ୍ଞ ହେଲେ ସୁଦ୍ଧା କୌଣସି ବ୍ୟକ୍ତି କିଛି କହିବେ ନାହିଁ । ୨୪ ।

ପାପାତ୍ମା ଅଶୁଦ୍ଧବୁଦ୍ଧି ମାନବ ଦାନ କଲେ ସେହି ସମସ୍ତ ଦାନର ଫଳ ବିନଷ୍ଟ ହୁଏ । ସେହି ଅଧର୍ମପ୍ରବୃତ୍ତ ଦୁରାତ୍ମା ହିଂସକ ପୁରୁଷର ଇହଲୋକରେ ବା ପରଲୋକରେ ଦାନଦ୍ୱାରା କୀର୍ତ୍ତି ହୁଏ ନାହିଁ । ୨୬ ।

ଯେଉଁ ଅପଣ୍ଡିତ ଧର୍ମାଭିଶଙ୍କୀ ପୁରୁଷ ନିରନ୍ତର ଅନ୍ୟାୟୋପାର୍ଜ୍ଜିତ ଦ୍ରବ୍ୟଦ୍ୱାରା ଯଜ୍ଞ କରନ୍ତି, ସେ ସେହି ଧର୍ମଫଳ ଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୨୭ ।

Digitized by srujanika@gmail.com

ଯେଉଁ ଧର୍ମବୈତଂସିକ ଅର୍ଥାତ୍ ଧର୍ମ ବିଷୟରେ ସନ୍ଧାନ ପାପାତ୍ମା ପୁରୁଷାଧମ ଜନ ଲୋକମାନଙ୍କ ବିଶ୍ୱାସ ନିମିତ୍ତ ବିପ୍ରଗଣଙ୍କୁ ଦାନ କରନ୍ତି, ଏବଂ ଯେଉଁ ନିରଙ୍କୁଶ ବିପ୍ର ଅନୁରାଗ ଓ ମୋହର ବଶବର୍ତ୍ତୀ ହୋଇ ପାପକର୍ମ ଦ୍ୱାରା ଧନ ଉପାର୍ଜନ କରନ୍ତି, ସେମାନେ ଚରମରେ କଳୁଷଗତି ପ୍ରାପ୍ତ ହୁଅନ୍ତି । ୨୯ ।

ଦୁରାତ୍ମାମାନେ ଲୋଭ-ମୋହର ବଶବର୍ତ୍ତୀ ହୋଇ ଅର୍ଥ ସଂଚୟ ନିମିତ୍ତ ପାପାଚରଣ ପୂର୍ବକ ପ୍ରାଣିଗଣଙ୍କୁ ଉଦ୍‌ବେଜିତ କରନ୍ତି ।

ଯେଉଁ ବ୍ୟକ୍ତି ମୋହବଶତଃ ଏହିରୂପେ ଧନଲାଭ କରି ଦାନ ଅବା ଯଜ୍ଞ କରନ୍ତି, ପାପଧନାଗମ ବଶତଃ ସେ ପରଲୋକରେ ସେହି ଦାନ ଓ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ନାହିଁ । ୩୧ ।

ତପୋଧନ ଧାର୍ମିକ ନରଗଣ ବିଭବାନୁସାରେ ଉଞ୍ଛ, ମୂଳ, ଫଳ, ଶାକ ଏବଂ ଉଦକପାତ୍ର ଦାନକରି ସ୍ୱର୍ଗକୁ ଗମନ କରନ୍ତି । ୩୨ । ଏହା ମହା ଯୋଗଧର୍ମ ବୋଲି କଥିତ ହୁଏ । ପରନ୍ତୁ ଦାନ, ସର୍ବଭୂତରେ ଦୟା, ବ୍ରହ୍ମଚର୍ଯ୍ୟ, ସତ୍ୟ, ଅନୁକ୍ରୋଶ, ଧୈର୍ଯ୍ୟ ଓ କ୍ଷମା ଏହିସବୁ ସନାତନ ଧର୍ମର ସନାତନ ମୂଳ କାରଣ ଅଟନ୍ତି ।

ପୁରାବୃତ୍ତରେ ବିଶ୍ୱାମିତ୍ର ପ୍ରଭୃତି ନୃପଗଣଙ୍କ ବିଷୟ ଏହିରୂପେ ଶ୍ରୁତ ହୋଇଅଛି । ୩୪ । ତପୋଧନ ବିଶ୍ୱାମିତ୍ର, ଅସିତ, ରାଜା ଜନକ, କକ୍ଷସେନ, ଆର୍ଷ୍ଟିଷେଣ, ସିନ୍ଧୁ ଓ ଦିଲୀପ ଏହିମାନେ ଓ ଅନ୍ୟାନ୍ୟ ତପୋଧନ ନୃପତିଗଣ ସତ୍ୟ ଏବଂ ନ୍ୟାୟଲବ୍ଧ ଧନଦାନଦ୍ୱାରା ପରମ ସିଦ୍ଧି ପ୍ରାପ୍ତ ହୋଇଅଛନ୍ତି ।୩୬।

ହେ ଭାରତ ! ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏବଂ ଅନ୍ୟାନ୍ୟ ତପୋନିଷ୍ଠ ବ୍ୟକ୍ତିଗଣ ଦାନଧର୍ମାଗ୍ନିଦ୍ୱାରା ଶୁଦ୍ଧହୋଇ ସୁରପୁରକୁ ଗମନ କରିଅଛନ୍ତି । ୩୭ ।

Digitized by srujanika@gmail.com

# ଦ୍ୱିନବତିତମ ଅଧ୍ୟାୟ

ଜନମେଜୟ ପଚାରିଲେ, ହେ ଭଗବନ୍ ! ଯଦି ଧର୍ମାଗତଦାନଦ୍ୱାରା ସ୍ୱର୍ଗଲାଭ ହୁଏ, ତେବେ ଆପଣ ତାହା ବିଶେଷକରି ଆମ୍ଭଙ୍କୁ କହିବା ହେଉନ୍ତୁ । ହେ ଦ୍ୱିଜବର ! ଆପଣ ଏହା କହିବାକୁ ସମର୍ଥ ଅଟନ୍ତି । ୧ ।

ହେ ବ୍ରହ୍ମନ୍ ! ସେହି ଉଞ୍ଛବୃତ୍ତି ସକ୍ତୁଦାନ କରି ଯେ ମହତ୍‌ଫଳ ଲାଭ କରିଅଛନ୍ତି, ତାହା ସତ୍ୟରୂପେ ଆମ୍ଭ ନିକଟରେ ଆପଣ କହିବା ହୋଇଅଛନ୍ତି, ଏଥିରେ ସଂଶୟ ନାହିଁ । ୨ ।

ହେ ଦ୍ୱିଜବର ! ଆମ୍ଭେ ଏହି କଥା ପଚାରୁଅଛୁଁ ଯେ, ଯଜ୍ଞାନୁଷ୍ଠାନ ଅଳ୍ପଧନଦ୍ୱାରା ସାଧ୍ୟ ହୁଏ ନାହିଁ । ଅତଏବ କେବଳ ଧର୍ମଲବ୍ଧ ଧନଦ୍ୱାରା ଯଜ୍ଞାନୁଷ୍ଠାନ କରିବାର କେଉଁରୂପେ ସମ୍ଭବପର ହୋଇପାରେ, ଏହା ସମ୍ପୂର୍ଣ୍ଣରୂପେ ଆମ୍ଭଙ୍କୁ କହିବା ହେଉନ୍ତୁ । ୩ ।

ବୈଶମ୍ପାୟନ କହିଲେ—ହେ ଅରିନ୍ଦମ ! ପୂର୍ବେ ଅଗସ୍ତ୍ୟଙ୍କ ମହାଯଜ୍ଞରେ ଯାହା ଘଟିଥିଲା, ପଣ୍ଡିତଗଣ ଏହି ସ୍ଥଳରେ ଉଦାହରଣସ୍ୱରୂପ ସେହି ଇତିହାସ କୀର୍ତ୍ତନ କରନ୍ତି । ୪ ।

ହେ ମହାରାଜ ! ପୂର୍ବେ ସର୍ବଭୂତହିତକାରୀ ମହାତେଜା ଅଗସ୍ତ୍ୟ ଦ୍ୱାଦଶ ବାର୍ଷିକ ଦୀକ୍ଷାରେ ଦୀକ୍ଷିତ ହୋଇଥିଲେ । ୫ । ସେହି ଯଜ୍ଞରେ ମୂଳାହାରୀ, ଫଳାହାରୀ, ଅଶ୍ମକୁଟ୍ଟ ଓ ମରୀଚପାୟୀ ଅଗ୍ନିସଦୃଶ ଋଷିଗଣ ହୋତୃକାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ୬ ।

ସେଠାରେ ପରିଦୃଷ୍ଟିକ, ବୈଘସିକ, ଅପ୍ରକ୍ଷାଳ ପ୍ରଭୃତି ଯତି ଓ ଭିକ୍ଷୁଗଣ ଉପସ୍ଥିତ ଥିଲେ । ୭ । ସେମାନେ ସମସ୍ତେ ପ୍ରତ୍ୟକ୍ଷଧର୍ମା, ଜିତକ୍ରୋଧ, ଜିତେନ୍ଦ୍ରିୟ, ଦାନ୍ତ, ହିଂସା ଓ ଦମ୍ଭବିବର୍ଜିତ, ଶୁଦ୍ଧ ବୃତ୍ତରେ ଅବସ୍ଥିତ ଏବଂ ଇନ୍ଦ୍ରିୟଗଣକର୍ତ୍ତୃକ ଅପରାଜିତ ଥିଲେ । ସେହିମାନେ ସେହି ଯଜ୍ଞରେ ଉପସ୍ଥିତ ଥାଇ ଯଜ୍ଞ କରୁଥିଲେ । ୮ । ସେହି ଯଜ୍ଞରେ ଭଗବାନ୍ ଅଗସ୍ତ୍ୟକର୍ତ୍ତୃକ ସାମର୍ଥ୍ୟାନୁସାରେ ଅନ୍ନ ଉପାର୍ଜିତ ହୋଇଥିଲା ।

Digitized by srujanika@gmail.com

ହେ ଭରତସତ୍ତମ ! ସେହି ଯଜ୍ଞରେ ଯାହା ବୃତ୍ତ ଓ ଯୋଗ୍ୟ ବୋଲି ନିର୍ଦ୍ଦିଷ୍ଟ ହୋଇଥିଲା, ତଦନୁସାରେ ଅନେକ ଅନେକ ମୁନି ବହୁଳ ମହାଯଜ୍ଞ କରିଥିଲେ । ପରଂତୁ ଅଗସ୍ତ୍ୟଙ୍କର ଏତାଦୃଶ ଯଜ୍ଞ ହେଉଥିବା ସମୟରେ ସହସ୍ରାକ୍ଷ ବାରିବର୍ଷଣ କଲେ ନାହିଁ । ୧୧ ।

ହେ ରାଜନ୍ ! ସେହି କାରଣରୁ ମହାତ୍ମା ଅଗସ୍ତ୍ୟଙ୍କର ସେହି କର୍ମାନ୍ତରରେ ଭାବିତାତ୍ମା ମୁନିଗଣଙ୍କର ଏହି କଥା ଉପସ୍ଥିତ ହେଲା ଯେ, ଏହି ଯଜମାନ ଅଗସ୍ତ୍ୟ ମତ୍ସରଶୂନ୍ୟ ହୋଇ ଅନ୍ନଦାନ କରିଅଛନ୍ତି, କିନ୍ତୁ ପର୍ଜନ୍ୟ ବାରିବର୍ଷଣ ନକରିଲେ କେଉଁରୂପେ ଅନ୍ନ ଉତ୍ପନ୍ନ ହେବ ? ୧୩ ।

ହେ ବିପ୍ରଗଣ ! ଅଗସ୍ତ୍ୟ ମୁନିଙ୍କର ଏହି ଯଜ୍ଞ ଦ୍ୱାଦଶ ବର୍ଷରେ ସମ୍ପନ୍ନ ହେବ । ଦ୍ୱାଦଶ ବର୍ଷ ମଧ୍ୟରେ ସୁରରାଜ ବର୍ଷଣ କରିବେ ନାହିଁ । ୧୪ । ଅତଏବ ଆପଣମାନେ ଏହି ଚିନ୍ତାକରି ଧୀମାନ୍ ମହର୍ଷି ପରମ ତପସ୍ୱୀ ଅଗସ୍ତ୍ୟଙ୍କଠାରେ ଅନୁଗ୍ରହ କରିବା ହେଉନ୍ତୁ । ୧୫ ।

ମହର୍ଷିଗଣ ଏହିରୂପେ କହିବାରୁ ପରମ ପ୍ରତାପବାନ୍ ଅଗସ୍ତ୍ୟ ଅବନତ ମସ୍ତକରେ ସେମାନଙ୍କୁ ପ୍ରସନ୍ନ କରାଇ କହିଲେ—ବାସବ ଯଦି ଦ୍ୱାଦଶବର୍ଷ ବାରିବର୍ଷଣ ନକରିବେ, ତେବେ ଆମ୍ଭେ ଚିନ୍ତାଯଜ୍ଞ ଅର୍ଥାତ୍ ମାନସିକ ଯଜ୍ଞ କରିବୁଁ । ଏହା ସନାତନ ବିଧି ଅଟେ ।

ହେ ଋଷିଗଣ ! ବାସବ ଯଦି ଦ୍ୱାଦଶବର୍ଷ ବାରିବର୍ଷଣ ନକରିବେ, ତେବେ ଆମ୍ଭେ ସ୍ପର୍ଶଯଜ୍ଞ କରିବୁଁ ଅର୍ଥାତ୍ ଉପାହୃତ ଦ୍ରବ୍ୟସବୁ ବ୍ୟୟ କରିବା ପରିବର୍ତ୍ତିରେ କେବଳ ସ୍ପର୍ଶକରି ଦେବଗଣଙ୍କ ସନ୍ତୋଷସାଧନ କରିବୁଁ । ଏହା ସନାତନ ବିଧି ଅଟେ । ୧୯ ।

ବାସବ ଯଦି ଦ୍ୱାଦଶ ବର୍ଷ ମଧ୍ୟରେ ବାରିବର୍ଷଣ ନକରିବେ, ତେବେ ଆମ୍ଭେ ଧ୍ୟାୟାମ ଅର୍ଥାତ୍ ଧ୍ୟାନଦ୍ୱାରା ଦ୍ରବ୍ୟ ଆହରଣ କରି ବ୍ରତାତିରିକ୍ତ ଅନ୍ୟ ଯଜ୍ଞ ସମ୍ପାଦନ କରିବୁଁ ।

ଅଥବା ଆମ୍ଭେ ବହୁବର୍ଷାବଧି ଏହି ବୀଜଯଜ୍ଞର ଅନୁଷ୍ଠାନ କରିଅଛୁଁ । ଅତଏବ ଏହି ବୀଜଦ୍ୱାରା ଆମ୍ଭେ ଏହି ଯଜ୍ଞ ସମ୍ପାଦନ କରିବୁଁ, ଏଥିରେ

Digitized by srujanika@gmail.com

କିଞ୍ଚିମାତ୍ର ବିଘ୍ନ ହେବନାହିଁ । ଆମ୍ଭର ଏହି ଯଜ୍ଞକୁ ବ୍ୟର୍ଥକରିବା ନିମିତ୍ତ କାହାର ଶକ୍ତି ନାହିଁ । ୨୧ ।

ଇନ୍ଦ୍ର ଯଦି ଜଳବର୍ଷଣ ନକରିବେ, ତେବେ ସେ ଦେବତା ମଧ୍ୟରେ ପରିଗଣିତ ହେବେ ନାହିଁ । ଅପିଚ ସେ ଯଦି ଇଚ୍ଛାନୁସାରେ ଆମ୍ଭର ଏହି ଅଭ୍ୟର୍ଥନା ପୂରଣ ନକରିବେ, ତେବେ ଆମ୍ଭେ ସ୍ୱୟଂ ଇନ୍ଦ୍ର ହୋଇ ପ୍ରଜାଗଣଙ୍କୁ ଜୀବିତ ରଖିବୁଁ, ଏବଂ ଯେତେବେଳେ ଯାହାଙ୍କର ଯେଉଁ ଆହାର ଦ୍ରବ୍ୟର ପ୍ରୟୋଜନ ହେବ, ତେତେବେଳେ ତାହା ଉପସ୍ଥିତ ହେବ । ୨୩ । ଆମ୍ଭେ ବାରମ୍ବାର ବିଶେଷରୂପେ ଏହିପରି କରିବୁଁ ।

ଅପିଚ ଅଦ୍ୟ ପୃଥିବୀସ୍ଥ ଯାବତୀୟ ବସ୍ତୁ ଓ ସ୍ୱର୍ଣ୍ଣ ଆମ୍ଭ ନିକଟରେ ଉପସ୍ଥିତ ହେଉ । ପୃଥିବୀ ମଧ୍ୟରେ ଯେଉଁ ସମସ୍ତ ବସ୍ତୁ ଅଛି, ତାହାସବୁ ସ୍ୱୟଂ ଆମ୍ଭ ନିକଟକୁ ଆଗମନ କରନ୍ତୁ । ଦିବ୍ୟ ଅପ୍‌ସରା, ଗନ୍ଧର୍ବ, କିନ୍ନର ଓ ବିଶ୍ୱାବସୁ ପ୍ରଭୃତି ପ୍ରାଣିଗଣ ଆମ୍ଭ ଯଜ୍ଞକୁ ଆଗମନ କରନ୍ତୁ । ଉତ୍ତର-କୁରୁମାନଙ୍କର ଯେଉଁ ବସ୍ତୁବୃନ୍ଦ ବିଦ୍ୟମାନ ଅଛି, ସେହି ସମସ୍ତ ବସ୍ତୁ ଆମ୍ଭ ଯଜ୍ଞରେ ସ୍ୱୟଂ ଆସି ଉପସ୍ଥିତ ହେଉନ୍ତୁ । ଏବଂ ସ୍ୱର୍ଗ, ସ୍ୱର୍ଗବାସୀ ଏବଂ ଧର୍ମ ସ୍ୱୟଂ ଆଗମନ କରନ୍ତୁ । ୨୭ ।

ଅଗସ୍ତ୍ୟ ମୁନି ଏହିରୂପେ କହିବାରୁ ପ୍ରଦୀପ୍ତ ଜ୍ୱଳନସଦୃଶଚିତ୍ତସମ୍ପନ୍ନ ସେହି ମହାତେଜା ମୁନିଙ୍କ ତପୋବଳରେ ତାହାସବୁ ତଦ୍‌ବତ୍ ସମ୍ପନ୍ନ ହେଲା । ୨୮ ।

ତଦନନ୍ତର ସେହି ମୁନିଗଣ ଅଗସ୍ତ୍ୟଙ୍କ ତପୋବଳ ସନ୍ଦର୍ଶନ କରି ହୃଷ୍ଟଚିତ୍ତ ଓ ବିସ୍ମିତ ହୋଇ ମହାନ୍ ଅର୍ଥଯୁକ୍ତ ଏହିପ୍ରକାର ବାକ୍ୟ କହିଲେ । ୨୯ ।

ମୁନିଗଣ କହିଲେ—ହେ ମହର୍ଷେ ! ଆପଣଙ୍କ ବାକ୍ୟରେ ଆମ୍ଭେମାନେ ପରମ ପ୍ରୀତ ହେଲୁଁ । ପରନ୍ତୁ ତପସ୍ୟାର ଫଳ ବ୍ୟୟ କରିବାର ଆମ୍ଭମାନଙ୍କ ଅଭିଳଷିତ ନୁହେ । ଆମ୍ଭେମାନେ ନ୍ୟାୟାନୁସାରେ ସମାହୃତ ତପୋବଳରେ ଯଜ୍ଞକରି ତୁଷ୍ଟ ହେବାକୁ ଇଚ୍ଛା କରୁଅଛୁଁ । ୩୦ ।

Digitized by srujanika@gmail.com

ଆମ୍ଭେମାନେ ଯଜ୍ଞ, ହୋମ ଏବଂ ଅନ୍ୟ କର୍ମ କରିବାକୁ ଇଚ୍ଛା କରିଅଛୁଁ । ନ୍ୟାଯ୍ୟୋପାର୍ଜିତ ବସ୍ତୁ ଆହରଣ କରି ସେହି କର୍ମରେ ସମ୍ପୂର୍ଣ୍ଣରୂପେ ରତ ହେବୁଁ । ୩୧ ।

ଆମ୍ଭେମାନେ ନ୍ୟାଯ୍ୟାନୁସାରେ ବ୍ରହ୍ମଚର୍ଯ୍ୟଦ୍ୱାରା ଦେବଗଣଙ୍କୁ ପ୍ରାର୍ଥନା କରୁଅଛୁଁ । ଅତଃପର ନ୍ୟାଯ୍ୟାନୁସାରେ ଗୃହରୁ ନିଃସୃତ ହେବୁଁ । ୩୨ । ଏବଂ ଧର୍ମଦୃଷ୍ଟ ବିଧିଦ୍ୱାରା ତପସ୍ୟା କରିବୁଁ ।

ହେ ପ୍ରଭୋ ! ଆପଣ ଯଜ୍ଞ ବିଷୟରେ ସର୍ବଦା ଅହିଂସାର ବିଷୟ କହୁଥାଆନ୍ତି । ତନ୍ନିମିତ୍ତ ଆପଣଙ୍କ ବୁଦ୍ଧି ସମ୍ପୂର୍ଣ୍ଣରୂପେ ହିଂସାବିହୀନ ଅଟେ । ହେ ଦ୍ୱିଜସତ୍ତମ ! ସେହି କାରଣରୁ ଆମ୍ଭେମାନେ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । ଯଜ୍ଞ ସମାପ୍ତ ହେଲେ ଆମ୍ଭେମାନେ ଏହି ସ୍ଥାନରୁ ଗମନ କରିବୁଁ ।

ସେମାନେ ଏହିପରି କଥୋପକଥନ କରୁଥିବା ସମୟରେ ଦେବରାଜ ପୁରନ୍ଦର ତାହାଙ୍କ ତପୋବଳ ଦର୍ଶନ କରି ବାରିବର୍ଷଣ କଲେ ।

ହେ ଜନମେଜୟ ! ଅଗସ୍ତ୍ୟଙ୍କ ଯଜ୍ଞ ସମାପ୍ତି ପର୍ଯ୍ୟନ୍ତ ଅମିତପରାକ୍ରମ ପର୍ଜନ୍ୟ ନିଃଶେଷରେ ବର୍ଷଣ କଲେ । ହେ ରାଜର୍ଷେ ! ତ୍ରିଦଶନାଥ ଇନ୍ଦ୍ର ବୃହସ୍ପତିଙ୍କୁ ଅଗ୍ରସର କରାଇ ସ୍ୱୟଂ ଅଗସ୍ତ୍ୟଙ୍କ ନିକଟକୁ ଆଗମନକରି ତାହାଙ୍କୁ ପ୍ରସନ୍ନ କରାଇଲେ । ୩୭ ।

ତଦନନ୍ତର ଯଜ୍ଞ ସମାପ୍ତ ହେବାରୁ ଅଗସ୍ତ୍ୟ ପରମ ପ୍ରୀତ ହୋଇ ସେହି ମହାମୁନିମାନଙ୍କୁ ଯଥାବିଧାନରେ ପୂଜାକରି ବିଦାୟ ଦେଲେ । ୩୮ ।

ଜନମେଜୟ ପଚାରିଲେ—ହେ ସତ୍ତମ ! ଯେଉଁ କାଞ୍ଚନମସ୍ତକ ନକୁଳ ମାନୁଷ ସମାନ ବାକ୍ୟ କହିଥିଲେ, ସେ କିଏ, ଆମ୍ଭେ ଜାଣିବାକୁ ଇଚ୍ଛା କରୁଅଛୁଁ । ଆପଣ ଆମ୍ଭଙ୍କୁ ବିସ୍ତାର କରି କହିବା ହେଉନ୍ତୁ । ୩୯ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ଆପଣ ପୂର୍ବେ ଆମ୍ଭଙ୍କୁ ଏହି ବିଷୟ ପ୍ରଶ୍ନ କରିନଥିଲ ବୋଲି ଆମ୍ଭେ ଆପଣଙ୍କୁ କହିନଥିଲୁଁ । ପରନ୍ତୁ ସମ୍ପ୍ରତି ସେହି ନକୁଳ କିଏ ଏବଂ ତାଙ୍କର ଯେଉଁରୂପେ ମନୁଷ୍ୟସଦୃଶ ବାକ୍ୟ ହୋଇ ସେହି ସ୍ଥାନକୁ ଗମନ କଲେ, ତାହା କହୁଛୁଁ । ୪୦ ।

Digitized by srujanika@gmail.com

ପୂର୍ବେ ଜମଦଗ୍ନି ଶ୍ରାଦ୍ଧ ସଂକଳ୍ପ କରିଥିଲେ । ହୋମଧେନୁ ତାହାଙ୍କ ନିକଟକୁ ଆଗମନ କରିବାରୁ ସେ ସ୍ୱୟଂ ତାହାର ଦୁଗ୍ଧ ଦୋହନ କଲେ । ସେ ସେହି ଦୁଗ୍ଧକୁ ପବିତ୍ର ସ୍ଥାନରେ ଦୃଢ଼ ନବୀନ ଭାଣ୍ଡରେ ରଖିଥିଲେ । ଧର୍ମ କ୍ରୋଧରୂପରେ ସେହି ପାତ୍ରରେ ପ୍ରବେଶ କଲେ । ୪୨ । ସେ ମନେ ମନେ ବିଚାର କଲେ ଯେ, ଆମ୍ଭେ ଏହି ମହର୍ଷିଙ୍କର ଅନିଷ୍ଟାଚରଣ କଲେ ଏ ଆମ୍ଭପ୍ରତି କି ପ୍ରକାର ବ୍ୟବହାର କରିବେ, ଆମ୍ଭେ ଏହା ଜାଣିବା । ସେ ମନେ ମନେ ଏହା ବିଚାର କରି ସେହି ଦୁଗ୍ଧ ନିଃଶେଷରୂପେ ପାନକଲେ । ୪୩ ।

ହେ ରାଜନ୍ ! ମୁନି ସେହି ଧର୍ମସ୍ୱରୂପ କ୍ରୋଧଙ୍କୁ ଜାଣିପାରି ତାହାଙ୍କ ପ୍ରତି କୋପ କଲେନାହିଁ । କ୍ରୋଧରୂପୀ ଧର୍ମ ଭୃଗୁଶ୍ରେଷ୍ଠ ଜମଦଗ୍ନିଙ୍କ ନିକଟରେ ଏହିରୂପେ ପରାସ୍ତ ହୋଇ ବ୍ରାହ୍ମଣ ରୂପ ଧାରଣ କରି ତାହାଙ୍କୁ କହିଲେ—।୪୪।

ହେ ଭୃଗୁଦ୍ୱହ ! ଆମ୍ଭେ ତୁମ୍ଭଦ୍ୱାରା ପରାଜିତ ହେଲୁଁ । ହେ ଋଷିବର ! ଆମ୍ଭେ ତୁମ୍ଭକର୍ତ୍ତୃକ ନିର୍ଜିତ ହେବାରୁ, "ଭୃଗୁବଂଶ ଅତିଶୟ ରୋଷାନ୍ୱିତ ଅଟନ୍ତି" ଏହି ଲୋକପ୍ରବାଦ ମିଥ୍ୟା ହେଲା । ୪୫ । ତୁମ୍ଭେ ମହାତ୍ମା ଓ କ୍ଷମାଶୀଳ ଅଟ । ଅତଏବ ଆମ୍ଭେ ଅଦ୍ୟାବଧି ତୁମ୍ଭର ବଶବର୍ତ୍ତୀ ହେଲୁଁ ।

ହେ ପ୍ରଭୋ ! ହେ ସାଧୋ ! ଆମ୍ଭେ ତୁମ୍ଭର ତପସ୍ୟାଠାରୁ ଭୟପ୍ରାପ୍ତ ହେଉଅଛୁଁ । ଅତଏବ ତୁମ୍ଭେ ଆମ୍ଭଠାରେ ପ୍ରସନ୍ନ ହୁଅ । ୪୬ ।

ଜମଦଗ୍ନି କହିଲେ—ହେ କ୍ରୋଧ ! ଆପଣ ଆମ୍ଭଙ୍କୁ ସାକ୍ଷାତ୍ ପରୀକ୍ଷା କଲେ । ଆପଣ ଆମ୍ଭର କୌଣସି ଅପକାର କରିନାହାନ୍ତି । ଅତଏବ ଆମ୍ଭର କ୍ରୋଧ ନାହିଁ । ଆପଣ ବିଜ୍ୱର ହୋଇ ଗମନ କରନ୍ତୁ । ୪୭ । ଆମ୍ଭେ ଯେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଦୁଗ୍ଧ ନିମିତ୍ତ ସଂକଳ୍ପ କରିଥିଲୁଁ, ଆପଣ ସେହି ମହାଭାଗ ପିତୃଗଣଙ୍କ ନିକଟରୁ ଜାଣିପାରିବେ । ସମ୍ପ୍ରତି ଗମନ କରିବା ହେଉନ୍ତୁ ।

କ୍ରୋଧରୂପୀ ଧର୍ମ ଜମଦଗ୍ନିଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତ୍ରାସ ସହକାରରେ ଅନ୍ତର୍ହିତ ହେଲେ, ଏବଂ ପିତୃଗଣଙ୍କ ଅଭିଶାପ ବଶତଃ ନକୁଳତ୍ୱ ପ୍ରାପ୍ତ ହେଲେ । ସେ ଶାପନାଶ ନିମିତ୍ତ ସେମାନଙ୍କୁ ପ୍ରସନ୍ନ

Digitized by srujanika@gmail.com

କରାଇଲେ । ସେମାନେ କହିଲେ—ଆପଣ ଧର୍ମର ନିନ୍ଦାକର ଶାପରୁ ମୁକ୍ତ ହେବେ । ୫୦ ।

ଧର୍ମ ସେମାନଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ନକୁଳରୂପରେ ଯଜ୍ଞୀୟ ଦେଶ ଓ ଧର୍ମାରଣ୍ୟମାନଙ୍କରେ ବିଚରଣ କରି ଯଜ୍ଞାଦି ଧର୍ମକାର୍ଯ୍ୟମାନଙ୍କୁ ନିନ୍ଦାକରି ସେହି ଯଜ୍ଞରେ ଉପସ୍ଥିତ ହେଲେ । ୫୧ । ଏବଂ ସେଠାରେ ଯୁଧିଷ୍ଠିରଙ୍କୁ "ତୁମ୍ଭମାନଙ୍କ ଯଜ୍ଞ ଉଞ୍ଛବୃତ୍ତି ବ୍ରାହ୍ମଣଙ୍କ ସକ୍ତୁପ୍ରସ୍ଥ ଦାନର ସମାନ ନୁହେ" ଏହି ପ୍ରକାର ନିନ୍ଦା କରିବାରୁ ସେହି ପାପରୁ ମୁକ୍ତ ହେଲେ ଏବଂ ଯୁଧିଷ୍ଠିରଙ୍କୁ କହିଲେ—ହେ ଯୁଧିଷ୍ଠିର ! ତୁମ୍ଭେ ସାକ୍ଷାତ୍ ଧର୍ମ ଅଟ ।

ତେତେବେଳେ ସେହି ମହାତ୍ମା ନକୁଳ ଯୁଧିଷ୍ଠିରଙ୍କ ଯଜ୍ଞସ୍ଥଳରେ ଆମ୍ଭମାନଙ୍କ ସମକ୍ଷରେ ଏହିପ୍ରକାର କହି ଅନ୍ତର୍ହିତ ହେଲେ । ୫୩ ।



Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

ନାରାୟଣ, ନରୋତ୍ତମ, ନର ଓ ସରସ୍ୱତୀ ଦେବୀଙ୍କୁ ନମସ୍କାରପୂର୍ବକ ଜୟ ଅର୍ଥାତ୍ ଗ୍ରନ୍ଥକୀର୍ତ୍ତନ କରିବାର ବିଧେୟ ।

ଜନମେଜୟ କହିଲେ—ହେ ଦ୍ୱିଜ ! ନରୋତ୍ତମ ! ଆମ୍ଭର ପିତାମହ ମହାତ୍ମା ପାଣ୍ଡବଗଣ ରାଜ୍ୟ ପ୍ରାପ୍ତହୋଇ ମହାତ୍ମା ରାଜା ଧୃତରାଷ୍ଟ୍ରଙ୍କ ପ୍ରତି କିପ୍ରକାର ଆଚରଣ କଲେ, ସେହି ହତୈଶ୍ୱର୍ଯ୍ୟ ହତମିତ୍ର ହତପୁତ୍ର ନିରାଶ୍ରୟ ରାଜା ଧୃତରାଷ୍ଟ୍ର ଏବଂ ଯଶସ୍ୱିନୀ ଗାନ୍ଧାରୀ ଅବା କେଉଁରୂପେ ଅବସ୍ଥାନ କଲେ ଏବଂ ଆମ୍ଭର ସେହି ପୂର୍ବ ପିତାମହ ମହାତ୍ମା ପାଣ୍ଡବଗଣ କେତେକାଳ ପର୍ଯ୍ୟନ୍ତ ରାଜ୍ୟରେ ଅବସ୍ଥାନ କରିଥିଲେ, ଏହି ସମସ୍ତ ବିଷୟ ଆପଣ ଆମ୍ଭନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୩ ।

ବୈଶମ୍ପାୟନ କହିଲେ—ହେ କୁରୁସତ୍ତମ ! ହତଶତ୍ରୁ ମହାତ୍ମା ପାଣ୍ଡବଗଣ ରାଜ୍ୟପ୍ରାପ୍ତ ହେବାରୁ ଧୃତରାଷ୍ଟ୍ରଙ୍କୁ ପୁରଃସର କରାଇ ପୃଥିବୀ ପାଳନ କଲେ । ୪ ।

ହେ ପୁରୁଷୋତ୍ତମ ! ବିଦୁର, ସଞ୍ଜୟ ଏବଂ ବୈଶ୍ୟାପୁତ୍ର ମେଧାବୀ ଯୁଯୁତ୍ସୁ ଏହିମାନେ ସମସ୍ତେ ଧୃତରାଷ୍ଟ୍ରଙ୍କ ସେବାରେ ତତ୍ପର ହେଉଥିଲେ । ୫ ।

ପାଣ୍ଡବମାନେ ରାଜା ଧୃତରାଷ୍ଟ୍ରଙ୍କୁ ସମସ୍ତ ବିଷୟ ଭଲଭାବେ ପଚାରୁଥିଲେ ଏବଂ ତାଙ୍କ ଆଜ୍ଞା ଅନୁସାରେ ପ୍ରତ୍ୟେକ କାର୍ଯ୍ୟ କରୁଥିଲେ । ଏପରି ଏମାନେ ପନ୍ଦର ବର୍ଷ ରାଜ୍ୟଶାସନ କଲେ । ୬ ।

ବୀର ପାଣ୍ଡବଗଣ ପ୍ରତିଦିନ ଯାଇ ଧୃତରାଷ୍ଟ୍ରଙ୍କ ଚରଣରେ ପ୍ରଣାମ ପୂର୍ବକ ଉପାସନା କରୁଥିଲେ ଏବଂ ଧର୍ମରାଜ ଯୁଧିଷ୍ଠିରଙ୍କ ଆଜ୍ଞାର ଅଧୀନ ହୋଇ ରହିଥିଲେ । ୭ । ରାଜା ଧୃତରାଷ୍ଟ୍ର ମଧ୍ୟ ସ୍ନେହବଶତଃ ପାଣ୍ଡବମାନଙ୍କ

Digitized by srujanika@gmail.com

ମସ୍ତକ ଆଘ୍ରାଣ ପୂର୍ବକ ଯେତେବେଳେ ଯିବାପାଇଁ ଆଦେଶ ଦେଉଥିଲେ, ସେତେବେଳେ ସେମାନେ ଆସି ସମସ୍ତ କାର୍ଯ୍ୟ କରୁଥିଲେ । ଏଣେ କୁନ୍ତୀ ମଧ୍ୟ ସେହିପରି ଗାନ୍ଧାରୀଙ୍କ ସେବାରେ ଲାଗିପଡ଼ିଥାନ୍ତି । ୮ । ଦ୍ରୌପଦୀ, ସୁଭଦ୍ରା ତଥା ପାଣ୍ଡବମାନଙ୍କର ଅନ୍ୟାନ୍ୟ ସ୍ତ୍ରୀମାନେ ମଧ୍ୟ କୁନ୍ତୀ ଓ ଗାନ୍ଧାରୀ ଏ ଦୁଇ ଶାଶୂଙ୍କୁ ସମଭାବରେ ଯଥାବିଧି ସେବା କରୁଥିଲେ । ୯ ।

ଧର୍ମରାଜ ଯୁଧିଷ୍ଠିର ରାଜା ଧୃତରାଷ୍ଟ୍ରଙ୍କୁ ରାଜଯୋଗ୍ୟ ଶଯ୍ୟା, ମହାମୂଲ୍ୟ ବସ୍ତ୍ର, ଆଭରଣ ଏବଂ ନାନାବିଧ ଭକ୍ଷ୍ୟ ଓ ଭୋଜ୍ୟଦ୍ରବ୍ୟ ପ୍ରଦାନ କରୁଥିଲେ ଏବଂ କୁନ୍ତୀ ଗାନ୍ଧାରୀଙ୍କୁ ଗୁରୁଙ୍କ ସଦୃଶ ସମ୍ମାନନା କରୁଥିଲେ । ୧୦-୧୧ ।

ହେ କୌରବ ! ବିଦୁର, ସଞ୍ଜୟ ଓ ଯୁଯୁତ୍ସୁ ସେହି ବୃଦ୍ଧ ହତପୁତ୍ର ରାଜା ଧୃତରାଷ୍ଟ୍ରଙ୍କର ଉପାସନା କରୁଥିଲେ । ୧୨ । ଦ୍ରୋଣଙ୍କ ପ୍ରିୟ ଶାଳକ ମହାଧନୁର୍ଦ୍ଧର ବ୍ରାହ୍ମଣଶ୍ରେଷ୍ଠ କୃପାଚାର୍ଯ୍ୟ ଧୃତରାଷ୍ଟ୍ରଙ୍କ ନିକଟରେ ରହିଥିଲେ । ୧୩ । ପୁରାଣ ଋଷି ଭଗବାନ୍ ବ୍ୟାସ ତାହାଙ୍କ ନିକଟରେ ନିତ୍ୟ ଦେବ, ଋଷି, ପିତୃ ଓ ରକ୍ଷୋଗଣ କଥା କୀର୍ତ୍ତନ କରି ଅବସ୍ଥାନ କରୁଥିଲେ । ୧୪ । ବିଦୁର ଧୃତରାଷ୍ଟ୍ରଙ୍କ ଆଦେଶାନୁସାରେ ଧର୍ମ ଓ ବ୍ୟବହାରଯୁକ୍ତ ସମସ୍ତ କାର୍ଯ୍ୟ କରାଉଥିଲେ । ୧୫ । ମହାତ୍ମା ବିଦୁରଙ୍କ ସୁନୀତି ପ୍ରଭାବରେ ଅତି ସାମାନ୍ୟ ଅର୍ଥବ୍ୟୟରେ ସାମନ୍ତ ନରପତିମାନଙ୍କ ନିକଟରୁ ଧୃତରାଷ୍ଟ୍ରଙ୍କର ବହୁତର ପ୍ରିୟକାର୍ଯ୍ୟ ସୁସମ୍ପନ୍ନ ହେଉଥିଲା । ୧୬ ।

ସେ ଆବଦ୍ଧ ବ୍ୟକ୍ତିମାନଙ୍କର ବନ୍ଧନ ମୋଚନ କରୁଥିଲେ ଏବଂ ବଧଯୋଗ୍ୟ ଅପରାଧୀମାନଙ୍କୁ ମୁକ୍ତି ଦେଇ ପ୍ରାଣଦାନ କରୁଥିଲେ । ଏପରି କଲେ ମଧ୍ୟ ଧର୍ମପୁତ୍ର ଯୁଧିଷ୍ଠିର ତଦ୍‌ବିଷୟରେ ତାଙ୍କୁ କେବେ କିଛି କହୁ ନଥିଲେ । ୧୭ । ମହାତେଜା ଯୁଧିଷ୍ଠିର ବିହାର ଓ ଯାତ୍ରା ସମୟରେ ରାଜା ଧୃତରାଷ୍ଟ୍ରଙ୍କ ପାଇଁ ସମସ୍ତ ମନୋବାଂଛିତ ଦ୍ରବ୍ୟର ବ୍ୟବସ୍ଥା କରି ଦେଉଥିଲେ । ୧୮ ।

ରାଜା ଧୃତରାଷ୍ଟ୍ରଙ୍କ ସେବାରେ ପୂର୍ବବତ୍ ଏହି ଅବସରରେ ରନ୍ଧନକାର୍ଯ୍ୟ-ନିପୁଣ ଆରାଳିକ, ସୂପକାର ଓ ରାଗଖାଣ୍ଡିବକମାନେ ଖଟୁଥିଲେ । ୧୯ । ପାଣ୍ଡବମାନେ ଅକୁଣ୍ଠିତ ଚିତ୍ତରେ ଧୃତରାଷ୍ଟ୍ରଙ୍କୁ ଯଥୋଚିତରୂପେ

Digitized by srujanika@gmail.com

ବହୁମୂଲ୍ୟ ବସ୍ତ୍ର, ନାନାପ୍ରକାର ମାଲ୍ୟ, ମୈରେୟ, ମଦ୍ୟ, ମତ୍ସ୍ୟ, ମାଂସ, ପାନୀୟ, ମଧୁ ଏବଂ ବିବିଧ ବିବିଧ ଭକ୍ଷ୍ୟଦ୍ରବ୍ୟସମୂହ ପ୍ରଦାନ କରୁଥିଲେ ।୨୧।

ହେ ପୁରୁଷଶ୍ରେଷ୍ଠ ! ଯେଉଁ ନରପାଳଗଣ ନାନା ଦେଶରୁ ସେଠାକୁ ସମାଗତ ହୋଇଥିଲେ, ସେମାନେ ସମସ୍ତେ ସେହି କୁରୁରାଜ ଧୃତରାଷ୍ଟ୍ରଙ୍କର ପୁତ୍ର ବିୟୋଗରେ ଯେଉଁପରି କୌଣସି ଦୁଃଖ ଉପସ୍ଥିତ ନହୁଏ, ଏହି କଥା ମନେ କରି ପୂର୍ବବତ୍ ତାହାଙ୍କ ସେବା କରୁଥିଲେ ଏବଂ କୁନ୍ତୀ, ଦ୍ରୌପଦୀ, ଯଶସ୍ୱିନୀ ସୁଭଦ୍ରା, ନାଗରାଜତନୟା ଉଲୂପୀ, ଦେବୀ ଚିତ୍ରାଙ୍ଗଦା, ଧୃଷ୍ଟକେତୁଙ୍କ ଭଗିନୀ ଏବଂ ଜରାସନ୍ଧଙ୍କ ସୁତା ଏମାନେ, ଓ ଅନ୍ୟାନ୍ୟ ସ୍ତ୍ରୀ, ବଧୂବୃନ୍ଦ କିଙ୍କରୀ ହୋଇ ସୁବଳନନ୍ଦିନୀ ଗାନ୍ଧାରୀଙ୍କ ସେବା କରୁଥିଲେ । ୨୫ । ଯୁଧିଷ୍ଠିର ଭ୍ରାତୃଗଣଙ୍କୁ ଧୃତରାଷ୍ଟ୍ରଙ୍କ ସେବାନିମିତ୍ତ ଆଦେଶ କରିଥିଲେ । ଧୃତରାଷ୍ଟ୍ରଙ୍କ ଦୁର୍ବୁଦ୍ଧିବଶତଃ ଯେଉଁ ଦ୍ୟୂତକାର୍ଯ୍ୟ ହୋଇଥିଲା, ତାହା ଅଦ୍ୟାବଧି ଭୀମଙ୍କ ହୃଦୟରୁ ଦୂରୀଭୂତ ହୋଇ ନଥିବାରୁ କେବଳ ଭୀମଙ୍କ ବ୍ୟତିରେକେ ସମସ୍ତ ଭ୍ରାତୃଗଣ ଧର୍ମରାଜଙ୍କର ଅର୍ଥଯୁକ୍ତ ବାକ୍ୟ ଶ୍ରବଣ କରି ବିଶେଷ ଯତ୍ନ ସହକାରରେ ସେହି କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲେ । ୨୭ ।

---

# ଦ୍ୱିତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଅମ୍ବିକାତନୟ ରାଜା ଧୃତରାଷ୍ଟ୍ର ପାଣ୍ଡବଗଣଙ୍କଦ୍ୱାରା ଏହିରୂପେ ପୂଜିତ ଏବଂ ଋଷିଗଣକର୍ତ୍ତୃକ ସମ୍ୟକ୍ ଉପାସିତ ହୋଇ ପୂର୍ବବତ୍ ବିହାର କରୁଥିଲେ । ୧ ।

କୁରୁକୁଳତିଳକ ରାଜା ଧୃତରାଷ୍ଟ୍ର ବ୍ରାହ୍ମଣମାନଙ୍କୁ ଦେବାର ଉପଯୁକ୍ତ ଯେଉଁସବୁ ଉତ୍କୃଷ୍ଟ ଦ୍ରବ୍ୟ ପ୍ରଦାନ କରିବାକୁ ଅଭିଳାଷୀ ହୋଇଥିଲେ, କୁନ୍ତୀନନ୍ଦନ ରାଜା ଯୁଧିଷ୍ଠିର ସେହି ସମସ୍ତ ଦ୍ରବ୍ୟ ତାହାଙ୍କୁ ପ୍ରଦାନ କରିଥିଲେ । ୨ ।

ତଦନନ୍ତର ସରଳସ୍ୱଭାବ ରାଜା ଯୁଧିଷ୍ଠିର ପରମ ପ୍ରୀତହୋଇ ଅମାତ୍ୟ ଓ ଭ୍ରାତୃଗଣଙ୍କୁ କହିଲେ—ଏହି ନରନାଥ ରାଜା ଧୃତରାଷ୍ଟ୍ର ଆମ୍ଭର ଏବଂ

Digitized by srujanika@gmail.com

ତୁମ୍ଭମାନଙ୍କର ମାନ୍ୟ । ଅତଏବ ଯେଉଁ ବ୍ୟକ୍ତି ଏହାଙ୍କ ଆଦେଶାନୁସାରେ ନ ରହିବେ, ଏବଂ ଯେଉଁ ବ୍ୟକ୍ତି ଏହାଙ୍କ ଆଦେଶର ବିପରୀତ ଆଚରଣ କରିବେ, ସେ ଆମ୍ଭର ଶତ୍ରୁ ରୂପେ ପରିଗୃହୀତ ହେବେ । ପିତୃବାସର ଏବଂ ପୁତ୍ର ଓ ସୁହୃଦ୍‌ଗଣଙ୍କ ଶ୍ରାଦ୍ଧ କାର୍ଯ୍ୟରେ ଏହାଙ୍କର ଯାହା କରିବାକୁ ଇଚ୍ଛା ହେବ, ଏ ତାହା କରିବେ ।

ତଦନନ୍ତର କୁରୁକୁଳତିଳକ ମହାମନା ରାଜା ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କ ସମ୍ମତି ଅନୁସାରେ ବ୍ରାହ୍ମଣଗଣଙ୍କୁ ଯଥାଯୋଗ୍ୟ ବହୁତର ବିତ୍ତ ପ୍ରଦାନ କରୁଥିଲେ । ଧର୍ମରାଜ, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଏମାନେ ତାହାଙ୍କ ପ୍ରିୟ କାମନାରେ ସେହି ବିଷୟରେ ଅନୁମୋଦନ କରୁଥିଲେ । ଏବଂ ସେମାନେ ମନେ ମନେ ଏହିପରି ବିବେଚନା କରୁଥିଲେ ଯେ, ଏହି ବୃଦ୍ଧ ନରପତି ପୁତ୍ର ଓ ପୌତ୍ରବଧରେ ପୀଡ଼ିତ ଓ ଅସ୍ମତ୍‌କୃତ ଶୋକପ୍ରାପ୍ତ ହୋଇ ସୁଦ୍ଧା ଯଦି ମୃତ ହେଲେ ନାହିଁ, ତେବେ ଏହି କୁରୁପତି ଧୃତରାଷ୍ଟ୍ର ପୁତ୍ର ଥିଲେ ଯେଉଁପରି ସୁଖଭୋଗ କରନ୍ତେ, ସଂପ୍ରତି ମଧ୍ୟ ସେହିପରି ସମସ୍ତ ସୁଖ ଭୋଗକରନ୍ତୁ ।

ତଦନନ୍ତର ସେହି ପାଣ୍ଡୁପୁତ୍ର ତାଦୃଶ ସ୍ୱଭାବସଂପନ୍ନ ପଞ୍ଚଭ୍ରାତା ଏକତ୍ରିତ ହୋଇ ଧୃତରାଷ୍ଟ୍ରଙ୍କ ଶାସନରେ ଅବସ୍ଥାନ କଲେ । ଧୃତରାଷ୍ଟ୍ର ମଧ୍ୟ ଶିଷ୍ୟବୃତ୍ତିସମାପନ୍ନ ନିୟମରେ ସ୍ଥିତ ବିନୀତ ସେହି ପାଣ୍ଡୁପୁତ୍ରମାନଙ୍କଠାରେ ଗୁରୁସଦୃଶ ଆଚରଣ କଲେ । ଏବଂ ଗାନ୍ଧାରୀ ପୁତ୍ରମାନଙ୍କ ବିବିଧ ଶ୍ରାଦ୍ଧକାର୍ଯ୍ୟ ଉପଲକ୍ଷ୍ୟରେ ବିପ୍ରବର୍ଗଙ୍କୁ ସମସ୍ତ କାମ୍ୟବସ୍ତୁ ପ୍ରଦାନ କରି ଅନୃଣତା ଲାଭକଲେ ।

ଧାର୍ମିକପ୍ରବର ଧୀମାନ୍ ଧର୍ମରାଜ ଯୁଧିଷ୍ଠିର ଭ୍ରାତୃଗଣରେ ପରିବେଷ୍ଟିତ ହୋଇ ଏହିରୂପେ ସେହି ନରପତି ଧୃତରାଷ୍ଟ୍ରଙ୍କ ସେବା କରୁଥିଲେ । ସେହି କୁରୁକୁଳୋଦ୍‌ବହ ମହାତେଜା ବୃଦ୍ଧ ନରପତି ପାଣ୍ଡୁନନ୍ଦନମାନଙ୍କର କିଂଚିନ୍ମାତ୍ର ଅପ୍ରିୟ କାର୍ଯ୍ୟ ଦେଖିଲେ ନାହିଁ, ସୁତରାଂ ସେ ସେହି ସମବୃତ୍ତି-ସଂପନ୍ନ ମହାତ୍ମା ପାଣ୍ଡବଗଣଙ୍କଠାରେ ପ୍ରୀତିଯୁକ୍ତ ହେଲେ । ସୁବଳତନୟା ଗାନ୍ଧାରୀ ମଧ୍ୟ ପାଣ୍ଡବଗଣଙ୍କର ସଦ୍‌ବୃତ୍ତି ଦର୍ଶନକରି ପୁତ୍ରଶୋକ ପରିତ୍ୟାଗ ପୂର୍ବକ ସେମାନଙ୍କଠାରେ ନିଜ ତନୟ ସଦୃଶ ସଂତୁଷ୍ଟ ହେଲେ ।

Digitized by srujanika@gmail.com

କୁରୁପ୍ରବୀର ବୀର୍ଯ୍ୟବାନ୍ ଯୁଧିଷ୍ଠିର ବଚିତ୍ରବୀର୍ଯ୍ୟଙ୍କ ପୁତ୍ର ନରପତି ଧୃତରାଷ୍ଟ୍ରଙ୍କ ପ୍ରତି ଅପ୍ରିୟ ଆଚରଣ ନ କରି କେବଳ ପ୍ରିୟକାର୍ଯ୍ୟ କରୁଥିଲେ । ୧୭ । ଜନନାଥ ଧୃତରାଷ୍ଟ୍ର ଓ ତପସ୍ୱିନୀ ଗାନ୍ଧାରୀ ତାହାଙ୍କୁ ଯେଉଁ ଯେଉଁ କାର୍ଯ୍ୟରେ ନିଯୋଗ କରୁଥିଲେ, ତାହାସବୁ କଠିନ ହେଉ ଅବା ସହଜ ହେଉ ପାଣ୍ଡବପ୍ରବରବାହୀ ପରବୀରଘାତୀ ମହାରାଜ ଯୁଧିଷ୍ଠିର ତାହାଙ୍କୁ ପୂଜାକରି ତାହାସବୁ ସଂପାଦନ କରାଉଥିଲେ ।

ନରନାଥ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କ ବ୍ୟବହାରରେ ପ୍ରୀତ ହୋଇଥିଲେ । ସେହି କାରଣରୁ ସେହି ମନ୍ଦମତି ପୁତ୍ରଙ୍କୁ ସ୍ମରଣ କରି ଅନୁତାପ କରୁଥିଲେ ।

ତଦନନ୍ତର ନୃପତି ଧୃତରାଷ୍ଟ୍ର ପ୍ରତିଦିନ ପ୍ରଭାତରେ ଉତ୍ଥିତ ହୋଇ, ଶୁଚି ହୋଇ ଜପ ପ୍ରଭୃତି ଦୈବକାର୍ଯ୍ୟ ସମାଧାନ କରି ସଂବତ୍ସରରେ ପାଣ୍ଡୁପୁତ୍ରମାନଙ୍କର ସମରରେ ଅପରାଜୟ ଆକାଂକ୍ଷା କଲେ । ବ୍ରାହ୍ମଣଗଣଙ୍କୁ ସ୍ୱସ୍ତିବାଚନ କରାଇ ହୁତାଶନରେ ଆହୁତି ପ୍ରଦାନପୂର୍ବକ ପାଣ୍ଡୁପୁତ୍ରମାନଙ୍କର ଅପରିମିତ ଆୟୁ ଆକାଂକ୍ଷା କଲେ । ସେହି କୁରୁପତି ପାଣ୍ଡୁପୁତ୍ରମାନଙ୍କ ନିକଟରୁ ଯେଉଁରୂପେ ପ୍ରୀତିଲାଭ କରିଥିଲେ, ନିଜ ପୁତ୍ରମାନଙ୍କଠାରୁ ତାଦୃଶ ପ୍ରୀତି ପ୍ରାପ୍ତ ହୋଇନଥିଲେ ।

ତେତେବେଳେ ଯଥୋକ୍ତ ବୃତ୍ତି ଓ ଯଥୋକ୍ତ ବିଧାନବିତ୍ ଯୁଧିଷ୍ଠିର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରସମୂହର ସମାଦରଣୀୟ ହେଲେ । ଧୃତରାଷ୍ଟ୍ରଙ୍କ ପୁତ୍ରଗଣ ତାହାଙ୍କଠାରେ ଯେଉଁ ଅନିଷ୍ଟାଚରଣ କରିଥିଲେ, ତେତେବେଳେ ସେ ତାହା ହୃଦୟରୁ ନିଃସାରଣ କରି ନରନାଥ ଧୃତରାଷ୍ଟ୍ରଙ୍କର ଅତ୍ୟନ୍ତ ଅନୁବର୍ତ୍ତୀ ହେଲେ । ତେତେବେଳେ ଯଦି କୌଣସି ବ୍ୟକ୍ତି ଅମ୍ବିକାପୁତ୍ର ଧୃତରାଷ୍ଟ୍ରଙ୍କର କିଂଚିତ୍ ଅପ୍ରିୟ କାର୍ଯ୍ୟ କରନ୍ତି ସେ କୁନ୍ତୀତନୟ ଧୀମାନ୍ ଧର୍ମରାଜଙ୍କର ଶତ୍ରୁ ହୁଅନ୍ତି । ଯୁଧିଷ୍ଠିରଙ୍କ ଭୟରେ କୌଣସି ନର ରାଜା ଧୃତରାଷ୍ଟ୍ରଙ୍କର ଅଥବା ଦୁର୍ଯ୍ୟୋଧନଙ୍କ ପ୍ରତି ଦୋଷାରୋପ କରୁନଥିଲେ ।

ହେ ଶତ୍ରୁନାଶନ ! ଗାନ୍ଧାରୀ ଓ ବିଦୁର ଅଜାତଶତ୍ରୁ ନରନାଥ ଯୁଧିଷ୍ଠିରଙ୍କର ଧୈର୍ଯ୍ୟ ଏବଂ ଶୌଚ୍ୟବ୍ୟବହାର ଯାଦୃଶ ସନ୍ତୁଷ୍ଟ ହେଉଥିଲେ ଭୀମଙ୍କ ପ୍ରତି ତାଦୃଶ ସନ୍ତୁଷ୍ଟ ନଥିଲେ । ଭୀମସେନ ଧୃତରାଷ୍ଟ୍ରଙ୍କୁ ଦର୍ଶନକରି

Digitized by srujanika@gmail.com

ମନେ ମନେ ଅତ୍ୟନ୍ତ ବିରକ୍ତ ହେଉଥିଲେ । କେବଳ ଅମିତଧୀଶାଳୀ କୁରୁବଂଶାବତଂସ ଧର୍ମନନ୍ଦନ ରାଜା ଯୁଧିଷ୍ଠିର ତାହାଙ୍କ ପରିଚର୍ଯ୍ୟା କରନ୍ତି ବୋଲି ସେ ମନେ ମନେ ବିରକ୍ତ ହୋଇ ଅତି ଅପ୍ରୀତଚିତ୍ତରେ ତାହାଙ୍କ ଶୁଶ୍ରୂଷା କରୁଥିଲେ । ୩୦ ।

---

# ତୃତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଜନପଦବାସୀ ନରଗଣ ରାଜ୍ୟମଧ୍ୟରେ ରାଜା ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନପିତା ନରପାଳ ଧୃତରାଷ୍ଟ୍ରଙ୍କ ପ୍ରଣୟରେ କିଛିମାତ୍ର ଅନ୍ତର ଲକ୍ଷ୍ୟ କରିପାରିଲେ ନାହିଁ । ୧ ।

ହେ ରାଜନ୍ ! ଯେତେବେଳେ ରାଜା ଧୃତରାଷ୍ଟ୍ର ଦୁର୍ମତି ପୁତ୍ରଙ୍କୁ ସ୍ମରଣ କରନ୍ତି, ତେତେବେଳେ ସେ ଭୀମଙ୍କୁ ଅପରାଧୀ ବୋଲି ମନେ କରନ୍ତି ନାହିଁ । ସେହି କାରଣରୁ ଭୀମ ମଧ୍ୟ ହୃଷ୍ଟ ସଦୃଶ ନରନାଥ ଧୃତରାଷ୍ଟ୍ରଙ୍କ ପ୍ରତି କୋପ କରନ୍ତି ନାହିଁ ।

ତତ୍ପରେ ବୃକୋଦର ଧୃତରାଷ୍ଟ୍ରଙ୍କର ଅପ୍ରକାଶ୍ୟ ଅପ୍ରିୟ କାର୍ଯ୍ୟ କରି ସର୍ବଦା କୃତକର୍ମା ପୁରୁଷଗଣଙ୍କଦ୍ୱାରା ତାହାଙ୍କ ଆଦେଶ ପାଳନ କରୁଥିଲେ । ୪ ।

ଭୀମ ଧୃତରାଷ୍ଟ୍ରଙ୍କର କୌଣସି କାର୍ଯ୍ୟ ଓ ଦୁର୍ଯ୍ୟୋଧନ-ଦୁର୍ମନ୍ତ୍ରିତ ବିଷୟ ସ୍ମରଣ କଲେ ସୁହୃଜ୍ଜନ ମଧ୍ୟରେ ବାହୁଶବ୍ଦ କରନ୍ତି । ୫ ।

ଏକଦା ଭୀମ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ନିକଟରେ ଶତ୍ରୁ ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଦୁଃଶାସନଙ୍କୁ ସ୍ମରଣ କରି ଅତିଶୟ କୋପଯୁକ୍ତ ହୋଇ ସଂରମ୍ଭ ସହକାରରେ ଏହିପ୍ରକାର ପୁରୁଷବାକ୍ୟ କହିଲେ ଯେ, ନାନା ଶସ୍ତ୍ର ଓ ଅସ୍ତ୍ରଧାରୀ ମହାଯୋଦ୍ଧା ଅନ୍ଧ ନରପତି ଧୃତରାଷ୍ଟ୍ରଙ୍କ ପୁତ୍ରଗଣ ଆମ୍ଭର ପରିଘ ସଦୃଶ ବାହୁଦ୍ୱାରା ଏହି ଲୋକରେ ନିହତ ହୋଇଅଛନ୍ତି । ଧାର୍ତ୍ତରାଷ୍ଟ୍ରଗଣ ଯେଉଁ ଭୁଜଦ୍ୱୟର ମଧ୍ୟଗତ ହୋଇ କ୍ଷୟପ୍ରାପ୍ତ ହୋଇଅଛନ୍ତି, ଆମ୍ଭର ସେହି ଏହି ପରିଘ ସଦୃଶ ଦୁରାସଦ ଭୁଜଯୁଗଳ ବିଦ୍ୟମାନ ହୋଇଅଛନ୍ତି । ୮ ।

Digitized by srujanika@gmail.com

ମୂଢ଼ ଧୃତରାଷ୍ଟ୍ରଙ୍କ ପୁତ୍ରବୃନ୍ଦ ସମରକ୍ଷେତ୍ରରେ ଯେଉଁ ବାହୁଯୁଗଳ ପ୍ରାପ୍ତହୋଇ ନିଧନ ଲାଭ କରିଅଛନ୍ତି, ଆମ୍ଭର ସେହି ଏହି କରିକରୋପମ ପୀନ ସୁବୃତ୍ତ ବାହୁଯୁଗଳ ବିଦ୍ୟମାନ ଅଛନ୍ତି । ଯେଉଁ ବାହୁଦ୍ୱୟଦ୍ୱାରା ସୁଯୋଧନ ସୁତ ଓ ସୁହୃଦ୍‌ବର୍ଗଙ୍କ ସହିତ ପରାସ୍ତ ହୋଇଅଛନ୍ତି, ଆମ୍ଭର ସେହି ଏହି ଚନ୍ଦନାର୍ହ ଭୁଜଯୁଗଳ ସୁଗନ୍ଧ ଚନ୍ଦନଦ୍ୱାରା ଚର୍ଚ୍ଚିତ ହୋଇ ଶୋଭା ପାଉଅଛନ୍ତି ।

ନରପତି ଧୃତରାଷ୍ଟ୍ର ବୃକୋଦରଙ୍କ ଶଲ୍ୟଭୂତ ଏତାଦୃଶ ଓ ଅନ୍ୟବିଧ ବିବିଧ ବାକ୍ୟ ଶ୍ରବଣ କରି ପରମ ନିର୍ବେଦପ୍ରାପ୍ତ ହେଲେ । ପରନ୍ତୁ ବୁଦ୍ଧିମତୀ କାଳପର୍ଯ୍ୟାୟବେଦିନୀ ସର୍ବଧର୍ମଜ୍ଞା ଗାନ୍ଧାରୀ ଭୀମଙ୍କର ସେହି ବାକ୍ୟସବୁ ଅଳୀକ ବୋଲି ବୋଧ କଲେ ।

ତଦନନ୍ତର ପଞ୍ଚଦଶ ବର୍ଷ ଅତୀତ ହେବାରୁ ନରନାଥ ରାଜା ଧୃତରାଷ୍ଟ୍ର ଭୀମଙ୍କ ବାକ୍ୟଗଣରେ ପୀଡ଼ିତ ହୋଇ ପରମ ନିର୍ବେଦପ୍ରାପ୍ତ ହେଲେ । କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର, ଶ୍ୱେତାଶ୍ୱ ଅର୍ଜ୍ଜୁନ, ଧର୍ମଜ୍ଞ ମାଦ୍ରୀପୁତ୍ର ନକୁଳ-ସହଦେବ, କୁନ୍ତୀ ଓ ଯଶସ୍ୱିନୀ ଦ୍ରୌପଦୀ—ଏମାନେ ତାହା ଅବଗତ ହୋଇ-ନପାରି ତାହାଙ୍କ ଚିତ୍ତର ଅନୁବର୍ତ୍ତୀ ହେଲେ । ପରନ୍ତୁ ସେମାନେ ରାଜାଙ୍କ ଚିତ୍ତ ରକ୍ଷାକରି କୌଣସି ଅପ୍ରିୟ ବାକ୍ୟ କହିଲେ ନାହିଁ ।

ତଦନନ୍ତର ଧୃତରାଷ୍ଟ୍ର ବାଷ୍ପାକୁଳ ଲୋଚନରେ ଗଦ୍‌ଗଦ ହୋଇ ସୁହୃଜ୍ଜନଙ୍କୁ ସମ୍ମାନିତ କରି ସେମାନଙ୍କୁ କହିଲେ । ୧୭ ।

ଧୃତରାଷ୍ଟ୍ର କହିଲେ—ହେ ସୁହୃଜ୍ଜନଗଣ ! ଯେଉଁରୂପେ କୁରୁକୁଳ କ୍ଷୟପ୍ରାପ୍ତ ହୋଇଅଛି, ତାହା ତୁମ୍ଭେମାନେ ବିଶେଷରୂପେ ବିଦିତ ହୋଇଅଛ । ସମସ୍ତ କୌରବଗଣ ନିଶ୍ଚିତରୂପେ ଜାଣନ୍ତି ଯେ, ଆମ୍ଭର ଅପରାଧ ହିଁ ସମସ୍ତ ଅନର୍ଥର ମୂଳ ।

ଦୁର୍ଯ୍ୟୋଧନ ଦୁଷ୍ଟବୁଦ୍ଧି ଥିଲେ । ସେ ଜ୍ଞାତିଭାଇମାନଙ୍କର ଭୟ ଉତ୍ପାଦନ କରୁଥିଲେ । ତଥାପି ଆମ୍ଭର ମୂର୍ଖତାବଶତଃ ଆମ୍ଭେ ତାଙ୍କୁ କୌରବ ରାଜସିଂହାସନରେ ଅଭିଷିକ୍ତ କଲୁଁ । ୧୮ ।

ବସୁଦେବନନ୍ଦନ ଭଗବାନ୍ ଶ୍ରୀକୃଷ୍ଣଙ୍କ ଉପଦେଶ ଆମ୍ଭେ ମାନିଲୁଁ ନାହିଁ । ମନୀଷୀ ପୁରୁଷଗଣ ଆମ୍ଭଙ୍କୁ ଏହି ହିତବାକ୍ୟ କହିଥିଲେ କି, ଏହି

Digitized by srujanika@gmail.com

ଦୁଷ୍ଟବୁଦ୍ଧି ପାପୀ ଦୁର୍ଯ୍ୟୋଧନଙ୍କୁ ତପାସ୍ୱ ମନ୍ତ୍ରିଗଣ ସହିତ ବାହାର କରିଦେଲେ ସଂସାରର ହିତ ହେବ । କିନ୍ତୁ ପୁତ୍ରସ୍ନେହରେ ବଶୀଭୂତ ହୋଇ ଆମ୍ଭେ ଏହା କଲୁନାହିଁ । ୧୯ ।

ବିଦୁର, ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମହାତ୍ମା ଭଗବାନ୍ ବ୍ୟାସ, ସଞ୍ଜୟ ଏବଂ ଗାନ୍ଧାରୀଦେବୀ ମଧ୍ୟ ଆମ୍ଭଙ୍କୁ ବାରମ୍ବାର ଉଚିତ ପରାମର୍ଶ ଦେଲେ । କିନ୍ତୁ ଆମ୍ଭେ କାହାରି କଥା ଶୁଣିଲୁ ନାହିଁ । ଆମ୍ଭର ଏହି ଭୁଲ ଲାଗି ଆମ୍ଭେ ସଦା ସନ୍ତପ୍ତ ହେଉଅଛୁଁ ।

ମହାତ୍ମା ପାଣ୍ଡବମାନେ ଗୁଣବାନ୍ ହେଲେହେଁ ତାଙ୍କର ଏହି ଉଜ୍ଜ୍ୱଳ ପୈତୃକ ସମ୍ପତ୍ତି ମଧ୍ୟ ଆମ୍ଭେ ତାଙ୍କୁ ଦେଲୁନାହିଁ । ୨୨ ।

ସମସ୍ତ ରାଜାଙ୍କର ବିନାଶ ଆସନ୍ନ ଦେଖିପାରି ଗଦାଗ୍ରଜ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କର ରାଜ୍ୟ ତାଙ୍କୁ ଫେରସ୍ତ ଦେବାପାଇଁ କଲ୍ୟାଣପ୍ରଦ ବାକ୍ୟ କହିଲେ ସୁଦ୍ଧା ଆମ୍ଭେ ତାହା କରିପାରିଲୁ ନାହିଁ । ୨୩ ।

ଏହିପରି ସହସ୍ର ଭୁଲ ଦ୍ୱାରା ଆମ୍ଭର ହୃଦୟ କଣ୍ଟକବିଦ୍ଧ ହୋଇଅଛି । ପନ୍ଦରବର୍ଷ ପରେ ଆଜି ସେହି ଭୁଲ ହୃଦୟଙ୍ଗମ କରି ଆମ୍ଭେ ପାପଶୁଦ୍ଧି ନିମିତ୍ତ ନିୟମବର୍ତ୍ତୀ ହୋଇଅଛୁଁ । ୨୪ ।

କେବେ ଦୁଇଦିନ ପରେ, କେବେ ଚାରିଦିନ ପରେ ଆମ୍ଭେ କ୍ଷୁଧାନିବାରଣାର୍ଥ ଅଳ୍ପାହାର କରୁଅଛୁଁ । ଆମ୍ଭର ଏହି ନିୟମାନୁବର୍ତ୍ତିତା କେବଳ ଗାନ୍ଧାରୀଦେବୀ ଅବଗତ ଅଛନ୍ତି; କିନ୍ତୁ ଅନ୍ୟ ସମସ୍ତେ 'ଆମ୍ଭେ ପ୍ରତିଦିନ ଭୋଜନ କରୁଁ' ବୋଲି ଜାଣନ୍ତି । ୨୭ ।

ଯୁଧିଷ୍ଠିରଙ୍କ ଭୟରେ ଲୋକେ ଆମ୍ଭ ପାଶକୁ ଆସନ୍ତି । ପାଣ୍ଡୁପୁତ୍ର ଯୁଧିଷ୍ଠିର ଆମ୍ଭଙ୍କୁ ଆରାମ ଦେବା ସକାଶେ ଅତ୍ୟନ୍ତ ଚିନ୍ତିତ । ଆମ୍ଭେ ଏବଂ ଯଶସ୍ୱିନୀ ଗାନ୍ଧାରୀ ଉଭୟେ ନିୟମପାଳନରେ ବ୍ରତୀ ହୋଇ ମୃଗଚର୍ମ ପରିଧାନ ପୂର୍ବକ କୁଶାସନୋପରି ଉପବେଶନ କରି ମନ୍ତ୍ର ଜପ କରୁଁ ଏବଂ ଭୂମି ଉପରେ ଶୟନ କରୁଅଛୁଁ । ୨୮ ।

Digitized by srujanika@gmail.com

ଆମ୍ଭ ଉଭୟଙ୍କର ଶତପୁତ୍ର ଯୁଦ୍ଧରେ ପ୍ରାଣତ୍ୟାଗ କଲେ ସୁଦ୍ଧା ସେମାନଙ୍କ ଲାଗି ଆମ୍ଭ ମନରେ ଦୁଃଖ ନାହିଁ । କାରଣ, ସେମାନେ କ୍ଷତ୍ରିୟଧର୍ମ ଜାଣିଥିଲେ ଏବଂ ସେହି ଅନୁସାରେ ଯୁଦ୍ଧରେ ପ୍ରାଣତ୍ୟାଗ କଲେ । ୨୯ ।

ସୁହୃଦ୍‌ଗଣଙ୍କୁ ଏହିପରି କହି, ଧୃତରାଷ୍ଟ୍ର ରାଜା ଯୁଧିଷ୍ଠିରଙ୍କୁ କହିଲେ— କୁନ୍ତୀନନ୍ଦନ ! ତୁମ୍ଭର କଲ୍ୟାଣ ହେଉ ! ତୁମ୍ଭେ ଆମ୍ଭର ଏହି ବାଣୀ ଶ୍ରବଣ କର । ୩୦ ।

ବତ୍ସ ! ତୁମ୍ଭଦ୍ୱାରା ସୁରକ୍ଷିତ ହୋଇ ଆମ୍ଭେ ଏଠାରେ ବଡ଼ ସୁଖରେ ଅଛୁଁ । ଆମ୍ଭେ ବହୁତର ବିଶିଷ୍ଟ ଦାନ ଦେଇଅଛୁଁ ଏବଂ ବହୁବାର ଶ୍ରାଦ୍ଧକର୍ମାନୁଷ୍ଠାନ କରିଅଛୁଁ । ହେ ପୁତ୍ର ! ଆପଣାର ଶକ୍ତି ଅନୁସାରେ ଉତ୍କୃଷ୍ଟ ପୁଣ୍ୟ ଅନୁଷ୍ଠାନ କରି ଏବଂ ଶତପୁତ୍ରଙ୍କ ମରଣଦୁଃଖ ସହ୍ୟକରି ସୁଦ୍ଧା ଗାନ୍ଧାରୀ ଦେବୀ ଧୈର୍ଯ୍ୟପୂର୍ବକ ଆମ୍ଭର ପରିଚର୍ଯ୍ୟା କରୁଛନ୍ତି । ୩୨ ।

ହେ କୁରୁନନ୍ଦନ ! ଯେ ଦ୍ରୌପଦୀଙ୍କୁ ଅତ୍ୟାଚାର କରିଥିଲେ, ଯେ ତୁମ୍ଭର ଐଶ୍ୱର୍ଯ୍ୟ ଅପହରଣ କରିଥିଲେ ସେହି କ୍ରୂରକର୍ମୀ ଆମ୍ଭ ପୁତ୍ର କ୍ଷତ୍ରିୟଧର୍ମ ଅନୁସାରେ ଯୁଦ୍ଧରେ ମରଣ ବରଣ କଲେ । ବର୍ତ୍ତମାନ ତାଙ୍କ ନିମିତ୍ତ ପ୍ରତିକର୍ତ୍ତବ୍ୟ କରିବା ଆବଶ୍ୟକତା ଆମ୍ଭେ ଦେଖୁନାହୁଁ । ୩୪ ।

ଯେହେତୁ ସେମାନେ ସମ୍ମୁଖଯୁଦ୍ଧରେ ପ୍ରାଣଦାନ କଲେ, ତେଣୁ ଶସ୍ତ୍ରଧାରୀମାନଙ୍କୁ ଯେଉଁ ଲୋକ ମିଳେ ସେହି ଲୋକ ସେମାନେ ପ୍ରାପ୍ତହେଲେ ।

ହେ ରାଜେନ୍ଦ୍ର ! ବର୍ତ୍ତମାନ ଆମ୍ଭର ଓ ଗାନ୍ଧାରୀଦେବୀଙ୍କର ଆପଣା- ଆପଣାର ହିତ ନିମିତ୍ତ ପବିତ୍ର ତପ କରିବା ଆବଶ୍ୟକ । ଅତଏବ ତନ୍ନିମିତ୍ତ ଆମ୍ଭଙ୍କୁ ଅନୁମତି ପ୍ରଦାନ କରନ୍ତୁ ।

ତୁମ୍ଭେ ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ସଦା ଧର୍ମପ୍ରତି ଅନୁରାଗ ରଖିଅଛ । ରାଜା ସମସ୍ତ ପ୍ରାଣୀଙ୍କର ଗୁରୁଜନ ତୁଲ୍ୟ ଆଦରଣୀୟ ଅଟନ୍ତି । ତେଣୁ କରି ତୁମ୍ଭଙ୍କୁ ଏହି ଅନୁରୋଧ କରୁଛୁଁ । ହେ ବୀର ! ତୁମ୍ଭର ଅନୁମତି ମିଳିଲେ ଆମ୍ଭେ ବନକୁ ଗମନ କରିବୁଁ । ୩୬ ।

Digitized by srujanika@gmail.com

ହେ ରାଜନ୍ ! ସେଠାରେ ଆମ୍ଭେ କୌପୀନ ଓ ବଲ୍‌କଲ ଧାରଣକରି ଗାନ୍ଧାରୀଙ୍କ ସହିତ ବିଚରଣ କରିବୁଁ ଏବଂ ତୁମ୍ଭଙ୍କୁ ଆଶୀର୍ବାଦ କରୁଥିବୁଁ ।୩୮।

ବତ୍ସ ! ଭରତଶ୍ରେଷ୍ଠ ! ନରେଶ୍ୱର ! ଆମ୍ଭର କୁଳାଗ୍ରର ହେଉଛି ଅନ୍ତିମକାଳରେ ପୁତ୍ରକୁ ରାଜ୍ୟ ଦେଇ ବନକୁ ଚାଲିଯିବା । ହେ ବୀର ! ସେଠାରେ ଆମ୍ଭେ ପବନ ଆହାର କରି ଅଥବା ଉପବାସରେ ରହି ଆମ୍ଭର ଧର୍ମପତ୍ନୀ ଗାନ୍ଧାରୀ ଦେବୀଙ୍କ ସହିତ ଉତ୍ତମ ତପସ୍ୟା କରିବୁଁ । ତୁମ୍ଭେ ମଧ୍ୟ ଉକ୍ତ ତପସ୍ୟାର ଉତ୍ତମ ଫଳରେ ଭାଗୀ ହେବ । କାରଣ ତୁମ୍ଭେ ରାଜା ଅଟ, ଏବଂ ରାଜା ଆପଣା ରାଜ୍ୟଭିତରେ ହେବା ସବୁ ଭଲ ଓ ମନ୍ଦ କର୍ମର ଫଳଭାଗୀ ହୁଅନ୍ତି । ୪୦ ।

ଯୁଧିଷ୍ଠିର କହିଲେ—ମହାରାଜ ! ଆପଣ ଏଠାରେ ଆମ୍ଭର ଅଜ୍ଞାତରେ ଏହି ପ୍ରକାର ଦୁଃଖଭୋଗ କରୁଥିବା ଯୋଗୁଁ ଏହି ରାଜ୍ୟପ୍ରାପ୍ତିରେ ଆମ୍ଭେ ପ୍ରସନ୍ନ ନୋହୁଁ । ହାୟ ! ଆମ୍ଭର ବୁଦ୍ଧି କେଡ଼େ ମନ୍ଦ ! ଆମ୍ଭ ଭଳି ପ୍ରମାଦୀ ଓ ରାଜ୍ୟାସକ୍ତ ପୁରୁଷକୁ ଧିକ୍ ! ୪୧ ।

ଆପଣ ଦୁଃଖରେ ଆତୁର ହୋଇ ଓ ଉପବାସ ଯୋଗୁଁ ଅତ୍ୟନ୍ତ ଦୁର୍ବଳ ହୋଇ ପୃଥିବୀରେ ଶୟନ କରୁଅଛନ୍ତି ଏବଂ ଭୋଜନରେ ମଧ୍ୟ ସଂଯମ ରକ୍ଷା କରିଛନ୍ତି । କିନ୍ତୁ ଆମ୍ଭେ କିମ୍ବା ଆମ୍ଭର ଭ୍ରାତୃଗଣ ଆପଣଙ୍କର ଏପରି ଅବସ୍ଥା ହେବାର କିଛି ଜାଣିପାରିଲୁଁ ନାହିଁ । ଆଜିଯାଏଁ ଆପଣ ଏପରି ଦୁଃଖଭୋଗ କରି ଆପଣା ଭିତରକୁ ଛପାଇ ରଖିଥିବାରୁ 'ଆପଣ ସୁଖରେ ଅଛନ୍ତି' ବୋଲି ବିଶ୍ୱାସ କରି ଆମ୍ଭେ ମୂର୍ଖଙ୍କ ପରି ପ୍ରତାରିତ ହୋଇଅଛୁଁ ।୪୩। ତେବେ ରାଜ୍ୟଭୋଗ, ଯଜ୍ଞ ଏବଂ ସୁଖରେ ଆମ୍ଭର କେଉଁ ପ୍ରୟୋଜନ ଅଛି ? ୪୪ ।

ହେ ନରେଶ୍ୱର ! ଆପଣଙ୍କର ଏହି ଦୁଃଖସୂଚକ ବାକ୍ୟଦ୍ୱାରା ରାଜ୍ୟ ଏବଂ ଆପଣାକୁ ଆମ୍ଭେ ପୀଡ଼ିତ ଜ୍ଞାନ କରୁଅଛୁଁ । ୪୫ । ଆପଣ ଆମ୍ଭମାନଙ୍କର ପିତା, ଆପଣ ଆମ୍ଭମାନଙ୍କର ମାତା ଏବଂ ଆପଣ ଆମ୍ଭମାନଙ୍କର ପରମ ଗୁରୁ ଅଟନ୍ତି । ଅତଏବ ଆମ୍ଭେମାନେ ଆପଣଙ୍କଦ୍ୱାରା ବିରହିତ ହେଲେ କେଉଁ ସ୍ଥାନରେ ଅବସ୍ଥାନ କରିବୁଁ ? ୪୬ ।

Digitized by srujanika@gmail.com

ହେ ନୃପସତ୍ତମ ! ଆପଣଙ୍କ ଔରସପୁତ୍ର ଏହି ଯୁଯୁତ୍ସୁ ଅଥବା ଆପଣ ଯାହାଙ୍କୁ ଅନୁମୋଦନ କରିବେ ସେହି ବ୍ୟକ୍ତି ଏହି ରାଜ୍ୟରେ ଅଭିଷିକ୍ତ ହେଉନ୍ତୁ । ଆମ୍ଭେ ବନକୁ ଗମନ କରିବୁଁ । ଆପଣ ଏହି ରାଜ୍ୟ ଶାସନ କରିବା ହେଉନ୍ତୁ । ଆପଣ ଆଉ ଦୁଃଖଦ୍ୱାରା ଆମ୍ଭଙ୍କୁ ଦଗ୍ଧ କରନ୍ତୁ ନାହିଁ । ୪୮ । ଆମ୍ଭେ ରାଜା ନୋହୁଁ । ଆପଣ ରାଜା, ଧର୍ମଜ୍ଞ ଓ ଆମ୍ଭମାନଙ୍କ ଗୁରୁ ଅଟନ୍ତି । ଅତଏବ ଆମ୍ଭେ ଆପଣଙ୍କର ଅଧୀନ ହୋଇ ଆପଣଙ୍କୁ ଆଦେଶ କରିବାକୁ କେଉଁରୂପେ ଉତ୍ସାହିତ ହେବୁଁ ? ୪୯ ।

ହେ ଅନଘ ! ଦୁର୍ଯ୍ୟୋଧନଙ୍କ ନିମିତ୍ତ ଆମ୍ଭମାନଙ୍କ ଅନ୍ତଃକରଣରେ କିଂଚିନ୍ମାତ୍ର କ୍ରୋଧ ଜନ୍ମୁନାହିଁ । ସେତେବେଳେ ଭବିତବ୍ୟବଶତଃ ଆମ୍ଭମାନଙ୍କ ସହିତ ଅନ୍ୟାନ୍ୟ ମହୀପାଳଗଣ ମୋହିତ ହୋଇଥିଲେ । ୫୦ । ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ପ୍ରଭୃତିଙ୍କ ପରି ଆମ୍ଭେମାନେ ଗାନ୍ଧାରୀ ଓ କୁନ୍ତୀ ଉଭୟଙ୍କୁ ସମାନ ଜ୍ଞାନ କରିଥାଉଁ । ୫୧ ।

ଅତଏବ ହେ ରାଜନ୍ ! ଆପଣ ଯଦି ଆମ୍ଭଙ୍କୁ ପରିତ୍ୟାଗ ପୂର୍ବକ ଗମନ କରିବେ, ତେବେ ଆମ୍ଭେ ମଧ୍ୟ ଆପଣଙ୍କ ଅନୁଗାମୀ ହୋଇ ସତ୍ୟସ୍ୱରୂପ ପରମାତ୍ମାଙ୍କୁ ଲାଭ କରିବୁଁ । ୫୨ । ଆମ୍ଭେ ଆପଣଙ୍କଦ୍ୱାରା ବିରହିତ ହେଲେ, ଧନସମ୍ପୂର୍ଣ୍ଣା ସାଗର ମେଖଳା ଏହି ମହୀ ଆମ୍ଭର ପ୍ରିୟକାରୀ ହେବ ନାହିଁ ।୫୩।

ହେ ରାଜେନ୍ଦ୍ର ! ଆମ୍ଭେମାନେ ଆପଣଙ୍କ ଅଧୀନ, ଅତଏବ ଆମ୍ଭେ ଆପଣଙ୍କୁ ଅବନତ ମସ୍ତକରେ ପ୍ରସନ୍ନ କରାଉଅଛୁଁ । ଆପଣ ଆପଣଙ୍କର ଏହି ସମସ୍ତ ରାଜ୍ୟ ଗ୍ରହଣ କରି ମନୋଦୁଃଖ ପରିତ୍ୟାଗ କରିବା ହେଉନ୍ତୁ ।୫୪।

ହେ ପୃଥ୍ୱୀପତେ ! ଆମ୍ଭର ବୋଧ ହେଉଅଛି ଯେ, ଆପଣ ଭବିତବ୍ୟର ଅନୁବର୍ତ୍ତୀ ହୋଇ ଏହି ମନୋଦୁଃଖ ଭୋଗ କରୁଅଛନ୍ତି । ଅତଏବ ଆମ୍ଭେ ଭାଗ୍ୟବଶତଃ ଆପଣଙ୍କ ଶୁଶ୍ରୂଷା କରି ଆପଣଙ୍କ ମନୋଦୁଃଖ ଦୂର କରିବୁଁ । ୫୫ ।

ଧୃତରାଷ୍ଟ୍ର କହିଲେ—ହେ ବତ୍ସ ! କୁରୁନନ୍ଦନ ! ପ୍ରଭୋ ! ବନଗମନ ଆମ୍ଭମାନଙ୍କର କୁଳୋଚିତ କର୍ମ ବୋଲି ଆମ୍ଭ ମନ ତପସ୍ୟା ବିଷୟରେ ପ୍ରବୃତ୍ତ ହେଉଅଛି । ୫୬ ।

Digitized by srujanika@gmail.com

ହେ ପୁତ୍ର ! ନରାଧିପ ! ଆମ୍ଭେ ତୁମ୍ଭ ନିକଟରେ ବହୁକାଳ ହେଲା ଅବସ୍ଥାନ କରି ତୁମ୍ଭକର୍ତ୍ତୃକ ଶୁଶ୍ରୂଷିତ ହୋଇଅଛୁ । ସଂପ୍ରତି ବୃଦ୍ଧ ହୋଇଅଛୁଁ, ଅତଏବ ଆମ୍ଭଙ୍କୁ ବନଗମନ ବିଷୟରେ ଆଦେଶ କର । ୫୭ ।

ବୈଶମ୍ପାୟନ କହିଲେ—ଅମ୍ବିକାସୁତ ରାଜା ଧୃତରାଷ୍ଟ୍ର କମ୍ପିତ-କଳେବର କୃତାଞ୍ଜଳି ଧର୍ମରାଜଙ୍କୁ ଏହି କଥା କହି ପୁନଶ୍ଚ କହିଲେ— । ୫୮ ।

ହେ ବସୁଧାଧିପ ! ଆମ୍ଭେ ତୁମ୍ଭମାନଙ୍କ ସହିତ ଏହି ସ୍ଥାନରେ ମହାତ୍ମା ସଂଜୟ ଓ ମହାରଥ କୃପଙ୍କୁ ଅନୁନୟ କରିବାକୁ ଅଭିଳାଷୀ ହୋଇଅଛୁଁ । ହେ ବତ୍ସ ! ବୃଦ୍ଧବୟୋଧର୍ମ ଏବଂ ବାକ୍ୟବ୍ୟାୟାମ ବଶତଃ ଅର୍ଥାତ୍ ବହୁତ ବାକ୍ୟ କହିବାରୁ ଆମ୍ଭର ମନ ମ୍ଳାନ ଓ ମୁଖ ପରିଶୁଷ୍କ ହେଉଅଛି । ୬୦ ।

ଶ୍ରୀମାନ୍ ମହାତ୍ମା ବୃଦ୍ଧ ରାଜା ଧୃତରାଷ୍ଟ୍ର ଏହି କଥା କହି ସହସା ଗତାସୁ ଜନ ସଦୃଶ ଗାନ୍ଧାରୀଙ୍କ ଗାତ୍ର ଆଶ୍ରୟ କଲେ । ୬୧ ।

ପରିବାରଯାଶି କୁନ୍ତୀନନ୍ଦନ ରାଜା ଯୁଧିଷ୍ଠିର କୁରୁନନ୍ଦନ ଧୃତରାଷ୍ଟ୍ରଙ୍କୁ ହତଜ୍ଞାନ ଜନବତ୍ ସମାସୀନ ହେବାର ଦେଖି ତୀବ୍ର ମନୋବ୍ୟଥା ପ୍ରାପ୍ତ ହେଲେ, ଏବଂ କହିଲେ, ହା ! ଯେ ଶତସହସ୍ର ହସ୍ତିଯୂଥର ବଳ ଧାରଣ କରନ୍ତି, ସେ ସଂପ୍ରତି ନାରୀକୁ ଆଶ୍ରୟ କରି ଗତାସୁ ଜନ ସଦୃଶ ଶୟନ କଲେ ! ୬୩ । ଯେ ପୂର୍ବେ ଭୀମସେନଙ୍କ ଲୌହମୟୀ ପ୍ରତିମାକୁ ବଳପୂର୍ବକ ଚୂର୍ଣ୍ଣୀକୃତ କରିଥିଲେ, ସଂପ୍ରତି ସେ ଅବଳା ସ୍ତ୍ରୀକୁ ଆଶ୍ରୟ କଲେ ! ୬୪ । ଯଦି ଏହି ପୃଥିବୀପତି ରାଜା ଧୃତରାଷ୍ଟ୍ର ଆମ୍ଭ ନିମିତ୍ତ ଅନୁଚିତରୂପେ ଶୟନ କଲେ, ତେବେ ଆମ୍ଭେ ଅଧାର୍ମିକ । ଅତଏବ ଆମ୍ଭଙ୍କୁ, ଆମ୍ଭର ବୁଦ୍ଧି ଓ ଆମ୍ଭର ଶାସ୍ତ୍ରଜ୍ଞାନକୁ ଧିକ୍ ! ଆଜ ଯଦି ମହାୟ ଗୁରୁ ଏହି ରାଜା ଧୃତରାଷ୍ଟ୍ର ଓ ଯଶସ୍ୱିନୀ ଗାନ୍ଧାରୀ ଭୋଜନ ନ କରିବେ, ତେବେ ଆମ୍ଭେ ମଧ୍ୟ ଏହାଙ୍କ ସଦୃଶ ଉପବାସ କରିବୁଁ । ୬୬ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ତଦନନ୍ତର ଧାର୍ମିକବର ପାଣ୍ଡୁନନ୍ଦନ ସଲିଳଶୀତଳ କରକମଳଦ୍ୱାରା ଧୃତରାଷ୍ଟ୍ରଙ୍କର ବକ୍ଷଃସ୍ଥଳ ଏବଂ ମୁଖମଣ୍ଡଳ ଧୀରେ ଧୀରେ ମାର୍ଜନକଲେ । ୬୭ ।

Digitized by srujanika@gmail.com

ତଦନନ୍ତର ରାଜା ଧୃତରାଷ୍ଟ୍ର ମହାପଣ୍ଡିତ ଯୁଧିଷ୍ଠିରଙ୍କର ରତ୍ନୌଷଧି-ସମନ୍ୱିତ ପବିତ୍ର ଗନ୍ଧଯୁକ୍ତ ପାଣିସ୍ପର୍ଶଦ୍ୱାରା ସଂଜ୍ଞାଲାଭ କଲେ । ୬୮ । ଏବଂ କହିଲେ—ହେ ରାଜୀବଲୋଚନ ପାଣ୍ଡୁତନୟ ! ତୁମ୍ଭେ ସୁଶୀତଳ କରକମଳଦ୍ୱାରା ଆମ୍ଭଙ୍କୁ ବାରଂବାର ସ୍ପର୍ଶ ଓ ଆଲିଙ୍ଗନ କର ।

ହେ ବତ୍ସ ! ତୁମ୍ଭର ସ୍ପର୍ଶଦ୍ୱାରା ଆମ୍ଭେ ପୁନର୍ଜୀବିତ ହେଲାପରି ଜାଣୁଅଛୁଁ । ୬୯ । ହେ ମନୁଜାଧିପ ! ସମ୍ପ୍ରତି ଆମ୍ଭେ ତୁମ୍ଭର ମସ୍ତକ ଆଘ୍ରାଣ ଏବଂ ବାହୁଯୁଗଳଦ୍ୱାରା ତୁମ୍ଭଙ୍କୁ ସ୍ପର୍ଶ କରିବାକୁ ଅଭିଳାଷୀ ହେଉଅଛୁଁ । ଆମ୍ଭେ ଦିବସର ଅଷ୍ଟମ କାଳରେ ଆହାର କରୁଁ ବୋଲି ଅଦ୍ୟ ହସ୍ତପଦାଦି ଅଙ୍ଗଚାଳନ ବିଷୟରେ ଅସମର୍ଥ ହୋଇଅଛୁଁ । ବିଶେଷତଃ ଏହି ସମସ୍ତ ବୃତ୍ତାନ୍ତ ତୁମ୍ଭଙ୍କୁ ଅବଗତ କରାଇବାରୁ ଆମ୍ଭର ବିଶେଷ ପରିଶ୍ରମ ହୋଇଅଛି । ସୁତରାଂ ମନର ଗ୍ଳାନି ଏବଂ ଚୈତନ୍ୟ ବିଲୁପ୍ତ ହୋଇଅଛି ।

ହେ କୁରୁକୁଳୋଦ୍‌ବହ ! ଆମ୍ଭେ ଏହି କଥାମାନ କହୁଅଛୁଁ ଯେ ତୁମ୍ଭର ଏହି ଅମୃତରସଯୁକ୍ତ କରସ୍ପର୍ଶ ପ୍ରାପ୍ତ ହୋଇ ଜୀବିତ ହେଲୁଁ । ୭୩ ।

ବୈଶମ୍ପାୟନ କହିଲେ—ହେ ଭାରତ ! ତେତେବେଳେ କୁନ୍ତୀପୁତ୍ର ଯୁଧିଷ୍ଠିର ପିତାଙ୍କର ଜ୍ୟେଷ୍ଠ ରାଜା ଧୃତରାଷ୍ଟ୍ରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସୌହାର୍ଦ୍ଦବଶତଃ ତାହାଙ୍କ ସମସ୍ତ ଗାତ୍ର ଧୀରେ ଧୀରେ ସ୍ପର୍ଶକଲେ । ୭୪ ।

ତଦନନ୍ତର ମହୀପତି ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କ କରସ୍ପର୍ଶଦ୍ୱାରା ପ୍ରାଣଲାଭ କରି ବାହୁଯୁଗଳଦ୍ୱାରା ପାଣ୍ଡୁନନ୍ଦନଙ୍କୁ ଆଲିଙ୍ଗନ କରି ମସ୍ତକ ଆଘ୍ରାଣ କଲେ । ୭୫ । ବିଦୁର ପ୍ରଭୃତି ସମସ୍ତେ ଅତିଶୟ ଦୁଃଖିତ ହୋଇ ରୋଦନକଲେ । ପରଂତୁ ଅତିଶୟ ଦୁଃଖବଶତଃ ସେମାନେ ରାଜା ଯୁଧିଷ୍ଠିରଙ୍କୁ କିଛି କହି ପାରିଲେ ନାହିଁ । ୭୬ ।

ହେ ରାଜନ୍ ! ଧର୍ମଜ୍ଞା ଗାନ୍ଧାରୀ ଅତ୍ୟନ୍ତ ଉଦ୍‌ବିଗ୍ନଚିତ୍ତରେ ଚିତ୍ତମଧ୍ୟରେ ସମସ୍ତ ଦୁଃଖ ଧାରଣ କରି ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ ପୂର୍ବକ କହିଲେ—ଆପଣମାନେ ଆଉ ଏପ୍ରକାର କରିବେ ନାହିଁ । ୭୭ । କୁନ୍ତୀଙ୍କ ସହିତ ଅପର ସ୍ତ୍ରୀଗଣ ଅତ୍ୟନ୍ତ ଦୁଃଖିତା ହୋଇ ନେତ୍ରରୁ ବାଷ୍ପବାରି ବିସର୍ଜନ ପୂର୍ବକ ସେମାନଙ୍କ ଚତୁଃପାର୍ଶ୍ୱରେ ଉପବେଶନ କଲେ । ୭୮ ।

Digitized by srujanika@gmail.com

ଅନନ୍ତର ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ପୁନଶ୍ଚ କହିଲେ—ଭରତଶ୍ରେଷ୍ଠ ! ହେ ରାଜନ୍ ! ତୁମ୍ଭେ ଆମ୍ଭଙ୍କୁ ତପୋନୁଷ୍ଠାନ ନିମିତ୍ତ ଆଦେଶଦାନ କର । ୭୯ ।

ହେ ତାତ ! ଏହି ବିଷୟକୁ ବାରମ୍ବାର ଆଲୋଚନା କରିବାରୁ ଆମ୍ଭର ମନ ଗ୍ଲାନିଯୁକ୍ତ ହେଉଅଛି । ଅତଏବ ହେ ପୁତ୍ର ! ଅତଃପର ଆମ୍ଭଙ୍କୁ କ୍ଲେଶ ଦେବାର ତୁମ୍ଭର ଉଚିତ ନୁହେ । ୮୦ । ସେହି କୌରବେନ୍ଦ୍ର ଧୃତରାଷ୍ଟ୍ର ପାଣ୍ଡୁପୁତ୍ର ଯୁଧିଷ୍ଠିରଙ୍କୁ ଏହି ପ୍ରକାର କହୁଥିବା ସମୟରେ ସମସ୍ତ ଯୋଦ୍ଧୃଗଣଙ୍କର ମହାନ୍ ଆର୍ତ୍ତନାଦ ଉତ୍ଥିତ ହେଲା । ୮୧ । ଧର୍ମନନ୍ଦନ ଜ୍ୟେଷ୍ଠତାତ ମହାପ୍ରଭାଯୁକ୍ତ ରାଜା ଧୃତରାଷ୍ଟ୍ରଙ୍କୁ ବିବର୍ଣ୍ଣ, ଉପବାସରେ ପରିଶ୍ରାନ୍ତ, କୃଶ, ତ୍ୱକ୍ ଓ ଅସ୍ଥିମାତ୍ରାବଶିଷ୍ଟ ହୋଇଥିବାର ଦର୍ଶନ କରି ଆଲିଙ୍ଗନ ପୂର୍ବକ ଶୋକଜ ବାଷ୍ପବାରି ବିସର୍ଜନ କରି ପୁନଶ୍ଚ ତାହାଙ୍କୁ କହିଲେ— । ୮୩ । ହେ ନରନାଥ ! ପରନ୍ତପ ! ଆପଣଙ୍କ ପ୍ରିୟକାର୍ଯ୍ୟ ସମ୍ପାଦନ କରିବାର ଆମ୍ଭର ଯାଦୃଶ ଅଭିପ୍ରେତ, ପୃଥିବୀ ଅଥବା ପ୍ରାଣ ତାଦୃଶ ଆମ୍ଭର ଅଭିଲଷିତ ନୁହେ । ୮୪ ।

ହେ ରାଜନ୍ ! ଆପଣ ଯଦି ଆମ୍ଭ ବାକ୍ୟରେ ଆହାର କରିବେ, ତେବେ ଆମ୍ଭେ ଜାଣିବୁଁ ଯେ, ଆମ୍ଭେ ଆପଣଙ୍କ ପ୍ରିୟ ଏବଂ ଆମ୍ଭଠାରେ ଆପଣଙ୍କର ଅନୁଗ୍ରହ ଅଛି । ୮୫ ।

ତଦନନ୍ତର ମହାତେଜା ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ କହିଲେ—ହେ ପୁତ୍ର ! ତୁମ୍ଭେ ଯଦି ଭୋଜନ ନିମିତ୍ତ ଆମ୍ଭଙ୍କୁ ଅନୁରୋଧ କରୁଅଛ, ତେବେ ଆମ୍ଭେ ଭୋଜନ କରିବାକୁ ଅଭିଳାଷୀ ହେଉଅଛୁଁ । ୮୬ ।

ରାଜେନ୍ଦ୍ର ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ଏହିପରି କହୁଥିବା ସମୟରେ ସତ୍ୟବତୀ-ସୁତ ଋଷିବର ବ୍ୟାସ ସେଠାରେ ପ୍ରବେଶ କରି କହିଲେ । ୮୭ ।

---

Digitized by srujanika@gmail.com

# ଚତୁର୍ଥ ଅଧ୍ୟାୟ

ବ୍ୟାସ କହିଲେ—ହେ ମହାବାହୋ ! ଯୁଧିଷ୍ଠିର ! ଏହି ମହାତେଜା କୁରୁନନ୍ଦନ ଧୃତରାଷ୍ଟ୍ର ଯାହା କହୁଅଛନ୍ତି, ତୁମ୍ଭେ କିଛିମାତ୍ର ବିଗ୍ଭର ନକରି ତାହା ସମ୍ପାଦନ କର । ୧ । ଏହି ନୃପତି ବୃଦ୍ଧ, ବିଶେଷତଃ ପୁତ୍ରହୀନ । ଅତଏବ ଆମ୍ଭଙ୍କୁ ଜଣାଯାଉ ଅଛି ଯେ, ଏ ସମ୍ପ୍ରତି ଏ ପ୍ରକାର କଷ୍ଟ ସହ୍ୟ କରିବାକୁ ସମର୍ଥ ହେବେ ନାହିଁ । ୨ । ମହାରାଜ ! କରୁଣବେଦିନୀ ପ୍ରଜ୍ଞାବତୀ ମହାଭାଗା ଏହି ଗାନ୍ଧାରୀ ଅତ୍ୟନ୍ତ ଧୈର୍ଯ୍ୟରେ ହୃଦୟରେ ପୁତ୍ରଶୋକକୁ ବହନ କରିଅଛନ୍ତି । ଅତଏବ ଆମ୍ଭେ ତୁମ୍ଭଙ୍କୁ ଏହି କଥା କହୁଅଛୁଁ ଯେ, ଏଠାରେ ରାଜାଙ୍କ ମୃତ୍ୟୁ ବୃଥା ହେବ । ଏହି ନିମିତ୍ତ ଏହାଙ୍କୁ ବନଗମନ ବିଷୟରେ ଆଦେଶ କରି ଆମ୍ଭ ବାକ୍ୟ ପ୍ରତିପାଳନ କର । ୪ ।

ସମସ୍ତ ରାଜର୍ଷିଗଣଙ୍କର ଅନ୍ତକାଳରେ ଅରଣ୍ୟ ଆଶ୍ରମ ଶ୍ରେୟସ୍କର ଅଟେ । ଅତଏବ ଏ ପୁରାଣ ରାଜର୍ଷିଗଣଙ୍କ ଗନ୍ତବ୍ୟମାର୍ଗରେ ଗମନ କରନ୍ତୁ । ୫ ।

ବୈଶମ୍ପାୟନ କହିଲେ—ତେତେବେଳେ ମହାତେଜା ଧର୍ମରାଜ ରାଜା ଯୁଧିଷ୍ଠିର ଅଦ୍ଭୁତକର୍ମା ମହାମୁନି ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି କହିଲେ—ହେ ଭଗବନ୍ ! ଆପଣ ଆମ୍ଭମାନଙ୍କର ମହାମାନ୍ୟ ଗୁରୁ, ଏବଂ ଏହି ରାଜ୍ୟର ଓ ଅସ୍ମତ୍ କୁଳର ପରମ ଆଶ୍ରୟ ଅଟନ୍ତି । ୭ । ହେ ଭଗବନ୍ ! ରାଜା ଏବଂ ଆପଣ ଆମ୍ଭର ପିତା ଓ ଗୁରୁ ଅଟନ୍ତି । ଧର୍ମଶାସ୍ତ୍ରାନୁସାରେ ପୁତ୍ର ପିତାଙ୍କର ଆଜ୍ଞାବର୍ତ୍ତୀ ହୁଅନ୍ତି । ଅତଏବ ଆପଣ ଦୁହେଁ ଆମ୍ଭଙ୍କୁ ଯାହା ଆଜ୍ଞା କରିବେ, ଆମ୍ଭେ ତତ୍କ୍ଷଣାତ୍ ତାହା କରିବୁଁ । ୮ ।

ବୈଶମ୍ପାୟନ କହିଲେ—ଯୁଧିଷ୍ଠିର ମହାତେଜା ବେଦଜ୍ଞପ୍ରବର ମହାକବି ବ୍ୟାସଙ୍କୁ ଏହିପରି କହିବାରୁ, ସେ ପୁନଶ୍ଚ ଯୁଧିଷ୍ଠିରଙ୍କୁ କହିଲେ—ହେ ମହାବାହୋ ! ଭାରତ ! ତୁମ୍ଭେ ଯାହା କହିଲ, ତାହା ସତ୍ୟ ! ପରନ୍ତୁ ଏହି ନରପତି ଧୃତରାଷ୍ଟ୍ର ବୃଦ୍ଧତ୍ୱ ପ୍ରାପ୍ତହୋଇ ପରମ ଜ୍ଞାନପଥ ଅବଲମ୍ବନ କରିଅଛନ୍ତି । ଏ ସମ୍ପ୍ରତି ତୁମ୍ଭକର୍ତ୍ତୃକ ଏବଂ ମତ୍କର୍ତ୍ତୃକ ଅନୁଜ୍ଞାତ ହୋଇ ସ୍ୱୀୟ ଅଭିପ୍ରାୟ ସାଧନ କରନ୍ତୁ । ତୁମ୍ଭେ ଏହାଙ୍କର ବିଘ୍ନକାରକ ହୁଅନା । ୧୧ ।

Digitized by srujanika@gmail.com

ହେ ଯୁଧିଷ୍ଠିର ! ରାଜର୍ଷିମାନଙ୍କର ସମରରେ ଅଥବା ବିଧିପୂର୍ବକ ଅରଣ୍ୟରେ ପ୍ରାଣତ୍ୟାଗ କରିବାର ପରମଧର୍ମ ଅଟେ । ୧୨ ।

ହେ ରାଜେନ୍ଦ୍ର ! ତୁମ୍ଭର ପିତା ପୃଥିବୀପତି ପାଣ୍ଡୁ ଶିଷ୍ୟବୃତ୍ତି ଅବଲମ୍ବନ ପୂର୍ବକ ଗୁରୁସଦୃଶ ଏହି ରାଜାଙ୍କର ଉପାସନା କରୁଥିଲେ । ୧୩ । ସେହି କାରଣରୁ ଏଥିପୂର୍ବେ ପର୍ବତପରିମିତ ରତ୍ନସମୂହରେ ସୁଶୋଭିତ ବିପୁଳ ଦକ୍ଷିଣାଯୁକ୍ତ ମହାଯଜ୍ଞ କରି ସମସ୍ତ ପୃଥିବୀ ଭୋଗ ଓ ପ୍ରଜାପାଳନ କରିଥିଲେ । ୧୪ । ଏବଂ ତୁମ୍ଭେ ତ୍ରୟୋଦଶ ବର୍ଷ ପ୍ରବାସରେ ଥିବା ସମୟରେ ଏହି ନରପତି ଧୃତରାଷ୍ଟ୍ର ପୁତ୍ରଙ୍କ ନିକଟସ୍ଥ ବିପୁଳ ରାଜ୍ୟଭୋଗ ଏବଂ ବିବିଧ ଧନ ଦାନ କରିଥିଲେ । ୧୫ ।

ହେ ନିଷ୍ପାପ ନରବର ! ତୁମ୍ଭେ ମଧ୍ୟ ଭୃତ୍ୟବର୍ଗ ସହିତ ଏହି ନରପତି ଧୃତରାଷ୍ଟ୍ର ଓ ଯଶସ୍ୱିନୀ ଗାନ୍ଧାରୀଙ୍କୁ ଗୁରୁସଦୃଶ ଶୁଶ୍ରୂଷା କରୁଅଛ । ପରନ୍ତୁ ହେ ଯୁଧିଷ୍ଠିର ! ସଂପ୍ରତି ଏହାଙ୍କର ତପୋନୁଷ୍ଠାନର ସମୟ ଉପସ୍ଥିତ ହୋଇଅଛି । ଅତଏବ ତୁମ୍ଭେ ଏହାଙ୍କୁ ବନଗମନ ବିଷୟରେ ଆଦେଶ କର । ତୁମ୍ଭଠାରେ ଏହାଙ୍କର ଅଣୁମାତ୍ର କ୍ରୋଧ ନାହିଁ । ୧୭ ।

ବୈଶମ୍ପାୟନ କହିଲେ—ବ୍ୟାସ ନରପାଳ ଯୁଧିଷ୍ଠିରଙ୍କୁ ଏହି କଥା କହି ଏହିପ୍ରକାର ଆଦେଶ କଲେ, ଏବଂ କୁନ୍ତୀନନ୍ଦନ ଯୁଧିଷ୍ଠିର ତଥାସ୍ତୁ ବୋଲି କହି ସ୍ୱୀକାର କଲାରୁ ସେ ବନକୁ ଗମନ କଲେ । ୧୮ ।

ଭଗବାନ୍ ବ୍ୟାସ ବନଗାମୀ ହେବାରୁ ପାଣ୍ଡୁନନ୍ଦନ ଯୁଧିଷ୍ଠିର ଅବନତ ହୋଇ ବୃଦ୍ଧ ପିତା ଧୃତରାଷ୍ଟ୍ରଙ୍କୁ ଧୀରେ ଧୀରେ କହିଲେ—ହେ ତାତ ! ଆପଣଙ୍କର ଯାହା ଅଭିଲଷିତ, ଭଗବାନ୍ ବ୍ୟାସ ତାହା କହିଅଛନ୍ତି । ମହେଷ୍ୱାସ କୃପ, ବିଦୁର, ଯୁଯୁତ୍ସୁ ଏବଂ ସଂଜୟ ଏହିମାନେ ଆମ୍ଭଙ୍କୁ ଯାହା କହିବେ, ଆମ୍ଭେ ତାହା ତତ୍‌କ୍ଷଣାତ୍ କରିବୁଁ । କାରଣ, ଏମାନେ ସମସ୍ତେ ଆମ୍ଭର ମାନ୍ୟ ଓ ଅସ୍ମତ୍କୁଳର ହିତୈଷୀ ଅଟନ୍ତି । ୨୧ । ପରନ୍ତୁ, ହେ ନରନାଥ ! ଆମ୍ଭେ ଅବନତ ମସ୍ତକରେ ଆପଣଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ଯେ, ଆପଣ ପ୍ରଥମତଃ ଆହାର କରନ୍ତୁ । ପଶ୍ଚାତ୍ ଆଶ୍ରମକୁ ଗମନ କରିବେ । ୨୨ ।

---

Digitized by srujanika@gmail.com

# ପଞ୍ଚମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ପ୍ରତାପଶାଳୀ ଧୃତରାଷ୍ଟ୍ର ରାଜା ଯୁଧିଷ୍ଠିରଙ୍କ ଅନୁଜ୍ଞା ପ୍ରାପ୍ତ ହୋଇ ଗାନ୍ଧାରୀଙ୍କ ସହିତ ସ୍ୱୀୟ ଗୃହକୁ ଗମନକଲେ । ୧ ।

ତେତେବେଳେ ମନ୍ଦପ୍ରାଣ ଏବଂ ମନ୍ଦଗତି ଧୀମାନ୍ ମହୀପତି ଧୃତରାଷ୍ଟ୍ର ଜୀର୍ଣ୍ଣ ଗଜପତି ସଦୃଶ ଅତି କଷ୍ଟରେ ପଦନିକ୍ଷେପ କଲେ । ୨ । ବିଦ୍ୱାନ୍ ବିଦୁର, ସୂତ ସଞ୍ଜୟ ଏବଂ ପରମ ଧନୁର୍ଦ୍ଧାରୀ ଶରଦ୍ୱାନସୁତ କୃପ ତାହାଙ୍କ ପଶ୍ଚାଦ୍ଭାଗରେ ଗମନକଲେ । ୩ ।

ହେ ରାଜନ୍ ! ସେ ନିଜେ ନିକେତନରେ ପ୍ରବେଶକରି ପ୍ରାତଃକୃତ୍ୟାଦି କ୍ରିୟାକଳାପ ସମାପନ କରି ଏବଂ ଦ୍ୱିଜବରଗଣଙ୍କ ତୃପ୍ତିସାଧନ ପୂର୍ବକ ଆହାର କଲେ । ୪ ।

ହେ ଭରତ ! ଧର୍ମଜ୍ଞା ମନସ୍ୱିନୀ ଗାନ୍ଧାରୀ କୁନ୍ତୀଙ୍କ ସହିତ ବଧୂଗଣ-କର୍ତ୍ତୃକ ଉପଚାରଦ୍ୱାରା ପୂଜିତ ହୋଇ ଭୋଜନ କଲେ । ୫ ।

ପାଣ୍ଡୁପୁତ୍ର ଓ ବିଦୁର ପ୍ରଭୃତି ସମସ୍ତେ ଆହାର କରି କୃତାହାର କୁରୁଶ୍ରେଷ୍ଠ ନରପତି ଧୃତରାଷ୍ଟ୍ରଙ୍କୁ ଉପାସନା କଲେ । ୬ ।

ହେ ମହାରାଜ ! ତଦନନ୍ତର ଅମ୍ବିକାସୁତ ଧୃତରାଷ୍ଟ୍ର ନିକଟସ୍ଥିତ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କ ପୃଷ୍ଠଦେଶରେ ହସ୍ତ ସଞ୍ଚାଳନ କରି ତାହାଙ୍କୁ କହିଲେ— ହେ ରାଜେନ୍ଦ୍ର ! କୁରୁଶ୍ରେଷ୍ଠ ! ତୁମ୍ଭେ ଏହି ଧର୍ମପୁରସ୍କୃତ ଅଷ୍ଟାଙ୍ଗ ରାଜ୍ୟରେ କଦାପି ଅସାବଧାନ ହେବ ନାହିଁ ।

ହେ କୁନ୍ତୀତନୟ ! ତୁମ୍ଭେ ବିଦ୍ୱାନ୍ । ଅତଏବ ଯେଉଁରୂପେ ଧର୍ମାନୁସାରେ ରାଜ୍ୟରକ୍ଷା କରିପାରିବ, ତାହା ଆମ୍ଭ ନିକଟରୁ ଶ୍ରବଣକର । ୯ ।

ହେ ଯୁଧିଷ୍ଠିର ! ତୁମ୍ଭେ ସର୍ବଦା ବିଦ୍ୟାବୃଦ୍ଧ ବ୍ୟକ୍ତିମାନଙ୍କର ଉପାସନା କରିବ, ସେମାନେ ଯାହା କହିବେ ତାହା ଶ୍ରବଣ କରିବ ଏବଂ କୌଣସି ବିଚାର ନକରି ସେମାନଙ୍କ ଆଦେଶ ପାଳନ କରିବ । ୧୦ ।

Digitized by srujanika@gmail.com

ହେ ରାଜନ୍ ! ପ୍ରାତଃକାଳରେ ଉତ୍ଥିତ ହୋଇ ସେମାନଙ୍କୁ ଯଥାବିଧାନରେ ପୂଜାକରି କାର୍ଯ୍ୟ ସମୟରେ ସେ ସମସ୍ତଙ୍କୁ ନିଜ କର୍ତ୍ତବ୍ୟ ବିଷୟ ପ୍ରଶ୍ନକରିବ । ୧୧ ।

ହେ ବତ୍ସ ! ତୁମ୍ଭେ ନିଜର ହିତାଭିଳାଷୀ ହୋଇ ସେମାନଙ୍କୁ ସମ୍ମାନନା କଲେ ସେମାନେ ସର୍ବଦା ତୁମ୍ଭଙ୍କୁ ହିତବାକ୍ୟ କହିବେ । ୧୨ ।

ହେ ରାଜନ୍ ! ତୁମ୍ଭେ ଇନ୍ଦ୍ରିୟଗଣଙ୍କୁ ତୁରଗବତ୍ ପରିପାଳନ କରିବ । ସେମାନେ ଦ୍ରବିଣ ସଦୃଶ ରକ୍ଷିତ ହେଲେ ତୁମ୍ଭର ହିତୈଷୀ ହେବେ । ୧୩ ।

କପଟଶୂନ୍ୟ ପବିତ୍ରଚିତ୍ତ ଦାନ୍ତ ବିଶୁଦ୍ଧ ବଂଶସମ୍ଭୂତ ସତ୍କର୍ମଶାଳୀ ପିତୃପୈତାମହଗଣଙ୍କୁ ଅମାତ୍ୟ ପଦବୀରେ ନିଯୁକ୍ତ କରାଇବ । ୧୪ । ସ୍ୱକୀୟ ରାଷ୍ଟ୍ରର ପ୍ରତିବାସୀ ପରୀକ୍ଷିତ ପରପକ୍ଷର ଅବିଦିତ ବହୁବିଧ ଗୁପ୍ତଚରଦ୍ୱାରା ସର୍ବଦା ପ୍ରଗୃହଣ କରିବ । ୧୫ । ନିଜପୁରକୁ ଅର୍ଥାତ୍ ତୁମ୍ଭେ ଯେଉଁ ପୁରରେ ବାସ କରିବ ତାହାକୁ ଉତ୍ତମରୂପେ ରକ୍ଷାକରିବ ।

ପ୍ରାକାର ଓ ତୋରଣସବୁ ଅତିଶୟ ଦୃଢ଼ରୂପେ ନିର୍ମାଣ କରାଇବ ଏବଂ ଦୁର୍ଗର ଉପରିଭାଗରେ ସଞ୍ଚାରସ୍ଥାନର ଚତୁର୍ଦ୍ଦିଗରେ ଛଅଗୋଟି ସମାନ ପ୍ରକୋଷ୍ଠ, ବିବିଧ ଅଟ୍ଟାଳିକା ଓ ସୁଦୃଢ଼ ଦୁର୍ଗ ରହିବା ଉଚିତ । ତାହାର ଦ୍ୱାରସବୁ ଯଥେଷ୍ଟ ବୃହତ୍ ଓ ସର୍ବଦିଗରେ ସୁନ୍ଦରରୂପେ ବିଭକ୍ତ ହେବ, ଏବଂ ଯନ୍ତ୍ରଦ୍ୱାରା ତାହା ରକ୍ଷିତ ହେବ । ୧୭ ।

ହେ ଭରତ ! ଯେଉଁମାନଙ୍କର କୁଳ ଓ ଶୀଳ ବିଦିତ ଅଛି, ତାଦୃଶ ପୁରୁଷବୃନ୍ଦଦ୍ୱାରା ତୁମ୍ଭର ଅର୍ଥ ସମ୍ପୂର୍ଣ୍ଣରୂପେ ରକ୍ଷିତ ହେବ, ଏବଂ ତୁମ୍ଭେ ସ୍ୱୟଂ ସର୍ବଦା ଭୋଜନ ପ୍ରଭୃତି ସମୟରେ ରକ୍ଷିତ ହେବ । ୧୮ ।

ହେ ଯୁଧିଷ୍ଠିର ! ଶୀଳବାନ୍ । କୁଳୀନ ବିଦ୍ୱାନ୍ ଆତ୍ମୀୟ ବୃଦ୍ଧଗଣ ତୁମ୍ଭର ସ୍ତ୍ରୀଗଣଙ୍କୁ ରକ୍ଷାକରିବେ । ସ୍ତ୍ରୀଗଣ ଗୋପନରେ ଆହାର ଓ ବିହାର କରିବେ । ସେମାନେ ମାନ୍ୟବ୍ୟକ୍ତିଗଣଙ୍କ ଆସନରେ ଉପବେଶନ ଅଥବା ସେମାନଙ୍କ ଶଯ୍ୟାରେ ଶୟନ କରିବେ ନାହିଁ ।

Digitized by srujanika@gmail.com

ହେ ରାଜନ୍ ! ତୁମ୍ଭେ ବିଦ୍ୟାବିଶାରଦ, ବିନୀତ, କୁଳୀନ, ଧର୍ମାର୍ଥ-କୁଶଳ ଓ ସରଳ ଦ୍ୱିଜଗଣଙ୍କୁ ମନ୍ତ୍ରୀ କରି ସେମାନଙ୍କ ସହିତ ମନ୍ତ୍ରଣା କରିବ । ଅପର ବହୁଲୋକଙ୍କ ସହିତ କଦାଚ ମନ୍ତ୍ରଣା କରିବ ନାହିଁ । ୨୧ ।

ତୃଣବିହୀନ ଅରଣ୍ୟରେ ଏବଂ ସୁସଂବୃତ ମନୋହର ମନ୍ତ୍ରଣାଗୃହରେ ମନ୍ତ୍ରଣା କରିବ । ରାତିରେ କଦାପି ମନ୍ତ୍ରଣା କରିବ ନାହିଁ । ବାନର, ପକ୍ଷୀ, ଅନୁସରଣଶୀଳ ମନୁଷ୍ୟ, ଜଡ଼ ଓ ପଙ୍ଗୁଗଣଙ୍କୁ ମନ୍ତ୍ରଣାଗୃହରେ ରଖିବନାହିଁ । ମହୀପାଳମାନଙ୍କ ମନ୍ତ୍ରଭେଦରେ ଯେଉଁ ଦୋଷସବୁ ଉତ୍ପନ୍ନ ହୁଏ, ଆମ୍ଭେ ଜାଣୁଅଛୁଁ ତାହାସବୁ କଦାପି ସମାଧାନ କରାଯାଇ ନପାରେ ।

ଅତଏବ ହେ ଅରିନ୍ଦମ ! ତୁମ୍ଭେ ମନ୍ତ୍ରିମଣ୍ଡଳ ମଧ୍ୟରେ ସମାସୀନ ହୋଇ ମନ୍ତ୍ରଣା ଭେଦରେ ଦୋଷ ଓ ମନ୍ତ୍ରଗୁପ୍ତିର ଗୁଣସମୂହ ବାରଂବାର ବର୍ଣ୍ଣନା କରିବ ।

ହେ ରାଜନ୍ ! କୁରୁଶ୍ରେଷ୍ଠ ! ତୁମ୍ଭେ ନିତ୍ୟ ଆପ୍ତ ଜନଗଣ ମଧ୍ୟରେ ଅଧିଷ୍ଠିତ ହୋଇ ବ୍ୟବହାରଦ୍ୱାରା ପୌର ଓ ଜନପଦବାସିମାନଙ୍କର ଶୌଚ-ଶୌଚ ବିଷୟ ଯାହାଦ୍ୱାରା ଜଣାଯାଏ, ତାହା କରିବ ।

ହେ ଭାରତ ! ତୁମ୍ଭେ ସନ୍ତୁଷ୍ଟଚିତ୍ତ ହିତକାରକ ଚରଗଣରେ ପରିବେଷ୍ଟିତ ହୋଇ ଦଣ୍ଡନୀୟ ଧନ ଓ ଅପରାଧର ପରିମାଣ ବିବେଚନା କରି ଦଣ୍ଡାର୍ହ ବ୍ୟକ୍ତିଗଣଙ୍କୁ ଦଣ୍ଡପ୍ରଦାନ କରିବ ।

ହେ ଯୁଧିଷ୍ଠିର ! ତୁମ୍ଭେ ଉତ୍କୋଚ-ଉପଜୀବୀ, ପରଦାରାପହାରୀ, ଉଗ୍ରଦଣ୍ଡ-କର୍ତ୍ତା, ମିଥ୍ୟାବାଦୀ, ଅନ୍ୟର ଅନିଷ୍ଟକାରୀ, ଲୁବ୍ଧସ୍ୱଭାବ, ପରଧନାପହର୍ତ୍ତା, ସାହସପ୍ରିୟ ଅର୍ଥାତ୍ ଅସତ୍କର୍ମାନୁଷ୍ଠାନ କରିବା ବିଷୟରେ ଅନୁରକ୍ତ, ସଭା-ବିହାର-ଭଙ୍ଗକାରୀ ଓ ବର୍ଣ୍ଣଦୂଷକ ବ୍ୟକ୍ତିଗଣଙ୍କର ଦେଶ-କାଳ ଓ ନ୍ୟାୟାନୁସାରେ ହିରଣ୍ୟ ଦଣ୍ଡ ଅଥବା ପ୍ରାଣବଧ ଦଣ୍ଡ ବିଧାନ କରିବ । ୩୧ ।

ତୁମ୍ଭେ ପ୍ରାତଃକାଳରେ ତୁମ୍ଭର ବ୍ୟୟକାର୍ଯ୍ୟରେ ନିଯୁକ୍ତ ପୁରୁଷ-ଗଣଙ୍କର କାର୍ଯ୍ୟ ଦର୍ଶନ କରି ତଦନନ୍ତର ଅଳଙ୍କାରଧାରଣଦ୍ୱାରା ସୁସଜ୍ଜିତ ହୋଇ ଭୋଜନାଦି କ୍ରିୟା ସମାଧାନ କରିବ । ତଦନନ୍ତର ସର୍ବଦା ଯୋଧଗଣଙ୍କୁ ହର୍ଷଯୁକ୍ତ କରାଇ ସେମାନଙ୍କ ପ୍ରତି ଦୃଷ୍ଟିରଖିବ ।

Digitized by srujanika@gmail.com

ଅନନ୍ତର ପ୍ରଦୋଷ ସମୟରେ ଦୂତ ଏବଂ ଗୂଢ଼ଚରଗଣଙ୍କ ନିକଟରୁ ସମ୍ବାଦ ଶ୍ରବଣ କରି ଅପର ରାତ୍ରିରେ କାର୍ଯ୍ୟ ଓ ଅର୍ଥର ନିର୍ଣ୍ଣୟ କରିବ । ପ୍ରତିଦିନ ମଧ୍ୟାହ୍ନ ଓ ଅର୍ଦ୍ଧରାତ୍ର ସମୟରେ ବିହାର କରିବ । ୩୪ ।

ହେ ଭୂରିଦକ୍ଷିଣ ! ଭରତଶ୍ରେଷ୍ଠ ! ଯେଉଁ କାର୍ଯ୍ୟର ଯେଉଁପରି ଉପଯୁକ୍ତ ସମୟ ନିର୍ଦ୍ଦିଷ୍ଟ ହୋଇଅଛି, ତୁମ୍ଭେ ସେହି ସମୟରେ ସେହି କାର୍ଯ୍ୟ ସମାଧାନ କରି ନିୟମିତ ସମୟରେ ଅଳଂକୃତ ହୋଇ ବିଶ୍ରାମ କରିବ । ୩୫ । କାରଣ, କାର୍ଯ୍ୟର ପର୍ଯ୍ୟାୟ ସର୍ବଦା ଚକ୍ରସଦୃଶ ପରିବର୍ତ୍ତିତ ହେବାର ଦେଖାଯାଉଅଛି ।

ହେ ତାତ ! ତୁମ୍ଭେ ସର୍ବଦା ନ୍ୟାୟ ଅନୁସାରେ ନାନାବିଧ କୋଷ ସଞ୍ଚୟ ବିଷୟରେ ଯତ୍ନ କରିବ । ୩୬ । ଏବଂ ବିପରୀତ କାର୍ଯ୍ୟ ବର୍ଜନ କରିବ ।

ହେ ମହାରାଜ ! ଚରଦ୍ୱାରା ଛିଦ୍ରାନ୍ୱେଷଣତତ୍ପର ଶତ୍ରୁଗଣଙ୍କ ଅଭିପ୍ରାୟ ଅବଗତ ହୋଇ ସ୍ୱରରୁ ଆତ୍ମୀୟ ପୁରୁଷଦ୍ୱାରା ସେମାନଙ୍କ ବିନାଶସାଧନ କରିବା ଉଚିତ ।

ହେ କୁରୁନନ୍ଦନ ! ଭୃତ୍ୟଗଣଙ୍କ କର୍ମ ଦେଖି କାର୍ଯ୍ୟାନୁସାରେ ସେମାନଙ୍କୁ ପାରିତୋଷିକ ପ୍ରଦାନ କରିବ । ୩୮ । ଆଶ୍ରିତ ବ୍ୟକ୍ତିଗଣ କୌଣସି କାର୍ଯ୍ୟରେ ନିୟମିତରୂପେ ନିଯୁକ୍ତ ହୋଇ ଥାଆନ୍ତୁ, ଅଥବା ନିଯୁକ୍ତ ହୋଇ ନଥାନ୍ତୁ, ସେମାନଙ୍କଦ୍ୱାରା କାର୍ଯ୍ୟସାଧନ କରିବା ଉଚିତ ।

ହେ ତାତ ! ତୁମ୍ଭେ ଦୃଢ଼ବ୍ରତ, ଶୂର, କ୍ଲେଶସହ, ହିତକାରକ, ପ୍ରଭୁଭକ୍ତ ବ୍ୟକ୍ତିଙ୍କୁ ସେନାପତି କରିବ । ହେ ପାଣ୍ଡୁନନ୍ଦନ ! ଯେଉଁମାନେ ସର୍ବଦା ତୁମ୍ଭର ଶିଳ୍ପାଦି କାର୍ଯ୍ୟ ଆଚରନ୍ତି, ସେହି ଜନପଦବାସିଗଣ ଗୋ ଏବଂ ଗର୍ଦ୍ଦଭ ସଦୃଶ ତୁମ୍ଭର କାର୍ଯ୍ୟ କରିବେ । ହେ ଯୁଧିଷ୍ଠିର ! ତୁମ୍ଭେ ନିତ୍ୟ ସ୍ୱକୀୟ ଏବଂ ପରକୀୟ ଛିଦ୍ର ଅନ୍ୱେଷଣ କରିବ । ନିଜ କର୍ମରେ ବିହ୍ୱାନ୍, ଅନୁଗତ, ହିତକାରକ, ଦେଶୀୟ ପୁରୁଷଗଣଙ୍କଠାରେ ଅନୁଗ୍ରହ କରିବ । ହେ ଜନନାଥ ! ଯେଉଁମାନେ ଗୁଣାର୍ଥୀ ଓ ବିଦ୍ୱାନ୍ ସେହିମାନଙ୍କ ଗୁଣ ଗ୍ରହଣ କରିବା ବିଧେୟ ! କାରଣ, ସେମାନେ ନିତ୍ୟ, ଅଚଳ ସଦୃଶ ଅବିଚଳିତରୂପେ ଅବସ୍ଥାନ କରନ୍ତି । ୪୩ ।

Digitized by srujanika@gmail.com

# ଷଷ୍ଠ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ଭାରତ ! ତୁମ୍ଭେ ଆତ୍ମୀୟ, ପରକୀୟ, ଉଦାସୀନ ଏବଂ ମଧ୍ୟସ୍ଥଗଣଙ୍କର ଶତ୍ରୁ ଓ ମିତ୍ରମଣ୍ଡଳକୁ ବିଶେଷରୂପେ ଅବଗତ ହେବ । ୧ ।

ହେ ଶତ୍ରୁକର୍ଷଣ ! ଚତୁର୍ବିଧ ଶତ୍ରୁ ଏବଂ ଷଡ଼୍‌ବିଧ ଆତତାୟିଗଣଙ୍କ ମଧ୍ୟରେ କିଏ ମିତ୍ର ଏବଂ କିଏ ଅମିତ୍ର, ତାହା ତୁମ୍ଭର ବିଶେଷରୂପେ ବୋଧଗମ୍ୟ ହେବାର ଉଚିତ ।

ହେ କୁରୁଶ୍ରେଷ୍ଠ ! ଶତ୍ରୁଗଣ ଅମାତ୍ୟ, ଜନପଦ, ବିବିଧ ଦୁର୍ଗ ଏବଂ ବଳସମୂହକୁ ଇଚ୍ଛାନୁସାରେ ଭେଦ କରନ୍ତି । ଅତଏବ ତାହା ଯେଉଁରୂପେ ଭେଦ ନହେବ ତଦନୁସାରେ ଅବହିତ ହୋଇ ଅବସ୍ଥାନ କରିବ ।

ହେ କୌନ୍ତେୟ ! ରାଜାମାନଙ୍କର ମନ୍ତ୍ରୀପ୍ରଧାନ ବିଷୟ ସମ୍ବନ୍ଧୀୟ ଚତୁର୍ବିଧ ଶତ୍ରୁ, ଅଗ୍ନିଦ ପ୍ରଭୃତି ଛଅ ଆତତାୟୀ, ମିତ୍ର ଅମିତ୍ର ଏବଂ ମିତ୍ରାମିତ୍ର ପ୍ରଭୃତି ଦ୍ୱାଦଶବିଧ ନୃପତି, କୃଷି ପ୍ରଭୃତି ଅଷ୍ଟବିଧ ସନ୍ଧାନକାର୍ଯ୍ୟ, ନିବାତ ପ୍ରଭୃତି ବିଂଶତି ଅସଦ୍ଭେଦ୍ୟ, ନାସ୍ତିକ୍ୟାଦି ଚତୁର୍ଦ୍ଦଶ ଦୋଷ ଓ ମନ୍ତ୍ରାଦି ଅଷ୍ଟାଦଶ ତୀର୍ଥ ଏହି ଷଷ୍ଟିସଂଖ୍ୟକଗଣଙ୍କୁ ନୀତିବିଶାରଦ ଆଚାର୍ଯ୍ୟଗଣ ମଣ୍ଡଳ ବୋଲି କହନ୍ତି । ହେ ଯୁଧିଷ୍ଠିର ! ତହିଁରେ ଯେଉଁ ସନ୍ଧିବିଗ୍ରହ ପ୍ରଭୃତି ଷାଡ଼୍‌ଗୁଣ୍ୟ ବଶୀକୃତ କରିବାକୁ ହୁଏ, ତାହା ଶ୍ରବଣ କର । ହେ କୁରୁସତ୍ତମ ! ନୃପତି-ମାନଙ୍କର ବୃଦ୍ଧି, କ୍ଷୟ ଏବଂ ସ୍ଥାନ ଏହା ବିଶେଷରୂପେ ଜ୍ଞାତ ହେବା ଉଚିତ ।

ହେ ମହାବାହୋ ! ଷଷ୍ଟି ଗୁଣ ଏବଂ ଦ୍ୱାଦଶ ନୃପତି, ଏଥିରୁ ଷାଡ଼୍‌ଗୁଣ୍ୟର ଗୁଣ ଦ୍ୱିସପ୍ତତି ପ୍ରକାର ହୁଏ । ହେ କୁନ୍ତୀନନ୍ଦନ ! ଯେତେବେଳେ ନିଜ ପକ୍ଷ ସବଳ ଏବଂ ଶତ୍ରୁପକ୍ଷ ଦୁର୍ବଳ ହୁଏ, ସେତେବେଳେ କ୍ଷିତିପତି ଶତ୍ରୁଗଣଙ୍କଠାରେ ନିଗ୍ରହ ପ୍ରକାଶ ପୂର୍ବକ ଜୟଲାଭ କରିବେ । ଏବଂ ଯେତେବେଳେ ଶତ୍ରୁପକ୍ଷ ସବଳ ଓ ନିଜପକ୍ଷ ଦୁର୍ବଳ ହୁଅନ୍ତି, ସେତେବେଳେ ବିଦ୍ୱାନ୍ ନୃପତି କ୍ଷୀଣ ହୋଇ ଶତ୍ରୁମାନଙ୍କ ସହିତ ସନ୍ଧିକରି ପ୍ରଭୂତ ଦ୍ରବ୍ୟ ସଂଚୟ କରିବେ ।

Digitized by srujanika@gmail.com

ହେ ଭାରତ ! ଯେତେବେଳେ ନୃପତି ଶତ୍ରୁର ଯୁଦ୍ଧଯାନ ନିମିତ୍ତ ସମର୍ଥ ହେବେ, ତେତେବେଳେ ସେ ବିଚାରପୂର୍ବକ ସ୍ଥାନ ସହିତ ସମସ୍ତ ଦ୍ରବ୍ୟ ବିଧି ଅନୁସାରେ ଆହରଣ କରିବେ ।

ହେ ଭାରତ ! ମିତ୍ର ଏବଂ ବଳ କ୍ଷୀଣ ହେଲେ, ସନ୍ଧିବିଶାରଦ ନରପତି ଶତ୍ରୁଗଣଙ୍କୁ ଯତ୍ନରେ ଅଳ୍ପ ଫଳ ହୁଏ ଏତାଦୃଶ ଭୂମି, ସୁବର୍ଣ୍ଣ, ରଜତାଦିଠାରୁ ଇତର ଧନ ଓ ବହୁଳ ହିରଣ୍ୟ ଦାନ କରିବେ, ଏବଂ ସ୍ୱୟଂ ବିପରୀତ ବସ୍ତୁ ଗ୍ରହଣ କରିବେ ।

ହେ ଭରତଶ୍ରେଷ୍ଠ ! ସନ୍ଧି କରିବାକୁ ହେଲେ, ଯେ ସନ୍ଧି କରିବେ ତାହାଙ୍କ ପୁତ୍ରକୁ ବିଶ୍ୱାସ ନିମିତ୍ତ ନିକଟରେ ରଖିବେ ।

ହେ ପୁତ୍ର ! କୌଣସି ଆପତ୍‌କାଳ ଉପସ୍ଥିତ ହେଲେ ବିପରୀତ ବ୍ୟକ୍ତିକୁ ନିକଟରେ ରଖିବାର ଶ୍ରେୟସ୍କର ନୁହେ । ଅତଏବ ତୁମ୍ଭେ ଉପାୟ ଓ ମନ୍ତ୍ର ଅବଗତ ହୋଇ ତତ୍ପୂରଣଦ୍ୱାର ବିଷୟରେ ଯତ୍ନ କରିବ । ୧୨ ।

ହେ ରାଜେନ୍ଦ୍ର ! ନିଜ ରାଜ୍ୟରକ୍ଷକ ମହାବଳ ନରପତି ରାଜା ଓ ପ୍ରଜାବୃନ୍ଦଙ୍କ ପୂଜା କରିବେ, ଏବଂ କ୍ରମଶଃ ଅଥବା ଏକକାଳୀନ ଶତ୍ରୁଗଣଙ୍କ ସମସ୍ତ ବ୍ୟବସାୟ ରୁଦ୍ଧକରି ଯତ୍ନ ସହକାରରେ ସେମାନଙ୍କର ପୀଡ଼ନ, ସ୍ତମ୍ଭନ ଓ କୋଷଭଙ୍ଗ କରିବେ ।

ହେ କୌନ୍ତେୟ ! ଉଚ୍ଚପଦାଭିଳାଷୀ ନରପତି ସମୀପାଗତ ସାମନ୍ତ ଏବଂ ପୃଥିବୀବିଜୟାଭିଳାଷୀ ମହୀପତିଙ୍କୁ ହିଂସା କରିବେ ନାହିଁ । ପ୍ରତ୍ୟୁତ ଗଣଭେଦ ନିମିତ୍ତ ମନ୍ତ୍ରିଗଣଙ୍କ ସହିତ ଯୋଗଲାଭର ଆକାଂକ୍ଷା କରିବେ । ୧୬ । ବଳବାନ୍ ନୃପତି ସାଧୁସଂଗ୍ରହ ଏବଂ ଅସାଧୁଗଣଙ୍କୁ ନିଗ୍ରହ କରିବେ । ପରନ୍ତୁ ଦୁର୍ବଳ ବ୍ୟକ୍ତିଙ୍କୁ କଦାପି ଉଚ୍ଛିନ୍ନ କରିବେ ନାହିଁ । ୧୭ ।

ହେ ରାଜଶାର୍ଦ୍ଦୂଳ ! ବଳବାନ୍ ବ୍ୟକ୍ତି ଯଦି ତୁମ୍ଭଙ୍କୁ ଦୁର୍ବଳ ବିବେଚନା କରି ଆକ୍ରମଣ କରିବେ, ତେବେ ତୁମ୍ଭେ ବେତସ ଯଷ୍ଟି ସଦୃଶ ନମ୍ରତା ଅବଲମ୍ବନ ପୂର୍ବକ ଅବସ୍ଥାନ କରିବ । ୧୮ । କ୍ରମେ କ୍ରମେ ସାମ ପ୍ରଭୃତି ଉପାୟଦ୍ୱାରା ତାହାଙ୍କୁ ନିବାରଣ କରିବା ନିମିତ୍ତ ଯତ୍ନଶୀଳ ହେବ । ସେହି

Digitized by srujanika@gmail.com

ବିଷୟରେ ଯଦି ଅସମର୍ଥ ହେବ, ତେବେ ମନ୍ତ୍ରିଗଣଙ୍କ ସହିତ ଯୁଦ୍ଧ ନିମିତ୍ତ ବହିର୍ଗତ ହେବ । ଯେଉଁମାନେ ତାହାଙ୍କ ପ୍ରିୟକାରୀ ସେମାନଙ୍କୁ କୋଷ, ପୌରଜନ ଓ ଅନ୍ୟାନ୍ୟ ପ୍ରିୟବସ୍ତୁ ଦାନଦ୍ୱାରା ଆତ୍ମରକ୍ଷା କରିବାକୁ ଯତ୍ନଶୀଳ ହେବ । ଯଦି ଏହିସବୁ ଉପାୟଦ୍ୱାରା କାର୍ଯ୍ୟସିଦ୍ଧି ନହେବ, ତେବେ ଅଗତ୍ୟା ସ୍ୱୟଂ ଯୁଦ୍ଧରେ ପ୍ରବୃତ୍ତ ହୋଇ କଳେବର ପରିତ୍ୟାଗ ପୂର୍ବକ ମୁକ୍ତିଲାଭ କରିବାର ଶୂର ବ୍ୟକ୍ତିଙ୍କ ପକ୍ଷରେ ଶ୍ରେୟସ୍କର ଅଟେ ।

---

# ସପ୍ତମ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ରାଜସତ୍ତମ ଯୁଧିଷ୍ଠିର ! ସନ୍ଧି ବିଗ୍ରହର ବିଷୟ ବିଶେଷରୂପେ ଅବଗତ ହେବାର ଅତି ଆବଶ୍ୟକ । ହେ କୌରବ୍ୟ ! ଶତ୍ରୁ ହୃଷ୍ଟପୁଷ୍ଟ, ବଳଯୁକ୍ତ ଓ ବୁଦ୍ଧିମାନ୍ ହେଲେ, ଆପଣାର ବଳାବଳ ଜାଣି ସ୍ଥିରଭାବରେ ଜୟର ଉପାୟ ଚିନ୍ତାକରି, ଯାବତ୍ ଜୟଲାଭ ହୋଇ ନଥାଏ, ତାବତ୍ ତାହାଙ୍କ ଉପାସନା କରିବ ।

ହେ ରାଜେନ୍ଦ୍ର ! ଉପାସନା ସମୟରେ ଶତ୍ରୁର ବଳସମୂହ ଅତୁଷ୍ଟ ଓ ଅପୁଷ୍ଟ ହୋଇଥିଲେ, ଯୁଦ୍ଧଯାତ୍ରାର ଉଦ୍‌ଯୋଗ କରିବ, ଏବଂ ବଳପୂର୍ବକ ନିଷ୍ପୀଡ଼ନ କରିବାର ସମୟ ଉପସ୍ଥିତ ହେଲେ ତଦନନ୍ତର ଯୁଦ୍ଧନିମିତ୍ତ ଯାତ୍ରା କରିବ ।

ତଦନନ୍ତର ଯୁଦ୍ଧରେ ଶତ୍ରୁଗଣଙ୍କର ବ୍ୟସନ, ଭେଦନ, କର୍ଷଣ, ଶୋଷଣତା ଏବଂ ବଳକ୍ଷୟ କରାଇବ । ୪ । ଶାସ୍ତ୍ରବିଶାରଦ ନରପତି ପ୍ରୟାଣର ପୂର୍ବେ ଆପଣାର ଓ ଶତ୍ରୁଗଣଙ୍କର ତ୍ରିବିଧ ଶକ୍ତି ଅର୍ଥାତ୍ ଉତ୍ସାହଶକ୍ତି, ପ୍ରଭୁଶକ୍ତି ଓ ମନ୍ତ୍ରଶକ୍ତି ଚିନ୍ତାକରିବେ ।

ହେ ଭରତ ! ନରପତି ଉତ୍ସାହଶକ୍ତି, ପ୍ରଭୁଶକ୍ତି ଓ ମନ୍ତ୍ରଶକ୍ତିସମନ୍ୱିତ ହୋଇ ଯୁଦ୍ଧନିମିତ୍ତ ଯାତ୍ରା କରିବେ ଏବଂ ବିପରୀତ ପରିତ୍ୟାଗ କରିବେ ।

ହେ ପ୍ରଭୋ ! ମହୀପତି ଧନବଳ, ମିତ୍ରବଳ, ଭୃତ୍ୟବଳ, ପ୍ରାଣୀବଳ ଓ ଶ୍ରେଣୀବଳ ଗ୍ରହଣ କରିବେ । ହେ ରାଜନ୍ ! ଆମ୍ଭର ମତ ଏହି ଯେ,

Digitized by srujanika@gmail.com

ଉକ୍ତ 'ବଳକୁଳ ମଧ୍ୟରେ ମିତ୍ରବଳ ଓ ଧନବଳ ପ୍ରଧାନ, ଏବଂ ଶ୍ରେଣୀବଳ ଓ ଭୃତ୍ୟବଳ ଏହି ଦୁହେଁ ସମାନ । ୮ ।

ହେ ନରନାଥ ! ଚାରବଳ ମଧ୍ୟ ଏହି ଦୁଇ ବଳ ସହିତ ପରସ୍ପର ସମାନ । କାଳ ଉପସ୍ଥିତ ହେଲେ ନରପତି, ତାହା ବହୁକାଳରେ ଜାଣିପାରନ୍ତି । ୯ ।

ହେ ନରାଧିପ ! ଆପଦ୍ ବହୁବିଧ ହୁଏ ବୋଲି ତୁମ୍ଭେ ଜାଣିବ । ହେ କୌନ୍ତେୟ ! ରାଜାମାନଙ୍କର ଯେଉଁ ଆପଦ୍‌ସବୁ ଉପସ୍ଥିତ ହୁଏ, ତାହା ପୃଥକ୍ କରି କହୁଅଛୁଁ, ଶ୍ରବଣ କର । ୧୦ ।

ହେ ରାଜନ୍ ! ପାଣ୍ଡୁନନ୍ଦନ ! ଆପଦ୍‌ସମୂହ ମଧ୍ୟରେ ବିକଳ୍ପ ଅର୍ଥାତ୍ ଈତିଭୟ ପ୍ରଭୃତି ବହୁବିଧ ଆପଦ୍ ଉପସ୍ଥିତ ହେଲେ, ନରପତି ସାମ ପ୍ରଭୃତି ଉପାୟଦ୍ୱାରା ସେହି ଈତିଭୟ ପ୍ରଭୃତି ମାନଙ୍କୁ ପ୍ରକାଶ୍ୟରୂପେ ଆପଦ୍ ବୋଲି ଗଣନା କରିବେ । ୧୧ ।

ହେ ପରନ୍ତପ ! ରାଜା ଦେଶ-କାଳର ଅନୁକୂଳତା ଦେଖି ଆତ୍ମଗୁଣ ସଦୃଶ ବଳ ଓ ଉତ୍କୃଷ୍ଟ ବଳସମନ୍ୱିତ ହୋଇ ଯୁଦ୍ଧଯାତ୍ରାରେ ଗମନ କରିବେ । ୧୨ ।

ହେ ପାଣ୍ଡବ ! ବୃଦ୍ଧି ଓ ଉଦୟନିରତ ବଳବାନ୍ ନରପତି ହୃଷ୍ଟପୁଷ୍ଟ ବଳସମନ୍ୱିତ ହୋଇ ଅକାଳରେ ମଧ୍ୟ ଯୁଦ୍ଧନିମିତ୍ତ ଗମନ କରିବେ । ୧୩ । ତୂଣ ଯହିଁରେ ପ୍ରସ୍ତର, ଅଶ୍ୱ ଓ ରଥ ଯହିଁରେ ପ୍ରବାହ, ଯାହାର କୂଳ ଓ ତୀର ଧ୍ୱଜରୂପ ଦ୍ରୁମଦ୍ୱାରା ସମ୍ବୃତ, ବିଶେଷତଃ ପଦାତି ଓ ହସ୍ତିଦ୍ୱାରା ଯାହା କର୍ଦ୍ଦମମୟ ଅଟେ, ନରପତି ଯୁକ୍ତି ସହକାରରେ, ଶତ୍ରୁନାଶ ସମୟରେ ଏତାଦୃଶ ନଦୀ, ଶକଟବ୍ୟୂହ ଏବଂ ବଜ୍ରବ୍ୟୂହ ପ୍ରୟୋଗ କରିବେ ।

ହେ ବିଭୋ ! ଶୁକ୍ରାଚାର୍ଯ୍ୟ ଯେଉଁ ଶାସ୍ତ୍ର ଜାଣନ୍ତି, ତହିଁରେ ଏହାସବୁ ବିହିତ ହୋଇଅଛି । ୧୫ । ରାଜା ସ୍ୱୀୟ ବଳରେ ଦୃଷ୍ଟି ରଖି ପରବଳ ପ୍ରଚାରଣ କରି ନିଜ ଭୂମି ଅଥବା ପର ଭୂମିରେ ଯୁଦ୍ଧ କରିବେ । ୧୬ । ମହୀପତି ନିଜ ବଳକୁ ପ୍ରସନ୍ନ କରାଇ ବଳବାନ୍ ପରବଳକୁ ନିରାକୃତ କରାଇବେ ଏବଂ ନିଜ ବିଷୟ ଜ୍ଞାତ ହୋଇ ସାମ ପ୍ରଭୃତି ଉପାୟଦ୍ୱାରା ପରବିଷୟକୁ ଗମନ କରିବାର ଉପକ୍ରମ କରିବେ । ୧୭ ।

Digitized by srujanika@gmail.com

ହେ ମହାରାଜ ! ଇହଲୋକରେ ସର୍ବପ୍ରକାର ଯତ୍ନ ସହକାରରେ ଶରୀର ରକ୍ଷା କରିବାର ବିଧେୟ । ଶରୀର ରକ୍ଷିତ ହେଲେ ଇହଲୋକରେ ଓ ପରଲୋକରେ ପରମ ମଙ୍ଗଳ ଲାଭ ହୁଏ । ୧୮ ।

ହେ ମହାରାଜ ! ନରପତି ଏହାସବୁ ସମ୍ୟକ୍ ରୂପେ ଆଚରଣ କରି ଧର୍ମାନୁସାରେ ପ୍ରଜାପାଳନ କଲେ ପରଲୋକରେ ସ୍ୱର୍ଗପ୍ରାପ୍ତ ହୁଅନ୍ତି । ୧୯ ।

ହେ ତାତ ! କୁରୁପ୍ରବର ! ତୁମ୍ଭେ ଉଭୟଲୋକ ପ୍ରାପ୍ତି ନିମିତ୍ତ ଏବଂବିଧ ଆଚରଣ କରି ପ୍ରଜାଗଣଙ୍କ ହିତସାଧନ ବିଷୟରେ ଅନୁରକ୍ତ ହୁଅ । ୨୦ ।

ହେ ନୃପସତ୍ତମ ! ଯଦି ଭୀଷ୍ମ, କୃଷ୍ଣ ଓ ବିଦୁର ତୁମ୍ଭଙ୍କୁ ସମସ୍ତ ବିଷୟ କହିଅଛନ୍ତି, ତଥାପି ତୁମ୍ଭଠାରେ ଆମ୍ଭର ଅତ୍ୟନ୍ତ ପ୍ରୀତି ଥିବାରୁ ଆମ୍ଭେ ତୁମ୍ଭଙ୍କୁ ଅବଶ୍ୟ କହିବୁଁ । ୨୧ ।

ହେ ଭୂରିଦକ୍ଷିଣ ! ତୁମ୍ଭେ ଯଦି ନ୍ୟାୟାନୁସାରେ ଏହାସବୁ ଆଚରଣ କରିବ, ତାହାହେଲେ ତୁମ୍ଭେ ପ୍ରଜାବୃନ୍ଦର ପ୍ରିୟପାତ୍ର ହୋଇ ସୁରପୁରରେ ସୁଖଭୋଗ କରିବ । ୨୨ ।

ହେ ରାଜନ୍ ! ଯେଉଁ ମହୀପତି ସହସ୍ର ଅଶ୍ୱମେଧ ଯଜ୍ଞ କରନ୍ତି ଅଥବା ଧର୍ମାନୁସାରେ ପ୍ରଜାପାଳନ କରନ୍ତି, ତାହାଙ୍କର ଉଭୟ କାର୍ଯ୍ୟରେ ସମାନ ଫଳ ହୁଏ । ୨୩ ।

---

## ଅଷ୍ଟମ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ ପୃଥିବୀପତେ ! ଆପଣ ଯାହା କହିଲେ, ଆମ୍ଭେ ତାହାସବୁ କରିବୁଁ । ଅନନ୍ତର ଯାହା ଯାହା କରିବାକୁ ହେବ, ଆପଣ ପୁନଶ୍ଚ ତାହା ଆମ୍ଭଙ୍କୁ ଆଦେଶ କରନ୍ତୁ ।

ହେ ପାର୍ଥିବପ୍ରବର ! ଭୀଷ୍ମ ସୁରଲୋକ ପ୍ରାପ୍ତ ହୋଇଅଛନ୍ତି, ଏବଂ ମଧୁସୂଦନ କୃଷ୍ଣ ଏଠାରେ ନାହାନ୍ତି । ବିଦୁର ଓ ସଞ୍ଜୟ ଆପଣଙ୍କ ସହିତ ବନଗାମୀ ହେଲେ, ଅନ୍ୟ କେଉଁ ବ୍ୟକ୍ତି ଆମ୍ଭଙ୍କୁ ଏହି ପ୍ରକାର କହିବ ? ୨ ।

Digitized by srujanika@gmail.com

ହେ ମହୀପାଳ ! ଅଦ୍ୟ ଆପଣ ଆମ୍ଭର ହିତୈଷୀ ହୋଇ ଆମ୍ଭଙ୍କୁ ଯାହା ଆଦେଶ କରିବେ ଆମ୍ଭେ ତାହା କରିବୁଁ । ହେ ପାର୍ଥିବ, ଆପଣ ବନଗମନରୁ ନିବୃତ୍ତ ହୁଅନ୍ତୁ । ୩ ।

ବୈଶମ୍ପାୟନ କହିଲେ—ହେ ଭରତଶ୍ରେଷ୍ଠ ! ସେହି ରାଜର୍ଷି ଧୃତରାଷ୍ଟ୍ର ଧୀମାନ୍ ଧର୍ମରାଜଙ୍କ ମୁଖରୁ ଏହି ପ୍ରକାର ବାକ୍ୟ ଶ୍ରବଣ କରି କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ ଆଦେଶ ଦେବା ନିମିତ୍ତ ଇଚ୍ଛାକଲେ । ୪ ।

ଧୃତରାଷ୍ଟ୍ର କହିଲେ—ହେ ପୁତ୍ର ! ଆମ୍ଭର ଅତିଶୟ ଶ୍ରମ ହୋଇଅଛି । ଅତଏବ ତୁମ୍ଭେ କିୟତ୍ ସମୟ ଶାନ୍ତ ହୁଅ ।

ତେତେବେଳେ ସେ ଏହି କଥା କହି ଗାନ୍ଧାରୀଙ୍କ ଗୃହରେ ପ୍ରବେଶ କଲେ । ୫ । କାଳଜ୍ଞା ଧର୍ମଚାରିଣୀ ଗାନ୍ଧାରୀ, ସଦନରେ ଆସନରେ ସମାସୀନ ପ୍ରଜାପତିସମ ପତି ଧୃତରାଷ୍ଟ୍ରଙ୍କୁ ଯଥାସମୟରେ କହିଲେ—ହେ ସ୍ୱାମିନ୍ ! ଆପଣ ତ ମହର୍ଷି ବ୍ୟାସକର୍ତ୍ତୃକ ଆଦିଷ୍ଟ ହୋଇଅଛନ୍ତି । ଅତଏବ କେତେବେଳେ ବନକୁ ଗମନ କରିବେ ?

ଧୃତରାଷ୍ଟ୍ର କହିଲେ—ହେ ଗାନ୍ଧାରି ! ଆମ୍ଭେ ପିତାମହକର୍ତ୍ତୃକ ଆଦିଷ୍ଟ ହୋଇଥିଲୁଁ ଏବଂ ସମ୍ପ୍ରତି ଯୁଧିଷ୍ଠିରଙ୍କ ଅନୁମତି ପ୍ରାପ୍ତହେଲୁଁ । ଅତଏବ ଶୀଘ୍ର ବନକୁ ଗମନ କରିବୁଁ । ୮ । ପରନ୍ତୁ ଆମ୍ଭେ ନିଜ ଗୃହରେ ସମସ୍ତଙ୍କୁ ପ୍ରକୃତିସ୍ଥ କରାଇ ସେହି ନିହତ ଦ୍ୟୂତକ୍ରୀଡ଼ାକାରକ ପୁତ୍ରଗଣଙ୍କୁ ପ୍ରେତଭାବର ଅନୁଗତ ବସୁଦାନ କରିବାକୁ ଅଭିଳାଷୀ ହେଉଅଛୁଁ । ୧୦ ।

ବୈଶମ୍ପାୟନ କହିଲେ—ତେତେବେଳେ ମହୀପତି ଧୃତରାଷ୍ଟ୍ର, ଧର୍ମରାଜଙ୍କୁ ଏହି କଥା କହି ତାହାଙ୍କୁ ପ୍ରଜା ଆନୟନ ନିମିତ୍ତ ପ୍ରେରଣ କଲେ । ସେ ତାହାଙ୍କ କଥା ଅନୁସାରେ ସମସ୍ତ ନଗରବାସିମାନଙ୍କୁ ଆନୟନ କଲେ ।

ତଦନନ୍ତର ବ୍ରାହ୍ମଣ, କୁରୁଜାଙ୍ଗଲଗଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଗଣ ସମସ୍ତେ ପ୍ରହୃଷ୍ଟଚିତ୍ତ ହୋଇ ସେଠାକୁ ଆଗମନ କଲେ ।

ତଦନନ୍ତର ନୃପତି ଧୃତରାଷ୍ଟ୍ର ଅନ୍ତଃପୁରରୁ ବହିର୍ଗତ ହୋଇ ସମସ୍ତ ପ୍ରଜା ଓ ସମାଗତ ଜନଗଣଙ୍କୁ ଦର୍ଶନ କଲେ ।

Digitized by srujanika@gmail.com

ହେ ବଂଶାପତେ ! ମତିମାନ୍ ରାଜା ଧୃତରାଷ୍ଟ୍ର, ସମବେତ ସେହି ପୌର, ଜାନପଦ, ସୁହୃଦ୍ ବ୍ରାହ୍ମଣ ଓ ନାନା ଦେଶ ସମାଗତ ମହୀପାଳଗଣଙ୍କୁ ସେଠାରେ ସମବେତ ହୋଇଥିବାର ଦର୍ଶନ କରି ସେମାନଙ୍କୁ କହିଲେ— ଆପଣମାନେ ବହୁକାଳ ହେଲା କୁରୁକୁଳ ସହିତ ଏକତ୍ର ବାସ କରି ପରସ୍ପର ପରସ୍ପରର ସୁହୃଦ୍ ଓ ହିତୈଷୀ ହୋଇଥିଲେ । ପରନ୍ତୁ ଉପସ୍ଥିତ ସମୟରେ ଆମ୍ଭେ ଆପଣମାନଙ୍କୁ ଯାହା କହୁଅଛୁଁ, ଆପଣମାନେ ବିଚାର ନକରି ଆମ୍ଭର ବାକ୍ୟ ରଖିବେ । ବ୍ୟାସ ଓ କୁନ୍ତୀସୁତ ରାଜା ଯୁଧିଷ୍ଠିରଙ୍କ ଆଦେଶରେ ଆମ୍ଭେ ଗାନ୍ଧାରୀଙ୍କ ସହିତ ବନଗମନ ବିଷୟରେ ଉଦ୍ୟତ ଅଛୁଁ । ଆପଣମାନେ ବିଚାର ନକରି ଆମ୍ଭଙ୍କୁ ଆଦେଶ କରନ୍ତୁ । ୧୮ । ଏବଂ ଆମ୍ଭର ଏହି ପ୍ରାର୍ଥନା ଯେ, ଆପଣମାନଙ୍କର ଓ ଆମ୍ଭମାନଙ୍କର ଏହି ପ୍ରୀତି, ନିତ୍ୟ ଅବିଚଳିତ ଭାବରେ ଅବସ୍ଥାନ କରୁ ।

ଆମ୍ଭଙ୍କୁ ଏହିପରି ଜଣାଯାଉଅଛି ଯେ ସେହି ପ୍ରୀତି ଅନ୍ୟ ଦେଶୀୟ ରାଜାମାନଙ୍କ ସହିତ ସ୍ଥିର ଭାବରେ ରହିପାରିବ ନାହିଁ । ୧୯ । ହେ ନିଷ୍ପାପଗଣ ! ଆମ୍ଭେ ଗାନ୍ଧାରୀଙ୍କ ସହିତ ପୁତ୍ରବିରହରେ ଓ ବୟଃକ୍ରମ ଅନୁସାରେ ଅତିଶୟ ଶ୍ରାନ୍ତ ଓ ଉପବାସରେ କୃଶ ହୋଇଅଛୁଁ । ୨୦ । ଯୁଧିଷ୍ଠିର ରାଜ୍ୟପ୍ରାପ୍ତ ହେବାରୁ ଆମ୍ଭେ ସୁନ୍ଦରରୂପେ ସୁଖଭୋଗ କରିଅଛୁଁ ।

ହେ ସତ୍ତମଗଣ ! ଦୁର୍ଯ୍ୟୋଧନଙ୍କ ଐଶ୍ୱର୍ଯ୍ୟ ଅପେକ୍ଷା ଯୁଧିଷ୍ଠିରଙ୍କ ଐଶ୍ୱର୍ଯ୍ୟକୁ ଆମ୍ଭେ ଶ୍ରେଷ୍ଠ ବୋଲି ବୋଧ କରୁଅଛୁଁ । ୨୧ ।

ହେ ମହାଭାଗଗଣ ! ସଂପ୍ରତି ଏହି ହତପୁତ୍ର ବୃଦ୍ଧ ଅନ୍ଧ ଧୃତରାଷ୍ଟ୍ରର ବନଗମନ ବ୍ୟତିରେକେ ଅନ୍ୟ ଗତି ନାହିଁ । ଅତଏବ ଆପଣମାନେ ଆମ୍ଭଙ୍କୁ ବନଗମନ ବିଷୟରେ ଆଦେଶ କରନ୍ତୁ । ୨୨ ।

ହେ ଭରତର୍ଷଭ ! ସେହି କୁରୁଜାଙ୍ଗଳଗଣ ଧୃତରାଷ୍ଟ୍ରଙ୍କ ବାକ୍ୟ ଶ୍ରବଣ କରି ଗଦ୍‌ଗଦସ୍ୱରରେ ବିଳାପ ପୂର୍ବକ ରୋଦନ କଲେ । ୨୩ । ମହାତେଜା ଧୃତରାଷ୍ଟ୍ର ସେହି ବିଳାପପରିପୂର୍ଣ୍ଣ ଶୋକସନ୍ତପ୍ତ କୁରୁଜାଙ୍ଗଳଗଣଙ୍କୁ ପୁନଶ୍ଚ ଏହି କଥା କହିଲେ । ୨୪ ।

—୦—

Digitized by srujanika@gmail.com

# ନବମ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ତାତଗଣ ! ଶାନ୍ତନୁ ଯେଉଁପରି ଏହି ବସୁନ୍ଧରାକୁ ପାଳନ କରିଥିଲେ, ବିଚିତ୍ରବୀର୍ଯ୍ୟ ତଦ୍‌ବତ୍ ଭୀଷ୍ମକର୍ତ୍ତୃକ ପରିପାଳିତ ହୋଇ ତୁମ୍ଭମାନଙ୍କୁ ପାଳନ କରିଥିଲେ । ଏହା ତୁମ୍ଭମାନଙ୍କୁ ଜଣାଥିବା ବିଷୟରେ ସଂଶୟ ନାହିଁ । ଆମ୍ଭର ଭ୍ରାତା ପାଣ୍ଡୁ ଯେଉଁପରି ତୁମ୍ଭମାନଙ୍କୁ ଯଥାବିଧି ପାଳନ କରି ପ୍ରିୟପାତ୍ର ହୋଇଥିଲେ, ତାହା ମଧ୍ୟ ତୁମ୍ଭମାନଙ୍କୁ ଜଣାଅଛି ।

ହେ ଅନଘଗଣ ! ଆମ୍ଭେ ତୁମ୍ଭମାନଙ୍କର ସମ୍ୟକ୍‌ରୂପେ ଯେଉଁ ଶୁଶ୍ରୂଷା କରିଥିଲୁଁ, ତାହା ଯଦି ଅସମ୍ୟକ୍ ହୋଇଥାଏ ତେବେ ଆପଣମାନେ ଅତନ୍ଦ୍ରିତ ହୋଇ କ୍ଷମା କରିବେ । ଯଦିଚ ସେହି ମନ୍ଦମତି ଅନିଷ୍ଟକାରକ ଦୁର୍ଯ୍ୟୋଧନ ଏହି ନିଷ୍କଣ୍ଟକ ରାଜ୍ୟ ପ୍ରାପ୍ତ ହୋଇ ଭୋଗ କରିଥିଲେ, ତଥାପି ସେ ତେତେବେଳେ ତୁମ୍ଭମାନଙ୍କର କୌଣସି ଅପରାଧ କରିନାହାନ୍ତି । କେବଳ ସେହି ଦୁର୍ବୁଦ୍ଧିଙ୍କର ଅଭିମାନକୃତ ନିଜର ଅବିନୟବଶତଃ ମହୀପତି-ମାନଙ୍କର ଅତି ମହାନ୍ ଜନକ୍ଷୟ ହୋଇଥିଲା । ଆମ୍ଭେ ବଦ୍ଧାଞ୍ଜଳି ହୋଇ ଆପଣମାନଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ଯେ, ଆମ୍ଭେ ଭଲ ଅବା ମନ୍ଦ କରିଥାଉଁ, ତାହା ଆପଣମାନେ ମନେ କରିବେ ନାହିଁ ।

ଆପଣମାନେ ଏହି ବୃଦ୍ଧ ହତପୁତ୍ର ଦୁଃଖିତ ନରପତିକୁ ପୂର୍ବ ରାଜା-ମାନଙ୍କର ପୁତ୍ର ବୋଲି ଜ୍ଞାନ କରିବେ । ଅପିଚ ଏହି ହତପୁତ୍ରା କୃଶା କୃପଣା ପୁତ୍ରଶୋକାର୍ତ୍ତା ତପସ୍ୱିନୀ ଗାନ୍ଧାରୀ ଆମ୍ଭ ସହିତ ତୁମ୍ଭମାନଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛନ୍ତି ଯେ, ଆମ୍ଭେ ଦୁହେଁ ତୁମ୍ଭମାନଙ୍କର ଶରଣାଗତ ହେଲୁଁ । ସମ୍ପ୍ରତି ତୁମ୍ଭେମାନେ ଆମ୍ଭ ଦୁହିଙ୍କୁ ହତପୁତ୍ର ଓ ବୃଦ୍ଧ ବୋଲି ଜାଣି ବନଗମନ ନିମିତ୍ତ ଆଦେଶ କର । ତୁମ୍ଭମାନଙ୍କର ମଙ୍ଗଳ ହେଉ ।

ଏହି କୁନ୍ତୀପୁତ୍ର କୁରୁରାଜ ଯୁଧିଷ୍ଠିରଙ୍କୁ ତୁମ୍ଭେମାନେ ସମ ଓ ବିଷମ ପଥରୁ ରକ୍ଷା କରିବ । ଏବଂ ଏ ଯେଉଁପରି କଦାପି ବିଷମ ପଥରେ ଗମନ ନ କରନ୍ତି ତଦ୍‌ବିଷୟରେ ସମସ୍ତେ ତାହାଙ୍କୁ ପରିଦର୍ଶନ କରୁଥିବ । ୧୧ ।

Digitized by srujanika@gmail.com

ଏହାଙ୍କର ଗୃହ ଭ୍ରାତା ବିପୁଳ ବଳଶାଳୀ, ଲୋକପାଳସମ ଓ ସର୍ବ-ଧର୍ମାର୍ଥଦର୍ଶୀ ଅଟନ୍ତି । ସେହିମାନେ ଏହାଙ୍କର ମନ୍ତ୍ରୀ । ୧୨ । ସର୍ବଭୂତପତି ଓ ସର୍ବଭୁବନପତି ଷଡ଼ୈଶ୍ୱର୍ଯ୍ୟସମ୍ପନ୍ନ ବ୍ରହ୍ମାଙ୍କ ସଦୃଶ ମହାତେଜା ଏହି ଯୁଧିଷ୍ଠିର ତୁମ୍ଭମାନଙ୍କୁ ପାଳନ କରିବେ । ୧୩ ।

ଆମ୍ଭର ଏହି କଥା ଅବଶ୍ୟ ବକ୍ତବ୍ୟ ବୋଲି ବିଚାର ପୂର୍ବକ ଆମ୍ଭେ ଏହିପ୍ରକାର ତୁମ୍ଭମାନଙ୍କୁ କହିଲୁଁ । ତୁମ୍ଭମାନଙ୍କର ସ୍ଥାପ୍ୟ ଧନସ୍ୱରୂପ ଏହି ଯୁଧିଷ୍ଠିରଙ୍କୁ ଆମ୍ଭେ ତୁମ୍ଭମାନଙ୍କୁ ପ୍ରଦାନ କଲୁଁ । ଏବଂ ତୁମ୍ଭେମାନେ ମତ୍‌କର୍ତ୍ତୃକ ବୀରବର ଯୁଧିଷ୍ଠିର ନିକଟରେ ସ୍ଥାପ୍ୟ ଧନ ସଦୃଶ ଅର୍ପିତ ହେଲ । ଯଦି ଆମ୍ଭର ପୁତ୍ରଗଣ ଅଥବା ମହୀସ୍ଥ ଅନ୍ୟ କୌଣସି ବ୍ୟକ୍ତିଦ୍ୱାରା ତୁମ୍ଭମାନଙ୍କର କୌଣସି ଦୁଃଖ ଉପସ୍ଥିତ ହୋଇଅଛି ଏବଂ ହେବ, ତେବେ ତୁମ୍ଭେମାନେ ଏହାଙ୍କ ନିକଟରେ ତାହା ଆବେଦନ କରିବ ।

ପୂର୍ବେ ତୁମ୍ଭେମାନେ ଆମ୍ଭଠାରେ କଦାପି କ୍ରୋଧ କରିନଥିଲ ।୧୬। ଏବଂ ତୁମ୍ଭେମାନେ ଅତ୍ୟନ୍ତ ଗୁରୁଭକ୍ତ ବୋଲି ଆମ୍ଭେ ବଦ୍ଧାଞ୍ଜଳି ହୋଇ ତୁମ୍ଭମାନଙ୍କୁ ନମସ୍କାର କରୁଅଛୁଁ ।

ହେ ଅନଘଗଣ ! ଆମ୍ଭେ ଗାନ୍ଧାରୀଙ୍କ ସହିତ ସେହି ଅସ୍ଥିରବୁଦ୍ଧି, ଲୁବ୍ଧ ଓ କାମଚାରମାନଙ୍କ ନିମିତ୍ତ ତୁମ୍ଭ ସମସ୍ତଙ୍କ ନିକଟରେ କ୍ଷମାପ୍ରାର୍ଥନା କରୁଅଛୁଁ । ସେହି ପୌର-ଜାନପଦଗଣ ଧୃତରାଷ୍ଟ୍ରଙ୍କର ଏହି ବାକ୍ୟ ଶ୍ରବଣ କରି ବାଷ୍ପାକୁଳଲୋଚନରେ ପରସ୍ପର ପରସ୍ପରଙ୍କୁ ନିରୀକ୍ଷଣ କରି କିଛି କହିବାକୁ ସମର୍ଥ ହେଲେ ନାହିଁ । ୧୮ ।

---

## ଦଶମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ କୌରବନାଥ ! ଜନମେଜୟ ! ସେହି ପୌର ଓ ଜାନପଦଗଣ ବୃଦ୍ଧ ରାଜା ଧୃତରାଷ୍ଟ୍ରଙ୍କ ମୁଖରୁ ବିବିଧ ବାକ୍ୟ ଶ୍ରବଣ କରି ଅଚେତନ ସଦୃଶ ହେଲେ । ୧ ।

ହେ ମହୀପାଳ ! ମହୀପତି ଧୃତରାଷ୍ଟ୍ର ସେମାନଙ୍କୁ ତୂଷ୍ଣୀଭୂତ ଓ ବାଷ୍ପକଣ୍ଠ ହେବାର ଅବଲୋକନ କରି ପୁନଶ୍ଚ କହିଲେ— । ୨ ।

Digitized by srujanika@gmail.com

ଧୃତରାଷ୍ଟ୍ର କହିଲେ—ହେ ସତ୍ତମଗଣ ! ପିତା କୃଷ୍ଣଦ୍ୱୈପାୟନ ଓ ଧର୍ମଜ୍ଞ ନରପତି ଯୁଧିଷ୍ଠିର, ଧର୍ମପତ୍ନୀ ଗାନ୍ଧାରୀଙ୍କ ସହିତ ଏହି ବୃଦ୍ଧ ହତପୁତ୍ର ବନ୍ଧୁବଧ ବିଳାପକାରକ କୃପଣ ଧୃତରାଷ୍ଟ୍ରଙ୍କୁ ବନବାସ ନିମିତ୍ତ ଆଦେଶ କରିଅଛନ୍ତି । ୪ ।

ହେ ଅନଘଗଣ ! ଆମ୍ଭେ ଅବନତ ମସ୍ତକରେ ତୁମ୍ଭମାନଙ୍କ ନିକଟରେ ବାରମ୍ବାର ପ୍ରାର୍ଥନା କରୁଅଛୁଁ । ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ ଗାନ୍ଧାରୀଙ୍କ ସହିତ ବନଗମନ ବିଷୟରେ ଆଦେଶ କର । ୬ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ସେହି କୁରୁଜାଙ୍ଗଳଗଣ କୁରୁରାଜ ଧୃତରାଷ୍ଟ୍ରଙ୍କର ତାଦୃଶ ସକରୁଣ ବାକ୍ୟ ଶ୍ରବଣ କରି ସମସ୍ତେ ସମବେତ ହୋଇ ରୋଦନ କଲେ । ସେମାନେ ପିତାମାତାଙ୍କ ସଦୃଶ ଶୋକରେ ସନ୍ତପ୍ତ ହୋଇ ଉତ୍ତରୀୟ ବସ୍ତ୍ରସହ କରଯୁଗଳରେ ମୁଖମଣ୍ଡଳ ସମାଚ୍ଛାଦନ କରି ମୁହୂର୍ତ୍ତିକ ସମୟ ରୋଦନ କଲେ । ୭ ।

ତଦନନ୍ତର ସେମାନେ ଶୂନ୍ୟଭୂତ ହୃଦୟରେ ବୃଦ୍ଧ ଧୃତରାଷ୍ଟ୍ରଙ୍କ ପ୍ରବାସଜନିତ ଦୁଃଖ ଧାରଣ କରି ସଂଜ୍ଞାହୀନ ବ୍ୟକ୍ତି ସଦୃଶ ଅବସ୍ଥାନ କଲେ । ୮ । କିୟତ୍‌କ୍ଷଣ ଉତ୍ତାରେ ସେମାନେ ଧୃତରାଷ୍ଟ୍ରଙ୍କ ବିଯୋଗଜନିତ ଆୟାସ ଦୁଃଖ ଅପନୟନ କରି ଧୀରେ ଧୀରେ ପରସ୍ପର ନିଜ ନିଜ ମତ ପ୍ରକାଶ କଲେ । ୯ ।

ହେ ରାଜନ୍ ! ତଦନନ୍ତର ସେମାନେ ସମସ୍ତେ ଏକତ୍ରିତ ହୋଇ ସନ୍ଧାନ୍ ପୂର୍ବକ ଏକ ବ୍ରାହ୍ମଣଙ୍କ ନିକଟରେ ସେମାନଙ୍କର ସେହି ବାକ୍ୟସବୁ ସଂସ୍ଥାପନ କରି ତାହା ଧୃତରାଷ୍ଟ୍ରଙ୍କୁ କହିବା ନିମିତ୍ତ ତାହାଙ୍କୁ ଅନୁରୋଧ କଲେ । ୧୦ ।

ହେ ରାଜନ୍ ! ତଦନନ୍ତର ସର୍ବସମ୍ମତ ଅର୍ଥବିଶାରଦ ପରିବାଗ୍ମୀ ବହ୍ଵୃଚ୍ ଋକ୍‌ବେଦୀ ସାମ୍ବ ନାମକ ବିପ୍ର ରାଜାଙ୍କୁ ସେହି ସମସ୍ତ ବାକ୍ୟ କହିବାକୁ ଆରମ୍ଭ କଲେ ।

ହେ ମହାରାଜ ! ସେହି ମେଧାବୀ ଅତି ପ୍ରଗଲ୍‌ଭ ବିପ୍ର ରାଜା ଧୃତରାଷ୍ଟ୍ରଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ ପ୍ରସନ୍ନ ଓ ସମ୍ମାନିତ କରାଇ କହିଲେ— ହେ ରାଜନ୍ ! ଏମାନଙ୍କ ବାକ୍ୟସବୁ ଆମ୍ଭଠାରେ ବିଦିତ ହୋଇଅଛି ।

Digitized by srujanika@gmail.com

ହେ ବୀର ନରନାଥ ! ଆମ୍ଭେ, ଆପଣଙ୍କୁ ତାହା କହୁଅଛୁଁ, ଆପଣ ଶ୍ରବଣ କରି ସ୍ୱୀକାର କରିବା ହେଉନ୍ତୁ । ୧୩ ।

ହେ ବିଭୋ ! ରାଜେନ୍ଦ୍ର ! ଆମ୍ଭେମାନେ ଆପଣଙ୍କର ପରସ୍ପର ସୁହୃଦ୍ ବୋଲି ଆପଣ ଆମ୍ଭମାନଙ୍କୁ ଯାହା କହୁଅଛନ୍ତି, ତାହା ତଦ୍‌ବତ୍ ଅଟେ । ଏହି ବିଷୟରେ କିଞ୍ଚିନ୍ମାତ୍ର ମିଥ୍ୟା ବାକ୍ୟ ନାହିଁ ।

ହେ ପ୍ରଜାପାଳ ! ଏହିବଂଶୀୟ ରାଜାମାନଙ୍କ ମଧ୍ୟରେ ଯେ ଯେତେବେଳେ ରାଜା ହୁଅନ୍ତି, ସେତେବେଳେ ସେ ପ୍ରଜାମାନଙ୍କର ପ୍ରିୟ ବ୍ୟତିରେକେ ଅପ୍ରିୟ-ଭାଜନ ହୁଅନ୍ତି ନାହିଁ । ୧୫ । ଆପଣ ଆମ୍ଭମାନଙ୍କୁ ପିତା ଓ ଭ୍ରାତାସଦୃଶ ପ୍ରତିପାଳନ କରିଅଛନ୍ତି । ରାଜା ଦୁର୍ଯ୍ୟୋଧନ ମଧ୍ୟ ଆମ୍ଭମାନଙ୍କଠାରେ କୌଣସି ଅତ୍ୟାଚାର କରିନଥିଲେ । ୧୬ ।

ହେ ମହାରାଜ ! ସତ୍ୟବତୀସୁତ ମହାତ୍ମା ମହାମୁନି ବ୍ୟାସ ଆପଣଙ୍କୁ ଯାହା କହିଅଛନ୍ତି, ଆପଣ ସମ୍ପ୍ରତି ତାହା କରିବା ହେଉନ୍ତୁ । ସେ ଆମ୍ଭମାନଙ୍କର ପରମ ଗୁରୁ ଅଟନ୍ତି । ୧୭ । ହେ ରାଜନ୍ ! ଆମ୍ଭେମାନେ ଆପଣଙ୍କଦ୍ୱାରା ପରିତ୍ୟକ୍ତ ହେବାରୁ ଅତିଶୟ ଶୋକାର୍ତ୍ତ ଓ ଦୁଃଖିତ ହେଲୁଁ । ପରନ୍ତୁ ଆମ୍ଭେମାନେ ଚିରକାଳ ଆପଣଙ୍କ ଗୁଣସମୂହରେ ବଦ୍ଧହୋଇ ଅବସ୍ଥାନ କରିବୁଁ । ୧୮ ।

ହେ ପାର୍ଥିବ ! ରାଜା ଶାନ୍ତନୁ, ଚିତ୍ରାଙ୍ଗଦ ଓ ଭୀଷ୍ମଙ୍କ ବଳଦ୍ୱାରା ରକ୍ଷିତ ଆପଣଙ୍କ ପିତା ବିଚିତ୍ରବୀର୍ଯ୍ୟ ଏବଂ ଆପଣଙ୍କର କୃପାଦୃଷ୍ଟିବଳରେ ପୃଥିବୀପତି ପାଣ୍ଡୁ ଯେଉଁରୂପେ ଆମ୍ଭମାନଙ୍କୁ ପାଳନ କରିଥିଲେ, ରାଜା ଦୁର୍ଯ୍ୟୋଧନ ତଦ୍‌ବତ୍ ଆମ୍ଭମାନଙ୍କୁ ପାଳନ କରିଅଛନ୍ତି । ୨୦ ।

ହେ ନୃପବର ! ଆପଣଙ୍କ ପୁତ୍ର ଆମ୍ଭମାନଙ୍କର କିଞ୍ଚିନ୍ମାତ୍ର ଅପ୍ରିୟ କାର୍ଯ୍ୟ କରିନାହାନ୍ତି । ତନ୍ନିମିତ୍ତ ଆମ୍ଭେମାନେ ସେହି ନରପତିଙ୍କୁ ପିତୃବତ୍ ବିଶ୍ୱାସକରୁଁ । ୨୧ । ଆମ୍ଭେମାନେ ଯାଦୃଶ ସୁଖରେ ଅବସ୍ଥାନ କରିଥାଉଁ, ଆପଣ ତାହା ବିଦିତ ହୋଇଅଛନ୍ତି । ଧୀମାନ୍ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କଦ୍ୱାରା ତଦ୍‌ବତ୍ ସହସ୍ର ବର୍ଷ ପ୍ରତିପାଳିତ ହୋଇ ପରମ ସୁଖଭୋଗ କରିବୁଁ । ୨୨ ।

Digitized by srujanika@gmail.com

ମହାରାଜ ! ଏହି ଧର୍ମାତ୍ମା ଭୂରିଦକ୍ଷିଣ ଯୁଧିଷ୍ଠିର କୁରୁ, ସମ୍ବରଣ ଓ ଧୀମାନ୍ ଭରତ ପ୍ରଭୃତି ପୁରାଣ ରାଜର୍ଷିମାନଙ୍କ ବ୍ୟବହାରର ଅନୁବର୍ତ୍ତୀ ହୋଇ ଅଛନ୍ତି । ୨୪ । ଅତଏବ ହେ ମହାରାଜ ! ଏହି ଯୁଧିଷ୍ଠିରଙ୍କ ବିଷୟରେ କିଛିମାତ୍ର ବକ୍ତବ୍ୟ ନାହିଁ । ଆମ୍ଭେମାନେ ଆପଣଙ୍କଦ୍ୱାରା ପରିପାଳିତ ହୋଇ ନିତ୍ୟ ସୁଖରେ ବାସ କରିଅଛୁଁ ।

ସେତେବେଳେ ଆପଣଙ୍କର ଓ ଭବଦୀୟ ପୁତ୍ରଙ୍କର ଅଣୁମାତ୍ର ଅପ୍ରିୟ କାର୍ଯ୍ୟ ହୋଇନଥିଲା । ୨୫ । ପରନ୍ତୁ ହେ କୁରୁନନ୍ଦନ ! ଆପଣ ଏହି ଜ୍ଞାତିବିନାଶ ବିଷୟରେ ଦୁର୍ଯ୍ୟୋଧନଙ୍କଠାରେ ଦୋଷାରୋପ କରୁଅଛନ୍ତି । ତଦ୍‌ବିଷୟରେ ଆମ୍ଭେ ଆପଣଙ୍କୁ ଅନୁନୟ କରୁଅଛୁଁ, ଆପଣ ତାହା କହିବେ ନାହିଁ । ୨୬ ।

ବ୍ରାହ୍ମଣ କହିଲେ—ହେ ମହାରାଜ ! କୁରୁକୁଳ ଯେ ନିଧନପ୍ରାପ୍ତ ହୋଇଅଛି, ତାହା ଦୁର୍ଯ୍ୟୋଧନ, ଆପଣ ବା କର୍ଣ୍ଣ ଓ ଶକୁନିକର୍ତ୍ତୃକ ହୋଇନାହିଁ । ଦୈବବଳରେ କୌରବଗଣଙ୍କର କ୍ଷୟ ହୋଇଅଛି । ଦୈବ ନିତାନ୍ତ ଦୁର୍ନିବାର୍ଯ୍ୟ । ଦୈବ ପୁରୁଷକାରଦ୍ୱାରା କଦାପି ନିବାରିତ ହୁଅନ୍ତି ନାହିଁ ।

ହେ ମହାରାଜ ! ଯୋଦ୍ଧୃପ୍ରବର କୌରବଗଣକର୍ତ୍ତୃକ ଅଷ୍ଟାଦଶ ଅକ୍ଷୌହିଣୀ ସେନା ଅଷ୍ଟାଦଶ ଦିବସରେ ନିହତ ହେଲେ । ହେ ନରନାଥ ! ଦୈବବଳ ବ୍ୟତିରେକେ ଭୀଷ୍ମ, ଦ୍ରୋଣ, କୃପ, ମହାତ୍ମା କର୍ଣ୍ଣ, ମହାବୀର ଯୁଯୁଧାନ, ଧୃଷ୍ଟଦ୍ୟୁମ୍ନ, ଏବଂ ଭୀମ, ଅର୍ଜୁନ, ନକୁଳ, ସହଦେବ ଏହି ଶୂରଜଣ ପାଣ୍ଡୁପୁତ୍ରକର୍ତ୍ତୃକ ଏହି ସମସ୍ତ ସେନାଗଣର କ୍ଷୟ ହୋଇନାହିଁ । ସମରରେ କ୍ଷତ୍ରିୟ ଓ କ୍ଷାତ୍ର ବନ୍ଧୁଗଣ ସମସ୍ତେ ଅବଶ୍ୟ ନିଧନଲାଭ କରନ୍ତି, ଏବଂ କାଳ ଉପସ୍ଥିତ ହେଲେ ସମସ୍ତେ ମୃତ୍ୟୁମୁଖରେ ନିପତିତ ହୁଅନ୍ତି । ହେ ପୁରୁଷପ୍ରବର ! ସେହି ବାହୁବଳାନ୍ୱିତ କ୍ଷତ୍ରିୟଗଣକର୍ତ୍ତୃକ ହୟ, ହସ୍ତୀ ଓ ରଥସମନ୍ୱିତା ଏହି ସସାଗରା ବସୁନ୍ଧରା ନିହତ ହୋଇଅଛି । ହେ ମହୀପାଳ ! ଆପଣଙ୍କର ସେହି ପୁତ୍ର ଅଥବା ଆପଣ, କି କର୍ଣ୍ଣ, କି ଶକୁନି, କି ଆପଣଙ୍କ ଭୃତ୍ୟଗଣ କେହି ମହାତ୍ମା ମହୀପାଳଗଣଙ୍କ ବିନାଶର କାରଣ ନୁହନ୍ତି ।

Digitized by srujanika@gmail.com

ହେ କୁରୁପ୍ରବର ! ସହସ୍ର ନରପତିଗଣ ଯେ ବିନଷ୍ଟ ହୋଇଅଛନ୍ତି, ତାହା ଦୈବକୃତ ବୋଲି ଜାଣିବା ହେଉନ୍ତୁ । ଏହି ବିଷୟରେ କେହି କିଛି କହିବାକୁ ସମର୍ଥ ନୁହନ୍ତି । ଆପଣ ଆମ୍ଭମାନଙ୍କ ଗୁରୁ, ଏହି ସମସ୍ତ ଲୋକର ପ୍ରଭୁ । ଅତଏବ ହେ ଧର୍ମାତ୍ମନ୍ ! ଆପଣଙ୍କୁ ବନଗମନ ବିଷୟରେ ଏବଂ ଆପଣଙ୍କ ପୁତ୍ରଙ୍କୁ ସ୍ୱର୍ଗଗମନ ବିଷୟରେ ଆଦେଶ ପ୍ରଦାନ କଲୁଁ ।

ସେହି ନରପତି ଦୁର୍ଯ୍ୟୋଧନ ଏବଂ ତଦୀୟ ସମସ୍ତ ସହାୟକଗଣ ପରଲୋକ ଲାଭ କରନ୍ତୁ । ୩୭ । ଏବଂ ଦ୍ୱିଜଗଣଙ୍କ ଆଦେଶାନୁସାରେ ସୁରଲୋକରେ ସୁଖଭୋଗ କରନ୍ତୁ ।

ହେ ସୁବ୍ରତ ! ଆପଣ ତପସ୍ୟାରେ ଅନୁରକ୍ତ ହୋଇ ସନାତନ ଧର୍ମ ସମୂହକୁ ପରିଜ୍ଞାତ ହେଉନ୍ତୁ ।

ପାଣ୍ଡବଗଣଙ୍କଠାରେ ଆପଣଙ୍କର ଯେଉଁ ଦୃଷ୍ଟି ପତିତ ହୋଇଅଛି ତାହା ବୃଥା ନୁହେ । ସେହି ଦୃଷ୍ଟି ବଳରେ ସେମାନେ, ପୃଥିବୀ କଥା ଅଧିକ ନୁହେ, ସ୍ୱର୍ଗପାଳନରେ ସମର୍ଥ ହେବେ ।

ହେ ଧୀମନ୍ ! କୁରୁକୁଳପ୍ରବର ! ପ୍ରଜାଗଣ ସମ ବା ବିଷମ ପଥରେ ଶୀଳଭୂଷଣସମ୍ପନ୍ନ ପାଣ୍ଡବଗଣଙ୍କର ଅନୁବର୍ତ୍ତୀ ହେବେ । ପୃଥିବୀପତି ପାଣ୍ଡୁତନୟ ଯୁଧିଷ୍ଠିର ପୂର୍ବତନ ନୃପତିଗଣଙ୍କ ବିଧାନାନୁସାରେ ବ୍ୟକ୍ତିଗଣଙ୍କୁ ଏବଂ ବ୍ରାହ୍ମଣଗଣଙ୍କୁ ପ୍ରଚୁର ପରିମାଣରେ ଧନଦାନ ପୂର୍ବକ ଶ୍ରାଦ୍ଧାଦି କାର୍ଯ୍ୟର ଅନୁଷ୍ଠାନ କରନ୍ତି । ଏହାଙ୍କ ସଦୃଶ ଦୟାବାନ୍, ସରଳ ଓ ପବିତ୍ରସ୍ୱଭାବ ଅନ୍ୟ କେହି ନାହାନ୍ତି । ଏ ଆମ୍ଭମାନଙ୍କୁ ପୁତ୍ରବତ୍ ପାଳନ କରୁଅଛନ୍ତି ।

ଏହାଙ୍କ ମନ୍ତ୍ରିଗଣଙ୍କ ମଧ୍ୟରେ କେହି କ୍ଷୁଦ୍ରବୁଦ୍ଧି ଅବା ଅଳ୍ପଜ୍ଞାନସମ୍ପନ୍ନ ନୁହନ୍ତି । ଭରତକୁଳପ୍ରବର ଅକ୍ଷୁଦ୍ରହୃଦୟ ମେଧାବୀ ମହାମନା କୁନ୍ତୀତନୟ ଦୀର୍ଘଦର୍ଶୀ, ମୃଦୁ, ଦାନ୍ତ ଓ ଅଗତିକୁଳ ପ୍ରତି ମଧ୍ୟ ଅନୁକୂଳ । ଧନାଧ୍ୟକ୍ଷ ସଦୃଶ ସରଳ ଚିତ୍ତରେ ସର୍ବଦା ଆମ୍ଭମାନଙ୍କୁ ପୁତ୍ରବତ୍ ପାଳନ କରୁଅଛନ୍ତି ।

ହେ ରାଜର୍ଷେ ! ଏହି ଧର୍ମନନ୍ଦନ ଯୁଧିଷ୍ଠିରଙ୍କ ସଂସର୍ଗବଶତଃ ଭୀମ, ଅର୍ଜ୍ଜୁନ ପ୍ରଭୃତିମାନେ ଅପ୍ରିୟ ଆଚରଣ କରିବେ ନାହିଁ ।

Digitized by srujanika@gmail.com

ହେ କୌରବ୍ୟ ! ଏହି ଐଶ୍ୱର୍ଯ୍ୟଶାଳୀ ମହାତ୍ମା ପୁରବାସୀଗଣଙ୍କର ହିତୈଷୀ ଭୀମ ପ୍ରଭୃତି ପାଣ୍ଡବଗଣ ମୃଦୁସ୍ୱଭାବ ଜନଗଣଙ୍କ ପ୍ରତି ମୃଦୁତା ଓ ଉଗ୍ରସ୍ୱଭାବ ନରଗଣଙ୍କ ପ୍ରତି ଆଶୀବିଷ ସଦୃଶ ଉଗ୍ରତା ଆଚରଣ କରନ୍ତି ।

ହେ ମହାରାଜ ! କୁନ୍ତୀ, ପାଞ୍ଚାଳୀ, ଉଲୂପୀ ଓ ସାତ୍ୱତକୁଳସମ୍ଭୂତା ସୁଭଦ୍ରା ଏହିମାନେ ଏହି ସମୟରେ କଦାପି ଆପଣଙ୍କର ପ୍ରତିକୂଳାଚରଣ କରିବେ ନାହିଁ । ପୁରବାସୀ ଓ ଜନପଦବାସୀ ଜନଗଣ ଯୁଧିଷ୍ଠିରଙ୍କଦ୍ୱାରା ବର୍ଦ୍ଧିତ ହୋଇ ଭବତ୍କୃତ ଏହି ସ୍ନେହକୁ କଦାପି ବିସ୍ମୃତ ହେବେ ନାହିଁ । ମହାରଥ କୁନ୍ତୀପୁତ୍ରଗଣ ଧର୍ମପରାୟଣ ହୋଇ ଅଧାର୍ମିକ ନରଗଣଙ୍କୁ ମଧ୍ୟ ପାଳନ କରିବେ । ୪୮ ।

ହେ ପୁରୁଷପ୍ରବର ! ମହାରାଜ ! ଆପଣ ଯୁଧିଷ୍ଠିରଙ୍କଠାରୁ ମାନସିକ ଦୁଃଖ ଅପନୟନ କରି ଧର୍ମକାର୍ଯ୍ୟ କରନ୍ତୁ । ଆପଣଙ୍କୁ ନମସ୍କାର ! ୪୯ ।

ବୈଶମ୍ପାୟନ କହିଲେ—ଜନଗଣ ସମସ୍ତେ ସେହି ବ୍ରାହ୍ମଣଙ୍କ ଉତ୍ତମ ଗୁଣଯୁକ୍ତ ଧର୍ମସମ୍ବଳିତ ତାଦୃଶ ବାକ୍ୟକୁ ସମ୍ମାନିତ କରି ସାଧୁ ସାଧୁ ବୋଲି ପ୍ରତିଗ୍ରହ କଲେ । ୫୦ । ତେତେବେଳେ ଧୃତରାଷ୍ଟ୍ର ବାରମ୍ବାର ସେହି ବାକ୍ୟକୁ ସାଧୁ ବୋଲି ସମ୍ମାନିତ କରି କ୍ରମେ କ୍ରମେ ପ୍ରଜାଗଣଙ୍କୁ ବିସର୍ଜନ କଲେ ।୫୧।

ହେ ଭରତଶ୍ରେଷ୍ଠ ! ରାଜା ଧୃତରାଷ୍ଟ୍ର ସେହି ପ୍ରଜାଗଣକର୍ତ୍ତୃକ ପୂଜିତ ଓ ଶୁଭଦୃଷ୍ଟିଦ୍ୱାରା ଅବଲୋକିତ ହୋଇ କୃତାଞ୍ଜଳିପୁଟରେ ସେହି ବ୍ରାହ୍ମଣଙ୍କୁ ପୂଜାକଲେ । ୫୨ ।

ତଦନନ୍ତର ସେ ଗାନ୍ଧାରୀଙ୍କ ସହିତ ନିଜ ଭବନରେ ପ୍ରବିଷ୍ଟ ହୋଇ ରଜନୀ ପ୍ରଭାତ ହେବାରୁ ଯାହା କରିଥିଲେ, ତାହା ଶ୍ରବଣ କର । ୫୩ ।

---

Digitized by srujanika@gmail.com

# ଏକାଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ରାତ୍ରିବସି ପ୍ରଭାତ ହେବାରୁ ଅମ୍ବିକାନନ୍ଦନ ଧୃତରାଷ୍ଟ୍ର ବିଦୁରଙ୍କୁ ଯୁଧିଷ୍ଠିରଙ୍କ ଭବନକୁ ପ୍ରେରଣ କଲେ ।୧।

ବୁଦ୍ଧିମାନ୍ ବ୍ୟକ୍ତିଗଣଙ୍କର ଅଗ୍ରଗଣ୍ୟ ମହାତେଜା ବିଦୁର ରାଜା ଧୃତରାଷ୍ଟ୍ରଙ୍କ ଆଦେଶାନୁସାରେ ଅଚ୍ୟୁତ ଈଶ୍ୱର ଯୁଧିଷ୍ଠିରଙ୍କ ନିକଟକୁ ଗମନ କରି ତାହାଙ୍କୁ କହିଲେ—ହେ ରାଜନ୍ ! ମହାରାଜ ଧୃତରାଷ୍ଟ୍ର ବନବାସ ନିମିତ୍ତ ଦୀକ୍ଷିତ ହୋଇଅଛନ୍ତି । ସେ ଆଗାମୀ କାର୍ତ୍ତିକ ପୂର୍ଣ୍ଣିମାରେ ବନକୁ ଗମନ କରିବେ । ୩ ।

ହେ କୁରୁକୁଳପ୍ରବର ! ସେ ମହାତ୍ମା ଗଙ୍ଗାତନୟ ଭୀଷ୍ମଙ୍କ ଶ୍ରାଦ୍ଧଦାନ ବିଷୟରେ ଅଭିଳାଷୀ ହୋଇ ଆପଣଙ୍କ ନିକଟରୁ କିଛିନ୍ତ ଅର୍ଥ ଆକାଂକ୍ଷା କରୁଅଛନ୍ତି । ୪ । ଏବଂ ଯଦି ଆପଣଙ୍କ ଅନୁମତି ହେବ, ତେବେ ଦ୍ରୋଣ, ସୋମଦତ୍ତ, ଧୀମାନ୍ ବାହ୍ଲୀକ, ପୁତ୍ରଗଣ, ସୈନ୍ଧବାପସଦ ଜୟଦ୍ରଥ ଏବଂ ଯେଉଁ ସମସ୍ତ ସୁହୃଦ୍‌ଗଣ ନିହତ ହୋଇଅଛନ୍ତି, ସେହି ସମସ୍ତଙ୍କର ଶ୍ରାଦ୍ଧ କରିବେ ।

ପାଣ୍ଡୁତନୟ ଯୁଧିଷ୍ଠିର ଓ ଗୁଡ଼ାକେଶ ଅର୍ଜ୍ଜୁନ ବିଦୁରଙ୍କର ତାଦୃଶ ବାକ୍ୟ ଶ୍ରବଣରେ ଅତିଶୟ ହୃଷ୍ଟ ହୋଇ ସମ୍ମାନନା ସହକାରରେ ତାହା ସ୍ୱୀକାର କଲେ । ପରନ୍ତୁ ତେତେବେଳେ ମହାତେଜା ଦୃଢ଼କ୍ରୋଧ ଭୀମ ଦୁର୍ଯ୍ୟୋଧନଙ୍କ କାର୍ଯ୍ୟ ସ୍ମରଣ କରି ବିଦୁରଙ୍କର ସେହି ବାକ୍ୟ ସ୍ୱୀକାର କଲେ ନାହିଁ ।

କିରୀଟୀ ଫାଲ୍‌ଗୁନ ଭୀମସେନଙ୍କ ଅଭିପ୍ରାୟ ବିଦିତ ହୋଇ କିଂଚିତ୍ ବିନୟ ପ୍ରକାଶ ପୂର୍ବକ ନରବର ଭୀମଙ୍କୁ କହିଲେ—ହେ ଭୀମ ! ବୃଦ୍ଧ ରାଜା ପିତା ଧୃତରାଷ୍ଟ୍ର ବନବାସ ନିମିତ୍ତ ଦୀକ୍ଷିତ ହୋଇଅଛନ୍ତି । ସୁହୃଦ୍‌ଗଣଙ୍କ ଔର୍ଦ୍ଧ୍ୱଦେହିକ ଶ୍ରାଦ୍ଧଦାନ କରିବାକୁ ଅଭିଳାଷୀ ହୋଇଅଛନ୍ତି ।

ହେ ମହାବାହୋ ! କୌରବ ! ସେ ଯବ ଭୀଷ୍ମ ପ୍ରଭୃତିଙ୍କର ଔର୍ଦ୍ଧ୍ୱଦେହିକ ଶ୍ରାଦ୍ଧ ନିମିତ୍ତ ଆପଣଙ୍କଦ୍ୱାରା ନିର୍ଜ୍ଜିତ ବିତ୍ତ ଦାନ କରିବାକୁ

Digitized by srujanika@gmail.com

ଅଭିଳାଷୀ ହୋଇ ଅଛନ୍ତି, ତେବେ ତଦ୍‌ବିଷୟରେ ଆପଣଙ୍କର ଅନୁମତି କରିବାର ଉଚିତ ।

ହେ ମହାବାହୋ ! କାଳର ପରାକ୍ରମକୁ ଦେଖିବା ହେଉନ୍ତୁ । ପୂର୍ବେ ଆମ୍ଭେମାନେ ଯାହାଙ୍କୁ ଯାଚ୍ଞା କରୁଥିଲୁଁ, ଅଦ୍ୟ ସେହି ଧୃତରାଷ୍ଟ୍ର ଅଦୃଷ୍ଟ ବଶତଃ ଆମ୍ଭମାନଙ୍କ ନିକଟରେ ପ୍ରାର୍ଥୀ ହେଉଛନ୍ତି । ଏହି ଧୃତରାଷ୍ଟ୍ର ସମସ୍ତ ପୃଥିବୀର ଅଧିପତି ହୋଇ ଶତ୍ରୁକର୍ତ୍ତୃକ ଆତ୍ମୀୟଗଣ ନିହତ ହେବାରୁ ବନଗାମୀ ହେବାକୁ ଅଭିଳାଷ କରିଅଛନ୍ତି ।

ହେ ପୁରୁଷପ୍ରବର ! ଦାନ ବ୍ୟତିରେକେ ଅନ୍ୟ କାର୍ଯ୍ୟରେ ଆପଣଙ୍କର ଯେଉଁପରି ପ୍ରବୃତ୍ତି ନହୁଏ । କାରଣ, ଦାନ ବ୍ୟତିରେକେ ଅନ୍ୟ କାର୍ଯ୍ୟରେ ପ୍ରବୃତ୍ତି ହେଲେ ଅଯଶ ଓ ଅଧର୍ମ ହୁଏ ।

ହେ ଭରତର୍ଷଭ ! ଆପଣ ସମସ୍ତଙ୍କର ପ୍ରଭୁ ଜ୍ୟେଷ୍ଠଭ୍ରାତା ରାଜା ଯୁଧିଷ୍ଠିରଙ୍କ ନିକଟରୁ ଶିକ୍ଷିତ ହେଉନ୍ତୁ । ରାଜାଙ୍କ ବିଦ୍ୟମାନତାରେ ଆପଣ ଆଦାନ କରିବେ କିନ୍ତୁ ପ୍ରଦାନ ବିଷୟରେ ସମର୍ଥ ନୁହନ୍ତି ।

ବୀଭତ୍ସୁ ଅର୍ଜ୍ଜୁନ ଏହିପ୍ରକାର ବାକ୍ୟ କହିବାରୁ ଧର୍ମରାଜ ମଧ୍ୟ ତାହାଙ୍କୁ ସମ୍ମାନିତ କଲେ । ୧୯ । ପରନ୍ତୁ ଭୀମସେନ ତେତେବେଳେ କ୍ରୋଧ ସହକାରରେ ତାହାଙ୍କୁ କହିଲେ ଯେ, ହେ ଫାଲ୍‌ଗୁନ ! ଆମ୍ଭର ଏହିପ୍ରକାର ବିବେଚନା ହେଉଅଛି ଯେ, ଆମ୍ଭେମାନେ ଭୀଷ୍ମ, ନୃପତି ସୋମଦତ୍ତ, ଭୂରିଶ୍ରବା, ରାଜର୍ଷି ବାହ୍ଲୀକ, ମହାତ୍ମା ଦ୍ରୋଣାଚାର୍ଯ୍ୟ ଏବଂ ଅନ୍ୟାନ୍ୟ ସୁହୃଦ୍‌ଗଣଙ୍କର ଶ୍ରାଦ୍ଧ ପ୍ରଭୃତି ଦାନ କରିବୁଁ, ଏବଂ କୁନ୍ତୀ କର୍ଣ୍ଣଙ୍କର ଶ୍ରାଦ୍ଧଦାନ କରିବେ ।

ହେ କୁରୁନାଥ ! ଧୃତରାଷ୍ଟ୍ର ଦାନ କରିପାରିବେ ନାହିଁ । ତାହାହେଲେ ଯେଉଁ କୁଳପାଂଶନଗଣକର୍ତ୍ତୃକ ଏହି ପୃଥିବୀ ବିନାଶିତ ହୋଇଅଛି, ଆମ୍ଭମାନଙ୍କର ପରମ ଶତ୍ରୁ ସେହି ଦୁର୍ଯ୍ୟୋଧନ ପ୍ରଭୃତିମାନେ ଅତିକଷ୍ଟରେ ପରଲୋକକୁ ଗମନ କରିବେ । ହେ ଅର୍ଜ୍ଜୁନ ! ଦ୍ୱାଦଶବର୍ଷ ବୈର, ଗହନ ବନରେ ଅଜ୍ଞାତରୂପେ ବାସ, ଏବଂ ଦ୍ରୌପଦୀଙ୍କର ଶୋକବର୍ଦ୍ଧନ ଏହି ସମସ୍ତ ବିଷୟ ତୁମ୍ଭେ କି ବିସ୍ମରଣ କଲ ?

Digitized by srujanika@gmail.com

ଯେତେବେଳେ ତୁମ୍ଭେ ପାଞ୍ଚାଳପୁତ୍ରୀ ଦ୍ରୌପଦୀଙ୍କ ସହିତ ଆଭରଣ ଓ ଭୂଷଣବର୍ଜ୍ଜିତ ହୋଇ କୃଷ୍ଣାଜିନ ପରିଧାୟୀ ହୋଇ ରାଜା ଧୃତରାଷ୍ଟ୍ରଙ୍କ ନିକଟକୁ ଗମନ କରିଥିଲ, ତେତେବେଳେ ତାହାଙ୍କର ଆମ୍ଭମାନଙ୍କଠାରେ କେଉଁପ୍ରକାର ସ୍ନେହ ଥିଲା ? ୨୨ ।

ଯେତେବେଳେ ତୁମ୍ଭେ ତ୍ରୟୋଦଶ ବର୍ଷ ବନମଧ୍ୟରେ ବନ୍ୟବୃତ୍ତି ଅବଲମ୍ବନ ପୂର୍ବକ ଜୀବିକା ନିର୍ବାହ କରୁଥିଲ, ତେତେବେଳେ ଦ୍ରୋଣ, ଭୀଷ୍ମ ଓ ସୋମଦତ୍ତ ଏହିମାନେ କେଉଁଠାରେ ଥିଲେ ? ତେତେବେଳେ ତୁମ୍ଭର ଏହି ଜ୍ୟେଷ୍ଠତାତ ତୁମ୍ଭଠାରେ କି ନିମିତ୍ତ ପିତୃସଦୃଶ ଦୃଷ୍ଟିପାତ କରିନଥିଲେ ?

ହେ ପାର୍ଥ ! ଏହି କୁଳପାଂଶନ ଦୁର୍ବୁଦ୍ଧି 'ଦ୍ୟୂତରେ ଆମର ବିଜୟ ହେଲାକି' ବୋଲି ବିଦୁରଙ୍କୁ ପ୍ରଶ୍ନ କରିଥିଲେ, ତାହା ତୁମ୍ଭେ ଏକାବେଳକେ କି ବିସ୍ମରଣ କରି ପକାଇଲ ?

ଭୀମସେନ ଏହିପରି କହୁଥିବା ସମୟରେ କୁନ୍ତୀପୁତ୍ର ଧୀମାନ୍ ରାଜା ଯୁଧିଷ୍ଠିର ତାହାଙ୍କୁ ଭର୍ତ୍ସନା କରି 'ଶାନ୍ତ ହୁଅ' ଏହି କଥା କହିଲେ । ୨୫ ।

---

# ଦ୍ୱାଦଶ ଅଧ୍ୟାୟ

ଅର୍ଜ୍ଜୁନ କହିଲେ—ହେ ଭୀମ ! ଆପଣ ଆମ୍ଭର ଜ୍ୟେଷ୍ଠ ଏବଂ ଗୁରୁ, ଏହି ନିମିତ୍ତ ଆପଣଙ୍କୁ ଅତିରିକ୍ତ ବାକ୍ୟ କହିବାକୁ ଆମ୍ଭର ଉତ୍ସାହ ହେଉନାହିଁ । ରାଜର୍ଷି ଧୃତରାଷ୍ଟ୍ର ସର୍ବତୋଭାବରେ ଆମ୍ଭମାନଙ୍କର ସମ୍ମାନପାତ୍ର ଅଟନ୍ତି । ୧ । ଦେଖିବା ହେଉନ୍ତୁ, ଆର୍ଯ୍ୟଗଣଙ୍କର ମର୍ଯ୍ୟାଦାପରିରକ୍ଷକ ସାଧୁଚରିତ୍ର ଉତ୍ତମ ପୁରୁଷମାନେ ଅପକାରକୁ ସ୍ମରଣ ନକରି ଉପକାରକୁ ସ୍ମରଣ କରନ୍ତି । ୨ ।

ତଦନନ୍ତର ଧର୍ମାତ୍ମା କୁନ୍ତୀପୁତ୍ର ଯୁଧିଷ୍ଠିର ମହାତ୍ମା ଫାଲ୍‌ଗୁନଙ୍କର ଏହି ବାକ୍ୟ ଶ୍ରବଣ କରି ବିଦୁରଙ୍କୁ କହିଲେ—ହେ କ୍ଷତ୍ତଃ ! ଆପଣ ଆମ୍ଭ ବାକ୍ୟାନୁସାରେ କୁରୁକୁଳପ୍ରବର ପୃଥିବୀପତି ଧୃତରାଷ୍ଟ୍ରଙ୍କୁ କହିବ ଯେ,

Digitized by srujanika@gmail.com

ସେ ପୁତ୍ର ଓ ଭୀଷ୍ମ ପ୍ରଭୃତି ଉପକାରକ ସମସ୍ତ ସୁହୃଦ୍‌ଗଣଙ୍କ ଶ୍ରାଦ୍ଧ ନିମିତ୍ତ ଯାହା ଦାନ କରିବାକୁ ଇଚ୍ଛା କରିବେ, ତାହାସବୁ ଆମ୍ଭେ ନିଜ କୋଷରୁ ପ୍ରଦାନ କରିବୁଁ । ଏହି ବିଷୟରେ ଭୀମ ଦୁଃଖିତ ହେବେ ନାହିଁ । ୫ ।

ବୈଶମ୍ପାୟନ କହିଲେ—ଧର୍ମରାଜ ଏହି କଥା କହି ଅର୍ଜ୍ଜୁନଙ୍କୁ ସମ୍ମାନ ଦାନ କଲେ ଅର୍ଥାତ୍ ପ୍ରଶଂସା କଲେ । ଭୀମସେନ ଧନଞ୍ଜୟଙ୍କ ପ୍ରତି କଟାକ୍ଷପାତ କଲେ । ୬ ।

ତଦନନ୍ତର ଧୀମାନ୍ ଯୁଧିଷ୍ଠିର ବିଦୁରଙ୍କୁ କହିଲେ ଯେ, ନରନାଥ ଧୃତରାଷ୍ଟ୍ର ଭୀମସେନଙ୍କ ପ୍ରତି କୋପ କରିବେ ନାହିଁ । ୭ ।

ଏହି ଧୀମାନ୍ ଭୀମସେନ ଯେ ବୃଷ୍ଟି, ଆତପ ଓ ବହୁବିଧ ଦୁଃଖଦ୍ୱାରା ପରିକ୍ଲିଷ୍ଟ ହୋଇଅଛନ୍ତି, ତାହା ଆପଣଙ୍କ ବିଦିତ ଅଛି । ପରନ୍ତୁ ହେ ଭରତଶ୍ରେଷ୍ଠ ! ଆପଣ ଆମ୍ଭ ବାକ୍ୟାନୁସାରେ ରାଜାଙ୍କୁ ଏହି କଥା କହିବ ଯେ, ତାହାଙ୍କର ଯେଉଁ ଯେଉଁ ଦ୍ରବ୍ୟରେ ଇଚ୍ଛା ହେବ, ସେ ଆମ୍ଭ ଗୃହରୁ ତାହାସବୁ ଗ୍ରହଣ କରିବେ ।

ପୁନଶ୍ଚ କହିବ ଯେ, ଏହି ଭୀମ ଅତିଶୟ ଦୁଃଖିତ ହୋଇ ଯେଉଁ ମାତ୍ସର୍ଯ୍ୟ କରିଅଛନ୍ତି, ତାହା ତାହାଙ୍କ ଅନ୍ତଃକରଣରେ ଗ୍ରହଣ କରିବାର ଉଚିତ ନୁହେ । ୧୦ ।

ପୁନଶ୍ଚ ସେହି ନରନାଥଙ୍କୁ ଏହି କଥା କହିବ ଯେ, ଆମ୍ଭର ଓ ଅର୍ଜ୍ଜୁନଙ୍କ ଗୃହରେ ଯେଉଁ ସମସ୍ତ ଧନରାଶି ଅଛି, ସେ ସେହି ସମସ୍ତ ଧନର ସ୍ୱାମୀ ଅଟନ୍ତି । ୧୧ । ଅତଏବ ରାଜା ଅଦ୍ୟ ପୁତ୍ର ଓ ସୁହୃଦ୍‌ଗଣଙ୍କ ଶ୍ରାଦ୍ଧ ନିମିତ୍ତ ଇଚ୍ଛାନୁସାରେ ଦାନକରି ଆନୃଣ୍ୟ ଲାଭ କରନ୍ତୁ । ହେ ଜନନାଥ ! ଆପଣ ଏହା ନିଶ୍ଚୟ ଜାଣିବ ଯେ, ଆମ୍ଭର ଏହି ଶରୀର ଓ ଯାବତୀୟ ଧନ ଆପଣଙ୍କ ଅଧୀନ ଅଟେ । ଏଥିରେ କିଛି ସଂଶୟ ନାହିଁ ।

---

Digitized by srujanika@gmail.com

# ତ୍ରୟୋଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ବୁଦ୍ଧିସତ୍ତମ ବିଦୁର ରାଜା ଯୁଧିଷ୍ଠିରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଧୃତରାଷ୍ଟ୍ରଙ୍କ ନିକଟକୁ ଗମନ କରି ଯୁଧିଷ୍ଠିରଙ୍କ ଦ୍ୱାରା ଉକ୍ତ ମହାନ୍ ଅର୍ଥଯୁକ୍ତ ବାକ୍ୟସବୁ କହିଲେ । ୧ ।

ବିଦୁର କହିଲେ—ହେ ମହାରାଜ ! ଆମ୍ଭେ ମହାଦ୍ୟୁତି ରାଜା ଯୁଧିଷ୍ଠିରଙ୍କ ନିକଟରେ ଆପଣଙ୍କ ବାକ୍ୟ ଆଦ୍ୟୋପାନ୍ତ ଶୁଣାଇଲୁଁ । ସେ ତାହା ଶ୍ରବଣ କରି ଆପଣଙ୍କୁ ଅତିଶୟ ପ୍ରଶଂସା କଲେ । ୨ । ମହାତେଜା ବୀଭତ୍ସୁ ଆପଣଙ୍କ ବାକ୍ୟ ଶୁଣି ତାହାଙ୍କ ଗୃହସ୍ଥିତ ଯାବତୀୟ ଧନ, ଗୃହ ଓ ପ୍ରାଣ ପର୍ଯ୍ୟନ୍ତ ଆପଣଙ୍କୁ ନିବେଦନ କଲେ । ୩ । ହେ ରାଜର୍ଷେ ! ଆପଣଙ୍କ ପୁତ୍ର ଧର୍ମରାଜ ରାଜ୍ୟ, ଧନ, ପ୍ରାଣ ଏବଂ ଗୃହରେ ଯାହା କିଛି ଅଛି, ତାହା ସବୁ ଗ୍ରହଣ କରିବା ନିମିତ୍ତ ଆଦେଶ କଲେ । ୪ । ପରନ୍ତୁ ମହାବାହୁ ଭୀମ ସମସ୍ତ ଦୁଃଖ ସ୍ମରଣ କରି ଦୀର୍ଘନିଶ୍ୱାସ ପରିତ୍ୟାଗ ପୂର୍ବକ ବହୁକଷ୍ଟରେ ଅନୁମତି ପ୍ରଦାନ କଲେ । ୫ ।

ଧର୍ମଶୀଳ ଯୁଧିଷ୍ଠିର ଓ ବୀଭତ୍ସୁ ତାହା ଦେଖି ମହାବାହୁ ଭୀମଙ୍କୁ ଅନେକ ଅନୁନୟନ କରି ସୌହୃଦ୍ୟ ସଂସ୍ଥାପନ କଲେ । ୬ । ସେହି କାରଣରୁ ଧର୍ମରାଜ ଆପଣଙ୍କୁ କହିଅଛନ୍ତି ଯେ, ଭୀମ ପୂର୍ବ ବୈର ସ୍ମରଣ କରି ଯେଉଁ ଅନ୍ୟାୟ ଆଚରଣ କରିଅଛନ୍ତି, ତଦ୍ବିଷୟରେ ଆପଣ ଭୀମଙ୍କଠାରେ କ୍ରୋଧ ପ୍ରକାଶ କରିବେ ନାହିଁ । ୭ ।

ହେ ଜନାଧିପ ! କ୍ଷତ୍ରିୟମାନଙ୍କର ଏହିପ୍ରକାର ଧର୍ମ ଅଟେ । ତନ୍ନିମିତ୍ତ ବୃକୋଦର ଯୁଦ୍ଧ ଓ କ୍ଷତ୍ରିୟ ଧର୍ମରେ ନିରତ ଥିବାରୁ ଏହିପ୍ରକାର ଆଚରଣ କରିଅଛନ୍ତି । ହେ ନରନାଥ ! ଏହି ନିମିତ୍ତ ଆମ୍ଭେ ଏବଂ ଅର୍ଜ୍ଜୁନ ବୃକୋଦରଙ୍କ ନିମିତ୍ତ ଆପଣଙ୍କ ନିକଟରେ କ୍ଷମା ପ୍ରାର୍ଥନା କରୁଅଛୁଁ । ଆପଣ ପ୍ରସନ୍ନ ହେଉନ୍ତୁ ।

ଆମ୍ଭମାନଙ୍କର ଯାହା କିଛି ଅଛି, ସେହି ସମସ୍ତ ଦ୍ରବ୍ୟର ଆପଣ ପ୍ରଭୁ ଅଟନ୍ତି । ହେ ପୃଥିବୀପତେ ! ଆପଣ ଯଦି ଏହି ରାଜ୍ୟର ଏବଂ ଆମ୍ଭମାନଙ୍କର ପ୍ରାଣପ୍ରଭୁ ଅଟନ୍ତି, ତେବେ ଆପଣଙ୍କର ଯେତେ ଧନ ଦାନ କରିବାକୁ ଇଚ୍ଛାହୁଏ, ତାହା ଆପଣ ଦାନକରିବା ହେଉନ୍ତୁ । ୧୦ ।

Digitized by srujanika@gmail.com

ପୁତ୍ରମାନଙ୍କର ଔର୍ଦ୍ଧ୍ୱଦୈହିକ ନିମିତ୍ତ ଆପଣ ଆମ୍ଭମାନଙ୍କ ନିକଟରୁ ଉତ୍ତମ ହାର, ରତ୍ନ, ଗୌ, ଦାସ, ଦାସୀ ଓ ମେଷ ଏବଂ ଛାଗ ପ୍ରଭୃତି ଧନ ସମୂହ ଆହରଣ କରି ବ୍ରାହ୍ମଣ, ଦୀନ, ଅନ୍ଧ ଓ କୃପଣଗଣଙ୍କୁ ପ୍ରଦାନ କରନ୍ତୁ ।

ହେ ମହାରାଜ ! ଯୁଧିଷ୍ଠିର ଓ ଧନଂଜୟ ଆପଣଙ୍କୁ ଏହିପ୍ରକାର କହି ଆମ୍ଭଙ୍କୁ ପ୍ରଭୂତ ଅନ୍ନ, ପାନ, ରସ ପ୍ରଭୃତି, ଗୋଗଣଙ୍କ ଜଳପାନ ନିମିତ୍ତ ନିପାନ ଏବଂ ଅନ୍ୟାନ୍ୟ ବିବିଧ ପୁଣ୍ୟଜନକ କାର୍ଯ୍ୟ କରିବାକୁ ଆଦେଶ କଲେ । ଅତଏବ ସମ୍ପ୍ରତି ଏତଦ୍‌ଭିନ୍ନ ଯେଉଁ କାର୍ଯ୍ୟ କରିବାକୁ ହେବ, ଆପଣ ତାହା କହିବା ହେଉନ୍ତୁ । ୧୪ ।

ହେ ଜନମେଜୟ ! ବିଦୁର ଏହି ପ୍ରକାର କହିବାରୁ ଧୃତରାଷ୍ଟ୍ର ପାଣ୍ଡବମାନଙ୍କଠାରେ ଅତିଶୟ ସନ୍ତୁଷ୍ଟ ହୋଇ ସେମାନଙ୍କୁ ଅଭିନନ୍ଦନ କରି କାର୍ତ୍ତିକ ପୌର୍ଣ୍ଣମାସୀରେ ମହାଦାନ କରିବାକୁ ଅଭିଳାଷୀ ହେଲେ । ୧୫ ।



# ଚତୁର୍ଦ୍ଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! ଜନନାଥ ଧୃତରାଷ୍ଟ୍ର ବିଦୁରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ରାଜା ଯୁଧିଷ୍ଠିର ଓ ଜିଷ୍ଣୁ ଅର୍ଜ୍ଜୁନଙ୍କ କାର୍ଯ୍ୟରେ ଅତିଶୟ ପ୍ରୀତ ହେଲେ । ୧ ।

ତଦନନ୍ତର ସେ ଭୀଷ୍ମ, ପୁତ୍ର ଓ ସୁହୃଦ୍‌ଗଣଙ୍କ ନିମିତ୍ତ ନିର୍ବାଚନ ପୂର୍ବକ ସହସ୍ର ଋଷିସତ୍ତମ ବ୍ରାହ୍ମଣଗଣଙ୍କୁ ଅନ୍ନପାନାଦି ଭୋଜନ କରାଇ ଦ୍ରୋଣ, ଭୀଷ୍ମ, ସୋମଦତ୍ତ, ବାହ୍ଲୀକ, ରାଜା ଦୁର୍ଯ୍ୟୋଧନ, ଅନ୍ୟାନ୍ୟ ପୁତ୍ରଗଣ ଏବଂ ଜୟଦ୍ରଥ ପ୍ରଭୃତି ସୁହୃଦ୍‌ଗଣଙ୍କ ନାମ କୀର୍ତ୍ତନ କରି ସେମାନଙ୍କ ଉଦ୍ଦେଶ୍ୟରେ ସେହି ବ୍ରାହ୍ମଣଗଣଙ୍କୁ ଯାନ, ଆଚ୍ଛାଦନ, ସୁବର୍ଣ୍ଣ, ମଣି, ରତ୍ନ, ଦାସଦାସୀ, ଅଜାବିକ ଅର୍ଥାତ୍ ରଙ୍କବ କମ୍ବଳ, ବିବିଧ ରତ୍ନ, ଗ୍ରାମ, କ୍ଷେତ୍ର, ସୁସଜ୍ଜିତ ଅଶ୍ୱ, ହସ୍ତୀ ଏବଂ ଅଳଙ୍କାରସମନ୍ୱିତା ଅନୁତ୍ତମା କନ୍ୟା ପ୍ରଦାନ କଲେ ।

Digitized by srujanika@gmail.com

ତେତେବେଳେ ଯୁଧିଷ୍ଠିରଙ୍କ ଆଦେଶାନୁସାରେ ପ୍ରଭୂତ ଧନରତ୍ନ ସମନ୍ୱିତ, ବହୁଳ ଦକ୍ଷିଣାସମନ୍ୱିତ ସେହି ଶ୍ରାଦ୍ଧ-ଯଜ୍ଞ ଏହିରୂପେ ପରିବର୍ଦ୍ଧିତ ହେଲା ଯେ, ସେଠାରେ ଗଣକ ଓ ଲେଖକ ପୁରୁଷଗଣ, ଯୁଧିଷ୍ଠିରଙ୍କ ବଚନ ଅନୁସାରେ ନୃପତି ଧୃତରାଷ୍ଟ୍ରଙ୍କୁ ବାରମ୍ବାର ପ୍ରଶ୍ନ କରୁଥିଲେ ଯେ, ହେ ରାଜନ୍ ! ଏମାନଙ୍କୁ କେଉଁ ଦାନ କରିବାକୁ ହେବ ଆପଣ ଆଦେଶ କରିବା ହେଉନ୍ତୁ । ଆପଣ ଯାହା ଆଦେଶ କରିବେ ତାହା ଏହି ସ୍ଥାନରେ ଉପସ୍ଥିତ ଅଛି ।

ତେତେବେଳେ ସେମାନେ ଧୃତରାଷ୍ଟ୍ରଙ୍କ ବଚନାବସାନରେ ଧୀମାନ୍ କୁନ୍ତୀପୁତ୍ର ରାଜା ଯୁଧିଷ୍ଠିରଙ୍କ ବାକ୍ୟାନୁସାରେ ଶତଦାନର ପାତ୍ରଙ୍କୁ ସହସ୍ର ଏବଂ ସହସ୍ର ଦାନର ପାତ୍ରଙ୍କୁ ଅୟୁତ ପରିମିତ ଦାନ କଲେ । ୧୦ ।

ଅମ୍ବୁଦ ଯେଉଁପରି ଜଳବର୍ଷଣ ଦ୍ୱାରା ଶସ୍ୟମାନଙ୍କୁ ସମ୍ୟକ୍ ରୂପେ ପୁଷ୍ଟ କରେ, ତଦ୍‌ବତ୍ ସେହି ନରପତି ବସୁ ବର୍ଷଣ କରି ବିପ୍ରଗଣଙ୍କୁ ପରିତୃପ୍ତ କଲେ । ୧୧ ।

ହେ ମହୀପତେ ! ତଦନନ୍ତର ନରପତି ଯୁଧିଷ୍ଠିର ସେହି ଶ୍ରାଦ୍ଧ-ଯଜ୍ଞରେ ପ୍ରଭୂତ ଅନ୍ନ, ପାନ ଓ ରସଦ୍ୱାରା ସମସ୍ତ ବର୍ଣ୍ଣଗଣଙ୍କୁ ପ୍ଲାବିତ କରାଇଲେ ।୧୨।

ହେ ରାଜନ୍ ! ବସ୍ତ୍ର, ଧନ ଓ ରତ୍ନସମୂହ ଯାହାର ବେଗ ଅଟେ, ମୃଦଙ୍ଗସମୂହ ମହାଧ୍ୱାନ ଅଟେ, ଗୋ ଏବଂ ଅଶ୍ୱସମୂହ ମକର ଓ ଆବର୍ତ୍ତ ଅଟେ, ନାନାବିଧ ରତ୍ନ ମହାନ୍ ଆକର ଅଟେ, ଗ୍ରାମ ଏବଂ ଉତ୍ତମ ହାରନକର ଦ୍ୱୀପ ଅଟେ, ମଣି ଓ ହେମନିଚୟ ଜଳ ଏବଂ ଧୃତରାଷ୍ଟ୍ର ଉଡ଼ୁପ ଅଟନ୍ତି, ଏତାଦୃଶ ଦାନରୂପ ସାଗରଦ୍ୱାରା ସମସ୍ତ ଜଗନ୍ମଣ୍ଡଳ ପ୍ଲାବିତ ହେଲା । ୧୪ ।

ହେ ମହାରାଜ ! ସେହି ନରପତି ଧୃତରାଷ୍ଟ୍ର ଏହିରୂପେ ଆପଣାର ଓ ଗାନ୍ଧାରୀଙ୍କର ପୁତ୍ର, ପୌତ୍ର ଓ ପିତୃଗଣଙ୍କର ଔର୍ଦ୍ଧ୍ୱଦେହିକ କାର୍ଯ୍ୟ ନିର୍ବାହ କଲେ । ୧୫ ।

ତଦନନ୍ତର ଯେତେବେଳେ ସେ ପ୍ରଭୂତ ଦାନକରି ପରିଶ୍ରାନ୍ତ ହେଲେ, ତେତେବେଳେ ନରନାଥ ଯୁଧିଷ୍ଠିର ସେହି ଦାନ ଯଜ୍ଞକୁ ନିବୃତ୍ତ କରାଇଲେ । ୧୬ ।

Digitized by srujanika@gmail.com

କୁରୁପତି ରାଜା ଧୃତରାଷ୍ଟ୍ର ନଟ ନର୍ତ୍ତକଙ୍କ ନୃତ୍ୟ ଗୀତାଦି ସମନ୍ୱିତ ବହୁଳ ଅନ୍ନରସ ଓ ଦକ୍ଷିଣାଯୁକ୍ତ ଦାନରୂପ ମହାଯଜ୍ଞକୁ ଏହିରୂପେ ସମାଧାନ କଲେ । ୧୭ ।

ହେ ଭରତଶ୍ରେଷ୍ଠ ! ଅମ୍ବିକାପୁତ୍ର ଧୃତରାଷ୍ଟ୍ର ଏହିରୂପେ ଦଶ ଦିନ ପର୍ଯ୍ୟନ୍ତ ନାନାବିଧ ଧନ ବିତରଣ କରି ପୁତ୍ରପୌତ୍ରଗଣଙ୍କ ନିକଟରେ ଋଣଶୂନ୍ୟ ହେଲେ । ୧୮ ।

---

# ପଞ୍ଚଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ଏକାଦଶ ଦିବସର ପ୍ରାତଃ-କାଳରେ ଧୀମାନ୍ ଅମ୍ବିକାସୁତ ରାଜା ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ସହିତ ବନବାସର ସମସ୍ତ ନିରୂପଣ କରି ବୀରବର ପାଣ୍ଡୁକୁମାରମାନଙ୍କୁ ଆହ୍ୱାନ କରି ସେମାନଙ୍କୁ ଯଥାବିଧାନରେ ଅଭିନନ୍ଦନ କଲେ । ଅନନ୍ତର ସେ ସେହିଦିନ କାର୍ତ୍ତିକ ପୌର୍ଣ୍ଣମାସୀ ତିଥିରେ ବେଦପାରଗ ବ୍ରାହ୍ମଣଗଣଙ୍କଦ୍ୱାରା ଉଦବସନୀୟ ନାମକ ଯଜ୍ଞ ସମାଧାନ କରାଇ ବଲ୍‌କଲ ଓ ଅଜିନ ପରିଧାନ ପୂର୍ବକ ଅଗ୍ନିହୋତ୍ରିକୁ ଅଗ୍ରସର କରାଇ ବଧୂଜନଗଣଙ୍କଦ୍ୱାରା ପରିବୃତ ହୋଇ ସ୍ୱୀୟ ନିକେତନରୁ ନିର୍ଗତ ହେଲେ । ୩ ।

ତଦନନ୍ତର ବିଚିତ୍ରବୀର୍ଯ୍ୟକୁମାର ନରପତି ଧୃତରାଷ୍ଟ୍ର ପୁରରୁ ପ୍ରସ୍ଥାନ କଲାରୁ ସେତେବେଳେ କୁରୁବର ପାଣ୍ଡବ ଓ କୁରୁବଂଶୀୟ ଅପରାପର ମହିଳାମାନଙ୍କର ରୋଦନ ଧ୍ୱନି ପ୍ରାଦୁର୍ଭୂତ ହେଲା । ୪ ।

ତଦନନ୍ତର ରାଜା ଧୃତରାଷ୍ଟ୍ର ଲାଜ ଓ ବିଚିତ୍ର କୁସୁମନିକରଦ୍ୱାରା ସେହି ଗୃହର ଅର୍ଚ୍ଚନା ଏବଂ ଅର୍ଥଦ୍ୱାରା ଭୃତ୍ୟବୃନ୍ଦଙ୍କର ତୁଷ୍ଟିସାଧନ କରି ସମସ୍ତ ବିଷୟ ପ୍ରଭୃତି ପରିତ୍ୟାଗ କରି ଗମନ କଲେ । ୫ ।

ତଦନନ୍ତର ରାଜା ଯୁଧିଷ୍ଠିର କୃତାଞ୍ଜଳି ପୂର୍ବକ କମ୍ପିତ କଳେବର ହୋଇ ବାଷ୍ପଯୁକ୍ତ କଣ୍ଠରେ ଉଚ୍ଚୈଃସ୍ୱରରେ ମହାନାଦ ବିମୋଚନ କରି

Digitized by srujanika@gmail.com

'ହେ ସାଧୋ ! ତାତ ! ଆପଣ କେଉଁ ସ୍ଥାନକୁ ଗମନ କରିବେ', ଏହି କଥା କହି ଭୂତଳରେ ନିପତିତ ହେଲେ । ୬ ।

ସେତେବେଳେ ଭରତପ୍ରଧାନ ଅର୍ଜ୍ଜୁନ କ୍ଷତ୍ରିୟର ଦୁଃଖରେ ଅତ୍ୟନ୍ତ ତାପିତ ହୋଇ ବାରମ୍ବାର ଦୀର୍ଘନିଶ୍ୱାସ ପରିତ୍ୟାଗ ପୂର୍ବକ ଦୀନଜନ ସଦୃଶ ଅବସନ୍ନ ହୋଇ ଯୁଧିଷ୍ଠିରଙ୍କୁ 'ଆପଣ ଏପରି ହେଉନ୍ତୁ ନାହିଁ', ଏହି କଥା କହି ତାହାଙ୍କୁ ଧାରଣ କଲେ । ୭ ।

ତଦନନ୍ତର ବୃକୋଦର, ମହାବୀର ଫାଲ୍‌ଗୁନ, ବୀରବର ମାଦ୍ରୀପୁତ୍ର ନକୁଳ-ସହଦେବ, ବିଦୁର, ସଞ୍ଜୟ, ବୈଶ୍ୟାପୁତ୍ର ଯୁଯୁତ୍ସୁ ଏବଂ ଗୌତମଙ୍କ ସହିତ ଧୌମ୍ୟ ପ୍ରଭୃତି ବିପ୍ରଗଣ ବାଷ୍ପରୁଦ୍ଧ କଣ୍ଠରେ ତାହାଙ୍କର ଅନୁଗାମୀ ହେଲେ । ୮ ।

କୁନ୍ତୀ ବସ୍ତ୍ରାଚ୍ଛାଦିତନୟନା ଗମନଶୀଳା ଗାନ୍ଧାରୀଙ୍କର ନିଜ ସ୍କନ୍ଧସ୍ଥିତ ହସ୍ତକୁ ଉଦ୍‌ବହନ କରି ଗମନ କଲେ । ରାଜା ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ସ୍କନ୍ଧଦେଶରେ ହସ୍ତବିନ୍ୟାସ କରି ପ୍ରୀତହୋଇ ଗମନ କଲେ । ୯ । ସାତ୍ତ୍ୱତକୁଳ-ସମ୍ଭୂତା ସୁଭଦ୍ରା, କୃଷ୍ଣା ଦ୍ରୌପଦୀ, ବାଳାପତ୍ୟା ଅର୍ଥାତ୍ ନବପ୍ରସୂତା ଉତ୍ତରା, କୁରୁରାଜତନୟା ଉଲୂପୀ, ଚିତ୍ରାଙ୍ଗଦା ଏବଂ ଅନ୍ୟାନ୍ୟ ସ୍ତ୍ରୀଗଣ ବନ୍ଧୁବର୍ଗରେ ପରିବୃତ ହୋଇ ରାଜାଙ୍କ ସହିତ ପ୍ରସ୍ଥାନ କଲେ । ୧୦ ।

ହେ ରାଜନ୍ ! ସେତେବେଳେ ଦୁଃଖବଶତଃ କୁରରୀମାନଙ୍କ ସଦୃଶ ଉଚ୍ଚୈଃସ୍ୱରରେ ରୋଦନକାରିଣୀ ସେହି ନାରୀଗଣଙ୍କର ମହାନ୍ ଆର୍ତ୍ତନାଦ ଉତ୍‌ଥିତ ହେଲା ।

ତଦନନ୍ତର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଗଣଙ୍କ ରମଣୀଗଣ ସେହି ଧ୍ୱନି ଶ୍ରବଣ କରି ଚତୁର୍ଦ୍ଦିଗରୁ ଆସି ସେଠାରେ ନିପତିତ ହେଲେ ।୧୧।

ହେ ମହାରାଜ ! ପୂର୍ବେ ପାଣ୍ଡବଗଣ ଦ୍ୟୂତକ୍ରୀଡ଼ାରେ ପରାଜିତ ହୋଇ କୌରବମାନଙ୍କ ସଭାରୁ ଗମନ କଲାରୁ ହସ୍ତିନା ପୁରବାସୀଗଣ ଯେଉଁପରି ଦୁଃଖିତ ହୋଇଥିଲେ, ଧୃତରାଷ୍ଟ୍ରଙ୍କ ନିର୍ଗମନ ସମୟରେ ସେମାନେ ସେହିରୂପେ ଦୁଃଖିତ ହେଲେ । ୧୨ ।

Digitized by srujanika@gmail.com

ଯେଉଁ ରମଣୀଗଣ କଦାପି ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଦେଖିନଥିଲେ, ସେମାନେ ସେହି କୁରୁପତି ନରେନ୍ଦ୍ର ଧୃତରାଷ୍ଟ୍ରଙ୍କର ମହାବନଗମନ କାଳରେ ଅତିଶୟ ଶୋକାର୍ତ୍ତା ହୋଇ ରାଜମାର୍ଗକୁ ଆଗମନ କଲେ । ୧୩ ।

---

## ଷୋଡ଼ଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ପୃଥିବୀପାଳ ! ତଦନନ୍ତର ସମସ୍ତ ପ୍ରାସାଦ, ଅଟ୍ଟାଳିକା ଓ ଭୂମଣ୍ଡଳରେ ଥିବା ନରନାରୀଗଣଙ୍କର ସୁମହାନ୍ ଧ୍ୱନି ସମୁତ୍‌ଥିତ ହେଲା । ୧ ।

ଧୀମାନ୍ ରାଜା ଧୃତରାଷ୍ଟ୍ର କୃତାଞ୍ଜଳି ଓ କମ୍ପିତ କଳେବର ହୋଇ ଅତିକଷ୍ଟରେ ନରନାରୀସମାକୁଳ ରାଜମାର୍ଗ ଅତିକ୍ରମ କଲେ ଏବଂ ହସ୍ତିନା ନଗରରେ ଅତି ଉଚ୍ଚ ବହିର୍ଦ୍ୱାରରୁ ବହିର୍ଗତ ହୋଇ ସେହି ସ୍ଥାନରୁ ଅନୁଚରଜନଗଣଙ୍କୁ କ୍ରମେ କ୍ରମେ ବିଦାୟ କଲେ । ୩ ।

ମହାମାତ୍ର ସୂତ ଗବଲ୍‌ଗଣନନ୍ଦନ ସଞ୍ଜୟ ଏବଂ ବିଦୁର ରାଜାଙ୍କ ସହିତ ବନଗମନ ବିଷୟରେ ସ୍ଥିରସଂକଳ୍ପ ହେବାରୁ ମହୀପତି ଧୃତରାଷ୍ଟ୍ର, କୃପ ଓ ମହାରଥ ଯୁଯୁତ୍ସୁଙ୍କୁ ଯୁଧିଷ୍ଠିରଙ୍କ ନିକଟରେ ସମର୍ପଣ କରି ସେମାନଙ୍କୁ ନିବୃତ୍ତ କରାଇଲେ । ୫ ।

ତେତେବେଳେ ପୌରଜନବର୍ଗ ନିବୃତ୍ତ ହେଲାରୁ ରାଜା ଯୁଧିଷ୍ଠିର ଧୃତରାଷ୍ଟ୍ରକର୍ତ୍ତୃକ ଅନୁଜ୍ଞାତ ହୋଇ ଅନ୍ତଃପୁର-ଲୋକବର୍ଗଙ୍କ ସହିତ ସେଠାରୁ ନିବୃତ୍ତ ହେଲେ । ୬ ।

ସେ ଧୃତରାଷ୍ଟ୍ରଙ୍କର ଅନୁଗମନାଭିଳାଷିଣୀ ବନଗାମିନୀ ମାତା କୁନ୍ତୀଙ୍କୁ କହିଲେ—ହେ ମାତ ! ଆମ୍ଭେ ରାଜାଙ୍କ ସହିତ ବନକୁ ଗମନ କରିବୁଁ । ଆପଣ ନିବୃତ୍ତ ହେଉନ୍ତୁ । ୭ । ହେ ରାଜ୍ଞି ! ତପସ୍ୟା ବିଷୟରେ କୃତନିଶ୍ଚୟ ଧର୍ମାତ୍ମା ରାଜା ଏହି ଧୃତରାଷ୍ଟ୍ର ବନକୁ ଗମନ କରନ୍ତୁ । ପରନ୍ତୁ ଆପଣ ବଧୂବୃନ୍ଦରେ ପରିବେଷ୍ଟିତ ହୋଇ ନଗରକୁ ଗମନ କରିବା ହେଉନ୍ତୁ । ୮ ।

Digitized by srujanika@gmail.com

ତେତେବେଳେ ଧର୍ମରାଜ ଏହିପରି କହିବାରୁ କୁନ୍ତୀ ବାଷ୍ପାକୁଳ-ଲୋଚନରେ ଗାନ୍ଧାରୀଙ୍କୁ ଗାଢ଼ରୂପେ ଧାରଣ କରି ଗମନ କଲେ ଓ କହିଲେ । ୯ ।

କୁନ୍ତୀ କହିଲେ—ହେ ମହାରାଜ ! ଏହି ସହଦେବ ସର୍ବଦା ତୁମ୍ଭର ଏବଂ ଆମ୍ଭର ଅନୁରକ୍ତ । ଅତଏବ ତୁମ୍ଭେ ଏହାଙ୍କଠାରେ କଦାପି ବିରକ୍ତ ହେବ ନାହିଁ । ୧୦ । ସମରରେ ଅପରାଙ୍ମୁଖ କର୍ଣ୍ଣଙ୍କୁ ସର୍ବଦା ସ୍ମରଣ କରୁଥିବ । ସେହି ବୀର ତେତେବେଳେ ଦୁର୍ବୁଦ୍ଧିବଶତଃ ସଂଗ୍ରାମରେ ନିହତ ହୋଇ-ଅଛନ୍ତି । ହେ ପୁତ୍ର ! ଆମ୍ଭେ ମନ୍ଦଭାଗିନୀ, ଆମ୍ଭ ହୃଦୟ ନିଶ୍ଚୟ ଲୌହମୟ ଅଟେ, କାରଣ ସୂର୍ଯ୍ୟନନ୍ଦନର ବିନାଶ ଦର୍ଶନରେ ଯାହା ଅଦ୍ୟାପି ଶତଧା ବିଦୀର୍ଣ୍ଣ ନହେଲା । ୧୨ ।

ହେ ଅରିଦମନ ! ସୂର୍ଯ୍ୟନନ୍ଦନ ଏହିରୂପେ ବିନଷ୍ଟ ହେଲେ । ତାହାଙ୍କ ବିଷୟରେ ପ୍ରତୀକାର କରିବାକୁ ଆମ୍ଭର କୌଣସି ଶକ୍ତି ନଥିଲା । ତେବେ ଆମ୍ଭର ଗୋଟିଏ ମହାନ୍ ଦୋଷ ହୋଇଅଛି ଯେ, ପୂର୍ବେ ଆମ୍ଭେ କର୍ଣ୍ଣଙ୍କୁ ସୂର୍ଯ୍ୟଙ୍କ ପୁତ୍ର ବୋଲି ପ୍ରକାଶ କଲୁନାହିଁ । ୧୩ । ହେ ଅରିମର୍ଦ୍ଦନ ! ମହାବାହୋ ! ତୁମ୍ଭେ ଭ୍ରାତୃଗଣଙ୍କ ସହିତ ସର୍ବଦା ସେହି ସୂର୍ଯ୍ୟସୁତଙ୍କ ଉଦ୍ଦେଶ୍ୟରେ ଉତ୍ତମରୂପେ ଦାନ କରିବ । ୧୪ ।

ହେ ଶତ୍ରୁମର୍ଦ୍ଦନ ! ତୁମ୍ଭେ କଦାପି ଦ୍ରୌପଦୀଙ୍କ ଅପ୍ରିୟ ହେବ ନାହିଁ । କୁରୁଶ୍ରେଷ୍ଠ ! ଭୀମ, ଅର୍ଜ୍ଜୁନ ଓ ନକୁଳ ଏହିମାନେ ନିରନ୍ତର ଦ୍ରୌପଦୀଙ୍କ ପ୍ରିୟ କାର୍ଯ୍ୟରେ ରତ ହୋଇ ରହିଥିବେ । ହେ ରାଜନ୍ ! ଅଦ୍ୟ ତୁମ୍ଭଠାରେ ସମୁଦାୟ କୁଳର ଭାର ଅର୍ପିତ ହୋଇଅଛି । ଅତଏବ ତୁମ୍ଭେ ଏହି ସମସ୍ତ କାର୍ଯ୍ୟ ସମାଧାନ କରିବ । ଆମ୍ଭେ ବନମଧ୍ୟରେ ଶ୍ୱଶ୍ରୂ-ଶ୍ୱଶୁର ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ଅନୁଗମନ ପୂର୍ବକ ସେହି ଦୁହିଙ୍କ ପଦସେବା କରି ତପୋନୁଷ୍ଠାନ ପୂର୍ବକ ମଳପଙ୍କିନୀ ହୋଇ ଗାନ୍ଧାରୀଙ୍କ ସହିତ ବାସକରିବୁଁ । ୧୬ ।

ବୈଶମ୍ପାୟନ କହିଲେ—ବଶୀକୃତଚେତା ଧୀମାନ୍ ଧର୍ମାତ୍ମା ଯୁଧିଷ୍ଠିର କୁନ୍ତୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଭ୍ରାତୃଗଣଙ୍କ ସମଭିବ୍ୟାହାରରେ ଅତ୍ୟନ୍ତ ବିଷଣ୍ଣ ହୋଇ କିଂଚନ୍ମାତ୍ର ଉତ୍ତର କରିବାକୁ ସମର୍ଥ

Digitized by srujanika@gmail.com

ହେଲେ ନାହିଁ । ୧୭ । ଚିନ୍ତାଶୋକପରାପ୍ଲୁତ ଧର୍ମରାଜ ଯୁଧିଷ୍ଠିର ମୁହୂର୍ତ୍ତକ ସମସ୍ତ ଚିନ୍ତାକରି ଦୀନଭାବରେ ଜନନୀ କୁନ୍ତୀଙ୍କୁ କହିଲେ—ହେ ମାତ ! ଆପଣଙ୍କର ଏ କେଉଁ ବ୍ୟବହାର ? ଆପଣଙ୍କର ଏପ୍ରକାର କହିବାର ଉଚିତ ନୁହେ । ଆମ୍ଭେ ଆପଣଙ୍କୁ ବନଗମନ ବିଷୟରେ ଅନୁମତି ଦେବୁନାହିଁ । ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହେଉନ୍ତୁ । ୧୯ ।

ହେ ପ୍ରିୟଦର୍ଶନେ ! ପୂର୍ବେ ଆମ୍ଭେମାନେ ପୁରରୁ ବହିର୍ଗମନ ବିଷୟରେ ଉଦ୍ୟତ ହେବାରୁ ଆପଣ ଆମ୍ଭମାନଙ୍କୁ ବିଦୁଲାଙ୍କ ବାକ୍ୟଦ୍ୱାରା ଉତ୍ସାହଦାନ କରିଥିଲେ । ସମ୍ପ୍ରତି ଆମ୍ଭମାନଙ୍କୁ ପରିତ୍ୟାଗ କରିବାର କି ଆପଣଙ୍କର ଉଚିତ ଅଟେ ?

ଆମ୍ଭେ ନରବର ବାସୁଦେବଙ୍କ ନିକଟରୁ ଆପଣଙ୍କର ପ୍ରଜ୍ଞାବଳ ଶ୍ରବଣ କରି ତଦନୁସାରେ ପୃଥିବୀପାଳଗଣଙ୍କୁ ସଂହାର କରି ଏହି ରାଜ୍ୟ ପ୍ରାପ୍ତ ହୋଇଅଛୁଁ । ୨୧ ।

ହେ ମାତ ! ଆମ୍ଭେ ଆପଣଙ୍କର ଯେଉଁ ବୁଦ୍ଧିବୃତ୍ତି ଶ୍ରବଣ କରିଥିଲୁଁ, ସେହି ବୁଦ୍ଧି ଆପଣଙ୍କର କେଉଁଠାରେ ଅଛି ? ପୂର୍ବେ ଆପଣ ଆମ୍ଭଙ୍କୁ 'କ୍ଷାତ୍ରଧର୍ମରେ ଅବସ୍ଥାନ କରିବା ଅବଶ୍ୟ କର୍ତ୍ତବ୍ୟ' ଏହି କଥା କହି ସମ୍ପ୍ରତି ତହିଁରୁ ବିଚ୍ୟୁତ ହେବାକୁ ଇଚ୍ଛା କରୁଅଛ ?

ଆପଣ ଏହି ରାଜ୍ୟର ଯଶସ୍ୱିନୀ ସ୍ନୁଷା ଓ ଆମ୍ଭମାନଙ୍କୁ ପରିତ୍ୟାଗ କରି କେଉଁରୂପେ ଦୁର୍ଗମ ବନରେ ବାସ କରିବେ ? ମାତ ! ଆମ୍ଭଠାରେ ପ୍ରସନ୍ନ ହୋଇ ବନଗମନରୁ ନିବୃତ୍ତ ହୁଅନ୍ତୁ । ୨୩ ।

କୁନ୍ତୀପୁତ୍ରଙ୍କର ଈଦୃଶ ବାଷ୍ପାକୁଳ କରୁଣ ବାକ୍ୟ ଶ୍ରବଣ କରି ଅଶ୍ରୁପୂର୍ଣ୍ଣ ଲୋଚନରେ ଗମନ କରୁଥିଲେ । ଭୀମ ତାହାଙ୍କୁ କହିଲେ । ୨୪ ।

ମାତଃ ! କୁନ୍ତି ! ଆପଣ ଯେତେବେଳେ ପୁତ୍ରନିର୍ଜିତ ଏହି ରାଜ୍ୟ ଭୋଗ କରିବେ ଏବଂ ରାଜଧର୍ମସମୂହ ପରିପାଳନ କରିବେ ବୋଲି ମନେକରୁଥିଲେ, ତେତେବେଳେ ଆପଣଙ୍କର ଏହି ବୁଦ୍ଧି କେଉଁଠାରେ ଥିଲା ? ୨୫ । ଆପଣ କେଉଁ କାରଣରୁ ଆମ୍ଭମାନଙ୍କୁ ପରିତ୍ୟାଗ ପୂର୍ବକ

Digitized by srujanika@gmail.com

ବନଗମନ ବିଷୟରେ ଅଭିଳାଷ କରିଅଛନ୍ତି ? ଆପଣଙ୍କର ଯଦି ଏହିପ୍ରକାର ଅଭିଳାଷ ଥିଲା, ତେବେ କି ନିମିତ୍ତ ପୂର୍ବେ ଆମ୍ଭମାନଙ୍କଦ୍ୱାରା ପୃଥିବୀ କ୍ଷୟ କରାଇଲେ ? ୨୬ ।

ଆମ୍ଭେମାନେ ବାଲ୍ୟାବସ୍ଥାରେ ବନକୁ ଗମନ କରିଥିଲୁଁ । ଆମ୍ଭମାନଙ୍କୁ ଏବଂ ଦୁଃଖ-ଶୋକ-ସମାବିଷ୍ଟ ମାଦ୍ରୀପୁତ୍ର ନକୁଳ-ସହଦେବଙ୍କୁ କେଉଁ ନିମିତ୍ତ ବନରୁ ଆନୟନ କରାଇଲେ ? ୨୭ ।

ହେ ଯଶସ୍ୱିନି ! ମାତଃ ! ଆପଣ ପ୍ରସନ୍ନା ହେଉନ୍ତୁ, ଅଦ୍ୟ ବନକୁ ଗମନ ନ କରି ଧର୍ମରାଜଙ୍କ ବାହୁବଳାର୍ଜିତ ଏହି ଐଶ୍ୱର୍ଯ୍ୟ ଭୋଗ କରିବା ହେଉନ୍ତୁ । ୨୮ ।

ଗ୍ରାବଳୀ କୁନ୍ତୀ ସତ୍ୱର ବନବାସ ନିମିତ୍ତ କୃତନିଶ୍ଚୟା ହୋଇ ପୁତ୍ରମାନଙ୍କର ସେହି ବହୁବିଧ ବିଳାପବାକ୍ୟ ଶ୍ରବଣ ବା ଗ୍ରହଣ କଲେ ନାହିଁ । ତେତେବେଳେ ଦ୍ରୌପଦୀ ବିଷଣ୍ଣ ବଦନରେ ରୋଦନ କରି ସୁଭଦ୍ରାଙ୍କ ସମଭିବ୍ୟାହାରରେ ବନବାସଗମନୋଦ୍ୟତା ଶ୍ୱଶ୍ରୂ କୁନ୍ତୀଙ୍କ ଅନୁଗାମିନୀ ହେଲେ । ୩୦ ।

ବନବାସ ବିଷୟରେ କୃତନିଶ୍ଚୟା ମହାପ୍ରାଜ୍ଞା କୁନ୍ତୀ ରୋରୁଦ୍ୟମାନ ପୁତ୍ରଗଣଙ୍କୁ ବାରମ୍ବାର ଅବଲୋକନ କରି ଗମନ କରୁଥିଲେ । ୩୧ । ପାଣ୍ଡବଗଣ ଭୃତ୍ୟ ଓ ଅନ୍ତଃପୁରବାସୀ ଜନଗଣଙ୍କ ସହିତ ତାହାଙ୍କ ଅନୁଗମନ କଲେ । ତଦନନ୍ତର କୁନ୍ତୀ ଅତି କଷ୍ଟରେ ଲୋତକ ସମ୍ବରଣ କରି ପୁତ୍ରଗଣଙ୍କୁ ବଚନ କହିଲେ । ୩୨ ।

---

## ସପ୍ତଦଶ ଅଧ୍ୟାୟ

କୁନ୍ତୀ କହିଲେ—ହେ ମହାବାହୋ ! ପାଣ୍ଡୁପୁତ୍ର ନରପତିଗଣ ! ତୁମ୍ଭେମାନେ ଯାହା କହିଲ, ତାହା ସତ୍ୟ ଅଟେ । ପରନ୍ତୁ ଆମ୍ଭେ ପୂର୍ବେ ତୁମ୍ଭମାନଙ୍କୁ ଯାହା କହିଥିଲୁଁ ବା ତୁମ୍ଭମାନଙ୍କ ନିମିତ୍ତ ଯାହା କରିଅଛୁଁ, ତୁମ୍ଭେମାନେ ଦ୍ୟୁତଦ୍ୱାରା ରାଜ୍ୟଭ୍ରଷ୍ଟ, ସୁଖହୀନ, ଜ୍ଞାତିଗଣକର୍ତ୍ତୃକ ପରାଭୂତ

Digitized by srujanika@gmail.com

ଏବଂ ଅବସନ୍ନ ହେବାରୁ ତାହା ତୁମ୍ଭମାନଙ୍କର ଉତ୍ସାହ ବର୍ଦ୍ଧନ ନିମିତ୍ତ ହୋଇଥିଲା ବୋଲି ଜ୍ଞାନକର ।

ହେ ପୁରୁଷପ୍ରବରଗଣ ! ତୁମ୍ଭେମାନେ ପାଣ୍ଡୁଙ୍କ ପୁତ୍ର, ସୁତରାଂ ତୁମ୍ଭମାନଙ୍କ ନାଶ ବା ଯଶୋହାନ ହେବା ଅତି ଅନୁଚିତ । ଏହି ନିମିତ୍ତ ଆମ୍ଭେ ତୁମ୍ଭମାନଙ୍କୁ ହର୍ଷଯୁକ୍ତ କରାଇଥିଲୁଁ । ୩ । ତୁମ୍ଭେମାନେ ସମସ୍ତେ ଇନ୍ଦ୍ର ଏବଂ ଦେବଗଣ ସଦୃଶ ପରାକ୍ରମଶାଳୀ ଅଟ । ସୁତରାଂ ତୁମ୍ଭେମାନେ ଶତ୍ରୁର ବଶୀଭୂତ ହୋଇ ରହିବା ଅତି ଅନୁଚିତ—ଏହି କଥା ବିବେଚନା କରି ଆମ୍ଭେ ତାଦୃଶ କାର୍ଯ୍ୟ କରିଥିଲୁଁ । ଅର୍ଥାତ୍ ଯୁଦ୍ଧ ନିମିତ୍ତ ତୁମ୍ଭଙ୍କୁ ଉତ୍ସାହଦାନ କରିଥିଲୁଁ । ହେ ଯୁଧିଷ୍ଠିର ! ତୁମ୍ଭେ ଧାର୍ମିକ, ଶ୍ରେଷ୍ଠ ଏବଂ ସୁରରାଜ ସଦୃଶ ରାଜା । ଅତଏବ ତୁମ୍ଭେ ବନମଧ୍ୟରେ ପୁନଶ୍ଚ କେଉଁପରି ଦୁଃଖଭୋଗ କରିବ ? ଅର୍ଥାତ୍ ଯେଉଁ ଉପାୟରେ କଦାପି ଦୁଃଖଭୋଗ ନ କରିବ ଏହି କଥା ମନେ କରି ଆମ୍ଭେ ତୁମ୍ଭଙ୍କୁ ଯୁଦ୍ଧ ବିଷୟରେ ଉତ୍ସାହଦାନ କରିଥିଲୁଁ । ୫ ।

ଅଯୁତ ଗଜ ସଦୃଶ ବଳଶାଳୀ, ବିକ୍ରମ ଓ ପୁରୁଷକାରରେ ବିଖ୍ୟାତ ଏହି ଭୀମସେନଙ୍କ ବିନାଶ ଆଶଙ୍କାରେ ଆମ୍ଭେ ତୁମ୍ଭମାନଙ୍କର ହର୍ଷବର୍ଦ୍ଧନ କରିଥିଲୁଁ । ୬ । ଭୀମସେନଙ୍କ ଅନୁଜ ଏବଂ ଇନ୍ଦ୍ର ସଦୃଶ ଏହି ବିଜୟ କଦାପି ଅବସନ୍ନ ନ ହେବେ, ଏହି ନିମିତ୍ତ ଆମ୍ଭେ ତୁମ୍ଭମାନଙ୍କର ହର୍ଷ ଉତ୍ପାଦନ କରିଥିଲୁଁ । ୭ ।

ଗୁରୁଙ୍କର ଆଜ୍ଞାନୁବର୍ତ୍ତୀ ଏହି ନକୁଳ ଓ ସହଦେବ କେଉଁରୂପେ କ୍ଷୁଧାରେ ଅବସନ୍ନ ନ ହେବେ, ଏହି କଥା ମନେକରି ଆମ୍ଭେ ତୁମ୍ଭମାନଙ୍କର ଉତ୍ସାହ ବିଶେଷରୂପେ ବର୍ଦ୍ଧନ କରିଥିଲୁଁ । ୮ । ଏହି ଦୀର୍ଘାଙ୍ଗୀ ଶ୍ୟାମବର୍ଣ୍ଣା ବିଶାଳନୟନା ଦ୍ରୌପଦୀ ସର୍ବସ୍ଥଳରେ ବୃଥା କ୍ଳେଶ ନ ପାନ୍ତୁ ଏହି ବିବେଚନାରେ ଆମ୍ଭେ ତାଦୃଶ ଉତ୍ସାହଦାନ କରିଥିଲୁଁ । ୯ ।

ହେ ଭୀମ ! ଯେତେବେଳେ ଦୁଃଶାସନ ମୂର୍ଖତାବଶତଃ ତୁମ୍ଭମାନଙ୍କ ସମକ୍ଷରେ କଦଳୀତରୁ ସଦୃଶ କମ୍ପିତ କଳେବରା ଧର୍ମଚାରିଣୀ ଅରିଷ୍ଟାଙ୍ଗୀ ଦ୍ୟୂତ-ପରାଜିତା ଏହି ଦ୍ରୌପଦୀଙ୍କୁ ଦାସୀ ସଦୃଶ ଆକର୍ଷଣ କଲେ, ତେତେ-ବେଳେ ଆମ୍ଭେ ଏହି କୁରୁକୁଳକୁ ଆମ୍ଭମାନଙ୍କ ନିକଟରେ ପରାଭୂତ ହେବାର ମନେ କରିଥିଲୁଁ । ୧୧ ।

Digitized by srujanika@gmail.com

ଯେତେବେଳେ ଦ୍ରୌପଦୀ କୁରରୀ ସଦୃଶ ବିଳାପକରି ଧର୍ମହେତୁରୁ ଅନ୍ୟ ନାଥର ଅଭିଳାଷ କଲେ ନାହିଁ, ତେତେବେଳେ ଆମ୍ଭର ଶ୍ୱଶୁର ପ୍ରଭୃତି କୌରବଗଣ ଅତିଶୟ ବିପନ୍ନ ହେଲେ । ୧୨ ।

ହେ ନୃପଗଣ ! ଯେତେବେଳେ ହତବୁଦ୍ଧି ପାପାତ୍ମା ଦୁଃଶାସନ ଏହାଙ୍କର କେଶାକର୍ଷଣ କଲେ, ତେତେବେଳେ ଆମ୍ଭର ଚୈତନ୍ୟ ବିନଷ୍ଟ ହେଲା । ୧୩ । ହେ ପୁତ୍ରଗଣ ! ତେତେବେଳେ ଆମ୍ଭେ ବିଦୁରଙ୍କ ବାକ୍ୟାନୁସାରେ ତୁମ୍ଭମାନଙ୍କର ତେଜୋବର୍ଦ୍ଧନ ନିମିତ୍ତ ତୁମ୍ଭମାନଙ୍କୁ ଉତ୍ସାହ ଦାନ କରିଥିଲୁଁ । ୧୪ ।

ହେ ବତ୍ସଗଣ ! ତେତେବେଳେ ପାଣ୍ଡୁଙ୍କର ଏହି ରାଜବଂଶ ଆମ୍ଭର ପୁତ୍ରଗଣଙ୍କଠାରୁ ବିନଷ୍ଟ ନ ହେଉ, ଏହି ଅଭିପ୍ରାୟରେ ଆମ୍ଭେ ତୁମ୍ଭମାନଙ୍କର ହର୍ଷବର୍ଦ୍ଧନ କରିଥିଲୁଁ । ୧୫ । ହେ ପାର୍ଥିବ ! ଯେଉଁ ବ୍ୟକ୍ତି ବଂଶନାଶର ହେତୁ-ଭୂତ ହୁଅନ୍ତି, ତାହାଙ୍କର ପୁତ୍ରପୌତ୍ରଗଣ ଶୁଭଲୋକ ଲାଭ ବିଷୟରେ ବଞ୍ଚିତ ହୁଅନ୍ତି । ୧୬ ।

ହେ ପୁତ୍ରଗଣ ! ଆମ୍ଭେ ପୂର୍ବେ ଭର୍ତ୍ତାଙ୍କର ବିପୁଳ ରାଜ୍ୟଫଳ ଭୋଗ କରିଅଛୁଁ, ମହାଦାନସମୂହ ଦାନ କରିଅଛୁଁ, ଏବଂ ଯଥାବିଧି ସୋମରସ ପାନ କରିଅଛୁଁ । ୧୭ । ଆମ୍ଭେ ନିଜ ଫଳ ନିମିତ୍ତ ବାସୁଦେବଙ୍କୁ ନିଯୋଗ କରିନାହୁଁ । ଅର୍ଥାତ୍ ଆମ୍ଭେ ଯେ ବାସୁଦେବଙ୍କ ନିକଟରେ ବିଦୁରଙ୍କ ବାକ୍ୟ କୀର୍ତ୍ତନ କରି ତୁମ୍ଭମାନଙ୍କୁ ଉତ୍ସାହଦାନ କରିଥିଲୁଁ, ତାହା ଆମ୍ଭ ନିଜର ସୁଖସାଧନ ନିମିତ୍ତ ନୁହେ । କେବଳ ତୁମ୍ଭମାନଙ୍କ ହିତସାଧନ ନିମିତ୍ତ ଆମ୍ଭେ ସେହି କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲୁଁ । ୧୮ ।

ହେ ପୁତ୍ରଗଣ ! ଆମ୍ଭେ ପୁତ୍ରନିର୍ଜିତ ରାଜ୍ୟଫଳକୁ କାମନା କରିନାହୁଁ । ହେ ବିଭୋ ! ଆମ୍ଭେ କେବଳ ତପସ୍ୟାଦ୍ୱାରା ପୁଣ୍ୟଜନକ ପତିଲୋକ କାମନା କରୁଅଛୁଁ । ୧୯ ।

ହେ ଯୁଧିଷ୍ଠିର ! ଆମ୍ଭେ ବନବାସୀ ଶ୍ୱଶ୍ରୂ ଓ ଶ୍ୱଶୁରଙ୍କ ଶୁଶ୍ରୂଷା କରି ତପୋବଳରେ କଳେବର ପରିଶୁଷ୍କ କରିବୁଁ । ୨୦ । ଅତଏବ ହେ କୁରୁଶ୍ରେଷ୍ଠ ! ତୁମ୍ଭେ ଭୀମସେନ ପ୍ରଭୃତିଙ୍କ ସହିତ ନିବୃତ୍ତ ହୁଅ । ତୁମ୍ଭ

Digitized by srujanika@gmail.com

ବୁଦ୍ଧି ଧର୍ମବିଷୟରେ ନିରତ ହେଉ ଏବଂ ତୁମ୍ଭର ମନ ଅତି ଉଚ୍ଚପଦାରୂଢ଼ ହେଉ । ୨୧ ।

---

# ଅଷ୍ଟାଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜସତ୍ତମ ! ନିଷ୍ପାପ ପାଣ୍ଡବଗଣ କୁନ୍ତୀଙ୍କ ବଚନ ଶ୍ରବଣ କରି ଲଜ୍ଜିତ ହୋଇ ପାଞ୍ଚାଳୀଙ୍କ ସହିତ ନିବୃତ୍ତ ହେଲେ । ୧ ।

ତେତେବେଳେ କୁନ୍ତୀ ସେହିରୂପେ ଗମନ କରୁଥିଲେ । ଅନ୍ତପୁର-ବାସୀଗଣ ତଦ୍ଦର୍ଶନରେ ଅତିଶୟ ଶୋକାର୍ତ୍ତ ହୋଇ ରୋଦନ କରିବାରୁ ସେମାନଙ୍କର ସେହି ରୋଦନଧ୍ୱନି ଅତି ତୁମୁଳ ହେଲା । ୨ । ତେତେବେଳେ ପାଣ୍ଡବଗଣ ପୃଥାଙ୍କୁ ପୁନଶ୍ଚ ନିବୃତ୍ତ 'ନ କରାଇ ରାଜା ଧୃତରାଷ୍ଟ୍ରଙ୍କୁ ପ୍ରଦକ୍ଷିଣ ପୂର୍ବକ ଅଭିବାଦନ କରି ନିବୃତ୍ତ ହେଲେ । ୩ ।

ତଦନନ୍ତର ମହାତେଜା ଅମ୍ବିକାତନୟ ଧୃତରାଷ୍ଟ୍ର ଗାନ୍ଧାରୀ ଓ ବିଦୁରଙ୍କୁ ସଂଭାଷଣ ପୂର୍ବକ ଗ୍ରହଣ କରି କହିଲେ—ଯୁଧିଷ୍ଠିର ଯାହା ଯାହା କହିଅଛନ୍ତି, ତାହା ସବୁ ସତ୍ୟ ଅଟେ । ସମ୍ପ୍ରତି ଯୁଧିଷ୍ଠିରଙ୍କ ଜନନୀ କୁନ୍ତୀଦେବୀ ସଦ୍ଭାବ ସହକାରରେ ନିବୃତ୍ତ ହେଉନ୍ତୁ । ମହାଫଳଜନକ ପୁତ୍ରଙ୍କର ଏହି ମହାନ୍ ଐଶ୍ୱର୍ଯ୍ୟ ଏବଂ ପୁତ୍ରଗଣଙ୍କୁ ପରିତ୍ୟାଗ କରି ମୂଢ଼ଜନ ସଦୃଶ ଦୁର୍ଗମ ବନର କେଉଁ ସ୍ଥାନକୁ ଗମନ କରିବେ ? ୬ ।

ଅଦ୍ୟ ଆମ୍ଭର ଏହି ବାକ୍ୟ ଶ୍ରବଣ କରନ୍ତୁ ଯେ, ସେ ରାଜ୍ୟରେ ଥାଇ ମହାଦାନ, ବ୍ରତ ଏବଂ ତପସ୍ୟା କରିପାରିବେ । ୭ । ହେ ଧର୍ମଜ୍ଞେ ! ଗାନ୍ଧାରି ! ଆମ୍ଭେ ବଧୂଙ୍କ ଶୁଶ୍ରୂଷାରେ ଉତ୍ତମରୂପେ ପରିତୁଷ୍ଟ ହୋଇଅଛୁଁ । ଅତଏବ ତୁମ୍ଭେ ଏହାଙ୍କୁ ନିବୃତ୍ତ ହେବାକୁ ଆଦେଶ କର । ୮ ।

ସୁବଳସୁତା ଗାନ୍ଧାରୀ ରାଜାଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି କୁନ୍ତୀଙ୍କୁ ସମସ୍ତ ରାଜବାକ୍ୟ କହିଲେ ଏବଂ ସ୍ୱୟଂ ମଧ୍ୟ ବିଶେଷକରି ଅନେକ କଥା

Digitized by srujanika@gmail.com

କହିଲେ । ୯ । କିନ୍ତୁ ସେହି ଦେଖି ବନବାସ ନିମିତ୍ତ କୃତନିଶ୍ଚୟା ଧର୍ମପରାୟଣା ସତୀ କୁନ୍ତୀଦେବୀଙ୍କୁ ନିବର୍ତ୍ତାଇବା ନିମିତ୍ତ କଦାପି ସମର୍ଥ ହେଲେ ନାହିଁ ।୧୦।

ତେତେବେଳେ କୁରୁସ୍ତ୍ରୀଗଣ କୁନ୍ତୀଙ୍କର ଧୈର୍ଯ୍ୟ ଓ ବ୍ୟବସାୟ ବିଦିତ ହୋଇ ଏବଂ କୁରୁପତିମାନଙ୍କୁ ନିବୃତ୍ତ ହେବାର ଦେଖି ଉଚ୍ଚୈଃସ୍ୱରରେ ରୋଦନ କଲେ ଏବଂ ନିବୃତ୍ତ ହେଲେ । ୧୧ ।

ତେତେବେଳେ ପୃଥାତନୟଗଣ ଓ ବଧୂଗଣ ପ୍ରତ୍ୟାବୃତ୍ତ ହେବାରୁ ମହାପ୍ରାଜ୍ଞ ରାଜା ଧୃତରାଷ୍ଟ୍ର ବନକୁ ଗମନ କଲେ । ୧୨ । ଶୋକଦୁଃଖପରାୟଣ ପାଣ୍ଡବଗଣ ଅତି ଦୀନଭାବରେ ସ୍ତ୍ରୀଗଣଙ୍କ ସମଭିବ୍ୟାହାରରେ ଯାନଦ୍ୱାରା ପୁରମଧ୍ୟରେ ପ୍ରବେଶ କଲେ । ୧୩ ।

ତେତେବେଳେ ସ୍ତ୍ରୀ, ବୃଦ୍ଧା ଓ ବାଳକ ସହିତ ସମସ୍ତ ହସ୍ତିନାନଗର ହର୍ଷ, ଆନନ୍ଦ ଏବଂ ଉତ୍ସବବିହୀନ ହେଲାପରି ଜଣାଗଲା । ୧୪ । ଜାତମନ୍ୟୁ ପାଣ୍ଡବଗଣ କୁନ୍ତୀଙ୍କ ବିରହରେ ଗୋ-ବିହୀନ ବତ୍ସ ସଦୃଶ ଦୁଃଖାର୍ତ୍ତ ଓ ନିରୁତ୍ସାହ ହେଲେ । ୧୫ ।

ରାଜା ଧୃତରାଷ୍ଟ୍ର ସେହି ଦିନରେ ବହୁଦୂର ଗମନ କରି ଭାଗୀରଥୀ ତୀରରେ ବାସ କଲେ । ୧୬ । ତତ୍ରସ୍ଥ ତପୋବନରେ ବେଦପାରଗ ବିପ୍ରବରଗଣଙ୍କଦ୍ୱାରା ଅଗ୍ନିନିଚୟ ଯଥାନ୍ୟାୟରେ ପ୍ରଜ୍ୱଳିତ ହୋଇ ଶୋଭା ପାଇଲେ । ୧୭ ।

ତେତେବେଳେ ସେହି ବୃଦ୍ଧ ନରପତି ଯଥାବିଧାନରେ ଅଗ୍ନିନିବହର ଉପାସନା ଏବଂ ଆହୁତି ଦାନକରି ସ୍ୱୟଂ ପ୍ରଦୀପ୍ତ ପାବକ ସଦୃଶ ପ୍ରକାଶିତ ହେଲେ । ୧୮ ।

ହେ ଭାରତ ! ବିଦୁର ଓ ସଞ୍ଜୟ ସନ୍ଧ୍ୟାଗତ ସହସ୍ରାଂଶୁଙ୍କର ଉପସ୍ଥାନ କରି କୁଶଦ୍ୱାରା ରାଜାଙ୍କ ଶଯ୍ୟା ବିସ୍ତାର କଲେ । ତଦନନ୍ତର ଯୁଧିଷ୍ଠିରଙ୍କ ଜନନୀ ସାଧୁବ୍ରତପରାୟଣା କୁନ୍ତୀ କୁରୁବୀରଙ୍କ ନିକଟରେ ଗାନ୍ଧାରୀଙ୍କ ଶଯ୍ୟା ବିସ୍ତାର କରି ତାହାଙ୍କ ନିକଟରେ କୁଶୋପରି ସୁଖରେ ଉପବେଶନ କଲେ ।

ବିଦୁର ପ୍ରଭୃତି ସମସ୍ତେ ସେମାନଙ୍କ ନିକଟରେ ଉପବେଶନ କଲେ । ୨୧ । ଏବଂ ଯାଜକ ଓ ଅନୁଯାୟୀ ଦ୍ୱିଜଗଣ ଯଥାସ୍ଥାନରେ ଅବସ୍ଥାନ

Digitized by srujanika@gmail.com

କଲେ । ତେତେବେଳେ ଦ୍ୱିଜବରଗଣଙ୍କ ବେଦଧ୍ୱନି ସମୁତ୍ଥିତ ଓ ପାବକ ରାଶି ପ୍ରଜ୍ୱଳିତ ହେବାରୁ ସେହି ରଜନୀ ବ୍ରାହ୍ମୀ ସଦୃଶ ସେମାନଙ୍କର ପ୍ରୀତି-ବର୍ଦ୍ଧନୀ ହେଲା ।

ତଦନନ୍ତର ରଜନୀ ପ୍ରଭାତ ହେବାରୁ ଉପବାସପରାୟଣ ଧୃତରାଷ୍ଟ୍ର ପ୍ରଭୃତି ବ୍ୟକ୍ତିଗଣ ପୌର୍ବାହ୍ଣିକ ସମସ୍ତ କାର୍ଯ୍ୟ ସମାପନ କରି ବିଧିପୂର୍ବକ ଅଗ୍ନିରେ ଆହୁତି ପ୍ରଦାନ କରି ଇତସ୍ତତଃ ନିରୀକ୍ଷଣ ପୂର୍ବକ ଯଥାକ୍ରମରେ ଉତ୍ତରମୁଖରେ ପ୍ରସ୍ଥାନ କଲେ । ୨୪ ।

ହେ ରାଜନ୍ ! ଶୋଚ୍ୟମାନ ପୌର ଓ ଜନପଦବାସୀ ଜନଗଣଙ୍କ ନିମିତ୍ତ ଶୋକପରାୟଣ ଧୃତରାଷ୍ଟ୍ର ପ୍ରଭୃତିଙ୍କର ପ୍ରଥମ ଦିବସରେ ସେହି ଭାଗୀରଥୀତୀରବାସ ଅତୀବ ଦୁଃଖକର ହୋଇଥିଲା । ୨୫ ।

---

## ଊନବିଂଶ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ରାଜା ଧୃତରାଷ୍ଟ୍ର ବିଦୁରଙ୍କ ସମ୍ମତି ଅନୁସାରେ ପୁଣ୍ୟଶୀଳ ବ୍ୟକ୍ତିଗଣଙ୍କ ବାସୋଚିତ ସେହି ଭାଗୀରଥୀ ତୀରରେ ନିବାସ କଲେ । ୧ ।

ହେ ଭରତର୍ଷଭ ! ସେଠାରେ ବହୁଳ ବନବାସୀ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଗଣ ସମସ୍ତେ ତାହାଙ୍କର ସେବା କଲେ । ୨ । ରାଜା ସେମାନଙ୍କଦ୍ୱାରା ପରିବୃତ ହୋଇ ନାନାବିଧ ବାକ୍ୟଦ୍ୱାରା ସେମାନଙ୍କର ସନ୍ତୋଷବର୍ଦ୍ଧନ କରି ଯଥାବିଧି ସଶିଷ୍ୟ ବ୍ରାହ୍ମଣଗଣଙ୍କ ସମ୍ମାନନା କରି ଗମନ ନିମିତ୍ତ ଆଦେଶ କଲେ । ୩ ।

ତଦନନ୍ତର ସେ ଯଶସ୍ୱିନୀ ଗାନ୍ଧାରୀଙ୍କ ସହିତ ସାୟାହ୍ନ ସମୟରେ ଗଙ୍ଗାତୀରକୁ ଗମନ କରି ବିଧିପୂର୍ବକ ଶୌଚୋଦ କ୍ରିୟା ସମାପନ କଲେ । ୪ ।

ହେ ଭାରତ ! ବିଦୁର ପ୍ରଭୃତି ଅନ୍ୟାନ୍ୟ ପୁରୁଷଗଣ ପୃଥକ୍‌ରୂପେ ତୀର୍ଥକୁ ଆଗମନ କରି ସେଠାରେ ଶୌଚୋଦ କ୍ରିୟା ସମ୍ପାଦନ କଲେ । ୫ ।

Digitized by srujanika@gmail.com

ହେ ରାଜନ୍ ! ତଦନନ୍ତର ଭୋଜରାଜତନୟା କୁନ୍ତୀ କୃତଶୌଚ ବୃଦ୍ଧ ଶ୍ୱଶୁର ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ଗଙ୍ଗାତୀରକୁ ଆନୟନ କଲେ । ୬ । ତେତେବେଳେ ଯାଜକଗଣ ରାଜାଙ୍କ ନିମିତ୍ତ ଯଜ୍ଞବେଦୀ ନିର୍ମାଣ କଲେ । ସେହି ସତ୍ୟସନ୍ଧ ନରପତି ଧୃତରାଷ୍ଟ୍ର ସେଠାରେ ବହ୍ନିରେ ଆହୁତି ପ୍ରଦାନ କଲେ । ୭ ।

ତଦନନ୍ତର ସେହି ବୃଦ୍ଧ ନୃପତି ନିୟତ ଓ ସଂଯତେନ୍ଦ୍ରିୟ ହୋଇ ଅନୁଚରବର୍ଗଙ୍କ ସହିତ ଭାଗୀରଥୀ ତୀରରୁ କୁରୁକ୍ଷେତ୍ରକୁ ଗମନ କଲେ । ୮ ।

ସେହି ଧୀମାନ୍ ପୃଥିବୀପତି ଧୃତରାଷ୍ଟ୍ର ଆଶ୍ରମକୁ ଆଗମନ କରିବାରୁ କେକୟ ଦେଶର ମହାରାଜ ମନୀଷୀ ରାଜର୍ଷି ଶତଯୂପ ତାଙ୍କ ନିକଟକୁ ଆସିଥିଲେ । ସେ ସ୍ୱପୁତ୍ରଙ୍କୁ ପାର୍ଥିବ ଐଶ୍ୱର୍ଯ୍ୟ ଓ ରାଜ୍ୟର ଅଧିପତି କରାଇ ଅରଣ୍ୟ ଆଶ୍ରୟ କରିଥିଲେ । ୧୦ ।

ରାଜା ଧୃତରାଷ୍ଟ୍ର ତାହାଙ୍କ ସମଭିବ୍ୟାହାରରେ ବ୍ୟାସଙ୍କ ଆଶ୍ରମକୁ ଗଲେ । ରାଜା ଶତଯୂପ ସେଠାରେ ଯଥାବିଧାନରେ କୁରୁପତିଙ୍କୁ ପ୍ରତିଗ୍ରହ କଲେ । କୁରୁନନ୍ଦନ ରାଜା ଧୃତରାଷ୍ଟ୍ର ସେଠାରେ ଦୀକ୍ଷାପ୍ରାପ୍ତ ହୋଇ ଶତଯୂପଙ୍କ ଆଶ୍ରମରେ ନିବାସ କଲେ । ୧୨ ।

ହେ ମହାରାଜ ! ମହାମତି ନରପତି ଶତଯୂପ ବେଦବ୍ୟାସଙ୍କ ଅନୁମତି ଅନୁସାରେ ରାଜା ଧୃତରାଷ୍ଟ୍ରଙ୍କୁ ସମସ୍ତ ବନ୍ୟବିଧି ବିଶେଷ କରି କହିଲେ । ୧୩ । ତେତେବେଳେ ମହାମନା ମହୀପତି ଧୃତରାଷ୍ଟ୍ର ଅନୁଚରବର୍ଗଙ୍କ ସହିତ ତପସ୍ୟାରେ ନିଯୁକ୍ତ ହେଲେ ।

ହେ ମହାରାଜ ! ସମାନ ତପଶ୍ଚାରିଣୀ ଦେବୀ ଗାନ୍ଧାରୀ ବଲ୍କଳ ଏବଂ ଅଜିନ ଧାରଣ କରି କୁନ୍ତୀଙ୍କ ସହିତ ତପସ୍ୟାରେ ନିଯୁକ୍ତା ହେଲେ । ୧୫ ।

ହେ ନରନାଥ ! ସେମାନେ ସମସ୍ତେ କର୍ମ, ମନ, ବାକ୍ୟ ଓ ଚକ୍ଷୁସହିତ ଇନ୍ଦ୍ରିୟଗ୍ରାମ ସଂଯମନ କରି ପରମ ତପସ୍ୟା ଅବଲମ୍ବନ କଲେ । ୧୬ । ସେହି ପୃଥିବୀପାଳ ଧୃତରାଷ୍ଟ୍ର ସେଠାରେ ମହର୍ଷିଙ୍କ ସଦୃଶ ମୋହବିହୀନ ହୋଇ ଅସ୍ଥିଚର୍ମାବଶିଷ୍ଟ, ଶୁଷ୍କମାଂସସମନ୍ୱିତ, ଜଟା, ଅଜିନ ଓ ବଲ୍କଳଦ୍ୱାରା ସଂବୃତାଙ୍ଗ ହୋଇ ତୀବ୍ରତର ତପସ୍ୟା କଲେ । ୧୭ ।

Digitized by srujanika@gmail.com

ଧର୍ମାର୍ଥବିତ୍ ଲୋକାତୀତ ବୁଦ୍ଧିମାନ୍ ଜିତାତ୍ମା କ୍ଷତ୍ତା ବିଦୁର ସଞ୍ଜୟଙ୍କ ସହିତ ବଲ୍‌କଳ ଏବଂ ଚୀରବସ୍ତ୍ର ପରିଧାନ ପୂର୍ବକ ସଦାର ନରପତି ଧୃତରାଷ୍ଟ୍ରଙ୍କ ନିକଟରେ ଘୋରତର ତପସ୍ୟା କଲେ । ୧୮ ।

---

# ବିଂଶତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ମୁନିବର ମହାତପା ନାରଦ, ପର୍ବତ, ଦେବଲ, ସଶିଷ୍ୟ ଦ୍ୱୈପାୟନ ତଥା ସିଦ୍ଧ, ମନୀଷୀ, ଶ୍ରେଷ୍ଠ ମୁନିଗଣ ଏବଂ ପରମଧାର୍ମିକ ବୃଦ୍ଧ ରାଜର୍ଷି ଶତଯୂପ—ଏହିମାନେ ସମସ୍ତେ ରାଜା ଧୃତରାଷ୍ଟ୍ରଙ୍କୁ ଦର୍ଶନ କରିବା ନିମିତ୍ତ ସେହି ସ୍ଥାନକୁ ଆଗମନ କଲେ । ୨ ।

ହେ ମହାରାଜ ! କୁନ୍ତୀ ସେହି ସମାଗତ ତାପସମାନଙ୍କର ଯଥାବିଧି ପରିଚର୍ଯ୍ୟା କଲେ । ସେହି ତାପସମାନେ କୁନ୍ତୀଙ୍କର ଯଥାବିଧି ପରିଚର୍ଯ୍ୟାରେ ପରିତୁଷ୍ଟ ହେଲେ । ୩ ।

ହେ ତାତ ! ସେହି ମହର୍ଷିଗଣ ସମସ୍ତେ ସେଠାରେ ପରସ୍ପର ଧର୍ମ-ସମ୍ବଳିତ ବାକ୍ୟ ପର୍ଯ୍ୟାଲୋଚନା କରି ମହାତ୍ମା ଜନନାଥ ଧୃତରାଷ୍ଟ୍ରଙ୍କୁ ଆନନ୍ଦିତ କରାଇଲେ । ୪ ।

ତଦନନ୍ତର କୌଣସି କଥା ମଧ୍ୟରେ ସର୍ବପ୍ରତ୍ୟକ୍ଷଦର୍ଶୀ ଦେବର୍ଷି ନାରଦ ଏହି କଥା କହିଲେ । ୫ ।

ନାରଦ କହିଲେ—ଶତଯୂପଙ୍କ ପିତାମହ କେକୟପତି ଶ୍ରୀମାନ୍ ନରପତି ସହସ୍ରଚିତ୍ୟ ନିଃଶଙ୍କଚିତ୍ତ ଥିଲେ । ୬ । ସେହି ଧର୍ମାତ୍ମା ସହସ୍ରଚିତ୍ୟ ପରମଧାର୍ମିକ ଜ୍ୟେଷ୍ଠପୁତ୍ରଙ୍କଠାରେ ରାଜ୍ୟଭାର ଅର୍ପଣ କରି ବନରେ ପ୍ରବେଶ କଲେ । ୭ । ମହାଦ୍ୟୁତି ବସୁଧାଧିପତି ସହସ୍ରଚିତ୍ୟ ତପସ୍ୟାର ପରାକାଷ୍ଠା ଲାଭ କରି ପରିଶେଷରେ ପ୍ରଦୀପ୍ତ ପୁରନ୍ଦରଙ୍କ ପୁର ପ୍ରାପ୍ତ ହେଲେ । ୮ ।

ଆମ୍ଭେ ମହେନ୍ଦ୍ରଙ୍କ ଭବନକୁ ଗମନ କରି ସେଠାରେ ଦେଖିଲୁଁ ଯେ, ବହୁବାର ପୂର୍ବଦୃଷ୍ଟ ନରପତି ସହସ୍ରଚିତ୍ୟ ତପସ୍ୟାଦ୍ୱାରା ନିଷ୍ପାପ ହୋଇ

Digitized by srujanika@gmail.com

ସେଠାରେ ଅବସ୍ଥାନ କରିଅଛନ୍ତି । ୯ । ଏବଂ ନରପତି ଭଗଦତ୍ତଙ୍କ ପିତାମହ ରାଜା ଶୈଳାଳୟ କେବଳ ତପୋବଳରେ ସୁରେନ୍ଦ୍ର ସଦନକୁ ଗମନ କରି ଅଛନ୍ତି । ୧୦ । ହେ ରାଜନ୍ ! ବଜ୍ରଧର ସଦୃଶ ରାଜା ପୃଷଧ୍ର କେବଳ ତପୋବଳରେ ଇହଲୋକରୁ ନାକପୃଷ୍ଠକୁ ଗମନ କରିଅଛନ୍ତି । ୧୧ ।

ହେ ନରପତେ ! ଏହି ଅରଣ୍ୟରେ ମାନ୍ଧାତାଙ୍କ ପୁତ୍ର ନରପତି ପୁରୁକୁତ୍ସ ମହତୀ ସିଦ୍ଧି ପ୍ରାପ୍ତ ହୋଇଅଛନ୍ତି । ୧୨ । ସରିଦ୍‌ବରା ନର୍ମଦା ଯାହାଙ୍କର ଭାର୍ଯ୍ୟା, ସେହି ନରପତି ଏହି ଅରଣ୍ୟରେ ତପସ୍ୟା କରି ସୁରଲୋକକୁ ଗମନ କରିଅଛନ୍ତି । ୧୩ ।

ହେ ରାଜନ୍ ! ପରମ ଧାର୍ମିକ ରାଜା ଶଶଲୋମା ଏହି ବନରେ ସମ୍ପୂର୍ଣ୍ଣରୂପେ ତପସ୍ୟା କରି ସ୍ୱର୍ଗ ପ୍ରାପ୍ତ ହୋଇଅଛନ୍ତି । ୧୪ । ହେ ରାଜନ୍ ! ଆପଣ ଦ୍ୱୈପାୟନଙ୍କ ପ୍ରସାଦରେ ଏହି ଅରଣ୍ୟରେ ତପୋବଳ ପ୍ରାପ୍ତହୋଇ ଦୁଷ୍ପ୍ରାପ୍ୟ ପ୍ରଧାନଗତି ପ୍ରାପ୍ତ ହେବେ । ୧୫ ।

ହେ ରାଜଶାର୍ଦ୍ଦୂଳ ! ଆପଣ ତପସ୍ୟାର ଅବସାନରେ ଶ୍ରୀପରିବୃତ ହୋଇ ଗାନ୍ଧାରୀଙ୍କ ସହିତ ସେହି ମହାତ୍ମାମାନଙ୍କ ଗତି ପ୍ରାପ୍ତ ହେବେ । ୧୬ ।

ହେ ମହାରାଜ ! ପାଣ୍ଡୁ ଇନ୍ଦ୍ରଙ୍କ ନିକଟରେ ଥାଇ ନିରନ୍ତର ଆପଣଙ୍କୁ ସ୍ମରଣ କରୁଅଛନ୍ତି । ସେ ଆପଣଙ୍କୁ ଶ୍ରୀଯୁକ୍ତ କରିବେ । ୧୭ ।

ହେ ନରନାଥ ! ଆମ୍ଭେମାନେ ଦିବ୍ୟଦୃଷ୍ଟିଦ୍ୱାରା ଦେଖୁଅଛୁଁ ଯେ, ଆପଣଙ୍କ ବଧୂ ଯୁଧିଷ୍ଠିରଙ୍କ ଜନନୀ ଯଶସ୍ୱିନୀ କୁନ୍ତୀ ଆପଣଙ୍କର ଓ ଗାନ୍ଧାରୀଙ୍କର ଶୁଶ୍ରୂଷା କରିବାରୁ ସେ ସ୍ୱାମିଙ୍କର ସଲୋକତା ପ୍ରାପ୍ତ ହେବେ । ଏହା ତାହାଙ୍କର ସନାତନ ଧର୍ମ ଅଟେ । ୧୯ । ଏବଂ ବିଦୁର ମହାତ୍ମା ଯୁଧିଷ୍ଠିରଙ୍କ ନିକଟକୁ ଗମନ କରିବେ ଏବଂ ସଞ୍ଜୟ ତପସ୍ୟାର ଅନୁଷ୍ଠାନ ବଶତଃ ଇହଲୋକରୁ ସୁରଲୋକକୁ ଗମନ କରିବେ । ୨୦ ।

ବୈଶମ୍ପାୟନ କହିଲେ—କୁରୁପତି ମହାତ୍ମା ବିଦ୍ୱାନ୍ ଧୃତରାଷ୍ଟ୍ର ନାରଦଙ୍କର ଏହି ବାକ୍ୟ ଶ୍ରବଣ କରି ପତ୍ନୀଙ୍କ ସହିତ ଅତିଶୟ ସନ୍ତୁଷ୍ଟ ହୋଇ ତଦୀୟ ବାକ୍ୟକୁ ପ୍ରଶଂସା ପୂର୍ବକ ତାହାଙ୍କୁ ପରମାଦରରେ ଅନୁପମ ପୂଜା କଲେ । ୨୧ ।

Digitized by srujanika@gmail.com

ହେ ରାଜନ୍ ! ତଦନନ୍ତର ସମସ୍ତ ବ୍ରାହ୍ମଣଗଣ ତେତେବେଳେ ରାଜା ଧୃତରାଷ୍ଟ୍ରଙ୍କ ପ୍ରୀତି ଅନୁସାରେ ସାତିଶୟ ସନ୍ତୁଷ୍ଟ ହୋଇ ନାରଦଙ୍କୁ ବାରଂବାର ପୂଜା କଲେ । ୨୨ ।

ବୈଶମ୍ପାୟନ କହିଲେ—ତଦନନ୍ତର ଦ୍ୱିଜବରଗଣ ନାରଦଙ୍କର ତାଦୃଶ ବାକ୍ୟକୁ ପ୍ରଶଂସା କଲେ ।

ରାଜର୍ଷି ଶତଯୂପ ନାରଦଙ୍କୁ କହିଲେ—ହେ ମହାଦ୍ୟୁତେ ! ଏ କି ଆଶ୍ଚର୍ଯ୍ୟ ! ଆପଣ ଆମ୍ଭର, କୁରୁରାଜଙ୍କର ଏବଂ ସମସ୍ତ ନରଗଣଙ୍କର ଶ୍ରଦ୍ଧାବର୍ଦ୍ଧନ କଲେ । ୨୪ । ହେ ଲୋକପୂଜିତ ! ଦେବର୍ଷେ ! ନରପତି ଧୃତରାଷ୍ଟ୍ରଙ୍କ ସମ୍ବନ୍ଧରେ ଆମ୍ଭର ଯେଉଁ କିଂଚିତ୍ ବକ୍ତବ୍ୟ ଅଛି, ଆମ୍ଭେ ତାହା କହୁଅଛୁଁ, ଶ୍ରବଣ କରିବା ହେଉନ୍ତୁ । ୨୫ ।

ହେ ମହାମୁନେ ! ଆପଣ ସମସ୍ତଙ୍କର ବୃତ୍ତାନ୍ତ ଓ ତତ୍ତ୍ୱ ବିଦିତ ହୋଇ ଅଛନ୍ତି । ବିଶେଷତଃ ଦିବ୍ୟଦୃଷ୍ଟିରେ ସମସ୍ତ ପ୍ରାଣିଗଣଙ୍କର ବିବିଧ ଗତି ଦର୍ଶନ କରି ଥାଆନ୍ତି ବୋଲି ଆପଣ ନୃପତିମାନଙ୍କର ଇନ୍ଦ୍ରଙ୍କ ସଲୋକତାପ୍ରାପ୍ତି ବିଷୟ ବର୍ଣ୍ଣନ କଲେ । ପରଂତୁ ଏହି ନରବର ଧୃତରାଷ୍ଟ୍ର କେଉଁ ଲୋକ ପ୍ରାପ୍ତ ହେବେ, ତଦ୍‌ବିଷୟ କିଛି କହିଲେ ନାହିଁ । ୨୭ । ଅତଏବ ହେ ବିଭୋ ! ଏହି ନରପତି କେଉଁ ସମୟରେ କେଉଁ ସ୍ଥାନ ପ୍ରାପ୍ତ ହେବେ ତାହା ଆପଣଙ୍କ ନିକଟରୁ ଶୁଣିବାକୁ ଇଚ୍ଛା କରୁଅଛୁଁ । ଆପଣ ତାହା ଯଥାର୍ଥରୂପେ ବିସ୍ତାର କରି କହିବା ହେଉନ୍ତୁ । ୨୮ ।

ଦିବ୍ୟଦର୍ଶୀ ମହାତପା ନାରଦ ସଭାମଧ୍ୟରେ ଶତଯୂପଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସମସ୍ତଙ୍କର ମନୋମତ ବିଷୟ ବର୍ଣ୍ଣନ କଲେ । ୨୯ ।

ନାରଦ କହିଲେ—ହେ ରାଜର୍ଷେ ! ଆମ୍ଭେ ଯଦୃଚ୍ଛାକ୍ରମେ ଶକ୍ରଙ୍କ ସଦନକୁ ଗମନ କରି ଦେଖିଲୁଁ ଯେ, ଶଚୀପତି ଶକ୍ର ଓ ନରପତି ପାଣ୍ଡୁ ସେଠାରେ ଏକତ୍ର ଅବସ୍ଥାନ କରିଅଛନ୍ତି । ୩୦ । ହେ ନରନାଥ ! ଏହି ଧୃତରାଷ୍ଟ୍ର ଯେଉଁ ପ୍ରକାର ଦୁଷ୍କର ତପସ୍ୟା କରୁଅଛନ୍ତି ଏହାଙ୍କର ସେହି କଥା ସେଠାରେ ହେଉଥିଲା ।

Digitized by srujanika@gmail.com

ସେଠାରେ ଆମ୍ଭେ ସୁରରାଜଙ୍କ ମୁଖରୁ ଏହିପ୍ରକାର କଥା ଶୁଣିଲୁଁ ଯେ, ଏହି ନୃପତି ଧୃତରାଷ୍ଟ୍ରଙ୍କର ପରମାୟୁ ତିନି ବର୍ଷ ଅବଶିଷ୍ଟ ଅଛି । ତଦନନ୍ତର ଏହି ଋଷିପୂର୍ବ ମହାଭାଗ ଧୃତରାଷ୍ଟ୍ର ତପୋବଳରେ ସମସ୍ତ ପାପ ଦଗ୍ଧ କରି ଦିବ୍ୟ ଆଭରଣରେ ଭୂଷିତ ଓ ନରପାଳଗଣକର୍ତ୍ତୃକ ସଙ୍ଗତ ହୋଇ ଗାନ୍ଧାରୀଙ୍କ ସହିତ ଦିବ୍ୟ ବିମାନରେ ଆରୋହଣ ପୂର୍ବକ କୁବେରଙ୍କ ଭବନକୁ ଗମନ କରିବେ ଏବଂ ଇଚ୍ଛାନୁସାରେ ଦେବ, ଗନ୍ଧର୍ବ ଓ ରାକ୍ଷସଲୋକରେ ବିଚରଣ କରିବେ ।

ହେ ରାଜନ୍ ! ଆପଣ ଆମ୍ଭଙ୍କୁ ଯାହା ପ୍ରଶ୍ନକଲେ, ଏହା ଦେବଲୋକଙ୍କର ଗୁହ୍ୟ ଅଟେ । ତଥାପି ଆପଣମାନେ ଶ୍ରୁତଜ୍ଞ ଓ ତପୋବଳରେ ସମସ୍ତ ପାପ ଦଗ୍ଧ କରିଅଛନ୍ତି ବୋଲି, ବିଶେଷତଃ ଆପଣମାନଙ୍କ ପ୍ରତି ଆମ୍ଭର ମହାନ୍ ପ୍ରୀତି ଥିବାରୁ ଆମ୍ଭେ ଆପଣମାନଙ୍କୁ ଏହା କହିଲୁଁ ।

ବୈଶମ୍ପାୟନ କହିଲେ—ଦେବର୍ଷି ନାରଦଙ୍କର ଏହିପ୍ରକାର ମଧୁର ବାକ୍ୟ ଶ୍ରବଣ କରି ପାର୍ଥିବଙ୍କ ସହିତ ସମସ୍ତେ ସୁମନା ଓ ପ୍ରୀତ ହୋଇ ସୁସ୍ଥଚିତ୍ତ ହେଲେ । ୩୭ । ସେମାନେ ଏତାଦୃଶ ବାକ୍ୟଦ୍ୱାରା ବୁଦ୍ଧିମାନ୍ ଧୃତରାଷ୍ଟ୍ରଙ୍କୁ ଆଶ୍ୱାସନା କରି ଇଚ୍ଛାନୁସାରେ ସିଦ୍ଧଗତି ଅବଲମ୍ବନ କଲେ । ୩୮ ।

---

# ଏକତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! କୌରବେନ୍ଦ୍ର ନରେନ୍ଦ୍ର ଧୃତରାଷ୍ଟ୍ର ବନକୁ ଗମନ କଲାରୁ ମାତୃଶୋକସମନ୍ୱିତ ପାଣ୍ଡବଗଣ ଦୁଃଖ ଓ ଶୋକରେ ଅଭିଭୂତ ହେଲେ । ୧ । ପୁରବାସୀ ଜନଗଣ ନରପତି ଧୃତରାଷ୍ଟ୍ରଙ୍କ ନିମିତ୍ତ ଶୋକ କଲେ । ବ୍ରାହ୍ମଣଗଣ ଶୋକାର୍ତ୍ତ ହୋଇ ଧୃତରାଷ୍ଟ୍ରଙ୍କ ସମ୍ବନ୍ଧରେ ଏହିପରି କହିଲେ ଯେ, ସେହି ବୃଦ୍ଧ ନରପତି, ମହାଭାଗା ଗାନ୍ଧାରୀ ଏବଂ ପୃଥା କୁନ୍ତୀ ଏମାନେ ନିର୍ଜନ ବନରେ କି ପ୍ରକାର ବାସ କରିଅଛନ୍ତି ? ସେହି ସୁଖାର୍ହ ପ୍ରଜ୍ଞାଚକ୍ଷୁ ହତପୁତ୍ର ରାଜର୍ଷି ଅସୁଖଜନକ ମହାବନରେ କିପରି ଭାବରେ ଅବସ୍ଥାନ କରିଅଛନ୍ତି ? ୪ । କୁନ୍ତୀ ରାଜଶ୍ରୀ ପରିତ୍ୟାଗ କରି

Digitized by srujanika@gmail.com

ପୁତ୍ରଗଣଙ୍କୁ ନ ଦେଖି କେଉଁରୂପେ ସୁଦୁଷ୍କର ତପସ୍ୟା ନିମିତ୍ତ ବନବାସ ବିଷୟରେ ଅଭିଳାଷ କଲେ ? ୫ ।

ଆମ୍ଭଙ୍କ ବିଦୁର ଭ୍ରାତାଙ୍କ ଶୁଶ୍ରୂଷା କରି କେଉଁ ଅବସ୍ଥାରେ ଅଛନ୍ତି ? ଏବଂ ଭର୍ତ୍ତୃପିଣ୍ଡାନୁପାଳକ ଗବଲ୍‌ଗଣତନୟ ସଞ୍ଜୟ ଅବା କେଉଁ ଅବସ୍ଥା ପ୍ରାପ୍ତ ହୋଇଅଛନ୍ତି ? ପୁରବାସୀ ଆବାଳବୃଦ୍ଧଗଣ ଚିନ୍ତା ଓ ଶୋକରେ ମର୍ମାହତ ହୋଇ ପରସ୍ପର ପରସ୍ପରଙ୍କ ସହିତ ଏହିପ୍ରକାର କଥୋପକଥନ କଲେ । ୭ ।

ତେତେବେଳେ ଅତିଶୟ ଶୋକପରାୟଣ ପାଣ୍ଡବଗଣ ବୃଦ୍ଧା ମାତା ବୃଦ୍ଧ ହତପୁତ୍ର ଜନନାଥ ଧୃତରାଷ୍ଟ୍ର, ମହାଭାଗା ଗାନ୍ଧାରୀ ଓ ମହାମତି ବିଦୁରଙ୍କ ନିମିତ୍ତ ଶୋକ କରି ଅଧିକ ସମୟ ପୁର ମଧ୍ୟରେ ବାସ କରି ପାରିଲେ ନାହିଁ । ୯ ।

ସେମାନଙ୍କ ନିମିତ୍ତ ନିରନ୍ତର ଚିନ୍ତାପରାୟଣ ସେ ପାଣ୍ଡୁନନ୍ଦନମାନଙ୍କର ରାଜ୍ୟ, ସ୍ତ୍ରୀ ଅବା ବେଦାଧ୍ୟୟନ କାହିଁରେ ସୁଦ୍ଧା ତୃପ୍ତି ହେଲା ନାହିଁ । ପ୍ରତ୍ୟୁତ ସେମାନେ ନରପତି ଧୃତରାଷ୍ଟ୍ରଙ୍କୁ ଓ ସେହି ଘୋରତର ଜ୍ଞାତିବଧ ବିଷୟକୁ ବାରମ୍ବାର ସ୍ମରଣ କରି ଚିନ୍ତାରେ ଆକୁଳ ହୋଇ ଆପଣା ଆପଣାମାନଙ୍କୁ ଅତ୍ୟନ୍ତ ନିକୃଷ୍ଟ ବୋଲି ଜ୍ଞାନ କଲେ । ୧୧ । ଏବଂ ରଣମସ୍ତକରେ ବାଳକ ଅଭିମନ୍ୟୁ, ସମରରେ ଅପରାଙ୍ମୁଖ ମହାବାହୁ କର୍ଣ୍ଣ ଏବଂ ସୁହୃତ୍ ଦ୍ରୁପଦ-ନନ୍ଦନମାନଙ୍କର ବିନାଶ ସ୍ମରଣ କରି କ୍ଷୁବ୍ଧଚିତ୍ତ ହେଲେ । ୧୩ ।

ହେ ଭରତ ! ସେମାନେ ପୃଥିବୀକୁ ହୃତରତ୍ନା, ହତବୀରା ଦେଖି ସର୍ବଦା ଚିନ୍ତାକରି ଶାନ୍ତିଲାଭ କରିପାରିଲେ ନାହିଁ । ୧୪ ।

ହତପୁତ୍ରା ଦ୍ରୌପଦୀ ଓ ଭାବିନୀ ସୁଭଦ୍ରାଦେବୀ ଏହିଦୁହେଁ ଅତ୍ୟନ୍ତ ଦୁଃଖିତା ହୋଇ ବିଷଣ୍ଣବଦନା ହେଲେ । ୧୫ । ପରନ୍ତୁ ଆପଣଙ୍କ ପୂର୍ବ ପିତାମହଗଣ ତୁମ୍ଭର ପିତା ଉତ୍ତରାଙ୍କ ପୁତ୍ର ପରୀକ୍ଷିତଙ୍କୁ ଅବଲୋକନ କରି ପ୍ରାଣଧାରଣ ପୂର୍ବକ ରହିଲେ । ୧୬ ।

---

Digitized by srujanika@gmail.com

# ଦ୍ୱାତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ସେହି ବୀରବର ପୁରୁଷପ୍ରବର ମାତୃନନ୍ଦନ ପାଣ୍ଡବଗଣ ମାତାଙ୍କୁ ସ୍ମରଣ କରି ଏହିରୂପେ ଅତିଶୟ ଦୁଃଖଭୋଗ କଲେ । ୧ । ପୂର୍ବେ ଯେଉଁମାନେ ନିତ୍ୟ ରାଜକାର୍ଯ୍ୟରେ ନିଯୁକ୍ତ ଥିଲେ ତେତେବେଳେ ସେମାନେ ପୁରମଧ୍ୟରେ ସମ୍ୟକ୍‌ରୂପେ ରାଜକାର୍ଯ୍ୟ କରିବାକୁ ସମର୍ଥ ହେଲେ ନାହିଁ । ୨ ।

ସେମାନେ ଏପ୍ରକାର ଶୋକାବିଷ୍ଟ ହୋଇଥିଲେ ଯେ, କାହାକର୍ତ୍ତୃକ ସମ୍ଭାଷିତ ହେଲେ ପ୍ରତିସମ୍ଭାଷଣ କରିପାରିଲେ ନାହିଁ, ଅବା କୌଣସି ବିଷୟରେ ଅଭିନନ୍ଦନ କରିବାକୁ ସମର୍ଥ ହେଲେ ନାହିଁ । ୩ ।

ଗାମ୍ଭୀର୍ଯ୍ୟରେ ହେଲେ ସୁଦ୍ଧା ସାଗରସଦୃଶ ଦୁରାଧର୍ଷ ସେହି ବୀରଗଣ ଶୋକରେ ହତଜ୍ଞାନ ହୋଇ ନିରନ୍ତର ସଂଜ୍ଞାଶୂନ୍ୟ ହେଲାପରି ରହିଲେ ।୪।

ତଦନନ୍ତର ପାଣ୍ଡବଗଣ ଜନନୀଙ୍କ ନିମିତ୍ତ ଏହିପ୍ରକାର ଚିନ୍ତା କରୁଥିଲେ ଯେ, ସେହି ଅତିଶୟ କୃଶାଙ୍ଗୀ ପୃଥା ବୃଦ୍ଧ ଦମ୍ପତିଙ୍କ ଭାର କେଉଁପରି ବହନ କରୁଅଛନ୍ତି ? ୫ । ସେହି ହତପୁତ୍ର ନିରାଶ୍ରୟ ମହୀପାଳ ଧୃତରାଷ୍ଟ୍ର ଅବା ପତ୍ନୀଙ୍କ ସହିତ ଏକାକୀ ହୋଇ ଶ୍ୱାପଦସେବିତ ସେହି ଅରଣ୍ୟରେ କି ପ୍ରକାର ବାସ କରିଅଛନ୍ତି ? ୬ । ସେହି ମହାଭାଗା ହତବାନ୍ଧବା ଦେବୀ ଗାନ୍ଧାରୀ ବିଜନ ବନରେ କେଉଁପରି ବୃଦ୍ଧ ଅନ୍ଧ ପତିଙ୍କ ଅନୁସରଣ କରିଅଛନ୍ତି ? ୭ ।

ପାଣ୍ଡବଗଣ ଏହିରୂପେ ଉତ୍ସୁକ ହୋଇ ପରସ୍ପର ବିଳାପ କରୁଥିଲେ । କିଛି ସମୟ ଉତ୍ତାରେ ସେମାନଙ୍କର ଧୃତରାଷ୍ଟ୍ରଙ୍କ ଦର୍ଶନ ନିମିତ୍ତ ବନଗମନ ବିଷୟରେ ଅଭିଳାଷ ହେଲା । ୮ ।

ତଦନନ୍ତର ସହଦେବ ରାଜା ଯୁଧିଷ୍ଠିରଙ୍କୁ ପ୍ରଣାମ ପୂର୍ବକ ଏହି କଥା କହିଲେ ଯେ, ଅହୋ ! ରାଜେନ୍ଦ୍ର ! ଆମ୍ଭେ ଆପଣଙ୍କ ଅନ୍ତଃକରଣକୁ ଗମନୋନ୍ମୁଖ ହୋଇଥିବାର ଦେଖୁଅଛୁଁ । ଆମ୍ଭେ ଗୌରବବଶତଃ ଆପଣଙ୍କୁ ଯେଉଁ ଗମନର କଥା ସହସା କହିପାରି ନଥିଲୁଁ, ସମ୍ପ୍ରତି ସେହି ଗମନର ସମୟ ଉପସ୍ଥିତ ହୋଇଅଛି । ୧୦ । ଉତ୍ତମ ହେଲା, ଆମ୍ଭେ ସେହି ବୃଦ୍ଧା କାଶକୁଶଶଯ୍ୟାଶାୟିନୀ ଜଟାଧାରିଣୀ ତପସ୍ୱିନୀ କୁନ୍ତୀ ଦେବୀଙ୍କୁ ଦେଖିବୁଁ ।

Digitized by srujanika@gmail.com

ହା ! ଯେ ନିରନ୍ତର ପ୍ରାସାଦ ଓ ଅଟ୍ଟାଳିକାରେ ଅବସ୍ଥାନ କରି ବୃଦ୍ଧା ହୋଇଅଛନ୍ତି, ଯେ ସୁଖ ବିନା ଦୁଃଖର ମୁଖକୁ କଦାପି ଦର୍ଶନ କରି ନାହାନ୍ତି, ସମ୍ପ୍ରତି ଅତିଶୟ ଦୁଃଖିତା ପରିଶ୍ରାନ୍ତା ସେହି ଜନନୀଙ୍କୁ ଆମ୍ଭେ କେଉଁ ସମୟରେ ଦେଖିବୁଁ ? ୧୨ ।

ହେ ଭରତର୍ଷଭ ! ମର୍ତ୍ତ୍ୟମାନଙ୍କ ଗତି ନିଶ୍ଚୟ ଅନିତ୍ୟ ଅଟେ । କାରଣ, କୁନ୍ତୀ ରାଜପୁତ୍ରୀ ହୋଇ ଦୁଃଖ ସ୍ୱୀକାର କରି ଅରଣ୍ୟରେ ବାସ କରି ଅଛନ୍ତି । ୧୩ ।

ଯୋଷିତ୍‌ପ୍ରବରା ଦେବୀ ଦ୍ରୌପଦୀ ସହଦେବଙ୍କ ବାକ୍ୟ ଶ୍ରବଣ କରି ରାଜା ଯୁଧିଷ୍ଠିରଙ୍କୁ ସମ୍ମାନ ସହକାରରେ ଅଭିନନ୍ଦନ ପୂର୍ବକ କହିଲେ ଯେ— । ୧୪ । ହେ ଜନନାଥ ! ଯଦି ସେହି ପୃଥାଦେବୀ ପ୍ରାଣଧାରଣ କରିଅଛନ୍ତି ତେବେ ଆମ୍ଭେ ତାହାଙ୍କୁ କେଉଁ ସମୟରେ ଦେଖିବୁଁ ? କାରଣ, ଆମ୍ଭର ଜୀବିତାବସ୍ଥାରେ ତାହାଙ୍କ ଦର୍ଶନଲବ୍ଧ ହେଲେ ଆମ୍ଭେ ଅତିଶୟ ପ୍ରୀତି ପ୍ରାପ୍ତ ହେବୁଁ । ୧୫ ।

ହେ ରାଜେନ୍ଦ୍ର ! ଆପଣଙ୍କର ଏହି ବୁଦ୍ଧି ନିତ୍ୟବର୍ଦ୍ଧିତା ହେଉ, ଏବଂ ଆପଣଙ୍କ ମନ ନିତ୍ୟ ଧର୍ମବିଷୟରେ ନିରତ ହୋଇଥାଉ । ହେ ନରେନ୍ଦ୍ର ! ଆପଣ ଆମ୍ଭମାନଙ୍କୁ ଶୀଘ୍ର ସେହି ପୃଥାଙ୍କ ଦର୍ଶନରୂପ ମଙ୍ଗଳ କାର୍ଯ୍ୟରେ ନିଯୋଗ କରିବେ । ୧୬ ।

ହେ ରାଜନ୍ ! ଆପଣ ଜାଣିବା ହେଉନ୍ତୁ, ଏହି ବଧୂଗଣ କୁନ୍ତୀ, ଗାନ୍ଧାରୀ ଓ ଶ୍ୱଶୁରଙ୍କ ଦର୍ଶନାଭିଳାଷରେ ଅଗ୍ରପଦ ପ୍ରକ୍ଷେପ କରି ଅବସ୍ଥାନ କରି ଅଛନ୍ତି । ୧୭ ।

ହେ ଭରତଶ୍ରେଷ୍ଠ ! ନୃପତି ଯୁଧିଷ୍ଠିର ଦେବୀ ଦ୍ରୌପଦୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସେନାଧ୍ୟକ୍ଷମାନଙ୍କୁ ଆନୟନ ପୂର୍ବକ ଏହି କଥା କହିଲେ ଯେ, ହେ ସେନାଧକ୍ଷଗଣ ! ଆମ୍ଭେ ସେହି ବନବାସସ୍ଥିତ ମହୀପତି ଧୃତରାଷ୍ଟ୍ରଙ୍କୁ ଦର୍ଶନ କରିବା ନିମିତ୍ତ ଯିବୁଁ, ଅତଏବ ତୁମ୍ଭେମାନେ ଆମ୍ଭର ପ୍ରଭୂତ ରଥ ଓ କୁଞ୍ଜରସମନ୍ୱିତ ସେନାମାନଙ୍କୁ ସଜ୍ଜିତ ହେବା ନିମିତ୍ତ ନିଯୋଗ କର । ୧୯ ।

Digitized by srujanika@gmail.com

ତଦନନ୍ତର ରାଜା ସ୍ତ୍ରୀଲୋକଗଣଙ୍କ ଅଧ୍ୟକ୍ଷମାନଙ୍କୁ କହିଲେ ଯେ, ତୁମ୍ଭେମାନେ ନାନାବିଧ ଯାନ, ଶିବିକାସମୂହ ସଜ୍ଜିତ କର । ୨୦ । ଶକଟବାହକ, ଆପଣ ବ୍ୟବସାୟୀ, ବଂଶଧର, ଶିଳ୍ପୀ ଏବଂ କୋଷପାଳସମୂହ କୋଷ ଘେନ କୁରୁକ୍ଷେତ୍ରାଶ୍ରମକୁ ଗମନ କରନ୍ତୁ । ୨୧ । ଯଦି କୌଣସି ପୁରବାସୀ ରାଜାଙ୍କୁ ଦେଖିବା ନିମିତ୍ତ ଇଚ୍ଛାକରନ୍ତି, ତେବେ ସେ ଅନାବୃତ, ସୁବିହିତ ଓ ସୁରକ୍ଷିତ ହୋଇ ଅନାୟାସରେ ଗମନ କରନ୍ତୁ । ୨୨ । ଆମ୍ଭର ସୂପକାର ଓ ପୁରସ୍ଥିତ ଭୃତ୍ୟବର୍ଗ ବିବିଧ ପାକପାତ୍ର ଓ ଭକ୍ଷ୍ୟଭୋଜ୍ୟ ସାମଗ୍ରୀ ସବୁ ଘେନି ଶକଟାରୂଢ଼ ହୋଇନ୍ତୁ । କାଲି ଗମନ ହେବ, ଏହି କଥା ଶୀଘ୍ର ଘୋଷଣା କର, ଏବଂ ମାର୍ଗମଧ୍ୟରେ ନାନାବିଧ ଗୃହ ନିର୍ମାଣ କରାଅ । ୨୪ ।

ହେ ରାଜନ୍ ! ପାଣ୍ଡୁତନୟ ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ଏହିପ୍ରକାର ଆଦେଶ କରି ପରଦିନ ସ୍ତ୍ରୀ ଓ ବୃଦ୍ଧଗଣଙ୍କ ସହିତ ପୁରରୁ ନିର୍ଗତ ହେଲେ । ୨୫ । ସେହି ନରପାଳ ଯୁଧିଷ୍ଠିର ପୁରର ବହିର୍ଭାଗରେ ପଞ୍ଚଦିବସ ବାସ କରିବା ଦ୍ୱାରା ଜନଗଣଙ୍କୁ ପରିପାଳନ କରି ପରିଶେଷରେ ବନକୁ ଗମନ କଲେ । ୨୬ ।

---

# ତ୍ରୟୋବିଂଶତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ଭରତସତ୍ତମ ରାଜା ଯୁଧିଷ୍ଠିର ଲୋକପାଳ ସଦୃଶ ଅର୍ଜ୍ଜୁନ ପ୍ରମୁଖ ପୁରୁଷଗଣକର୍ତ୍ତୃକ ରକ୍ଷିତ ସୈନ୍ୟମାନଙ୍କୁ ଗମନ ନିମିତ୍ତ ଆଦେଶ କଲେ । ୧ ।

ହେ ଭାରତ ! ତଦନନ୍ତର ପରମ ପ୍ରୀତିସମ୍ପନ୍ନ ସୈନ୍ୟ, ଓସାରିମାନେ ସମସ୍ତେ ଏକଯୋଗ ହୁଅ,, ଅଶ୍ୱ ନିଯୋଜିତ କର—ଏହି ପ୍ରକାର ତୁମୁଳ ଶବ୍ଦ ଉତ୍ଥିତ ହେଲା । ୨ ।

ହେ ନରାଧିପ ! ତଦନନ୍ତର ପଦାତି ଏବଂ ଅନ୍ୟାନ୍ୟ ଯୋଧଗଣଙ୍କ ମଧ୍ୟରେ କେହି ଯାନ, କେହି ମହାବେଗଶାଳୀ ଅଶ୍ୱ, କେହି ପ୍ରଜ୍ୱଳିତ ଜ୍ୱଳନ ସଦୃଶ କାଞ୍ଚନନିର୍ମିତ ରଥ, କେହି ଗଜ ଏବଂ କେହି ଉଷ୍ଟ୍ରରେ ଗମନ କଲେ ।

Digitized by srujanika@gmail.com

ଧୃତରାଷ୍ଟ୍ରଙ୍କ ଦର୍ଶନାଭିଳାଷୀ ପୁର ଓ ଜନପଦବାସୀ ଜନଗଣ ବହୁବିଧ ଯାନରେ ଆରୋହଣ କରି କୁରୁରାଜଙ୍କର ଅନୁଗତ ହେଲେ । ୫ ।

ଗୌତମତନୟ କୃପାଚାର୍ଯ୍ୟ ରାଜାଙ୍କ ଆଦେଶାନୁସାରେ ସେନାପତି ହୋଇ ସେନା ସମଭିବ୍ୟାହାରରେ ଆଶ୍ରମାଭିମୁଖରେ ଗମନ କଲେ । ୭ ।

ତଦନନ୍ତର କୁରୁରାଜ ଯୁଧିଷ୍ଠିର ଦ୍ୱିଜବରବର୍ଗରେ ପରିବୃତ ବହୁଳ ସୂତ, ମାଗଧ ଓ ବନ୍ଦିଗଣକର୍ତ୍ତୃକ ସ୍ତୁତ ହେଉଥିଲେ । ଭୃତ୍ୟଗଣ ତାହାଙ୍କ ମସ୍ତକୋପରି ପାଣ୍ଡୁବର୍ଣ୍ଣ ଛତ୍ର ଧାରଣ କରିଥିବାରୁ ସେ ତଦ୍ଦ୍ୱାରା ସୁଶୋଭିତ ଏବଂ ମହାନ୍ ରଥ ଓ ସେନାସମୂହରେ ସମାବୃତ ହୋଇ ନଗରରୁ ନିର୍ଗତ ହେଲେ । ୮ ।

ପବନତନୟ ଭୀମକର୍ମା ବୃକୋଦର ସଜ୍ଜିତ ଯନ୍ତ୍ର ଓ ଆୟୁଧଯୁକ୍ତ ଅଚଳ ସଦୃଶ ଗଜରେ ଆରୋହଣ ପୂର୍ବକ ଗମନ କଲେ । ୯ ।

ବଶୀକୃତଚେତା ମହାତେଜା ଅର୍ଜ୍ଜୁନ ଶ୍ୱେତବର୍ଣ୍ଣ-ଅଶ୍ୱଯୁକ୍ତ ସୂର୍ଯ୍ୟସମ ପ୍ରଭାସମନ୍ୱିତ ଦିବ୍ୟ ରଥରେ ଆରୂଢ଼ ହୋଇ ନୃପତିଙ୍କ ପଶ୍ଚାଦ୍‌ଗମନ କଲେ ।

ମାଦ୍ରୀତନୟ ନକୁଳ ଓ ସହଦେବ ଧ୍ୱଜ ଓ କବଚ ବନ୍ଧନ କରି ଶୀଘ୍ରଗାମୀ ଅଶ୍ୱରେ ଆରୋହଣ ପୂର୍ବକ ସୁସଜ୍ଜିତ ହୋଇ ଗମନ କଲେ ।୧୧।

ଦ୍ରୌପଦୀ ପ୍ରଭୃତି ସ୍ତ୍ରୀବୃନ୍ଦ ଶିବିକା ଆରୋହଣ ପୂର୍ବକ ସ୍ତ୍ରୀରକ୍ଷକଗଣ-କର୍ତ୍ତୃକ ରକ୍ଷିତ ହୋଇ ଅପରିମିତ ବସୁ ବିସର୍ଜନ ପୂର୍ବକ ଗମନ କଲେ ।୧୨।

ହେ ଭରତକୁଳଶ୍ରେଷ୍ଠ ! ସେତେବେଳେ ସମୃଦ୍ଧିସମ୍ପନ୍ନ ରଥ, ହସ୍ତୀ ଓ ଅଶ୍ୱଯୁକ୍ତ ପାଣ୍ଡବ ସୈନ୍ୟ ବେଣୁ-ବୀଣାଦ୍ୱାରା ଅନୁନାଦିତ ହୋଇ ଅତିଶୟ ଶୋଭା ପାଇଲେ । ୧୩ ।

ହେ ବଂଶାପତେ ! ସେହି କୁରୁପୁଙ୍ଗବଗଣ ରମ୍ୟ ନଦୀ ଓ ସରୋବର ତୀରରେ ବାସକରି କ୍ରମେ କ୍ରମେ ଗମନ କଲେ । ୧୪ । ମହାତେଜା ଯୁଯୁତ୍ସୁ ଓ ପୁରୋହିତ ଧୌମ୍ୟ ଏହି ଦୁହେଁ ନରପାଳ ଯୁଧିଷ୍ଠିରଙ୍କ ଆଦେଶାନୁସାରେ ପୁର ରକ୍ଷାକଲେ । ୧୫ ।

Digitized by srujanika@gmail.com

ତଦନନ୍ତର ରାଜା ଯୁଧିଷ୍ଠିର କ୍ରମେ କ୍ରମେ ପରମପାବନୀ ଯମୁନା ନଦୀ ଉତ୍ତୀର୍ଣ୍ଣ ହୋଇ କୁରୁକ୍ଷେତ୍ରରେ ଅବତରଣ କରି ସେଠାରୁ ଦୂରସ୍ଥିତ ସେହି ଧୀମାନ୍ ରାଜର୍ଷି ଶତଯୂପ ଓ କୁରୁପତି ଧୃତରାଷ୍ଟ୍ରଙ୍କ ଆଶ୍ରମ ଦେଖିଲେ । ୧୭ ।

ହେ ଭରତର୍ଷଭ ! ତଦନନ୍ତର ସମସ୍ତେ ଅତିଶୟ ଆନନ୍ଦିତ ହୋଇ ସହସା ମହାଶବ୍ଦରେ ସେହି ବନକୁ ପରିପୂର୍ଣ୍ଣ କରି ସେଠାରେ ପ୍ରବିଷ୍ଟ ହେଲେ । ୧୮ ।

---

# ଚତୁର୍ବିଂଶତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ପଦାତି ସହ ପାଣ୍ଡବଗଣ ଦୂରରୁ ଅବତୀର୍ଣ୍ଣ ହୋଇ ବିନୟ ଓ ପ୍ରଣତି ପୂର୍ବକ ନରପତିଙ୍କ ଆଶ୍ରମକୁ ଗମନ କଲେ । ୧ । ତେତେବେଳେ ଯୋଧଜନ, ପୌରଜନ ଏବଂ କୁରୁପତିଙ୍କର ସ୍ତ୍ରୀଗଣ ସମସ୍ତେ ପାଦଦ୍ୱାରା ଗମନ କଲେ । ୨ ।

ତଦନନ୍ତର ପାଣ୍ଡବଗଣ ମୃଗଗଣାକୀର୍ଣ୍ଣ କଦଳୀବନଶୋଭିତ ପୁଣ୍ୟଜନକ ଧୃତରାଷ୍ଟ୍ରଙ୍କ ଆଶ୍ରମରେ ପ୍ରବେଶ କଲେ । ୩ ।

ତଦନନ୍ତର ନିୟତବ୍ରତ ତାପସଗଣ ସମାଗତ ପାଣ୍ଡବଗଣଙ୍କ ଦର୍ଶନ ନିମିତ୍ତ କୌତୂହଳାବିଷ୍ଟ ହୋଇ ସେଠାକୁ ଆଗମନ କଲେ । ୪ । ରାଜା ଯୁଧିଷ୍ଠିର ବାଷ୍ପପରିପୂର୍ଣ୍ଣ ଲୋଚନରେ ସେମାନଙ୍କୁ ଏହି କଥା ପ୍ରଶ୍ନ କଲେ ଯେ, ହେ ମହାଶୟଗଣ ! ଆମ୍ଭମାନଙ୍କର ଜ୍ୟେଷ୍ଠତାତ ସେହି କୁରୁପତି କେଉଁଠାରେ ଅଛନ୍ତି ? ୫ ।

ସେମାନେ ଏହି କଥା ଶୁଣି ରାଜାଙ୍କୁ କହିଲେ—ହେ ପ୍ରଭୋ ! ସେ ପୁଷ୍ପ ଓ ସଲିଳ ଆହରଣ ନିମିତ୍ତ ଏବଂ ଯମୁନାରେ ଅବଗାହନ କରିବା ନିମିତ୍ତ ଏହି ମାର୍ଗରେ ଗମନ କରିଅଛନ୍ତି । ୬ ।

ପାଣ୍ଡବଗଣ ସେମାନଙ୍କ କଥିତ ପଥରେ ସତ୍ୱର ଗମନ କଲେ । ପଦାତିଗଣ ଦୂରରେ ସେମାନଙ୍କୁ ଦେଖିଲେ । ୭ ।

Digitized by srujanika@gmail.com

ତଦନନ୍ତର ସେମାନେ ପିତାଙ୍କ ଦର୍ଶନ ନିମିତ୍ତ ଅନ୍ତଃପୁର ଅଭିମୁଖ୍ୟାବଷ୍ଟ ହୋଇ ସତ୍ୱର ଗମନ କଲେ । ପରନ୍ତୁ ସହଦେବ ଶୀଘ୍ର ପୃଥାଙ୍କ ନିକଟକୁ ଧାବିତ ହେଲେ । ୮ । ଧୀମାନ୍ ସହଦେବ ମାତାଙ୍କ ପାଦଯୁଗଳ ସ୍ପର୍ଶ କରି ଉଚ୍ଚୈଃସ୍ୱରରେ ରୋଦନ କଲେ । ପୃଥାଦେବୀ ବାଷ୍ପାକୁଳ ଲୋଚନରେ ପ୍ରିୟ ପୁତ୍ରଙ୍କୁ ଦର୍ଶନ କଲେ । ୯ ।

ତଦନନ୍ତର ବାହୁଯୁଗଳ ଦ୍ୱାରା ପୁତ୍ରଙ୍କୁ ଆଲିଙ୍ଗନ ପୂର୍ବକ ଉନ୍ନାମିତ କରି ଗାନ୍ଧାରୀଙ୍କୁ ସହଦେବଙ୍କ ଆଗମନ ବୃତ୍ତାନ୍ତ କହିଲେ । ୧୦ ।

ତଦନନ୍ତର ପୃଥା ରାଜା ଯୁଧିଷ୍ଠିର, ଭୀମସେନ, ନକୁଳ ଓ ଅର୍ଜ୍ଜୁନଙ୍କୁ ଦର୍ଶନ କରି ତ୍ୱରା ସହକାରେ ସେମାନଙ୍କ ନିକଟକୁ ଗମନ କଲେ । ୧୧ ।

ପାଣ୍ଡବଗଣ ସେହି ପୃଥାଙ୍କୁ ହତପୁତ୍ର ଦମ୍ପତି ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ହସ୍ତଧାରଣ ପୂର୍ବକ ସେହି ଦୁହିଙ୍କ ଅଗ୍ରଭାଗରେ ଗମନ କରୁଥିବାର ଦେଖି ତାହାଙ୍କ ନିକଟକୁ ଗମନ ପୂର୍ବକ ଭୂମିଷ୍ଠ ହୋଇ ପ୍ରଣାମ କଲେ । ୧୨ । ମହାମନା ମେଧାବୀ ରାଜା ଧୃତରାଷ୍ଟ୍ର ସ୍ୱର ଓ ସ୍ପର୍ଶଦ୍ୱାରା ପାଣ୍ଡବଗଣଙ୍କୁ ଜ୍ଞାତ ହୋଇ ସେମାନଙ୍କୁ ଆଶ୍ୱାସନା କଲେ । ୧୩ ।

ତଦନନ୍ତର ମହାତ୍ମା ପାଣ୍ଡବଗଣ ବାଷ୍ପବାରି ବିସର୍ଜନ କରି ଗାନ୍ଧାରୀଙ୍କ ସହିତ ନରପତି ଧୃତରାଷ୍ଟ୍ର ଏବଂ ମାତା କୁନ୍ତୀଙ୍କୁ ଯଥାବିଧି ପୂଜାକଲେ । ୧୪ ।

ତଦନନ୍ତର ପାଣ୍ଡବଗଣ ଲବ୍ଧସଂଜ୍ଞ ହୋଇ ସେମାନଙ୍କ ଜଳକଳଶ ସବୁ ଗ୍ରହଣ କରି ମାତା କୁନ୍ତୀଙ୍କ ଦ୍ୱାରା ପୁନଶ୍ଚ ଆଶ୍ୱାସିତ ହେଲେ । ୧୫ ।

ସେତେବେଳେ ନରବର ପାଣ୍ଡବମାନଙ୍କ ନାରୀଗଣ, ଅନ୍ତଃପୁରବାସୀ, ପୌର ଓ ଜାନପଦଗଣ ନରନାଥ ଧୃତରାଷ୍ଟ୍ରଙ୍କୁ ଦର୍ଶନ କଲେ । ୧୬ ।

ତଦନନ୍ତର ନରନାଥ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କୁ ସମସ୍ତଙ୍କର ନାମ ଓ ଗୋତ୍ର ଉଚ୍ଚାରଣ ପୂର୍ବକ ପରିଚୟ ପ୍ରଦାନ କରି ତାହାଙ୍କୁ ପୂଜାକଲେ । ୧୭ ।

ସେତେବେଳେ ହର୍ଷବାଷ୍ପଦ୍ୱାରା ଆବିଳଲୋଚନ ରାଜା ଧୃତରାଷ୍ଟ୍ର ପାଣ୍ଡବ ପ୍ରଭୃତି ଜନଗଣକର୍ତ୍ତୃକ ପରିବୃତ ହୋଇ ସେ ସ୍ୱୟଂ ହସ୍ତିନାପୁରରେ ଅଛନ୍ତି ବୋଲି ବିବେଚନା କଲେ । ୧୮ ।

Digitized by srujanika@gmail.com

ତଦନନ୍ତର ସେହି ପୃଥିବୀପତି ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଙ୍କ ସମ-ଭିବ୍ୟାହାରରେ କୃଷ୍ଣା ପ୍ରଭୃତି ବଧୂଗଣକର୍ତ୍ତୃକ ଅଭିବାଦିତ ଓ ଆନନ୍ଦିତ ହୋଇ ତାରାଗଣାଚ୍ଛାଦିତ ନଭୋମଣ୍ଡଳ ସଦୃଶ ଦର୍ଶକଗଣକର୍ତ୍ତୃକ ସମାବୃତ ସିଦ୍ଧଚାରଣ-ସେବିତ ଆଶ୍ରମକୁ ଗମନ କଲେ । ୨୦ ।



# ପଞ୍ଚବିଂଶତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ଭରତଶ୍ରେଷ୍ଠ ! ରାଜା ଧୃତରାଷ୍ଟ୍ର ସୁରମ୍ୟ ସରୋଜାକ୍ଷ ପୁରୁଷପ୍ରବର ସେହି ପଞ୍ଚଭ୍ରାତାମାନଙ୍କ ସହିତ ଆଶ୍ରମରେ ଅବସ୍ଥାନ କଲେ । ୧ ।

ମହାଭାଗ ତାପସଗଣ ବିପୁଳ ବକ୍ଷଃସ୍ଥଳସମ୍ପନ୍ନ କୁରୁପତିଙ୍କ ପୁତ୍ର ସେହି ପାଣ୍ଡବମାନଙ୍କୁ ଦର୍ଶନ କରିବା ଅଭିଳାଷରେ ନାନା ଦେଶରୁ ସମାଗତ ହୋଇ କହିଲେ ଯେ, ଏହି ଜନଗଣଙ୍କ ମଧ୍ୟରେ ଯୁଧିଷ୍ଠିର କିଏ, ଭୀମ କିଏ ଏବଂ ଯଶସ୍ୱିନୀ ଦ୍ରୌପଦୀ ଅବା କିଏ, ଏହା ଆମ୍ଭେମାନେ ଜାଣିବାକୁ ଇଚ୍ଛା କରୁଅଛୁଁ । ତେତେବେଳେ ସୂତ ସଞ୍ଜୟ ତାପସଗଣଙ୍କର ଏହି କଥା ଶୁଣି ପଞ୍ଚପାଣ୍ଡବ, ଦ୍ରୌପଦୀ ଓ ଅନ୍ୟାନ୍ୟ କୁରୁସ୍ତ୍ରୀମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ନାମ ନିର୍ଦ୍ଦେଶ ପୂର୍ବକ ପରିଚୟସୂଚକ ବାକ୍ୟ କହିଲେ । ୪ ।

ସଞ୍ଜୟ କହିଲେ—ଏହି ବିଶୁଦ୍ଧ-ସୁବର୍ଣ୍ଣ-ସଦୃଶ ଗୌରଶରୀରସମନ୍ୱିତ ମହାସିଂହ ସମାନ ସମୁନ୍ନତ ଏବଂ ଯାହାଙ୍କ ନାସିକା ଉନ୍ନତ, ନେତ୍ରସ୍ଥଳ ଦୀର୍ଘ, ଚକ୍ଷୁ ତାମ୍ରବର୍ଣ୍ଣ ଓ ଅତିବିସ୍ତୃତ ଦୃଷ୍ଟ ହେଉଅଛି, ଏ କୁରୁରାଜ ଯୁଧିଷ୍ଠିର ଅଟନ୍ତି, ଦେଖିବା ହେଉନ୍ତୁ । ୫ ।

ଏହି ଯେଉଁ ବୀର ପୁରୁଷ ଅବସ୍ଥାନ କରିଅଛନ୍ତି ଏହାଙ୍କ ଗମନ ମତ୍ତ ଗଜେନ୍ଦ୍ର ସଦୃଶ, ବର୍ଣ୍ଣ ପ୍ରତପ୍ତ ଚାମୀକର ସଦୃଶ, ଅଂସ ସ୍ଥୂଳ ଓ ବିସ୍ତୃତ ଏବଂ ବାହୁ ସ୍ଥୂଳ ଓ ସୁଦୀର୍ଘ । ଏହାଙ୍କ ନାମ ବୃକୋଦର । ୬ ।

ଆପଣମାନେ ଦେଖିବା ହେଉନ୍ତୁ, ଏହାଙ୍କ ପାର୍ଶ୍ୱଦେଶରେ ମହାଧନୁର୍ଦ୍ଧାରୀ ବାରଣଯୂଥପତିସଦୃଶ ଶ୍ୟାମଳ, ସିଂହସଦୃଶ ଉନ୍ନତସ୍କନ୍ଧ, ଯୁବାଗଜଗାମୀ,

Digitized by srujanika@gmail.com

କମଳଲୋଚନ, ଯେଉଁ ବୀରବର ଅବସ୍ଥାନ କରିଅଛନ୍ତି, ଏହାଙ୍କ ନାମ ଅର୍ଜ୍ଜୁନ । ୭ ।

ଏବଂ ଏହି କୁନ୍ତୀଙ୍କ ସନ୍ନିଧିରେ ବିଷ୍ଣୁ ଓ ଇନ୍ଦ୍ରଙ୍କ ସଦୃଶ ଯମଜ ଯେଉଁ ଯୁବକଦ୍ୱୟ ଅବସ୍ଥାନ କରିଅଛନ୍ତି, ଏହି ଦୁହିଙ୍କ ନାମ ନକୁଳ ଓ ସହଦେବ । ମନୁଷ୍ୟଲୋକ ମଧ୍ୟରେ ଏହି ଦୁଇ ବୀରପୁରୁଷଙ୍କ ସଦୃଶ ପରମ ସୁନ୍ଦର, ବଳବାନ୍ ଓ ସଚ୍ଚରିତ୍ର ଅନ୍ୟ କେହି ନାହାନ୍ତି । ୮ ।

ଏହି ଯେଉଁ ପଦ୍ମଦଳସଦୃଶ ବିଶାଳଲୋଚନା, ନୀଳୋତ୍ପଳାଭା, କିଞ୍ଚିତ୍ ମଧ୍ୟମବୟସ୍କା, ମୂର୍ତ୍ତିମତୀ ଲକ୍ଷ୍ମୀ ଓ ସୁରଦେବୀଙ୍କ ସଦୃଶ ଅବସ୍ଥାନ କରିଅଛନ୍ତି, ଏହାଙ୍କ ନାମ କୃଷ୍ଣା । ୯ ।

ହେ ଦ୍ୱିଜବରବୃନ୍ଦ ! ଏହାଙ୍କ ପାର୍ଶ୍ୱରେ ଏହି ଯେଉଁ ମୂର୍ତ୍ତିମତୀ ଚନ୍ଦ୍ରପ୍ରଭା-ସଦୃଶୀ ସୁବର୍ଣ୍ଣବର୍ଣ୍ଣା ବାମା ଅବସ୍ଥାନ କରିଅଛନ୍ତି, ଏ ସେହି ଅପ୍ରତିମ ଚକ୍ରାୟୁଧଙ୍କ ଭଗିନୀ ସୁଭଦ୍ରାଦେବୀ ଅଟନ୍ତି । ୧୦ ।

ଏହି ଯେଉଁ ବିଶୁଦ୍ଧ ଜାମ୍ବୁନଦବର୍ଣ୍ଣସଦୃଶ ଗୌରବର୍ଣ୍ଣା ଭୁଜଗେନ୍ଦ୍ରକନ୍ୟା ଏବଂ ମଧୂକପୁଷ୍ପସବର୍ଣ୍ଣା ନରେନ୍ଦ୍ରକନ୍ୟା ଦୃଷ୍ଟ ହେଉଅଛନ୍ତି, ଏହି ଦୁହେଁ ପାର୍ଥଙ୍କ ଭାର୍ଯ୍ୟା । ଏହି ଦୁହିଙ୍କ ମଧ୍ୟରେ ପ୍ରଥମାଙ୍କ ନାମ ଉଲୂପୀ ଏବଂ ଦ୍ୱିତୀୟାଙ୍କ ନାମ ଚିତ୍ରାଙ୍ଗଦା । ୧୧ ।

ଯେଉଁ ନରପତି କୃଷ୍ଣଙ୍କ ସହିତ ସର୍ବଦା ସ୍ପର୍ଦ୍ଧା କରୁଥିଲେ, ସେହି ରାଜଚମୂପତିଙ୍କ ଭଗିନୀ ଏହି ନୀଳୋତ୍ପଳଦାମବର୍ଣ୍ଣା ରମଣୀ ବୃକୋଦରଙ୍କ ଭାର୍ଯ୍ୟା । ୧୨ ।

ମଗଧାଧିପତି ଜରାସନ୍ଧଙ୍କ ସୁତା ଚମ୍ପକଦାମସଦୃଶ ଗୌରାଙ୍ଗୀ ଏହି କାମିନୀ ମାଦ୍ରୀଙ୍କ କନିଷ୍ଠ ତନୟ ସହଦେବଙ୍କ ଭାର୍ଯ୍ୟା ଅଟନ୍ତି । ୧୩ ।

ଏହି ଯେଉଁ ଇନ୍ଦୀବରସଦୃଶ ଶ୍ୟାମାଙ୍ଗୀ, କମଳଦଳସଦୃଶ ବିଶାଳନେତ୍ରା ରାମା ମହୀତଳରେ ଉପବେଶନ କରିଅଛନ୍ତି, ଏ ମାଦ୍ରୀଙ୍କ ଜ୍ୟେଷ୍ଠପୁତ୍ର ନକୁଳଙ୍କ ଭାର୍ଯ୍ୟା ବୋଲି ଖ୍ୟାତିଲାଭ କରିଅଛନ୍ତି । ୧୪ ।

Digitized by srujanika@gmail.com

ପ୍ରତପ୍ତ କାଞ୍ଚନସଦୃଶ ଗୌରବର୍ଣ୍ଣା ସପୁତ୍ରା ଏହି ବିରାଟରାଜଦୁହିତା ସମରରେ ବିରଥ ହୋଇ ରଥସ୍ଥ ଦ୍ରୋଣ ପ୍ରଭୃତିଙ୍କଦ୍ୱାରା ନିହତ ଅଭିମନ୍ୟୁଙ୍କ ପତ୍ନୀ ଅଟନ୍ତି । ୧୫ ।

ଏବଂ ଏହି ଯେଉଁ ସୀମନ୍ତସମନ୍ୱିତକେଶା, ଶୁକ୍ଳବର୍ଣ୍ଣ-ଉତ୍ତରୀୟଧାରିଣୀ, ହତପୁତ୍ରା ଓ ଅନାଥା ଶତସଂଖ୍ୟକ ରାଜପତ୍ନୀମାନଙ୍କୁ ଦର୍ଶନ କରିବା ହେଉଅଛନ୍ତି, ଏମାନେ ଏହି ବୃଦ୍ଧ ରାଜା ଧୃତରାଷ୍ଟ୍ରଙ୍କର ପୁତ୍ରବଧୂ ଅଟନ୍ତି ।୧୬।

ହେ ତପସ୍ୱିଗଣ ! ଆପଣମାନେ ବ୍ରହ୍ମନିଷ୍ଠାବଶତଃ ସରଳଚିତ୍ତ ଓ ସତ୍ତ୍ୱଗୁଣସମନ୍ୱିତ ଅଟନ୍ତି । ଅତଏବ ଆପଣମାନେ ଯେଉଁ ସମସ୍ତ ବିଶୁଦ୍ଧ ସତ୍ତ୍ୱସଂପନ୍ନ ରାଜପତ୍ନୀମାନଙ୍କର ପରିଚୟ ପ୍ରଶ୍ନ କରିଥିଲେ, ଆମ୍ଭେ ତାହା ଯଥାର୍ଥରୂପେ ଆପଣମାନଙ୍କୁ କହିଲୁଁ । ୧୭ ।

ବୈଶମ୍ପାୟନ କହିଲେ—ତେତେବେଳେ ତାପସଗଣ ଗମନ କଲାରୁ କୁରୁବୃଦ୍ଧବର୍ଯ୍ୟ ରାଜା ଧୃତରାଷ୍ଟ୍ର ସେହି ନରଦେବପୁତ୍ର ପାଣ୍ଡବଗଣଙ୍କ ସହିତ ସମାଗତ ହୋଇ କୁଶଳ ପ୍ରଭୃତି ପ୍ରଶ୍ନକଲେ । ୧୮ ।

ତଦନନ୍ତର ଯୋଧଗଣ ଆଶ୍ରମମଣ୍ଡଳ ପରିତ୍ୟାଗ ପୂର୍ବକ ନିଜ ନିଜ ସ୍ଥାନରେ ନିବିଷ୍ଟ ହେଲେ ଏବଂ ସ୍ତ୍ରୀ, ବୃଦ୍ଧ ଓ ବାଳକବୃନ୍ଦ ବାହନ ପରିତ୍ୟାଗ କରି ସ୍ୱ ସ୍ୱ ସ୍ଥାନରେ ପ୍ରବିଷ୍ଟ ହେଲେ । ସେ ପାଣ୍ଡବଗଣଙ୍କୁ ଯଥୋଚିତ କୁଶଳାଦି ପ୍ରଶ୍ନ କରିଥିଲେ । ୧୯ ।

---

## ଷଡ଼୍‌ବିଂଶତିତମ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ମହାବାହୋ ! ଯୁଧିଷ୍ଠିର ! ତୁମ୍ଭେ ଭ୍ରାତା, ପୌର ଓ ଜାନପଦବର୍ଗଙ୍କ ସହିତ କୁଶଳରେ ଅଛ ତ ? ହେ ନରନାଥ ! ତୁମ୍ଭର ଯେଉଁ ସମସ୍ତ ଗୁରୁ, ସଚିବ ଓ ଭୃତ୍ୟଗଣ ତୁମ୍ଭକୁ ଅବଲମ୍ବନ କରି ଜୀବିକାନିର୍ବାହ କରନ୍ତି, ସେମାନେ ନିରାମୟ ଓ ନିରାତଙ୍କରେ ତୁମ୍ଭ ରାଜ୍ୟରେ ବାସ କରିଅଛନ୍ତି ତ ? ତୁମ୍ଭେ ରାଜର୍ଷିସେବିତ ପୁରାତନୀ ବୃତ୍ତିରେ ବର୍ତ୍ତମାନ୍ ଅଛ ତ ? ୩ । ତୁମ୍ଭେ ନ୍ୟାୟପଥ ଅତିକ୍ରମ ନ କରି କୋଷପୂରଣ ଏବଂ ଶତ୍ରୁ-ମିତ୍ର-ଉଦାସୀନଗଣଙ୍କ ନିକଟରେ ସମଭାବରେ ଅବସ୍ଥାନ କରୁଅଛ ତ ? ୪ ।

Digitized by srujanika@gmail.com

ହେ ଭରତଶ୍ରେଷ୍ଠ ! ଆମ୍ଭେ ପଚାରୁଅଛୁଁ—ତୁମ୍ଭେ ବ୍ରାହ୍ମଣଗଣଙ୍କୁ ଉତ୍କୃଷ୍ଟ ଉପଚାର ପ୍ରଦାନ ପୂର୍ବକ ଯଥାସମୟରେ ସେମାନଙ୍କର ତତ୍ତ୍ୱାବଧାରଣ କରୁଅଛ ତ ? ସେମାନେ ଏବଂ ଶତ୍ରୁ, ପୌରଜନ, ଭୃତ୍ୟ ଓ ସ୍ୱଜନଗଣ ତୁମ୍ଭ ସ୍ୱଭାବରେ ସନ୍ତୁଷ୍ଟ ଅଛନ୍ତି ତ ? ହେ ରାଜେନ୍ଦ୍ର ! ତୁମ୍ଭେ ଶ୍ରଦ୍ଧାଯୁକ୍ତ ହୋଇ ପିତୃଲୋକ ଓ ଦେବତାମାନଙ୍କର ଏବଂ ଅନ୍ନପାନଦ୍ୱାରା ଅତିଥିମାନଙ୍କର ଅର୍ଚ୍ଚନା କରୁଅଛ ତ ? ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଗଣ ତୁମ୍ଭ ମତପଥର ଅନୁବର୍ତ୍ତୀ ହୋଇ ନିଜ ନିଜ ଧର୍ମରେ ନିରତ ଅଛନ୍ତି ତ ? କୁଟୁମ୍ବ, ସ୍ତ୍ରୀ, ବୃଦ୍ଧ ଓ ବାଳକଗଣ ତୁମ୍ଭ ନିକଟରେ ଶୋକପ୍ରକାଶ ଓ ପ୍ରାର୍ଥନା କରନ୍ତି ନାହିଁ ତ ? ହେ ନରବର ! ରାଜେନ୍ଦ୍ର ! ତୁମ୍ଭ ଗୃହରେ ନାରୀଗଣ ପୂଜିତ ହୁଅନ୍ତି ତ ? ତୁମ୍ଭେ ମହୀପତି ହେବାରୁ ଏହି ରାଜର୍ଷିବଂଶ ତୁମ୍ଭଦ୍ୱାରା ଯଶୋହୀନ ଅବା ଅବସନ୍ନ ହୋଇନାହିଁ ତ ?

ବୈଶମ୍ପାୟନ କହିଲେ—ଧୃତରାଷ୍ଟ୍ର ଏହିପରି ପ୍ରଶ୍ନ କରିବାରୁ ସେହି ନ୍ୟାୟବିତ୍ ବାକ୍ୟପ୍ରୟୋଗକୁଶଳ ଯୁଧିଷ୍ଠିର ତାହାଙ୍କୁ କୁଶଳପ୍ରଶ୍ନ-ସଂଯୁକ୍ତ ବାକ୍ୟରେ ପ୍ରତ୍ୟୁତ୍ତର କଲେ ।

ଯୁଧିଷ୍ଠିର କହିଲେ—ହେ ରାଜନ୍ ! ମୁଁ ପଚାରୁଅଛି, ଆପଣଙ୍କର ତପସ୍ୟା, ଦମ ଓ ଶମ ବର୍ଦ୍ଧିତ ହେଉଅଛି ତ ? ଆମ୍ଭମାନଙ୍କର ଜନନୀ ଏହି କୁନ୍ତୀଦେବୀ ବିଶ୍ରାନ୍ତ ଶରୀରରେ ଆପଣଙ୍କର ଶୁଶ୍ରୂଷା କରୁଅଛନ୍ତି ତ ? ହେ ନରନାଥ ! ଯଦି ଏ ଆପଣଙ୍କ ଶୁଶ୍ରୂଷାରେ ନିରତ ଥିବେ, ତେବେ ଏହାଙ୍କର ବନବାସ ସଫଳ ହେବ । ୧୨ । ଶୀତଳ ସମୀରଣ ସେବନ ଓ ପଥଶ୍ରମରେ କାତର ଘୋରତର ତପୋନିଷ୍ଠା ଆମ୍ଭର ଏହି ଜ୍ୟେଷ୍ଠମାତା ଦେବୀ ଗାନ୍ଧାରୀ, କ୍ଷାତ୍ରଧର୍ମପରାୟଣ ମହାବୀର ନିହତ ପୁତ୍ରଗଣଙ୍କ ନିମିତ୍ତ ଶୋକ କରୁନାହାନ୍ତି ତ ? ଆମ୍ଭେମାନେ ପାପକର୍ମ କରିଅଛୁଁ ବୋଲି ସର୍ବଦା ଆମ୍ଭମାନଙ୍କର ଅନିଷ୍ଟ ଚିନ୍ତା କରନ୍ତି ନାହିଁ ତ ? ୧୪ ।

ହେ ରାଜନ୍ ! ବିଦୁର କେଉଁଠାରେ ଅଛନ୍ତି ? ଆମ୍ଭେମାନେ ତାହାଙ୍କୁ ଏଠାରେ କାହିଁକି ଦେଖୁନାହୁଁ ? ଆମ୍ଭେମାନେ ପଚାରୁଅଛୁଁ ସଞ୍ଜୟ ତପସ୍ୟାରେ ରତ ଥାଇ କୁଶଳରେ ଅଛନ୍ତି ତ ? ୧୫ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ଧୃତରାଷ୍ଟ୍ର ନରନାଥ ଯୁଧିଷ୍ଠିରଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ—ହେ ପୁତ୍ର ! ବିଦୁର ଘୋରତର ତପସ୍ୟା ଅବଲମ୍ବନ କରି କୁଶଳରେ ଅଛନ୍ତି । ୧୬ । କିନ୍ତୁ ସେ ଅନ୍ୟାନ୍ୟ ଭକ୍ଷ୍ୟବସ୍ତୁ ପରିହାର ପୂର୍ବକ କେବଳ ବାୟୁଭକ୍ଷଣ କରିବାରୁ ଏପ୍ରକାର କୃଶ ହୋଇଅଛନ୍ତି ଯେ, ତାହାଙ୍କର ସମସ୍ତ ଶରୀର ଶିରାଦ୍ୱାରା ସମାଚ୍ଛନ୍ନ ହୋଇଅଛି । ସେହି ଅବସ୍ଥାରେ ବ୍ରାହ୍ମଣଗଣ କୌଣସି କୌଣସି ସମୟରେ ତାହାଙ୍କୁ ଏହି ବନର ଅତି ନିର୍ଜନ ପ୍ରଦେଶରେ ଦର୍ଶନ କରିଥାଆନ୍ତି । ୧୭ ।

ହେ ରାଜନ୍ ! ଧୃତରାଷ୍ଟ୍ର ଏହି କଥା କହୁଥିବା ସମୟରେ ସେହି ଜଟାଧାରୀ, ଦିଗମ୍ବର, ଅତିଶୟ କୃଶ, ବିକଟମୁଖ, ମଳିନଦେହ ଓ ବନଧୂଳି-ଧୂସରିତ କ୍ଷତ୍ତା ବିଦୁର ଦୂରରୁ ତାହାଙ୍କର ଦୃଷ୍ଟିଗୋଚର ହେବାମାତ୍ରେ ସହସା ଆଶ୍ରମପଦରୁ ପ୍ରତିନିବୃତ୍ତ ହେଲେ । ୧୯ । ନରନାଥ ଯୁଧିଷ୍ଠିର ଏକାକୀ ଘୋରତର ଅଲକ୍ଷ୍ୟ ଅରଣ୍ୟ ମଧ୍ୟରେ ପ୍ରବିଷ୍ଟ ସେହି ବିଦୁରଙ୍କ ପଶ୍ଚାତ୍ ଧାବମାନ ହେଲେ । ନରପତି 'ଭୋ ଭୋ ବିଦୁର ! ଆମ୍ଭେ ତୁମ୍ଭର ପ୍ରିୟତମ ରାଜା ଯୁଧିଷ୍ଠିର' ଏହି କଥା କହି କହି ଅତି ଯତ୍ନ ସହକାରେ ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ଧାବିତ ହେଲେ । ୨୧ ।

ତଦନନ୍ତର ପ୍ରାଜ୍ଞବର ବିଦୁର ଏକାନ୍ତ ନିର୍ଜନ ସେହି ବନ ମଧ୍ୟରେ କୌଣସି ଗୋଟିଏ ବୃକ୍ଷ ଅବଲମ୍ବନ କରି ଅବସ୍ଥାନ କଲେ । ୨୨ ।

ମହାପ୍ରାଜ୍ଞ ରାଜା ଯୁଧିଷ୍ଠିର ଆକୃତିମାତ୍ରାବଶିଷ୍ଟ, ଅତିଶୟ କୃଶ, ମହାବୁଦ୍ଧି ବିଦୁରଙ୍କର ଅଭିମୁଖକୁ ଗମନପୂର୍ବକ ଅଗ୍ରଭାଗରେ ଅବସ୍ଥାନ କରି ତାହାଙ୍କ ଶ୍ରୁତିଗୋଚର ହେବା ନିମିତ୍ତ ଉଚ୍ଚୈଃସ୍ୱରରେ "ଆମ୍ଭେ ଯୁଧିଷ୍ଠିର" ଏହି କଥା କହି ତାହାଙ୍କୁ ପୂଜାକଲେ ।

ତଦନନ୍ତର ବିଦୁର ସମାହିତ ହୋଇ ଅନିମିଷଲୋଚନରେ ଯୁଧିଷ୍ଠିରଙ୍କ ପ୍ରତି ଦୃଷ୍ଟିପାତ କରି ଏକଦୃଷ୍ଟିରେ ତାହାଙ୍କୁ ଦର୍ଶନ କଲେ ।

ତଦନନ୍ତର ସେହି ଧୀମାନ୍ ବିଦୁର ଯୋଗବଳ ଅବଲମ୍ବନ ପୂର୍ବକ ନୃପତିଙ୍କ ଗାତ୍ରରେ ନିଜ ଗାତ୍ର, ପ୍ରାଣରେ ପ୍ରାଣ ଏବଂ ଇନ୍ଦ୍ରିୟସମୂହରେ ଇନ୍ଦ୍ରିୟ-ସମୂହ ପ୍ରବିଷ୍ଟ କରାଇ ପ୍ରଜ୍ୱଳିତ ଅନଳସଦୃଶ ଦୀପ୍ତି ପ୍ରାପ୍ତ ହେଲେ । ୨୬ ।

Digitized by srujanika@gmail.com

ପରଂତ୍ତୁ ରାଜା ତେତେବେଳେ ବିଦୁରଙ୍କର ସେହି ବୃକ୍ଷାଶ୍ରିତ ସ୍ତବ୍ଧଲୋଚନ-ସମନ୍ୱିତ ବିଚେତନ ଶରୀରକୁ ଦର୍ଶନ କଲେ ଏବଂ ଆପଣାକୁ ବିଶେଷ ଗୁଣବାନ୍ ଓ ବଳବାନ୍ ବୋଲି ମନେକଲେ ।

ହେ ବିଂଶାପତେ ! ବିଦ୍ୱାନ୍ ମହାତେଜା ଧର୍ମରାଜ ପାଣ୍ଡୁତନୟ ବ୍ୟାସକଥିତ ନିଜ ପୁରାଣ ଯୋଗଧର୍ମ ସବୁ ସ୍ମରଣ କଲେ ।

ତଦନନ୍ତର ଧର୍ମରାଜ ତେତେବେଳେ ସଂସ୍କାରାଭିଳାଷୀ ହୋଇ ବିଦୁରଙ୍କୁ ଦଗ୍ଧ କରାଇବା ନିମିତ୍ତ ସମୁଦ୍ୟୁକ୍ତ ହେବାରୁ ଏହିପ୍ରକାର ଦୈବବାଣୀ ହେଲା । ୩୧ ।

ହେ ରାଜନ୍ ! ଏହି ବିଦୁରଙ୍କୁ ଦଗ୍ଧ କରିବାର ଉଚିତ ନୁହେ । ଏହି କଳେବର ଏହି ସ୍ଥାନରେ ଥିଲେ ତୁମ୍ଭର ପରମ ଧର୍ମ ଲାଭ ହେବ । ହେ ପରନ୍ତପ ! ଭାରତ ! ଏ ଯତିଧର୍ମ ପ୍ରାପ୍ତ ହୋଇଥିବାରୁ ଏହାଙ୍କର ସାନ୍ତାନିକ ଲୋକ ଲାଭ ହେବ । ଅତଏବ ଏହାଙ୍କ ନିମିତ୍ତ ଶୋକ କରନା । ଧର୍ମରାଜ ଏହି ବାଣୀ ଶ୍ରବଣ କରି ସେଠାରୁ ପ୍ରତ୍ୟାଗତ ହୋଇ ବିଚିତ୍ରବୀର୍ଯ୍ୟ-ତନୟ ରାଜା ଧୃତରାଷ୍ଟ୍ରଙ୍କ ନିକଟରେ ଏହି ସମସ୍ତ ବୃତ୍ତାନ୍ତ ବର୍ଣ୍ଣନ କଲେ । ୩୪ ।

ତଦନନ୍ତର ଦ୍ୟୁତିମାନ୍ ରାଜା ଧୃତରାଷ୍ଟ୍ର ଓ ଭୀମସେନ ପ୍ରଭୃତି ସମସ୍ତ ଜନଗଣ ସେହି କଥା ଶୁଣି ଅତିଶୟ ବିସ୍ମୟାନ୍ୱିତ ହେଲେ । ୩୫ ।

ତଦନନ୍ତର ରାଜା ଧୃତରାଷ୍ଟ୍ର ପ୍ରସନ୍ନ ହୋଇ ଧର୍ମନନ୍ଦନଙ୍କୁ କହିଲେ ଯେ, ହେ ବତ୍ସ ! ଆମ୍ଭର ଏହି ଫଳ, ମୂଳ ଓ ସଲିଳ ପ୍ରତିଗ୍ରହ କର । ୩୭ । ହେ ରାଜନ୍ ! ମନୁଷ୍ୟ ଯାଦୃଶ ଅର୍ଥଭୋଗ କରନ୍ତି, ତାହାଙ୍କ ଅତିଥିଗଣ ମଧ୍ୟ ସେହି ଅର୍ଥଭୋଗ କରନ୍ତି, ଏହା ଶାସ୍ତ୍ରରେ କଥିତ ହୋଇଅଛି ।

ଧର୍ମରାଜ, ଧୃତରାଷ୍ଟ୍ରଙ୍କର ଏହି ବାକ୍ୟ ଶ୍ରବଣ କରି, ଆପଣ ଯାହା କହିଲେ ତାହା ହେଉ, ଏହି କଥା କହି ଅନୁଜଗଣଙ୍କ ସହିତ ଧୃତରାଷ୍ଟ୍ରଙ୍କ ପ୍ରଦତ୍ତ ଫଳମୂଳ ଭୋଜନ କଲେ ।

Digitized by srujanika@gmail.com

ତଦନନ୍ତର ସେମାନେ ବୃକ୍ଷମୂଳରେ ବାସ କରି ଫଳମୂଳଜଳାଶନ ପୂର୍ବକ ସେହି ରାତ୍ରି ଯାପନ କଲେ । ୩୮ ।

---

# ସପ୍ତତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! ତଦନନ୍ତର ପୁଣ୍ୟକର୍ମା ପାଣ୍ଡବଗଣ ସେହି ଆଶ୍ରମରେ ଧର୍ମାର୍ଥ ଲକ୍ଷଣଯୁକ୍ତ ବିଚିତ୍ରପଦ ଓ ନାନା ଶ୍ରୁତି-ସମନ୍ୱିତ ବିବିଧ କଥା କହି କହି ମଙ୍ଗଳସୂଚକ ନକ୍ଷତ୍ରସମନ୍ୱିତା ଶର୍ବରୀ ଯାପନ କଲେ ।

ହେ ନରନାଥ ! ସେତେବେଳେ ପାଣ୍ଡବଗଣ ମହାମୂଲ୍ୟ ଶଯ୍ୟା ପରିତ୍ୟାଗ ପୂର୍ବକ ମାତା କୁନ୍ତୀଙ୍କ ଚତୁର୍ଦ୍ଦିଗରେ ଭୂତଳରେ ଶୟନ କଲେ ।୩। ସେହି ରଜନୀରେ ମହାମନା ରାଜା ଧୃତରାଷ୍ଟ୍ର ଯାହା ଆହାର କଲେ, ନରବୀର ପାଣ୍ଡବଗଣ ମଧ୍ୟ ସେତେବେଳେ ତାହା ଭକ୍ଷଣ କଲେ । ରାତ୍ରି ପ୍ରଭାତ ହେବାରୁ ରାଜା ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ପୌର୍ବାହ୍ନିକ କ୍ରିୟା ସମାପନ କରି ଆଶ୍ରମମଣ୍ଡଳ ଦର୍ଶନ କଲେ । ୫ ।

ତଦନନ୍ତର ଧର୍ମରାଜ ଧୃତରାଷ୍ଟ୍ରଙ୍କ ଆଦେଶ ଅନୁସାରେ ଅନ୍ତଃପୁରସ୍ଥ ପରିବାର, ଭୃତ୍ୟ ଓ ପୁରୋହିତଙ୍କ ସହିତ ଯଥାସୁଖରେ ତତ୍ରତ୍ୟ ସ୍ଥାନସମୂହ ଏବଂ ପ୍ରଜ୍ୱଳିତ ପାବକସମନ୍ୱିତ ଓ ଅଭିଷିକ୍ତ ମୁନିଗଣକର୍ତ୍ତୃକ ଆହୁତ ଅଗ୍ନିଦ୍ୱାରା ଉପାସିତ ବେଦିବୃନ୍ଦ ଦର୍ଶନ କଲେ । ୭ । ସେହି ବେଦିସମୂହ ବନଜ ପୁଷ୍ପନିକର ଓ ଆଜ୍ୟଧୂମଦ୍ୱାରା ପରିବ୍ୟାପ୍ତ ଏବଂ ମୁନିଗଣଙ୍କ ବ୍ରାହ୍ମଣଶରୀର-ଶୋଭାରେ ଶୋଭିତ ହୋଇଥିଲା । ୮ ।

ହେ ପ୍ରଭୋ ! ସେହି ସେହି ସ୍ଥାନରେ ମୃଗଯୂଥ ଅନୁଦ୍‌ବିଗ୍ନ ଓ ଅସଙ୍କୁଚିତ ଚିତ୍ତରେ ଅବସ୍ଥାନ କରିବାରୁ ଏବଂ ବିବିଧ ବିହଗଗଣ ମନୋହର ଶବ୍ଦ କରିବାରୁ ସଙ୍ଗୀତ ହେଲାପରି ଜଣାଯାଉଥିଲା । ୯ ।

କୌଣସି କୌଣସି ସ୍ଥାନ ନୀଳକଣ୍ଠ ମୟୂରଗଣଙ୍କ କେକାଧ୍ୱନି, ଦାତ୍ୟୂହନିକରର କୂଜନ, କୋକିଳକୁଳର ସୁଖକର ଶ୍ରୁତିମନୋହର

Digitized by srujanika@gmail.com

କୁହୂରବ, ବେଦପାଠକ ବିପ୍ରମାନଙ୍କର ବେଦଧ୍ୱନି ଏବଂ ଅତି ଉତ୍କୃଷ୍ଟ ଫଳମୂଳଦ୍ୱାରା ସୁଶୋଭିତ ହୋଇଥିଲା । ୧୧ ।

ହେ ରାଜନ୍ ! ଭାରତ ! ତଦନନ୍ତର ମହୀପତି ରାଜା ଯୁଧିଷ୍ଠିର ତାପସମାନଙ୍କ ନିମିତ୍ତ ସମାହୃତ କାଞ୍ଚନ କଳଶ, ଔଡୁମ୍ବର, ଭାଜନ, ଅଜିନ, ରଙ୍କକମ୍ବଳ, ସ୍ରୁକ୍, ସ୍ରୁବ, କମଣ୍ଡଳୁ, ସ୍ଥାଳୀ, ପିଠର, ପାତ୍ର, ଲୌହମୟ ଭାଜନ ଏବଂ ଅନ୍ୟାନ୍ୟ ବିବିଧ ବାସନସମୂହ ସେମାନଙ୍କୁ ପ୍ରଦାନ କଲେ ।୧୪।

ଧର୍ମାତ୍ମା ରାଜା ଯୁଧିଷ୍ଠିର ନାନା ଧନ ବିତରଣ ପୂର୍ବକ ଏହିରୂପେ ଆଶ୍ରମ ପରିଭ୍ରମଣ କରି, ପ୍ରତ୍ୟାଗତ ହୋଇ କୃତାହ୍ନିକ ଅବ୍ୟଗ୍ରଚିତ୍ତ ଗାନ୍ଧାରୀଙ୍କ ସହିତ ସମାସୀନ ରାଜା ଧୃତରାଷ୍ଟ୍ର ଏବଂ ତାହାଙ୍କ ନିକଟରେ ଶିଷ୍ୟ ସଦୃଶ ପ୍ରଣତଭାବରେ ଅବସ୍ଥିତା ଶିଷ୍ଟାଚାରସମନ୍ୱିତା ମାତା କୁନ୍ତୀଙ୍କୁ ଦର୍ଶନ କଲେ । ୧୭ ।

ଯୁଧିଷ୍ଠିର ରାଜା ଧୃତରାଷ୍ଟ୍ରଙ୍କୁ ନିଜ ନାମ ପ୍ରକାଶ ପୂର୍ବକ ପୂଜାକରି ଉପବେଶନ ନିମିତ୍ତ ଆଦେଶପ୍ରାପ୍ତ ହୋଇ ଯତିମାନଙ୍କ ଆସନରେ ଉପବେଶନ କଲେ । ୧୮ ।

ହେ ଭରତଶ୍ରେଷ୍ଠ ! ଭୀମସେନ ପ୍ରଭୃତି ପାଣ୍ଡବଗଣ ପାର୍ଥିବଙ୍କ ପାଦସ୍ପର୍ଶ ପୂର୍ବକ ଅଭିବାଦନ କରି ଆଦେଶାନୁସାରେ ଉପବେଶନ କଲେ । ୧୯ । ହେ କୁରୁରାଜ ! ଧୃତରାଷ୍ଟ୍ର ବ୍ରାହ୍ମୀଶ୍ରୀ ଧାରଣ କରି ପାଣ୍ଡବଗଣଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେତେବେଳେ ଦେବଗଣ ପରିବୃତ ବୃହସ୍ପତିଙ୍କ ସଦୃଶ ଶୋଭା ଧାରଣ କଲେ । ୨୦ ।

ସେମାନେ ଉପବେଶନ କଲାରୁ କୁରୁକ୍ଷେତ୍ରନିବାସୀ ଶତଯୂପ ପ୍ରଭୃତି ମହର୍ଷିଗଣ ସେଠାକୁ ସମାଗତ ହେଲେ । ୨୧ । ଦେବର୍ଷିଗଣସେବିତ ମହାତେଜା ଭଗବାନ ବ୍ୟାସ ଶିଷ୍ୟବୃନ୍ଦରେ ପରିବୃତ ହୋଇ ପାଣ୍ଡୁନନ୍ଦନ ଯୁଧିଷ୍ଠିରଙ୍କ ଦର୍ଶନ ନିମିତ୍ତ ଆଗମନ କଲେ । ୨୨ ।

କୁରୁପତି କୁନ୍ତୀପୁତ୍ର ବୀର୍ଯ୍ୟବାନ୍ ରାଜା ଯୁଧିଷ୍ଠିର ଏବଂ ଭୀମସେନ ପ୍ରଭୃତି ସମସ୍ତେ ଉତ୍ଥିତ ହୋଇ ତାହାଙ୍କୁ ଅଭିବାଦନ କଲେ । ୨୩ ।

Digitized by srujanika@gmail.com

ତଦନନ୍ତର ବ୍ୟାସ ଶତଯୂପାଦ୍ଵ ଋଷିସମୂହରେ ପରିବୃତ ହୋଇ ଆଗମନ କରି ମହୀପତି ଧୃତରାଷ୍ଟ୍ରଙ୍କୁ "ଉପବେଶନ କରିବା ହେଉନ୍ତୁ" ଏହି କଥା କହିଲେ । ୨୪ ।

ସେତେବେଳେ ବ୍ୟାସ ତନ୍ନିମିତ୍ତ ଉପକଳ୍ପିତ ଉତ୍କୃଷ୍ଟ କୁଶାସନ, କୃଷ୍ଣାଜିନ ଓ କୁଶୋତ୍ତରାସ୍ତ୍ର ପ୍ରାପ୍ତ ହେଲେ । ୨୫ । ବିପୁଳତେଜା ଦ୍ଵିଜବରଗଣ ଦ୍ଵୈପାୟନକର୍ତ୍ତୃକ ଆଦିଷ୍ଟ ହୋଇ ଚତୁର୍ଦ୍ଦିଗରେ ବିଷ୍ଟରାସନରେ ଉପବେଶନ କଲେ । ୨୬ ।

---

# ଅଷ୍ଟାବିଂଶତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ମହାତ୍ମା ପାଣ୍ଡବଗଣ ଉପବିଷ୍ଟ ହେବାରୁ ସତ୍ୟବତୀସୁତ ବ୍ୟାସ କହିଲେ—ହେ ମହାବାହୋ ! ଧୃତରାଷ୍ଟ୍ର ! ତୁମ୍ଭର ତପସ୍ୟା ବର୍ଦ୍ଧିତ ହେଉଅଛି ତ ? ହେ ନରନାଥ ! ବନବାସରେ ତୁମ୍ଭର ଚିତ୍ତ ପ୍ରୀତିଯୁକ୍ତ ହେଉଅଛି ତ ? ୨ । ହେ ଅନଘ ! ରାଜନ୍ ! ତୁମ୍ଭ ହୃଦୟରେ ପୁତ୍ରବିନାଶଜନିତ ଶୋକ ରହିନାହିଁ ତ ? ତୁମ୍ଭର ସମସ୍ତ ଜ୍ଞାନ ସୁପ୍ରସନ୍ନ ହୋଇଅଛି ତ ? ୩ । ତୁମ୍ଭେ ବୁଦ୍ଧିକି ଦୃଢ଼ୀକୃତ କରି ଆରଣ୍ୟକ ବିଧି ଆଚରଣ କରୁଅଛ ତ ? ବଧୂ ଗାନ୍ଧାରୀ ଶୋକରେ ଅଭିଭୂତା ହେଉନାହାନ୍ତି ତ ? ୪ । ମହାପ୍ରାଜ୍ଞା ବୁଦ୍ଧିମତୀ ଧର୍ମାର୍ଥଦର୍ଶିନୀ ଆଗମ ଓ ଅପାୟ ସମୂହର ତତ୍ତ୍ଵଜ୍ଞା ଏହି ଗାନ୍ଧାରୀଦେବୀ ଶୋକ କରୁନାହାନ୍ତି ତ ? ହେ ରାଜନ୍ ! ଯେ ନିଜ ପୁତ୍ରଗଣଙ୍କୁ ପରିତ୍ୟାଗ ପୂର୍ବକ ଗୁରୁଶୁଶ୍ରୂଷାରେ ନିରତ ହୋଇଅଛନ୍ତି, ସେହି କୁନ୍ତୀ ଅହଙ୍କାରବର୍ଜ୍ଜିତା ହୋଇ ତୁମ୍ଭଙ୍କୁ ଶୁଶ୍ରୂଷା କରୁଅଛନ୍ତି ତ ? ୬ ।

ହେ ରାଜନ୍ ! ତୁମ୍ଭେ ମହାମନା ମହାତ୍ମା ଧର୍ମନନ୍ଦନ ଯୁଧିଷ୍ଠିରଙ୍କୁ ଅଭିନନ୍ଦନ କରିଅଛ ତ ? ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ଏମାନଙ୍କୁ ସାନ୍ତ୍ଵନା କରିଅଛ ତ ? ହେ ନରାଧିପ ! ଏମାନଙ୍କ ଦର୍ଶନରେ ତୁମ୍ଭର ଚିତ୍ତ ନିର୍ମଳ ଓ ଆନନ୍ଦିତ ହୋଇଅଛି ତ ? ଏବଂ ଜ୍ଞାନ ଉଦୟ ହେବାରୁ ଶୁଦ୍ଧଚିତ୍ତ ହୋଇଅଛ ତ ? ୮ ।

Digitized by srujanika@gmail.com

ହେ ଭରତ ! ମହାରାଜ ! ଭୂତସମୂହରେ ଯେଉଁ ଗୁଣସବୁ ଅଛି, ତନ୍ମଧ୍ୟରେ ନିର୍ବୈରିତା, ସତ୍ୟ ଓ ଅକ୍ରୋଧ ଏହି ତିନିଗୋଟି ପ୍ରଧାନ । ଅତଏବ ହେ ଭରତ ! ବନବାସରେ ତୁମ୍ଭର ମୋହ ହୁଏ ନାହିଁ ତ ? ଅର୍ଥାତ୍ ବନବାସ ହେତୁରୁ ତୁମ୍ଭର କଷ୍ଟବୋଧ ହୋଇନାହିଁ ତ ? ସ୍ୱବଶରେ ଥିଲେ ବନ୍ୟ ଅନ୍ନଫଳମୂଳାଦି ଆହାର କରିବାକୁ ହୁଏ ଅଥବା ଉପବାସ ହୋଇଥାଏ । ତାହାସବୁ ତୁମ୍ଭର ସହ୍ୟ ହୋଇଅଛି ତ ? ୧୦ ।

ହେ ରାଜେନ୍ଦ୍ର ! ମହାତ୍ମା ବିଦୁରଙ୍କ ବିଷୟ ତୁମ୍ଭେ ଜାଣିଅଛ । ଏହି ବିଧାନରେ ମହାତ୍ମା ଧର୍ମଙ୍କର ଗମନ ହୁଏ । ୧୧ । ମହାତ୍ମା ଧର୍ମ ମାଣ୍ଡବ୍ୟ-ମୁନିଙ୍କ ଶାପରେ ନରକଳେବର ଧାରଣପୂର୍ବକ ବିଦୁରରୂପରେ ଜନ୍ମ ପରିଗ୍ରହ କରିଥିଲେ । ସେହି ମହାବୁଦ୍ଧି ମହାଯୋଗୀ ସୁମହାମନା ମହାତ୍ମା ପୁରୁଷପ୍ରବର ବିଦୁର ଯାଦୃଶ ବୁଦ୍ଧିସମ୍ପନ୍ନ ଥିଲେ, ଦେବଗଣଙ୍କ ମଧ୍ୟରେ ବୃହସ୍ପତି ଏବଂ ଅସୁରଗଣଙ୍କ ମଧ୍ୟରେ ଶୁକ୍ର ତାଦୃଶ ବୁଦ୍ଧିସମ୍ପନ୍ନ ନୁହନ୍ତି । ତେତେବେଳେ ସନାତନ ଧର୍ମ ବହୁକାଳାର୍ଜିତ ତପୋବଳ ବ୍ୟୟକରି ମାଣ୍ଡବ୍ୟଋଷିକର୍ତ୍ତୃକ ଅଭିଭୂତ ହୋଇଥିଲେ । ୧୪ । ସେହି ମହାମତି ପୂର୍ବେ ବ୍ରହ୍ମାଙ୍କ ଆଦେଶାନୁ-ସାରେ ନିଜ ତେଜୋବଳରେ ମତ୍କର୍ତ୍ତୃକ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ ଉତ୍ପନ୍ନ ହୋଇଥିଲେ । ୧୫ । ହେ ମହାରାଜ ! ପଣ୍ଡିତଗଣ ଯାହାଙ୍କୁ ଧର୍ମ ବୋଲି ଜାଣନ୍ତି, ତୁମ୍ଭର ଭ୍ରାତା ସେହି ମହାମତି ବିଦୁର ମନଦ୍ୱାରା ଧ୍ୟାନ ଓ ଧାରଣା କରୁଥିବା ହେତୁରୁ ସନାତନ ଦେବଦେବ ସଦୃଶ ହୋଇଥିଲେ । ୧୬ । ସେହି ସନାତନ ପୁରୁଷପ୍ରବର ତପସ୍ୟା କରି ସତ୍ୟ, ଶମ, ଅହିଂସା, ଦମ ଓ ଦାନଦ୍ୱାରା ବର୍ଦ୍ଧିତ ହୋଇଅଛନ୍ତି । ୧୭ । ଏହି କୁରୁରାଜ ସ୍ୱୟଂ ଧର୍ମରୂପୀ ଯୁଧିଷ୍ଠିର ଯୋଗବଳରେ ଅମିତବୁଦ୍ଧି, ପ୍ରାଜ୍ଞ ସେହି ବିଦୁରଙ୍କ ସହିତ ଜନ୍ମ-ଗ୍ରହଣ କରିଅଛନ୍ତି । ୧୮ । ବହ୍ନି, ବାୟୁ, ଜଳ, ପୃଥିବୀ ଓ ଆକାଶ ସଦୃଶ ଧର୍ମ ଇହଲୋକ ଓ ପରଲୋକରେ ନିତ୍ୟ ଅବସ୍ଥାନ କରିଅଛନ୍ତି । ୧୯ ।

ହେ ରାଜେନ୍ଦ୍ର ! ସେ ସର୍ବଗ, ସୁତରାଂ ସମସ୍ତ ଚରାଚର ବ୍ୟାପି ଅବସ୍ଥାନ କରିଅଛନ୍ତି । ନିଷ୍ପାପ ସିଦ୍ଧ ଦେବଗଣ ତାହାଙ୍କୁ ଦର୍ଶନ କରନ୍ତି । ୨୦ । ହେ ରାଜନ୍ ! ଯେ ଧର୍ମ ସେ ବିଦୁର ଏବଂ ଯେ ବିଦୁର ସେ ପାଣ୍ଡୁନନ୍ଦନ ଯୁଧିଷ୍ଠିର । ଯେଉଁ ପାଣ୍ଡୁପୁତ୍ର ଆପଣଙ୍କ ନିକଟରେ ଦାସ ସଦୃଶ ଅବସ୍ଥାନ

Digitized by srujanika@gmail.com

କରିଅଛନ୍ତି ଦେଖୁଅଛ, ଏ ସେହି ବିଦୁର । ୨୧ । ତୁମ୍ଭର ଭ୍ରାତା ସେହି ମହାତ୍ମା ବୁଦ୍ଧିସତ୍ତମ ବିଦୁର ମହାତ୍ମା କୁନ୍ତୀପୁତ୍ରଙ୍କୁ ଦର୍ଶନ କରି ମହା ଯୋଗ-ବଳରେ ଏହାଙ୍କଠାରେ ପ୍ରବିଷ୍ଟ ହୋଇଅଛନ୍ତି । ୨୨ ।

ହେ ଭରତପ୍ରବର ! ପୁତ୍ର ! ତୁମ୍ଭେ ଶୀଘ୍ର ଶ୍ରେୟୋଲାଭ କରିବ ବୋଲି ତୁମ୍ଭର ସଂଶୟଚ୍ଛେଦନ ନିମିତ୍ତ ଆମ୍ଭେ ତୁମ୍ଭ ନିକଟକୁ ଆସିଅଛୁଁ ବୋଲି ଜାଣ । ୨୩ ।

ହେ ମହୀପାଳ ! ପୂର୍ବେ ଲୋକମଧ୍ୟରେ କୌଣସି ମହର୍ଷିକର୍ତ୍ତୃକ ଯେଉଁ କର୍ମ ସମ୍ପାଦିତ ହୋଇନାହିଁ, ଆମ୍ଭେ ସେହି ତପସ୍ୟାର ଆଶ୍ଚର୍ଯ୍ୟ-ଭୂତ ଫଳ ତୁମ୍ଭଙ୍କୁ ଦର୍ଶନ କରାଇବୁଁ । ହେ ଅନଘ ! ତୁମ୍ଭେ ଆମ୍ଭନିକଟରୁ କେଉଁ ବସ୍ତୁ ଲାଭ କରିବାକୁ ଅଥବା କେଉଁ ବିଷୟ ଦର୍ଶନ, ଶ୍ରବଣ କିମ୍ବା ଜାଣିବାକୁ ଇଚ୍ଛା କରୁଅଛ କହ, ଆମ୍ଭେ ତାହା କରିବୁଁ । ୨୪ ।

---

## ଏକୋନତ୍ରିଂଶତ୍ତମ ଅଧ୍ୟାୟ

### ( ପୁତ୍ରଦର୍ଶନ ପର୍ବ )

ଜନମେଜୟ କହିଲେ—ହେ ବିପ୍ର ! ନୃପବର ମହୀପତି ଧୃତରାଷ୍ଟ୍ର ଭାର୍ଯ୍ୟା ଗାନ୍ଧାରୀ ଓ ବଧୂ କୁନ୍ତୀଙ୍କ ସହିତ ବନବାସକୁ ଗମନ କଲେ, ସିଦ୍ଧିପ୍ରାପ୍ତ ବିଦୁର ଧର୍ମରାଜଙ୍କ ଶରୀରରେ ପ୍ରବିଷ୍ଟ ହେଲେ ଏବଂ ପାଣ୍ଡୁପୁତ୍ରଗଣ ଆଶ୍ରମ ମଣ୍ଡଳରେ ବାସ କରୁଥିଲେ, ସେତେବେଳେ ଯେଉଁ ଆଶ୍ଚର୍ଯ୍ୟ ବ୍ୟାପାର ହୋଇଥିଲା ଓ ପରମ ତେଜସ୍ୱୀ ମହର୍ଷି ବ୍ୟାସ "ତୁମ୍ଭର ଇଷ୍ଟ ସାଧନ କରିବୁଁ" ଏହି ପ୍ରକାର ଯାହା କହିଥିଲେ, ତାହା ଆମ୍ଭ ନିକଟରେ ବିସ୍ତାର କରି କହିବା ହେଉନ୍ତୁ । ହେ ପ୍ରଭୋ ! ଅନଘ ! କୁରୁବଂଶସମ୍ଭୂତ ନରନାଥ ଯୁଧିଷ୍ଠିର ସେହି ବନମଧ୍ୟରେ କେତେ କାଳ ବାସ କରିଥିଲେ ଏବଂ ସେହି ମହାତ୍ମାଗଣ, ଅନ୍ତଃପୁର ଜନଗଣ ଓ ସୈନ୍ୟଗଣଙ୍କ ସମଭିବ୍ୟା-ହାରରେ ସେଠାରେ ବାସକରି କେଉଁ ଦ୍ରବ୍ୟ ଆହାର କରୁଥିଲେ, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୫ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ହେ ରାଜନ୍ ! ସେତେବେଳେ ପାଣ୍ଡବଗଣ କୁରୁରାଜ ଧୃତରାଷ୍ଟ୍ରଙ୍କଠାରୁ ଆଦିଷ୍ଟ ହୋଇ ବିଶ୍ରାମ କରି ନାନାବିଧ ଅନ୍ନ ଓ ପାନୀୟ ସବୁ ଭୋଜନ କଲେ । ୬ । ହେ ଅନଘ ! ସେମାନେ ସେହି ବନରେ ସୈନ୍ୟ ଓ ଅନ୍ତଃପୁରବର୍ଗ ସହିତ ଏକମାସ ବିହାର କରିଥିଲେ ।

ତଦନନ୍ତର ସେଠାକୁ ବ୍ୟାସ ଆଗମନ କରିଥିଲେ । ଆପଣଙ୍କ ନିକଟରେ ଆମ୍ଭେ ଏହା ପ୍ରକୃତ କହୁଅଛୁଁ । ୭ । ହେ ରାଜନ୍ ! ସେମାନେ ନୃପତିଙ୍କ ନିକଟରେ ବ୍ୟାସଙ୍କ ପଶ୍ଚାଦ୍‌ଭାଗରେ ଉପବେଶନ କରି କଥୋପକଥନ କରୁଥିଲେ । ତତ୍‌ସମୟରେ ନାରଦ, ପର୍ବତ, ମହାତପା ଦେବଲ, ବିଶ୍ୱାବସୁ, ତୁମ୍ବୁରୁ ଓ ଶତସେନ ପ୍ରଭୃତି ଅନ୍ୟାନ୍ୟ ମୁନିଗଣ ସେଠାକୁ ଆଗମନ କଲେ । ମହାତପା କୁରୁରାଜ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କ ଆଦେଶାନୁସାରେ ସେହି ସମାଗତ ଋଷିଗଣଙ୍କର ଯଥାବିଧି ପୂଜାକଲେ । ୧୦ ।

ତଦନନ୍ତର ସେମାନେ ଯୁଧିଷ୍ଠିରଙ୍କ ନିକଟରୁ ପୂଜା ପ୍ରାପ୍ତହୋଇ ଅତ୍ୟୁତ୍ତମ ପବିତ୍ର ମୟୂରାସନରେ ଉପବେଶନ କଲେ । ୧୧ । ହେ କୁରୁଶ୍ରେଷ୍ଠ ! ମୁନିଗଣ ସେଠାରେ ଉପବିଷ୍ଟ ହେବାରୁ ମହାମତି ରାଜା ଧୃତରାଷ୍ଟ୍ର ପାଣ୍ଡୁପୁତ୍ର-ଗଣରେ ପରିବୃତ ହୋଇ ଉପବେଶନ କଲେ । ୧୨ ।

ତଦନନ୍ତର ଗାନ୍ଧାରୀ, କୁନ୍ତୀ, ଦ୍ରୌପଦୀ, ସାତ୍ତ୍ୱତକୁଳସମ୍ଭୂତା ସୁଭଦ୍ରା ଏବଂ ଅନ୍ୟାନ୍ୟ ନାରୀଗଣ ଅପର ସ୍ତ୍ରୀଗଣଙ୍କ ସହିତ ସେଠାରେ ଉପବେଶନ କଲେ । ହେ ନୃପବର ! ସେତେବେଳେ ମହର୍ଷିଗଣଙ୍କର ଦେବତା, ଅସୁର ଓ ପୁରାତନ ମହର୍ଷି ବିଷୟକ ବିବିଧ ଦିବ୍ୟ ଧର୍ମକଥାର ଆନ୍ଦୋଳନ ହେଉଥିଲା ।

କିୟତ୍‌କାଳ ଉତ୍ତାରେ ସେମାନଙ୍କର କଥୋପକଥନ ସମାପ୍ତ ହେବାରୁ ବେଦଜ୍ଞପ୍ରବର ବାଗ୍ମିଶ୍ରେଷ୍ଠ ମହାତେଜା ଭଗବାନ୍ ବେଦବ୍ୟାସ ଅତ୍ୟନ୍ତ ପ୍ରୀତ ହୋଇ ପ୍ରଜ୍ଞାଚକ୍ଷୁ ନରେନ୍ଦ୍ର ଧୃତରାଷ୍ଟ୍ରଙ୍କୁ ପୁନଶ୍ଚ କହିଲେ— । ୧୫ ।

ହେ ରାଜେନ୍ଦ୍ର ! ତୁମ୍ଭେ ପୁତ୍ରବିୟୋଗଜନିତ ଶୋକଦ୍ୱାରା ଦଗ୍ଧ ହେବାରୁ ତୁମ୍ଭ ହୃଦୟରେ ଯେଉଁ ଭାବ ଉଦିତ ହୋଇଅଛି ଆମ୍ଭେ ତାହା ଜାଣିଅଛୁଁ । ହେ ମହାରାଜ ! ଗାନ୍ଧାରୀଙ୍କ ହୃଦୟରେ ନିରନ୍ତର ଯେଉଁ ଦୁଃଖ

Digitized by srujanika@gmail.com

ଅବସ୍ଥାନ କରିଅଛୁ, କୁନ୍ତୀ ଓ ଦ୍ରୌପଦୀଙ୍କ ହୃଦୟରେ ଯେଉଁ ଦୁଃଖ ସର୍ବଦା ରହିଅଛି ଏବଂ କୃଷ୍ଣଙ୍କ ଭଗିନୀ ସୁଭଦ୍ରା ପୁତ୍ରବିନାଶଜନିତ ଯେଉଁ ତୀବ୍ରତର ଦୁଃଖକୁ ମନୋମଧ୍ୟରେ ଧାରଣ କରିଅଛନ୍ତି, ତାହାସବୁ ଆମ୍ଭେ ବିଦିତ ହୋଇଅଛୁଁ ।

ହେ ନରନାଥ ! ଏହି ସ୍ଥାନରେ ତୁମ୍ଭ ସମସ୍ତଙ୍କର ସମାଗମ ହୋଇଅଛି ବୋଲି ଶ୍ରବଣ କରି ସଂଶୟଚ୍ଛେଦନ ନିମିତ୍ତ ଆମ୍ଭେ ଆସିଅଛୁଁ । ଏହି ଦେବ, ଗନ୍ଧର୍ବ ଓ ମହର୍ଷିବୃନ୍ଦ ଅଦ୍ୟ ଆମ୍ଭର ଚିରସଞ୍ଚିତ ତପସ୍ୟାର ପ୍ରଭାବ ଅବଲୋକନ କରନ୍ତୁ ।

ହେ ମହାରାଜ ! ତୁମ୍ଭର କେଉଁ କାମନା ଅଛି ତାହା ଆମ୍ଭଙ୍କୁ କହ । ଆମ୍ଭେ ତାହା ତୁମ୍ଭଙ୍କୁ ପ୍ରଦାନ କରିବୁଁ । ୨୧ । ଆମ୍ଭ ତପସ୍ୟାର ଫଳ ଦେଖ । ଆମ୍ଭେ ବରଦାନ କରିବାକୁ ପ୍ରସ୍ତୁତ ହୋଇଅଛୁଁ ।

ସେହି ନରେନ୍ଦ୍ର ଧୃତରାଷ୍ଟ୍ର ଅମିତବୁଦ୍ଧି ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ମୁହୂର୍ତ୍ତକ ସମୟ ଚିନ୍ତା କରି ନିଜ ଅଭିଳାଷ ପ୍ରକାଶ କରିବାକୁ ଆରମ୍ଭ କଲେ ।

ଧୃତରାଷ୍ଟ୍ର କହିଲେ—ଆମ୍ଭେ ଧନ୍ୟ ! କାରଣ, ଆପଣଙ୍କଦ୍ୱାରା ଅନୁଗୃହୀତ ହେଲୁଁ । ଅଦ୍ୟ ଆମ୍ଭର ଜୀବନ ସଫଳ ହେଲା । ୨୩ । କାରଣ, ଅଦ୍ୟ ସାଧୁଗଣ ଓ ଆପଣଙ୍କ ସହିତ ଆମ୍ଭର ସମାଗମ ହେଲା ।

ହେ ତପୋଧନଗଣ ! ଅଦ୍ୟ ବ୍ରହ୍ମକଳ୍ପ ଆପଣମାନଙ୍କ ସହିତ ଆମ୍ଭର ସମାଗମ ହେବାରୁ ଆମ୍ଭେ ଇହଲୋକରେ ନିଜର ଅଭିଳଷିତ ଗତି ଲାଭକଲୁଁ । ହେ ଅନଘଗଣ ! ଆପଣମାନଙ୍କ ଦର୍ଶନଦ୍ୱାରା ଆମ୍ଭେ ନିଶ୍ଚୟ ପବିତ୍ର ହେଲୁଁ । ପରଲୋକ ହେତୁ ଆଉ ଆମ୍ଭର ଭୟ ରହିଲା ନାହିଁ । କିନ୍ତୁ ଆମ୍ଭେ ପୁତ୍ରବତ୍ସଳ ବୋଲି ସେହି ଦୁର୍ବୁଦ୍ଧି ମୂଢ଼ ପୁତ୍ରଙ୍କର ଦୁର୍ନୀତିସମୂହ ସ୍ମରଣ କରି ଆମ୍ଭ ଅନ୍ତଃକରଣ ଅତିଶୟ ବ୍ୟଥିତ ହେଉଅଛି । ଯେଉଁ ପାପବୁଦ୍ଧି ଦୁର୍ଯ୍ୟୋଧନ-କର୍ତ୍ତୃକ ନିଷ୍ପାପ ପାଣ୍ଡୁପୁତ୍ରଗଣ ନିରାକୃତ ହେଲେ ଏବଂ ନର, ହସ୍ତୀ, ହସ୍ତି-ସମନ୍ୱିତା ଏହି ପୃଥିବୀ ଓ ନାନା ଜନପଦବାସୀ ମହାତ୍ମା ନରପାଳଗଣ ବିନାଶିତ ହେଲେ, ସେହି ମନ୍ଦଭାଗ୍ୟ ପୁତ୍ରଙ୍କ ନିମିତ୍ତ ଆମ୍ଭ ହୃଦୟ ବିଶୀର୍ଣ୍ଣ

Digitized by srujanika@gmail.com

ହେଉଅଛୁ । ୨୮ । ହେ ବ୍ରହ୍ମନ୍, ଯେଉଁମାନେ ଆମ୍ଭ ପୁତ୍ରଙ୍କ ନିମିତ୍ତ ମାତା, ପିତା, ପତ୍ନୀ, ପ୍ରାଣ ଓ ମନର ପ୍ରିୟତମ ପୁତ୍ରଗଣଙ୍କୁ ପରିତ୍ୟାଗ କରି ଯୁଦ୍ଧାର୍ଥେ ଆଗମନକରି ନିଶ୍ଚିତ ମୃତ୍ୟୁର ବଶୀଭୂତ ହୋଇ ପ୍ରେତରାଜଙ୍କ ଗୃହକୁ ଗମନ କରିଅଛନ୍ତି, ସେମାନଙ୍କର କେଉଁ ଗତି ହେଲା ? ୩୦ ।

ଆମ୍ଭର ପୁତ୍ର ଓ ପୌତ୍ରଗଣଙ୍କ ମଧ୍ୟରେ ଯେଉଁମାନେ ମହାବଳ ଶାନ୍ତନୁତନୟ ବୃଦ୍ଧ ଭୀଷ୍ମ ଓ ଦ୍ୱିଜସତ୍ତମ ଦ୍ରୋଣଙ୍କୁ ସମରରେ ସଂହାର କରି ନିହତ ହୋଇଅଛନ୍ତି, ସେହିମାନଙ୍କ ନିମିତ୍ତ ଆମ୍ଭ ଚିତ୍ତ ଅତୀବ ସନ୍ତପ୍ତ ହେଉଅଛୁ । ପୃଥିବୀ-ରାଜ୍ୟାଭିଳାଷୀ ସୁହୃଦ୍‌ଦ୍ୱେଷୀ ପାପାତ୍ମା ମୂଢ଼ ସେହି ପୁତ୍ରଗଣକର୍ତ୍ତୃକ ଏହି ପ୍ରଧାନ କୁଳ କ୍ଷୟ ହେଲା । ଅହୋରାତ୍ର ଏହି ସମସ୍ତ ସ୍ମରଣ କରି ଦୁଃଖ ଓ ଶୋକରେ ସମାହତ ଓ ଦଗ୍ଧ ହୋଇ ଆମ୍ଭେ ଶାନ୍ତିଲାଭ କରିପାରୁନାହୁଁ । ହେ ପିତ ! ଏହା ସର୍ବଦା ଆମ୍ଭର ସ୍ମୃତିପଥାରୂଢ଼ ହେବାରୁ କିଛିମାତ୍ର ଶାନ୍ତି ହେଉନାହିଁ । ୩୪ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ସେହି ରାଜର୍ଷି ଧୃତରାଷ୍ଟ୍ରଙ୍କର ତାଦୃଶ ବିବିଧ ବିଳାପବାକ୍ୟ ଶ୍ରବଣଦ୍ୱାରା ଗାନ୍ଧାରୀ, କୁନ୍ତୀ, ଦ୍ରୁପଦରାଜଦୁହିତା ଦ୍ରୌପଦୀ, ସୁଭଦ୍ରା ଏବଂ ଅନ୍ୟାନ୍ୟ ବରନାରୀ ଓ ବଧୂଗଣଙ୍କର ଶୋକ ପୁନର୍ବାର ନବୀକୃତ ହେଲା । ପରନ୍ତୁ ପୁତ୍ରଶୋକ-ସମାବିଷ୍ଟା ବଦ୍ଧନୟନା ଗାନ୍ଧାରୀ ଉତ୍ଥିତା ହୋଇ କୃତାଞ୍ଜଳିପୂର୍ବରେ ଶ୍ୱଶୁର ବ୍ୟାସଙ୍କୁ କହିଲେ—ହେ ମୁନିବର ! ଆଜକୁ ଷୋଡ଼ଶ ବର୍ଷ ଗତ ହେଲା ନିହତ ପୁତ୍ରଗଣଙ୍କ ଶୋକରେ ଏହି ନରପତିଙ୍କର କିଂଚିନ୍ମାତ୍ର ଶାନ୍ତି ହେଉନାହିଁ । ୩୮ । ହେ ବିଭୋ ! ପୁତ୍ରଶୋକସମାବିଷ୍ଟ ଏହି ଭୂପତି ଧୃତରାଷ୍ଟ୍ର ନିରନ୍ତର ଦୀର୍ଘନିଶ୍ୱାସ ପରିତ୍ୟାଗ କରି ସମସ୍ତ ରଜନୀ ଯାପନ କରନ୍ତି, କ୍ଷଣମାତ୍ର ଶୟନ କରନ୍ତି ନାହିଁ ।

ହେ ମହାମୁନେ ! ଆପଣ ତପୋବଳରେ ଅନ୍ୟାନ୍ୟ ଲୋକସମୂହ ନିର୍ମାଣ କରିବାକୁ ସମର୍ଥ ଅଟନ୍ତି । ପରନ୍ତୁ ଏହି ରାଜାଙ୍କର ଲୋକାନ୍ତରଗତ ପୁତ୍ରଗଣଙ୍କୁ କି ଦର୍ଶନ କରାଇ ପାରିବେ ? ୪୦ । ପୁତ୍ରବଧୂମାନଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରିୟତମା ଜ୍ଞାତି-ପୁତ୍ର-ବିହୀନା ଏହି କୃଷ୍ଣା ଦ୍ରୌପଦୀ ଅତିଶୟ ଶୋକ କରୁଅଛନ୍ତି । ୪୧ । କୃଷ୍ଣଙ୍କ ଭଗିନୀ ଭଦ୍ରଭାଷିଣୀ ଭାବିନୀ ଏହି ସୁଭଦ୍ରା

Digitized by srujanika@gmail.com

ଅଭିମନ୍ୟୁଙ୍କ ବଧରେ ଅତୀବ ସନ୍ତପ୍ତା ହୋଇ ସନ୍ତପରୋନାସ୍ତି ଶୋକାର୍ତ୍ତା ହୋଇଅଛନ୍ତି । ୪୨ । ଏହି ଯଶସ୍ୱିନୀ ଭୂରିଶ୍ରବାଙ୍କ ଭାର୍ଯ୍ୟା ଭର୍ତ୍ତାଙ୍କ ବ୍ୟସନରେ ଶୋକାର୍ତ୍ତା ହୋଇ ଅତ୍ୟନ୍ତ ଶୋକ କରୁଅଛନ୍ତି । ୪୩ । ଧୀମାନ୍ ବାହ୍ଲୀକ ଯାହାଙ୍କ ଶ୍ୱଶୁର, ସେହି କୁରୁକୁଳୋଦ୍‌ଭବ ସୋମଦତ୍ତ ପିତାଙ୍କ ସହିତ ମହାସମରରେ ନିହତ ହୋଇଅଛନ୍ତି । ୪୪ ।

ହେ ମହାମୁନେ ! ସଂଗ୍ରାମରେ ଅପରାଙ୍ମୁଖ ମହାବୁଦ୍ଧି ଶ୍ରୀମାନ୍ ଏହି ଭବଦୀୟ ପୁତ୍ରଙ୍କର ରଣମଧ୍ୟରେ ଯେଉଁ ଶତପୁତ୍ର ନିହତ ହୋଇଅଛନ୍ତି, ସେହିମାନଙ୍କର ଶତସଂଖ୍ୟକ ଭାର୍ଯ୍ୟାମାନେ ଦୁଃଖ ଓ ଶୋକରେ ସମାହତ ହୋଇ ବାରମ୍ବାର ଆମ୍ଭର ଓ ରାଜାଙ୍କର ଶୋକବର୍ଦ୍ଧନ କରୁଅଛନ୍ତି ଏବଂ ସେମାନେ ସେହି ଶୋକାର୍ତ୍ତ ଚିତ୍ତରେ ଆମ୍ଭର ସେବା କରୁଅଛନ୍ତି । ହେ ପ୍ରଭୋ ! ସୋମଦତ୍ତ ପ୍ରଭୃତି ଯେଉଁ ସମସ୍ତ ମହାରଥ ମହାତ୍ମା ଶୂରବର ଆମ୍ଭ ଶ୍ୱଶୁରମାନେ ବିନଷ୍ଟ ହୋଇଅଛନ୍ତି, ସେମାନଙ୍କର କେଉଁ ଲୋକକୁ ଗତି ହେଲା ? ହେ ଭଗବନ୍ ! ଏହି ମହୀପତି ଏବଂ ଆପଣଙ୍କ ବଧୂ କୁନ୍ତୀ ଓ ଆମ୍ଭେ ଆପଣଙ୍କ ପ୍ରସାଦରେ ଯେଉଁ ଉପାୟରେ ଶୋକବିହୀନ ହେବୁଁ, ଆପଣ ତାହା କରନ୍ତୁ । ଗାନ୍ଧାରୀ ଏତାଦୃଶ ବାକ୍ୟ କହିବାରୁ ନିୟମ ଓ ବ୍ରତାଦିଦ୍ୱାରା କୃଶବଦନା କୁନ୍ତୀ ଆଦିତ୍ୟସଦୃଶ ପ୍ରଚ୍ଛନ୍ନଜାତ ସେହି ପୁତ୍ରଙ୍କୁ ସ୍ମରଣ କଲେ ।

ଦୂରଶ୍ରବଣଦର୍ଶୀ ଋଷିବର ବରଦାତା ବ୍ୟାସ ସବ୍ୟସାଚୀ-ପ୍ରସୂତି ଦୁଃଖିତା ସେହି କୁନ୍ତୀଦେବୀଙ୍କ ପ୍ରତି ଦୃଷ୍ଟିପାତ କଲେ ।

ତଦନନ୍ତର ବ୍ୟାସ ତାହାଙ୍କୁ କହିଲେ—ହେ ମହାଭାଗେ ! ତୁମ୍ଭର ମନମଧ୍ୟରେ ଯାହା ଉପସ୍ଥିତ ହୋଇଅଛି ତାହା ତୁମ୍ଭେ ଆମ୍ଭଙ୍କୁ କହ ।

ତଦନନ୍ତର କୁନ୍ତୀ ଶ୍ୱଶୁରଙ୍କୁ ଅବନତ ମସ୍ତକରେ ପ୍ରଣାମ କରି ସଲଜ୍ଜଭାବରେ ପୁରାତନ ବୃତ୍ତାନ୍ତ ବିସ୍ତାରପୂର୍ବକ କହିଲେ । ୫୨ ।

---

Digitized by srujanika@gmail.com

# ତ୍ରିଂଶତ୍ତମ ଅଧ୍ୟାୟ

କୁନ୍ତୀ କହିଲେ—ହେ ଭଗବନ୍ ! ଆପଣ ଶ୍ୱଶୁର, ଦେବତାମାନଙ୍କର ଦେବତା, ଆପଣ ଆମ୍ଭର ଦେବାତିଦେବ ଅଟନ୍ତି । ଅତଏବ ଆମ୍ଭେ ଆପଣଙ୍କ ନିକଟରେ ସତ୍ୟକଥା କହୁଅଛୁଁ, ଆପଣ ଶ୍ରବଣ କରିବା ହେଉନ୍ତୁ । ୧ ।

ଏକଦା କୋପାନ୍ୱିତସ୍ୱଭାବ ପରମତପସ୍ୱୀ ଦ୍ୱିଜବର ଦୁର୍ବାସା ଭିକ୍ଷାଭୋଜନ ନିମିତ୍ତ ଆମ୍ଭ ପିତାଙ୍କ ନିକଟରେ ପ୍ରବିଷ୍ଟ ହେଲେ । ଆମ୍ଭେ ତାହାଙ୍କୁ ଶୁଶ୍ରୂଷାଦ୍ୱାରା ସନ୍ତୁଷ୍ଟ କରାଇଲୁଁ । ୨ । ଯାହାଦ୍ୱାରା ଆମ୍ଭର କୋପ ଜାତ ହେବାର ସମ୍ଭାବନା ତେତେବେଳେ ସେ ତାଦୃଶ ଅନେକ କାର୍ଯ୍ୟ କରିଥିଲେ । କିନ୍ତୁ ଆମ୍ଭେ ସ୍ୱୟଂ ବିଶୁଦ୍ଧ ଚିତ୍ତ ପ୍ରଭାବରେ କଦାପି ରୋଷାବିଷ୍ଟ ହେଲୁନାହିଁ । ତେତେବେଳେ ସେହି ବରଦାତା ମୁନି ଆମ୍ଭଠାରେ ପ୍ରସନ୍ନ ଓ କୃତକୃତ୍ୟ ହୋଇ ଆମ୍ଭଙ୍କୁ ବର ଗ୍ରହଣ କରିବା ନିମିତ୍ତ ବାରଂବାର ଅନୁରୋଧ କଲେ । ତୁମ୍ଭ ବାକ୍ୟ ଅବଶ୍ୟ ସ୍ୱୀକରଣୀୟ, ଏହି କଥା କହିଲେ ।

ତଦନନ୍ତର ଆମ୍ଭେ ଶାପଭୟରେ ସେହି ବିପ୍ରଙ୍କୁ ପୁନଶ୍ଚ ବିନୟ-ବାକ୍ୟରେ ବର ପ୍ରାର୍ଥନା କଲରୁ ସେ 'ତାହା ହେଉ', ଏହି କଥା କହି ପୁନଶ୍ଚ ଆମ୍ଭଙ୍କୁ କହିଲେ—ହେ ଭଦ୍ରେ ! ଶୁଭାନନେ ! ତୁମ୍ଭେ ଧର୍ମଦେବଙ୍କର ଜନନୀ ହେବ ଏବଂ ତୁମ୍ଭେ ଯେଉଁ ଦେବଗଣଙ୍କୁ ଆହ୍ୱାନ କରିବ, ସେମାନେ ତୁମ୍ଭର ବଶବର୍ତ୍ତୀ ହେବେ । ୬ । ବିପ୍ରବର ଏହି କଥା କହି ଅନ୍ତର୍ହିତ ହେଲେ ।

ଆମ୍ଭେ ଅତ୍ୟନ୍ତ ବିସ୍ମିତା ହେଲୁଁ । ଆମ୍ଭର ସ୍ମରଣଶକ୍ତି ସବୁ ଅବସ୍ଥାରେ ସମାନ ଭାବରେ ଥାଏ । କଦାପି ବିନଷ୍ଟ ହୁଏ ନାହିଁ । ୭ । କିଛିଦିନ ଉତ୍ତାରେ ଆମ୍ଭେ ହର୍ମ୍ୟତଳରେ ଅବସ୍ଥାନ କରି ସମୁଦିତ ପ୍ରଭାକରଙ୍କୁ ନିରୀକ୍ଷଣ କରି ଋଷିବରଙ୍କ ବାକ୍ୟ ସ୍ମରଣ ପୂର୍ବକ ଦିବାକରଙ୍କୁ ଅଭିଳାଷ କଲୁଁ । ତେତେବେଳେ ବାଲସ୍ୱଭାବବଶତଃ ତଦ୍‌ବିଷୟରେ ଦୋଷକୁ ବିବେଚନା କରିପାରିଲୁ ନାହିଁ ।

ତଦନନ୍ତର ସହସ୍ରାଂଶୁ ସୂର୍ଯ୍ୟଦେବ ନିଜ ଦେହକୁ ଦୁଇ ଅଂଶରେ ବିଭାଗ କରି ଗଗନ ଓ ଭୂମଣ୍ଡଳରେ ସଂସ୍ଥାପନ କରି ଆମ୍ଭ ନିକଟରେ ଉପନୀତ

Digitized by srujanika@gmail.com

ହେଲେ । ସେ ଏକ ଅଂଶରେ ଲୋକସମୂହକୁ ତାପ ପ୍ରଦାନ କରି ଦ୍ୱିତୀୟାଂଶରେ ଆମ୍ଭ ନିକଟକୁ ଆଗମନ କଲେ । ଆମ୍ଭେ କମ୍ପିତ ହେବାର ଦେଖି 'ବର ଗ୍ରହଣକର', ଏହି ପ୍ରକାର କହିଲେ । ଆମ୍ଭେ ଅବନତ ମସ୍ତକରେ ତାହାଙ୍କୁ ପ୍ରଣାମ କରି କହିଲୁଁ—ଆପଣ ଆମ୍ଭ ନିକଟରୁ ଗମନ କରିବା ହେଉନ୍ତୁ । ୧୧ । ସେହି ଶୀତାଂଶୁ ତାହା ନ ଶୁଣି ଆମ୍ଭଙ୍କୁ କହିଲେ—ତୁମ୍ଭେ ଆମ୍ଭଙ୍କୁ ଯେଉଁ ନିମିତ୍ତ ଆହ୍ୱାନ କରିଅଛ, ତାହା ବୃଥା ହେବ ନାହିଁ । ଆମ୍ଭେ ପ୍ରତ୍ୟାଖ୍ୟାତ ହେଲେ, ଯେ ତୁମ୍ଭଙ୍କୁ ବରପ୍ରଦାନ କରିଅଛନ୍ତି ସେହି ବିପ୍ରଙ୍କୁ ଓ ତୁମ୍ଭଙ୍କୁ ଆମ୍ଭେ ଦଗ୍ଧ କରିବୁଁ । ୧୨ ।

ଆମ୍ଭେ ଆଦିତ୍ୟଙ୍କର ଏହି ବାକ୍ୟ ଶୁଣି ସେହି ଉପକାରକ ବିପ୍ରଙ୍କୁ ଶାପରୁ ରକ୍ଷାକରି କହିଲୁଁ—ହେ ଦେବ ! ଆପଣଙ୍କ ସଦୃଶ ଆମ୍ଭର ପୁତ୍ର ହେବ, ଆପଣ ଆମ୍ଭଙ୍କୁ ଏହି ବର ପ୍ରଦାନ କରିବା ହେଉନ୍ତୁ । ୧୩ ।

ତଦନନ୍ତର ଭାନୁମାନ୍ ନିଜ ତେଜଦ୍ୱାରା ଆମ୍ଭଠାରେ ପ୍ରବେଶ କରି ଆମ୍ଭଙ୍କୁ ମୋହିତା କରାଇ କହିଲେ ଯେ, ତୁମ୍ଭର ମତ୍‌ସଦୃଶ ପୁତ୍ର ହେବ । ଏହି କଥା କହି ସେ ସ୍ୱର୍ଗକୁ ଗମନ କଲେ । ୧୪ ।

ତଦନନ୍ତର ଆମ୍ଭେ ଏହି ବୃତ୍ତାନ୍ତ ଗୋପନ କରି ପିତାଙ୍କ ଅଜ୍ଞାତରେ ଅନ୍ତଃପୁରକୁ ଗମନ କରି ଗୂଢ଼ୋତ୍ପନ୍ନ ବାଳକ କର୍ଣ୍ଣଙ୍କୁ ଜଳରେ ପରିତ୍ୟାଗ କଲୁଁ । ୧୫ । ହେ ବିପ୍ର ! ସେହି ଋଷି ଯେଉଁ ପ୍ରକାର କହିଥିଲେ ଆମ୍ଭେ ସେହି ଦେବଙ୍କ ପ୍ରସାଦରେ ନିଶ୍ଚୟ ପୁନଶ୍ଚ କନ୍ୟା ହେଲୁଁ । ୧୬ । ହେ ବିପ୍ରର୍ଷେ ! ଆମ୍ଭେ ମୂଢ଼ା ହୋଇ ଜ୍ଞାନପୂର୍ବକ ଯାହା ସେହି ପୁତ୍ରଙ୍କୁ ଉପେକ୍ଷା କରିଥିଲୁଁ, ତାହା ଅଦ୍ୟ ଆମ୍ଭଙ୍କୁ ଦଗ୍ଧ କରୁଅଛି । ଆମ୍ଭେ ଏହି ବିଷୟ ଆପଣଙ୍କ ନିକଟରେ ଯଥାର୍ଥରୂପେ କହିଲୁଁ ।

ହେ ଭଗବନ୍ ! ଏହା ପାପ ହେଉ ଅଥବା ପୁଣ୍ୟ ହେଉ ଆମ୍ଭେ ଆପଣଙ୍କ ନିକଟରେ ବିସ୍ତାର କରି କହିଲୁଁ । ପରନ୍ତୁ ସେହି ପୁତ୍ରଙ୍କୁ ଦର୍ଶନ କରିବା ନିମିତ୍ତ ଆମ୍ଭର ଯେଉଁ ଇଚ୍ଛା ହେଉଅଛି, ଆପଣ ଅନୁଗ୍ରହ କରି ତାହା ପୂରଣ କରନ୍ତୁ । ୧୮ ।

Digitized by srujanika@gmail.com

ହେ ଅନଘ ! ମୁନିସତ୍ତମ ! ଏହି ରାଜାଙ୍କର ଯେଉଁ ହୃଦ୍‌ଗତ ଭାବ ଅଛି ତାହା ଆପଣଙ୍କର ବିଦିତ ଅଟେ । ଏ ଯାହା କାମନା କରିଅଛନ୍ତି ତାହା ଅଦ୍ୟ ପ୍ରାପ୍ତ ହେଉନ୍ତୁ, ଏହା ଆମ୍ଭମାନଙ୍କର ବାସନା । ୧୯ ।

ବେଦଜ୍ଞପ୍ରବର ବ୍ୟାସ କୁନ୍ତୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଏହି କଥା କହିଲେ ଯେ, ତୁମ୍ଭେ ଆମ୍ଭଙ୍କୁ ଯାହା କହିଲ ତାହା ସତ୍ୟ ଅଟେ । ତାହାସବୁ ସୁନ୍ଦରରୂପେ ସମ୍ପନ୍ନ ହେବ । ୨୦ ।

ତୁମ୍ଭେ କନ୍ୟାବସ୍ଥାରେ ସୂର୍ଯ୍ୟଙ୍କୁ ଆହ୍ୱାନ କରିଥିଲ ବୋଲି ତୁମ୍ଭର ଏହି ବିଷୟରେ କିଂଚିନ୍ମାତ୍ର ପାପ ହୋଇନାହିଁ । ଦେବତାମାନେ ଅଣିମାଦି ଐଶ୍ୱର୍ଯ୍ୟସମ୍ପନ୍ନ ଅଟନ୍ତି । ସେମାନେ ସଙ୍କଳ୍ପ, ବାକ୍ୟ, ଦୃଷ୍ଟି, ସ୍ପର୍ଶ ଓ ପ୍ରୀତି ଉତ୍ପାଦନ ଏହି ପାଞ୍ଚ ପ୍ରକାରରେ ପୁତ୍ରଉତ୍ପାଦନ କରି ପାରନ୍ତି । ହେ କୁନ୍ତି ! ତୁମ୍ଭେ ମାନୁଷୀ ! ଅତଏବ ଦେବ ସମ୍ପର୍କରେ ପୁତ୍ର ଉତ୍ପାଦନ କରିବାରେ ତୁମ୍ଭର କୌଣସି ଅପରାଧ ନାହିଁ । ଆମ୍ଭେ କହୁଅଛୁଁ, ତୁମ୍ଭର ମାନସିକ ବ୍ୟଥାସବୁ ଦୂରୀଭୂତ ହେଉ । ୨୩ । ବଳବାନ୍ ବ୍ୟକ୍ତିମାନଙ୍କ ପକ୍ଷରେ ସମସ୍ତ ଦ୍ରବ୍ୟ ପଥ୍ୟ, ସମୁଦାୟ ବସ୍ତୁ ପବିତ୍ର, ସମୁଦାୟ କାର୍ଯ୍ୟ ଧର୍ମ୍ୟ ଏବଂ ସମୁଦାୟ ଦ୍ରବ୍ୟ ସ୍ୱକୀୟ ଅଟେ । ୨୪ ।

---

## ଏକତ୍ରିଂଶତ୍ତମ ଅଧ୍ୟାୟ

ବ୍ୟାସ କହିଲେ—ହେ ଭଦ୍ରେ ! ଗାନ୍ଧାରି ! ତୁମ୍ଭେ ରଜନୀରେ ସୁପ୍ତୋତ୍ଥିତ ବ୍ୟକ୍ତିମାନଙ୍କ ସଦୃଶ ସେହି ପୁତ୍ର, ଭ୍ରାତା, ସଖା ଓ ପିତୃବର୍ଗଙ୍କ ସହିତ ବନ୍ଧୁଗଣଙ୍କୁ ଦେଖିପାରିବ । ୧ । କୁନ୍ତୀ କର୍ଣ୍ଣଙ୍କୁ, ଯଦୁକୁଳସମ୍ଭୂତା ସୁଭଦ୍ରା ଅଭିମନ୍ୟୁଙ୍କୁ ଏବଂ ଦ୍ରୌପଦୀ ପଞ୍ଚପୁତ୍ର, ପିତା ଓ ଭ୍ରାତୃଗଣଙ୍କୁ ଦେଖି ପାରିବେ । ୨ । ରାଜା, ତୁମ୍ଭେ ଓ ପୃଥା ଆମ୍ଭଙ୍କୁ ଯାହା କହିଲେ, ସେ କହିବା ବିଷୟ ପୂର୍ବେ ଆମ୍ଭ ଅନ୍ତଃକରଣରେ ଉଦିତ ହୋଇଥିଲା । ୩ ।

ସେହି ମହାତ୍ମା ନରବରଗଣ ସମସ୍ତେ କ୍ଷତ୍ରଧର୍ମପରାୟଣ ହୋଇ ସମରରେ ନିଧନପ୍ରାପ୍ତ ହୋଇଥିବାରୁ ଶୋଚନୀୟ ନୁହନ୍ତି । ୪ ।

Digitized by srujanika@gmail.com

ହେ ଅନନ୍ଦିତେ ! ସେହି ସୁରକାର୍ଯ୍ୟ ଅବଶ୍ୟମ୍ଭାବୀ ବୋଲି ସେମାନେ ସମସ୍ତେ ଦେବଅଂଶ ଗ୍ରହଣ ପୂର୍ବକ ମହୀତଳରେ ଅବତୀର୍ଣ୍ଣ ହୋଇଥିଲେ । ୫ । ସେହି ମନୁଷ୍ୟରୂପୀ ଗନ୍ଧର୍ବ, ଅପ୍‌ସରା, ପିଶାଚ, ଗୁହ୍ୟ, ରାକ୍ଷସ, ପୁଣ୍ୟଜନ, ସିଦ୍ଧ, ଦେବର୍ଷି, ଦେବ, ଦାନବ ଓ ନିର୍ମଳ ଦେବର୍ଷିସମୂହ ସେହି କୁରୁକ୍ଷେତ୍ରର ସମରରେ ନିହତ ହୋଇଅଛନ୍ତି । ୭ ।

ଏହି ଯେଉଁ ଧୀମାନ୍ ଧୃତରାଷ୍ଟ୍ର, ଏ ପୂର୍ବେ ଗନ୍ଧର୍ବରାଜ ଥିଲେ । ସେହି ଗନ୍ଧର୍ବରାଜ ମନୁଷ୍ୟଲୋକରେ ଧୃତରାଷ୍ଟ୍ରରୂପେ ଜନ୍ମଗ୍ରହଣ କରି ତୁମ୍ଭର ପତି ହୋଇଅଛନ୍ତି । ୮ । ବଶିଷ୍ଟତମ ଅଚ୍ୟୁତ ପାଣ୍ଡୁ ମରୁଦ୍‌ଗଣଙ୍କଠାରୁ ଉତ୍ପନ୍ନ ହୋଇଥିଲେ ଏବଂ କ୍ଷତ୍ତା ବିଦୁର ଓ ରାଜା ଯୁଧିଷ୍ଠିର ଧର୍ମଙ୍କ ଅଂଶରେ ଉତ୍ପନ୍ନ ହୋଇଅଛନ୍ତି । ୯ । ହେ ଶୁଭଦର୍ଶନେ ! ଦୁର୍ଯ୍ୟୋଧନ କଳି, ଶକୁନି ଦ୍ୱାପର ଓ ଦୁଃଶାସନ ପ୍ରଭୃତିଙ୍କୁ ରାକ୍ଷସ ବୋଲି ଜାଣ । ୧୦ ।

ବଳବାନ୍ ଅରିନ୍ଦମ ଭୀମସେନ ମରୁଦ୍‌ଗଣ, ପୃଥାପୁତ୍ର ଧନଞ୍ଜୟ ନର, ହୃଷୀକେଶ ନାରାୟଣ ଏବଂ ନକୁଳ-ସହଦେବଙ୍କୁ ଅଶ୍ୱିନୀକୁମାରଦ୍ୱୟ ରୂପେ ଜ୍ଞାନକର । ହେ ଶୋଭନେ ! କର୍ଣ୍ଣଙ୍କୁ ସନ୍ତାପଦାତୃପ୍ରବର ଦ୍ୱିଧାକୃତବିଗ୍ରହ ଲୋକତାପନ ସୂର୍ଯ୍ୟ ବୋଲି ଜାଣ । ପାର୍ଥସମ୍ଭୂତ ସମସ୍ତଙ୍କର ହର୍ଷଜନକ ଯେଉଁ ପାଣ୍ଡବଦାୟାଦ ଛଅଜଣ ମହାରଥକର୍ତ୍ତୃକ ନିହତ ହୋଇଅଛନ୍ତି, ସେହି ସୁଭଦ୍ରାତନୟ ଅଭିମନ୍ୟୁଙ୍କୁ ଯୋଗବଳରେ ଦ୍ୱିଧାକୃତ କଳେବର ସୋମଦେବ ବୋଲି ଜ୍ଞାନକର । ପାବକଙ୍କଠାରୁ ଦ୍ରୌପଦୀ ସହ ସମୁତ୍‌ଥିତ ଧୃଷ୍ଟଦ୍ୟୁମ୍ନଙ୍କୁ ଅଗ୍ନିଙ୍କ ଅଂଶ ଏବଂ ଶିଖଣ୍ଡିଙ୍କୁ ରାକ୍ଷସ ବୋଲି ଜାଣ । ଏବଂ ଦ୍ରୋଣ ବୃହସ୍ପତିଙ୍କ ଅଂଶ, ଦ୍ରୋଣପୁତ୍ର ଅଶ୍ୱତ୍ଥାମା ରୁଦ୍ରଙ୍କ ଅଂଶ ଏବଂ ଗଙ୍ଗାତନୟ ଭୀଷ୍ମଙ୍କୁ ମନୁଷ୍ୟରୂପୀ ବସୁ ବୋଲି ଜ୍ଞାନକର । ୧୬ ।

ହେ ମହାପ୍ରାଜ୍ଞେ ! ଶୋଭନେ ! ଏହି ଦେବଗଣ ଏହିରୂପେ ମନୁଷ୍ୟତ୍ୱ ପ୍ରାପ୍ତ ହୋଇ ନିଜ ନିଜ କାର୍ଯ୍ୟ ସମ୍ପାଦନ କରି ପୁନଶ୍ଚ ସୁରପୁରକୁ ଗମନ କରିଅଛନ୍ତି । ସମସ୍ତଙ୍କ ହୃଦୟରେ ଯେଉଁ ଦୁଃଖ ଚିରକାଳରୁ ରହିଅଛି, ତାହା ଅଦ୍ୟ ପରଲୋକକୃତ ଭୟଠାରୁ ଦୂରୀକୃତ କରିବୁଁ । ୧୮ ।

ତୁମ୍ଭେମାନେ ସମସ୍ତେ ଭାଗୀରଥୀ ନଦୀକୁ ଗମନ କର, ଯେଉଁମାନେ ଏହି ରଣାଙ୍ଗଣରେ ନିହତ ହୋଇଅଛନ୍ତି, ସେମାନଙ୍କୁ ସେଠାରେ ଦେଖିବ । ୧୯ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ତେତେବେଳେ ଜନଗଣ ବ୍ୟାସଙ୍କ ଏହି ପ୍ରକାର ବାକ୍ୟ ଶ୍ରବଣ କରି ସିଂହନାଦ କରି ଗଙ୍ଗାଭିମୁଖରେ ଗମନ କଲେ । ୨୦ । ଧୃତରାଷ୍ଟ୍ର ଅମାତ୍ୟ, ସମାଗତ ଗନ୍ଧର୍ବ, ମୁନି ଓ ପାଣ୍ଡବଗଣଙ୍କ ସମଭିବ୍ୟାହାରରେ ଗମନ କଲେ । ୨୧ ।

ତଦନନ୍ତର ଜନଗଣ କ୍ରମଶଃ ଗଙ୍ଗାତୀରକୁ ଗମନ କରି ପ୍ରୀତିଅନୁସାରେ ସେଠାରେ ଯଥାସୁଖରେ ଅବସ୍ଥାନ କଲେ । ୨୨ । ବୃଦ୍ଧ ରାଜା ଧୀମାନ୍ ଧୃତରାଷ୍ଟ୍ର ସ୍ତ୍ରୀ, ପାଣ୍ଡବ ଓ ଅନୁଚରବର୍ଗଙ୍କ ସହିତ ସେଠାକୁ ଗମନ ପୂର୍ବକ ଅଭିଲଷିତ ପ୍ରଦେଶରେ ଅବସ୍ଥାନ କଲେ । ୨୩ । ସେମାନେ ମୃତ ନୃପତିମାନଙ୍କ ଦର୍ଶନ ବାସନାରେ ରଜନୀର ସମାଗମ ପ୍ରତୀକ୍ଷା କରୁଥିଲେ । ସେହି ଦିବସ ଗୋଟିକ ସେମାନଙ୍କର ଶତବର୍ଷ ପରି ବୋଧ ହେଲା । ୨୪ ।

ତଦନନ୍ତର ଦିବାକର ପବିତ୍ର ଅସ୍ତମସ୍ତ ଗିରିବରକୁ ଗମନ କଲାରୁ ସେମାନେ ସମସ୍ତେ ଅଭିଷେକ କାର୍ଯ୍ୟ ସମାଧାନ କରି ରଜନୀର କର୍ମ କଲେ । ୨୫ ।

---

## ଦ୍ୱାତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ନିଶାକାଳ ଉପସ୍ଥିତ ହେବାରୁ ସେମାନେ ସମସ୍ତେ ସାୟାହ୍ନିକ କ୍ରିୟା ସମାପନ କରି ବ୍ୟାସଙ୍କ ନିକଟକୁ ଗମନ କଲେ । ୧ । ତେତେବେଳେ ଧର୍ମାତ୍ମା ଧୃତରାଷ୍ଟ୍ର ପବିତ୍ର ଓ ଏକାଗ୍ର-ଚିତ୍ତରେ ପାଣ୍ଡବ ଓ ଋଷିଗଣଙ୍କ ସହିତ ଉପବେଶନ କଲେ । ୨ ।

ଗାନ୍ଧାରୀଙ୍କ ସହିତ ସମସ୍ତ ନାରୀ, ପୌର ଓ ଜନପଦବାସିଗଣ ବୟଃ-କ୍ରମାନୁସାରେ କ୍ରମଶଃ ଉପବେଶନ କଲେ । ୩ ।

ତଦନନ୍ତର ମହାତେଜା ମହାମୁନି ବ୍ୟାସ ଭାଗୀରଥୀର ପବିତ୍ର ସଲିଳରେ ଅବଗାହନ କରି ମୃତ କୁରୁପାଣ୍ଡବ ସେନା ଓ ନାନାଦେଶନିବାସୀ ମହାଭାଗ ନରପତିଗଣଙ୍କୁ ଆହ୍ୱାନ କଲେ । ୪ ।

Digitized by srujanika@gmail.com

ହେ ଜନମେଜୟ ! ତଦନନ୍ତର ଜଳମଧ୍ୟରେ କୁରୁପାଣ୍ଡବସେନା-ଗଣଙ୍କର ପୂର୍ବବତ୍ ତୁମୁଳ ଶବ୍ଦ ଉତ୍ଥିତ ହେଲା । ୬ ।

ତଦନନ୍ତର ସେହି ପାର୍ଥିବଗଣ ଭୀଷ୍ମ ଓ ଦ୍ରୋଣ ପ୍ରମୁଖଙ୍କୁ ଅଗ୍ରଗାମୀ କରାଇ ସହସ୍ର ସହସ୍ର ସୈନ୍ୟମାନଙ୍କ ସମଭିବ୍ୟାହାରରେ ସେହି ସଳିଳରୁ ଉତ୍ଥିତ ହେଲେ । ୭ । ସେନା ଏବଂ ପୁତ୍ରଗଣଙ୍କ ସହିତ ବିରାଟ ଓ ଦ୍ରୁପଦ, ଦ୍ରୌପଦୀଙ୍କ ପୁତ୍ରଗଣ, ସୁଭଦ୍ରାନନ୍ଦନ ଅଭିମନ୍ୟୁ, ରାକ୍ଷସ ଘଟୋତ୍କଚ, କର୍ଣ୍ଣ, ଦୁର୍ଯ୍ୟୋଧନ, ମହାରଥ ଶକୁନି, ଦୁଃଶାସନ, ମହାବଳ ଧୃତରାଷ୍ଟ୍ରଙ୍କ ପୁତ୍ରଗଣ, ଜରାସନ୍ଧପୁତ୍ର ଭଗଦତ୍ତ, ବୀର୍ଯ୍ୟବାନ୍ ଜଳସନ୍ଧ, ଭୂରିଶ୍ରବା, ଶଳ, ଶଲ୍ୟ, ସାନୁଜ ବୃଷସେନ, ରାଜପୁତ୍ର ଲକ୍ଷ୍ମଣ, ଧୃଷ୍ଟଦ୍ୟୁମ୍ନଙ୍କ ପୁତ୍ର, ଶିଖଣ୍ଡିଙ୍କ ସମସ୍ତ ପୁତ୍ରଗଣ, ସାନୁଜ ଧୃଷ୍ଟକେତୁ, ଅଚଳବୃଷକ ରାକ୍ଷସ, ଅଳାୟୁଧ, ବାହ୍ଲୀକ, ସୋମଦତ୍ତ, ପାର୍ଥିବ ଚେକିତାନ (ବାହୁଲ୍ୟ ହେତୁ ନାମ ନିର୍ଦ୍ଦେଶ ହେଲା ନାହିଁ) ପ୍ରଭୃତି ଅନ୍ୟାନ୍ୟ ଜନଗଣ ଦିବ୍ୟଭାସୁର ଦେହ ଧାରଣକରି ଜଳରୁ ଉତ୍ଥିତ ହେଲେ । ୧୩ ।

ଯେଉଁ ଯେଉଁ ବୀରଙ୍କର ଯେଉଁ ଯେଉଁ ବେଶ ଓ ବାହନ ଥିଲା, ନରପତିଗଣ ସେହି ସେହି ବେଶ ଓ ବାହନ ସମବେତ ହୋଇ ସମସ୍ତଙ୍କ ଦୃଷ୍ଟିପଥରେ ଉପନୀତ ହେଲେ । ୧୪ ।

ସମସ୍ତେ ଦିବ୍ୟବସ୍ତ୍ର, ସମୁଜ୍ଜ୍ୱଳ କୁଣ୍ଡଳ ଓ ମାଲ୍ୟ ଧାରଣକରି ବୈର, ଅହଙ୍କାର, କ୍ରୋଧ ଓ ମତ୍ସରବର୍ଜିତ ହୋଇ ଅପ୍ସରା ଏବଂ ବନ୍ଦୀ ଗନ୍ଧର୍ବଗଣ-କର୍ତ୍ତୃକ ଗାନଦ୍ୱାରା ସ୍ତୁତ ହେଉଥିଲେ । ୧୬ ।

ହେ ନରାଧିପ ! ସେତେବେଳେ ସତ୍ୟବତୀସୁତ ମୁନିବର ବ୍ୟାସ ଧୃତରାଷ୍ଟ୍ରଙ୍କଠାରେ ପରମ ପ୍ରୀତ ହୋଇ ତପୋବଳରେ ତାହାଙ୍କୁ ଦିବ୍ୟଚକ୍ଷୁ ପ୍ରଦାନ କଲେ । ୧୭ । ଦିବ୍ୟଜ୍ଞାନବଳସମନ୍ୱିତା ଯଶସ୍ୱିନୀ ଗାନ୍ଧାରୀ ସମରରେ ନିହତ ହୋଇଥିବା ପୁତ୍ରଗଣଙ୍କୁ ଦର୍ଶନ କଲେ । ୧୮ । ସେହି ଜନଗଣ ଅତ୍ୟନ୍ତ ବିସ୍ମିତ ହୋଇ ଅନିମେଷ ଲୋଚନରେ ସେହି ଲୋମହର୍ଷଣ-ଜନକ ଅଚିନ୍ତ୍ୟ ଅଦ୍ଭୁତ ବ୍ୟାପାର ଦର୍ଶନ କଲେ । ୧୯ । ଅତି ଉତ୍କୃଷ୍ଟ ପ୍ରହୃଷ୍ଟ ନରନାରୀ ସମାକୁଳ ଆଶ୍ଚର୍ଯ୍ୟଭୂତ ସେହି ଉତ୍ସବ ଚିତ୍ରପଟରେ ଥିଲପରି ସମସ୍ତଙ୍କର ଦୃଷ୍ଟିଗୋଚର ହେଲା । ୨୦ ।

Digitized by srujanika@gmail.com

ହେ ଭରତଶ୍ରେଷ୍ଠ ! ଧୃତରାଷ୍ଟ୍ର ମହାମୁନି ବ୍ୟାସଙ୍କ ପ୍ରସାଦରେ ଦିବ୍ୟ-ନେତ୍ରରେ ସେମାନଙ୍କୁ ଦର୍ଶନକରି ଅତିଶୟ ଆନନ୍ଦିତ ହେଲେ । ୨୧ ।

---

# ତ୍ରୟସ୍ତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ସେହି ପୁରୁଷପ୍ରବରଗଣ କ୍ରୋଧ, ମାତ୍ସର୍ଯ୍ୟ ଓ ପାପବର୍ଜିତ ହୋଇ ପରସ୍ପର ମିଳିତ ହେଲେ । ସେମାନେ ସୁରଲୋକ-ସମାଗତ ସୁରଗଣଙ୍କ ସଦୃଶ ପ୍ରହୃଷ୍ଟ ଚିତ୍ତରେ ବ୍ରହ୍ମର୍ଷିବିହିତ ପରମ ପବିତ୍ର ବିଧି ଅବଲମ୍ବନ କରି, ପୁତ୍ର ପିତା ଓ ମାତାଙ୍କ ସହିତ, ଭାର୍ଯ୍ୟା ପତିଙ୍କ ସହିତ, ଭ୍ରାତା ଭ୍ରାତୃଭାବରେ ଓ ମିତ୍ର ମିତ୍ରସଙ୍ଗରେ ସଙ୍ଗତ ହେଲେ ।୩। ପରନ୍ତୁ ପାଣ୍ଡବଗଣ ଅତ୍ୟନ୍ତ ହର୍ଷ ସହକାରେ ମହାଧନୁର୍ଦ୍ଧାରୀ କର୍ଣ୍ଣ, ସୁଭଦ୍ରା-ତନୟ ଅଭିମନ୍ୟୁ ଏବଂ ଦ୍ରୌପଦୀଙ୍କ ପୁତ୍ରମାନଙ୍କ ନିକଟକୁ ଗମନ କଲେ ।୪।

ହେ ମହୀପାଳ ! ସେମାନେ କର୍ଣ୍ଣଙ୍କ ସହିତ ମିଳିତ ହୋଇ ପରମ ପ୍ରୀତି ଅନୁଭବ କରି ସୁହୃଦ୍‌ଭାବ ସହିତ ଏକତ୍ର ଅବସ୍ଥାନ କଲେ । ୫ ।

ହେ ଭରତପ୍ରବର ! ମୁନିବର ବ୍ୟାସଙ୍କ ପ୍ରସାଦରେ ସେହି କ୍ଷତ୍ରିୟ ଯୋଦ୍ଧୃଗଣ ପରସ୍ପର ମିଳିତ ହୋଇ ମନ୍ୟୁ ଓ ଅନ୍ୟାନ୍ୟ ଶତ୍ରୁଭାବ ପରିତ୍ୟାଗ ପୂର୍ବକ ସୌହୃଦ୍ୟ ସହକାରେ ଗୁରୁ ଓ ବାନ୍ଧବବର୍ଗଙ୍କ ସହିତ ଏକତ୍ର ଅବସ୍ଥିତ ହେଲେ । ୬ ।

ପୁରୁଷପୁଙ୍ଗବ କୁରୁ ଓ ଅନ୍ୟାନ୍ୟ ନରପତିଗଣ ପରମ ଗୁରୁଜନ, ପୁତ୍ର ଓ ବାନ୍ଧବବର୍ଗଙ୍କ ସହିତ ମିଳିତ ହୋଇ ପ୍ରୀତଚିତ୍ତରେ ପରିତୋଷ ସହିତ ଏହିରୂପେ ସେହି ଯାମିନୀରେ ବିହାର କରି ସ୍ୱର୍ଗବାସ ସଦୃଶ ସୁଖାନୁଭବ କଲେ । ୭ ।

ହେ ଭରତଶ୍ରେଷ୍ଠ ! ଯୋଧଗଣ ପରସ୍ପର ଏକତ୍ରିତ ହେବାରୁ ତେତେବେଳେ ସେମାନଙ୍କର ଶୋକ, ଭୟ, ତ୍ରାସ, ଦୁଃଖ ଓ ଅଯଶ କିଛି ରହିଲା ନାହିଁ । ୮ । ଅପିଚ ସେହି ମହିଳାଗଣ ପିତା, ଭ୍ରାତା, ପତି ଓ ପୁତ୍ର

Digitized by srujanika@gmail.com

ସହିତ ସମାଗତ ହୋଇ ପରମ ହର୍ଷ ଲାଭକରି ଏକାବେଳକେ ଦୁଃଖ ପରିତ୍ୟାଗ କଲେ ।

ସେହି ବୀର ଓ ସ୍ତ୍ରୀଗଣ ଏହିରୂପେ ଏକରାତ୍ରି ବିହାର କରି ପରସ୍ପର ଆମନ୍ତ୍ରଣ ଓ ଆଲିଙ୍ଗନ ପୂର୍ବକ ବୀରଗଣ ଯେଉଁ ସ୍ଥାନରୁ ଆଗମନ କରିଥିଲେ ସେହି ସ୍ଥାନକୁ ଗମନ କଲେ ।

ଅନନ୍ତର ମୁନିବର ବ୍ୟାସ ସେହି ସମାଗତ ଲୋକମାନଙ୍କୁ ବିସର୍ଜନ କଲାରୁ ସେମାନେ ସମସ୍ତଙ୍କ ସମକ୍ଷରେ କ୍ଷଣକ ମଧ୍ୟରେ ଅନ୍ତର୍ହିତ ହେଲେ । ମହାତ୍ମାଗଣ ପୁଣ୍ୟପ୍ରଦା ଭାଗୀରଥୀ ନଦୀରେ ଅବଗାହନ କରି ଧ୍ୱଜଯୁକ୍ତ ରଥରେ ଆରୋହଣ ପୂର୍ବକ ନିଜ ନିଜ ନିକେତନକୁ ଗମନ କଲେ । ତନ୍ମଧ୍ୟରେ କେହି ସୁରଲୋକକୁ, କେହି ବ୍ରହ୍ମଲୋକକୁ, କେହି ବରୁଣଲୋକ, କେହି କୁବେରଲୋକ, କେହି ଅବା ଯମଲୋକକୁ ଗମନ କଲେ । ରାକ୍ଷସ ଓ ପିଶାଚଗଣଙ୍କ ମଧ୍ୟରେ କୌଣସି ମହାତ୍ମା ବାହନଦ୍ୱାରା, କେହି ଅବା ପଦଦ୍ୱାରା ବିଚିତ୍ର ଗତିରେ ଉତ୍ତରକୁରୁ ଦେଶକୁ ଗମନ କଲେ ।

ଅନନ୍ତର ସେମାନେ ସମସ୍ତେ ଗମନ କଲାରୁ କୁରୁକୁଳହିତୈଷୀ ଧର୍ମଶୀଳ ମହାତେଜା ମହାମୁନି ବ୍ୟାସ ସଲିଳରେ ଅବସ୍ଥାନ କରି ପତିହୀନା କ୍ଷତ୍ରିୟ ରମଣୀଗଣଙ୍କୁ କହିଲେ ଯେ, ଯେଉଁ ଯେଉଁ ରମଣୀଗଣଙ୍କର ପତିକୃତ ଲୋକକୁ ଗମନ କରିବା ନିମିତ୍ତ ଇଚ୍ଛା ଅଛି, ସେମାନେ ସତ୍ୱର ଅତନ୍ଦ୍ରିତ ହୋଇ ଏହି ଜାହ୍ନବୀଜଳରେ ଅବଗାହନ କରନ୍ତୁ । ୧୯ ।

ତଦନନ୍ତର ବରାଙ୍ଗନାଗଣ ବ୍ୟାସଙ୍କ ବାକ୍ୟ ଶ୍ରବଣ କରି ଶ୍ରଦ୍ଧାନ୍ୱିତା ହୋଇ ଶ୍ୱଶୁରଙ୍କ ସ୍ୱକୀୟ ଅଭିପ୍ରାୟ ନିବେଦନ ପୂର୍ବକ ସତ୍ୱର ସୁରସରିତ୍ ସଲିଳରେ ପ୍ରବେଶ କଲେ । ୨୦ ।

ହେ ବିଶାଂପତେ ! ତେତେବେଳେ ସେହି ସାଧ୍ୱୀ ସ୍ତ୍ରୀବୃନ୍ଦ ମାନୁଷ ଶରୀର ପରିତ୍ୟାଗ ପୂର୍ବକ ସ୍ୱାମିଙ୍କ ସହିତ ସଙ୍ଗତ ହେଲେ । ୨୧ । ସେହି ଶୀଳବତୀ ପତିବ୍ରତା କ୍ଷତ୍ରିୟା ନାରୀଗଣ ଏହିରୂପେ ପ୍ରବେଶ କରି ମୁକ୍ତଦେହା ହୋଇ ସ୍ୱାମିସଲୋକତା ଲାଭକଲେ । ସେମାନଙ୍କ ପତିଙ୍କର ଯାଦୃଶ ରୂପ, ଆଭରଣ, ବସ୍ତ୍ର ଓ ମାଲ୍ୟ ଥିଲା, ସେମାନେ ତାଦୃଶ ରୂପ, ଆଭରଣ, ବସ୍ତ୍ର ଓ ମାଲ୍ୟ

Digitized by srujanika@gmail.com

ଧାରଣ କଲେ । ସେହି ଶୀଳଗୁଣସମନ୍ୱିତ ସର୍ବଗୁଣଯୁକ୍ତ ସ୍ତ୍ରୀବୃନ୍ଦ ବିମାନରେ ଅବସ୍ଥାନ କରି ଶ୍ରମବିହୀନ ହୋଇ ସ୍ୱସ୍ଥାନକୁ ଗମନ କଲେ । ୨୪ ।

ତେତେବେଳେ ଯାହାଙ୍କର ଯାଦୃଶ କାମନା ହୋଇଥିଲା, ଧର୍ମବତ୍ସଳ ବରଦାତା ବ୍ୟାସ ତାହାଙ୍କର ସେହି କାମନା ପୂରଣ କଲେ । ୨୫ । ନାନା ଦେଶ ସମାଗତ ନରଗଣ ଦେବତାମାନଙ୍କର ପୁନରାଗମନ ବୃତ୍ତାନ୍ତ ଶ୍ରବଣ କରି ଅତିଶୟ ହୃଷ୍ଟ ଓ ଆନନ୍ଦିତ ହେଲେ । ୨୬ ।

ଯେଉଁ ନର ସେମାନଙ୍କ ପ୍ରିୟ ସମାଗମ ସମ୍ୟକ୍‌ରୂପେ ଶ୍ରବଣ କରନ୍ତି, ସେ ଇହଲୋକ ଓ ପରଲୋକରେ ନିତ୍ୟ ପ୍ରିୟଲାଭ କରନ୍ତି । ୨୭ । ଯେଉଁ ଧାର୍ମିକବର ବିଦ୍ୱାନ୍ ଜନ ଏହି ଅନାମୟ ଇଷ୍ଟ ବାନ୍ଧବ ସଂଯୋଗ ବିଷୟକୁ ଅନାୟାସରେ ଶ୍ରବଣ କରନ୍ତି, ସେ ଇହଲୋକ ଓ ପରଲୋକରେ ଯଶ ଓ ଶୁଭଗତି ଲାଭକରନ୍ତି । ହେ ଭାରତ ! ଯେଉଁ ଧୃତିଶାଳୀ ମନୁଜଗଣ ଏହି ଅତି ଆଶ୍ଚର୍ଯ୍ୟ ପର୍ବ ଶ୍ରବଣ କରନ୍ତି, ସେମାନେ ସ୍ୱାଧ୍ୟାୟ, ତପସ୍ୟା, ସଦାଚାର, ଦାନଯୁକ୍ତ, ନିଷ୍ପାପ, ସରଳ, ଶୁଚି ଓ ଶାନ୍ତଚିତ୍ତ, ହିଂସା ଓ ଅସତ୍ୟ ବିବର୍ଜିତ ଏବଂ ଆସ୍ତିକ ଓ ଶ୍ରଦ୍ଧାବାନ୍ ହୋଇ ପରମଗତି ଲାଭ କରନ୍ତି । ୩୧ ।



# ଚତୁସ୍ତ୍ରିଂଶତ୍ତମ ଅଧ୍ୟାୟ

ସୌତି କହିଲେ—ବିଦ୍ୱାନ୍ ନରପତି ଜନମେଜୟ ପିତାମହଗଣଙ୍କର ଏହିପ୍ରକାର ଗମନାଗମନ ବୃତ୍ତାନ୍ତ ଶ୍ରବଣ କରି ଅତିଶୟ ଆନନ୍ଦିତ ହୋଇ ପୁନାରାଗମନର ବିବରଣ ପ୍ରଶ୍ନ କରି କହିଲେ—ହେ ବିପ୍ରର୍ଷେ ! ତ୍ୟକ୍ତଦେହ ବ୍ୟକ୍ତିମାନଙ୍କର ପୁନର୍ବାର ସେହିପ୍ରକାର ଦର୍ଶନ କେଉଁରୂପେ ସମ୍ଭବ ହେଲା ? ମୃତ ବ୍ୟକ୍ତିଗଣ ପୂର୍ବଶରୀରରେ କିପରି ଆସିଲେ ?

ପ୍ରତାପଶାଳୀ ଦ୍ୱିଜବର ବ୍ୟାସଶିଷ୍ୟ ଏହିପ୍ରକାର ବାକ୍ୟ ଶ୍ରବଣ କରି ବାଗ୍ମିଶ୍ରେଷ୍ଠ ନରନାଥ ଜନମେଜୟଙ୍କୁ କହିଲେ । ୩ ।

ବୈଶମ୍ପାୟନ କହିଲେ—ହେ ରାଜନ୍ ! ଏହିପ୍ରକାର ନିଶ୍ଚୟ ହୋଇ ଅଛି ଯେ, କର୍ମସମୂହ ଅବିନାଶୀ । ସେହି କର୍ମରୁ ଜୀବମାନଙ୍କ ଶରୀର ଓ

Digitized by srujanika@gmail.com

ଆକୃତିସମୂହ ଉତ୍ପନ୍ନ ହୁଏ । ୪ । ମହାଭୂତସମୂହ ନିତ୍ୟ । ଭୂତାଧିପତିଙ୍କ ସଂଶ୍ରୟ ହେତୁରୁ ସେମାନଙ୍କର ନିତ୍ୟ ସହବାସ ହୁଏ । ପରନ୍ତୁ ସେମାନେ ବିମୁକ୍ତ ହେଲେ ସୁଦ୍ଧା ସେମାନଙ୍କର ବିନାଶ ହୁଏ ନାହିଁ । ୫ । କର୍ମ ଅନାୟାସସାଧ୍ୟ । ତାହାର ଫଳାଗମ ସତ୍ୟପ୍ରଧାନ । ଏହି ନିମିତ୍ତ ଆତ୍ମା କର୍ମଫଳ-ସମାଯୁକ୍ତ ହୋଇ ସୁଖ-ଦୁଃଖ ଭୋଗକରନ୍ତି । ୬ ।

ଏହିପ୍ରକାର ନିଶ୍ଚୟ ଅଛି ଯେ, କ୍ଷେତ୍ରଜ୍ଞ ଅବିନାଶୀ ହୋଇ ନଶ୍ୱର ପ୍ରାଣିଗଣରେ ଯୁକ୍ତ ଥାଆନ୍ତି । ତାହାଙ୍କ ଅବିଚ୍ଛେଦ ପ୍ରାଣିଗଣଙ୍କ ଆତ୍ମୀୟଭାବ ଅଟେ । ୭ । ଯାବତ୍କାଳ କର୍ମ କ୍ଷୟ ହୋଇନଥାଏ, ତାବତ୍କାଳ କ୍ଷେତ୍ରଜ୍ଞଙ୍କର ସ୍ୱରୂପତା ଥାଏ । ଇହଲୋକରେ ମନୁଷ୍ୟ କ୍ଷୀଣକର୍ମା ହେଲେ, ସେ ରୂପାନ୍ତର ପ୍ରାପ୍ତ ହୁଅନ୍ତି । ସ୍ୱଭାବସମୂହ ସଂହତ ହୋଇ ଏକତ୍ୱ ଓ ଏକଶରୀର ଲାଭ କରି ପୃଥକ୍ ଭାବଜ୍ଞ ବ୍ୟକ୍ତିମାନଙ୍କ ନିକଟରେ ନିତ୍ୟରୂପେ ଅବସ୍ଥାନ କରନ୍ତି । ୯ ।

ଅଶ୍ୱମେଧରେ ଅଶ୍ୱମାରଣ ପ୍ରତି ଏହିପ୍ରକାର ଶ୍ରୁତି ଅଛି ଯେ, ଶରୀରମାନଙ୍କ ପ୍ରାଣସମୂହ ନିତ୍ୟ ଲୋକାନ୍ତରଗତ ହୁଅନ୍ତି । ୧୦ ।

ହେ ପୃଥିବୀପତେ ! ଆମ୍ଭେ ଆପଣଙ୍କୁ ଏହି ହିତକର ପ୍ରିୟବାକ୍ୟ କହୁଅଛୁଁ, ଶ୍ରବଣ କରିବା ହେଉନ୍ତୁ । ଆମ୍ଭେମାନେ ଏହିପ୍ରକାର ଶୁଣିଅଛୁଁ ଯେ, ଆପଣଙ୍କ ଯଜ୍ଞ ସମୟରେ ପଥସମୂହ ଦେବତାମାନଙ୍କ ଗମନରେ ରୁଦ୍ଧ ହୋଇଥିଲା । କାରଣ, ଆପଣ ଯଜ୍ଞ ଆରମ୍ଭ କରନ୍ତେ ଆପଣଙ୍କ ହିତାର୍ଥୀ ଦେବଗଣ ଯଜ୍ଞସ୍ଥଳକୁ ଆଗମନପୂର୍ବକ ନିହତ ପଶୁମାନଙ୍କୁ ସ୍ୱର୍ଗକୁ ନେଇ ଯାଉଥିଲେ । ଯଦି ପଞ୍ଚଭୂତ ଓ ଆତ୍ମା ନିତ୍ୟ ବୋଲି ସ୍ଥିର ସିଦ୍ଧାନ୍ତ ହୋଇଅଛି, ତେବେ ଲୋକର ଶରୀର କେଉଁ କାରଣରୁ ଅନିତ୍ୟ ହେବ ? ଯେଉଁମାନେ ମୋହବଶତଃ ଆତ୍ମା ନାନା ଶରୀର ପରିଗ୍ରହ କରନ୍ତି ବୋଲି ବିବେଚନା କରନ୍ତି, ସେମାନେ ଆତ୍ମୀୟ ବିଯୋଗରେ ବାଳକ ସଦୃଶ ରୋଦନ କରନ୍ତି ।

ଯେଉଁମାନେ ସଂଯୋଗ ଓ ବିଯୋଗ ଏହି ଉଭୟକୁ ଅକଲ୍ୟାଣକର ବୋଲି ବିବେଚନା କରି ନିଃଶଙ୍କ ହୋଇ ଅବସ୍ଥାନ କରନ୍ତି, ସେମାନେ କଦାପି ସଂଯୋଗଜନିତ ସୁଖ ଓ ବିଯୋଗଜନିତ ଦୁଃଖରେ ଅଭିଭୂତ ହୁଅନ୍ତି ନାହିଁ । ୧୫ ।

Digitized by srujanika@gmail.com

ଜୀବାତ୍ମା କେବଳ ଅଭିମାନ ହେତୁରୁ ପରମାତ୍ମା ବୋଲି ଅଭିହିତ ହୁଅନ୍ତି ନାହିଁ । ସେ ଉତ୍କୃଷ୍ଟ ବୁଦ୍ଧି ପ୍ରଭାବରେ ମୋହରୁ ବିମୁକ୍ତ ହେଲେ, ପରମାତ୍ମାଙ୍କ ସହିତ ଅଭିନ୍ନ ହୋଇ ରହନ୍ତି । ଫଳତଃ ମନୁଷ୍ୟର ଶରୀର ଓ ଆତ୍ମା ଉଭୟ ଅବିନଶ୍ୱର ଅଟେ । ଲୋକମାନେ ଯେଉଁ ଯେଉଁ ଶରୀର ପରିଗ୍ରହ କରି ଯେଉଁ ଯେଉଁ କାର୍ଯ୍ୟ କରନ୍ତି, ସେହି ସେହି ଶରୀରରେ ସେମାନେ ଅବଶ୍ୟ ସେହି ସେହି ଫଳ ଭୋଗ କରନ୍ତି । ସେମାନେ ମନଦ୍ୱାରା ମାନସିକ କର୍ମର ଫଳ ଓ ଶରୀରଦ୍ୱାରା ଶାରୀରିକ କର୍ମର ଫଳ ଭୋଗ କରନ୍ତି । ୧୮ ।

---

# ପଞ୍ଚତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ କୁରୂଦ୍‌ବହ ! ନରପତି ଧୃତରାଷ୍ଟ୍ର ଜନ୍ମାନ୍ଧ ହେତୁରୁ ପୁତ୍ରମାନଙ୍କୁ ଦେଖି ପାରୁନଥିଲେ । ଋଷିବରଙ୍କ ପ୍ରସାଦରେ ନିଜ ନିଜ ରୂପଧାରୀ ପୁତ୍ରଗଣଙ୍କୁ ପୁନଶ୍ଚ ଦର୍ଶନ କଲେ । ନରବର ରାଜା ଧୃତରାଷ୍ଟ୍ର ଋଷିବରଙ୍କ ଅନୁଗ୍ରହରେ ରାଜଧର୍ମ, ବ୍ରହ୍ମୋପନିଷଦ୍ ଏବଂ ବୁଦ୍ଧିନିଶ୍ଚୟ ପ୍ରାପ୍ତ ହେଲେ ।

ମହାପ୍ରାଜ୍ଞ ବିଦୁର ତପୋବଳରେ ଏବଂ ଧୃତରାଷ୍ଟ୍ର ତପୋଧନ ବ୍ୟାସଙ୍କ ପ୍ରସାଦରେ ସିଦ୍ଧିଲାଭ କଲେ । ୩ ।

ଜନମେଜୟ କହିଲେ—ବରଦାତା ବ୍ୟାସ ଯଦି ଆମ୍ଭଙ୍କୁ ତାଦୃଶ ରୂପ, ବେଶ ଓ ବୟଃସମ୍ପନ୍ନ ମଦୀୟ ପିତାଙ୍କୁ ଦର୍ଶନ କରାଇପାରିବେ, ତେବେ ଆମ୍ଭେ ଆପଣଙ୍କର ସମସ୍ତ ବାକ୍ୟ ବିଶ୍ୱାସ କରିବୁଁ । ସେହି ଋଷିବରଙ୍କ ପ୍ରସାଦରେ ଆମ୍ଭ ପିତାଙ୍କ ଦର୍ଶନ ହେଲେ, ଆମ୍ଭେ ପରମ ପ୍ରୀତ, କୃତାର୍ଥ ଓ କୃତନିଶ୍ଚୟ ହେବୁଁ, ଏବଂ ଆମ୍ଭର ଚିର କାମନା ପରିପୂର୍ଣ୍ଣ ହେବ । ୫ ।

ସୌତି କହିଲେ—ସେହି ନରପତି ଜନମେଜୟ ଏହିପରି କହିବାରୁ ଧୀମାନ୍ ପ୍ରତାପଶାଳୀ ବ୍ୟାସ ଅନୁଗ୍ରହ କରି ପରୀକ୍ଷିତଙ୍କୁ ଆନୟନ କଲେ ।୭।

Digitized by srujanika@gmail.com

ତଦନନ୍ତର ରାଜା ଜନମେଜୟ ତାଦୃଶ ରୂପ, ବେଶ ଓ ବୟଃସମନ୍ୱିତ ସ୍ୱର୍ଗଲୋକରୁ ସମାଗତ ଶ୍ରୀମାନ୍ ପିତା ପରୀକ୍ଷିତ, ମହାତ୍ମା ଶମୀକ, ତଦୀୟ ତନୟ ଶୃଙ୍ଗୀ ଏବଂ ରାଜା ପରୀକ୍ଷିତଙ୍କର ଅମାତ୍ୟବର୍ଗଙ୍କୁ ଦେଖିଲେ ।

ତଦନନ୍ତର ସେ ଅତିଶୟ ଆହ୍ଲାଦିତ ହୋଇ ଯଜ୍ଞାନ୍ତରେ ପିତାଙ୍କୁ ସ୍ନାନ କରାଇ ସ୍ୱୟଂ ସ୍ନାନ କଲେ । ୯ ।

ତେତେବେଳେ ନରପତି ଜନମେଜୟ ସ୍ନାନାବସାନରେ ଯାଯାବରକୁଳ-ସମ୍ଭୂତ ଜରତ୍କାରୁଙ୍କ ସୁତ ଦ୍ୱିଜବର ଆସ୍ତିକଙ୍କୁ କହିଲେ—ହେ ଆସ୍ତିକ ! ଆମ୍ଭର ଏହି ଯଜ୍ଞ ଅତିଶୟ ଆଶ୍ଚର୍ଯ୍ୟଜନକ ବୋଧ ହେଲା । କାରଣ, ଅଦ୍ୟ ଆମ୍ଭର ଶୋକନାଶକ ପିତା ସମାଗତ ହେଲେ । ୧୧ ।

ଆସ୍ତିକ କହିଲେ—ହେ କୁରୁକୁଳଶ୍ରେଷ୍ଠ ! ତପୋନିଧି ପୁରାଣ ଋଷି ଦ୍ୱୈପାୟନ ଯାହାଙ୍କ ଯଜ୍ଞରେ ଅଧିଷ୍ଠିତ ହୁଅନ୍ତି, ତାହାଙ୍କର ଉଭୟ ଲୋକ ଜିତ ହୁଏ । ୧୨ ।

ହେ ପାଣ୍ଡବନନ୍ଦନ ! ଆପଣ ବିଚିତ୍ର ଆଖ୍ୟାନ ଶ୍ରବଣ କରି ବିପୁଳ ଧର୍ମଲାଭ କଲେ ଏବଂ ପିତାଙ୍କ ପଦବୀ ପ୍ରାପ୍ତ ହେଲେ । ଆପଣଙ୍କ ପ୍ରଭାବରେ ସର୍ପବୃନ୍ଦ ଭସ୍ମସାତ୍ ହେଲେ, ଏବଂ ଆପଣଙ୍କ ସତ୍ୟବାକ୍ୟ ହେତୁରୁ ତକ୍ଷକ କଥଞ୍ଚିତ୍ ମୁକ୍ତ ହେଲେ । ଋଷିଗଣ ପୂଜିତ ହେବାରୁ ମହାତ୍ମାମାନଙ୍କ ଗତି ଦୃଷ୍ଟ ହେଲା । ୧୪ । ଏହି ପାପବିନାଶନ ଆଖ୍ୟାନ ଶ୍ରବଣ କରିବାରୁ ଆପଣ ବିପୁଳ ଧର୍ମପ୍ରାପ୍ତ ହେଲେ ଏବଂ ଉଦାର ଜନଙ୍କ ସନ୍ଦର୍ଶନଦ୍ୱାରା ହୃଦୟର ଗ୍ରନ୍ଥି ବିମୁକ୍ତ ହେଲା । ୧୫ । ଯେଉଁମାନେ ଧର୍ମର ପକ୍ଷପାତୀ, ସଦ୍ବୃତ୍ତି-ପରାୟଣ ରୁଚିସମ୍ପନ୍ନ ଏବଂ ଯେଉଁମାନଙ୍କୁ ଦର୍ଶନ କଲେ ପାପ ନାଶହୁଏ, ଆପଣ ସେହିମାନଙ୍କୁ ନମସ୍କାର କରିବା ହେଉନ୍ତୁ । ୧୬ ।

ସୌତି କହିଲେ—ରାଜା ଜନମେଜୟ ଆସ୍ତିକଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସେହି ଋଷିଙ୍କୁ ବାରମ୍ବାର ସମ୍ମାନ ପୂର୍ବକ ପୂଜାକଲେ । ୧୭ ।

ତଦନନ୍ତର ଧର୍ମଜ୍ଞ ସତ୍ତମ ଜନମେଜୟ ଋଷିବର ଅଚ୍ୟୁତ ବୈଶମ୍ପାୟନଙ୍କୁ ବନବାସ କଥାର ଅବଶିଷ୍ଟ ବିଷୟ ପ୍ରଶ୍ନକଲେ । ୧୮ ।

---

Digitized by srujanika@gmail.com

# ଷଟ୍ ତ୍ରିଂଶତ୍ତମ ଅଧ୍ୟାୟ

ଜନମେଜୟ କହିଲେ—ଜନନାଥ ଧୃତରାଷ୍ଟ୍ର ଓ ରାଜା ଯୁଧିଷ୍ଠିର ଏହି ଦୁହେଁ ପୁତ୍ର, ପୌତ୍ର ଓ ଆତ୍ମୀୟଗଣଙ୍କୁ ଦର୍ଶନ କରି ପରିଶେଷରେ କେଉଁ କାର୍ଯ୍ୟ କଲେ ? ୧ ।

ବୈଶମ୍ପାୟନ କହିଲେ—ହେ ମହାରାଜ ! ସେହି ରାଜର୍ଷି ଧୃତରାଷ୍ଟ୍ର ପୁତ୍ରଦର୍ଶନରୂପ ସେହି ମହାନ୍ ଆଶ୍ଚର୍ଯ୍ୟ ବ୍ୟାପାର ଦର୍ଶନ କରି ଶୋକବିହୀନ ହୋଇ ପୁନର୍ବାର ଆଶ୍ରମକୁ ଆଗମନ କଲେ । ୨ । ଇତର ଜନଗଣ ଓ ପରମ ଋଷିବୃନ୍ଦ ଧୃତରାଷ୍ଟ୍ରଙ୍କ ଆଦେଶାନୁସାରେ ଯଥାଭିଲଷିତ ପ୍ରଦେଶକୁ ଗମନ କଲେ । ୩ ।

ମହାତ୍ମା ପାଣ୍ଡବଗଣ ନାରୀଗଣଙ୍କୁ ସଙ୍ଗରେ ଘେନି ସୈନ୍ୟଗଣଙ୍କ ସମଭିବ୍ୟାହାରରେ ମହାତ୍ମା ମହୀପତି ଧୃତରାଷ୍ଟ୍ରଙ୍କ ନିକଟକୁ ପୁନଶ୍ଚ ଆଗମନ କଲେ । ୪ । ଲୋକପୂଜିତ ବ୍ରହ୍ମର୍ଷି ସତ୍ୟବତୀସୁତ ମୁନିବର ବ୍ୟାସ ସେହି ଆଶ୍ରମକୁ ଆଗମନ କରି ଧୃତରାଷ୍ଟ୍ରଙ୍କୁ କହିଲେ—ହେ କୁରୁନନ୍ଦନ ! ମହାବାହୋ ! ଧୃତରାଷ୍ଟ୍ର ! ତୁମ୍ଭେ ଜ୍ଞାନବୃଦ୍ଧ, ପୁଣ୍ୟକର୍ମା, ପ୍ରଜ୍ଞାମୟ ଅଭିଜନଗଣଙ୍କ ମଧ୍ୟରେ ବୃଦ୍ଧ; ବେଦବେଦାଙ୍ଗବେତ୍ତା, ଧର୍ମଜ୍ଞ ପୁରାତନ ଋଷିଗଣଙ୍କ ବିବିଧ ବାକ୍ୟ ଶ୍ରବଣ କରିଅଛ ଏବଂ ବେଦଦର୍ଶନଜ୍ଞ ନାରଦଙ୍କ ନିକଟରୁ ଦେବରହସ୍ୟ ଶ୍ରବଣ କରିଅଛ । ଅତଏବ ଆଉ ଶୋକରେ ମନୋନିବେଶ ନକର । କାରଣ, ବିଦ୍ୱାନ୍ ବ୍ୟକ୍ତି ଦୈବନିବନ୍ଧରେ ବ୍ୟଥିତ ହୁଅନ୍ତି ନାହିଁ । ତୁମ୍ଭେ ପୁତ୍ରଗଣଙ୍କୁ ଯେଉଁପ୍ରକାର ଦର୍ଶନ କରିଥିଲ, ସେମାନେ କ୍ଷତ୍ରଧର୍ମାନୁସାରେ ଶସ୍ତ୍ରପୂତ ଶୁଭଗତି ଲାଭକରି ସେହିରୂପେ ଇଚ୍ଛାନୁସାରେ ବିହାର କରୁଅଛନ୍ତି । ୯ । ଏହି ଧୀମାନ୍ ଯୁଧିଷ୍ଠିର ଦାରା, ଭ୍ରାତା ଓ ସୁହୃଜ୍ଜନଗଣଙ୍କ ସହିତ ତୁମ୍ଭଙ୍କୁ ଅନୁରୋଧ କରୁଅଛନ୍ତି । ତୁମ୍ଭେ ଏହାଙ୍କୁ ବିଦାୟ କର । ଏ ତୁମ୍ଭ ନିକଟରୁ ବିଦାୟ ହୋଇ ନିଜ ରାଜ୍ୟକୁ ଗମନପୂର୍ବକ ରାଜ୍ୟଶାସନ କରନ୍ତୁ ।

ଏମାନେ ସମସ୍ତେ ଏକ ମାସରୁ ଅଧିକ ସମୟ ହେଲା ବନରେ ବାସ କରିଅଛନ୍ତି । ୧୧ । ହେ ନରନାଥ ! କୁରୁବର ! ନିରନ୍ତର ଅତି ଯତ୍ନରେ

Digitized by srujanika@gmail.com

ରାଜ୍ୟରକ୍ଷା କରିବାର ରାଜାମାନଙ୍କର କର୍ତ୍ତବ୍ୟକର୍ମ ଅଟେ । କାରଣ, ରାଜ୍ୟ ବହୁଳ ବନ୍ଧୁକାରକ ଜନଗଣକର୍ତ୍ତୃକ ସର୍ବଦା ଆକ୍ରାନ୍ତ ହୋଇଥାଏ । ୧୨ ।

କୁରୁରାଜ ବାଗ୍ମୀ ଧୃତରାଷ୍ଟ୍ର ଅମିତତେଜା ବ୍ୟାସଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଯୁଧିଷ୍ଠିରଙ୍କୁ ଆହ୍ୱାନ ପୂର୍ବକ କହିଲେ—ହେ ଅଜାତଶତ୍ରୋ ! ତୁମ୍ଭର ମଙ୍ଗଳ ହେଉ । ତୁମ୍ଭେ ଭ୍ରାତୃଗଣଙ୍କ ସହିତ ଆମ୍ଭର ବାକ୍ୟ ଶ୍ରବଣ କର । ହେ ମହୀପାଳ ! ତୁମ୍ଭ ପ୍ରସାଦରେ ଆମ୍ଭଙ୍କୁ ଶୋକ ଆଉ ବାଧା ଦେଇ ପାରୁନାହିଁ । ହେ ପୁତ୍ର ! ତୁମ୍ଭେ ପୂର୍ବେ ହସ୍ତିନାନଗରରେ ଆମ୍ଭର ପ୍ରିୟ କାର୍ଯ୍ୟ ସାଧନ ବିଷୟରେ ପ୍ରବୃତ୍ତ ହୋଇଥିବାର ଜାଣି ଆମ୍ଭେ ତୁମ୍ଭର ଅନୁଗତ ହୋଇ ତୁମ୍ଭ ସହିତ ଯାଦୃଶ ସୁଖଭୋଗ କରିଥିଲୁଁ, ସମ୍ପ୍ରତି ତାଦୃଶ ସୁଖୀ ହେଉଅଛୁଁ । ୧୫ । ହେ ବତ୍ସ ! ଆମ୍ଭେ ତୁମ୍ଭଠାରୁ ପୁତ୍ରଫଳ ପ୍ରାପ୍ତହେଲୁଁ । ତୁମ୍ଭଠାରେ ଆମ୍ଭର ପରମ ପ୍ରୀତି ଜନ୍ମିଅଛି । ତୁମ୍ଭଠାରେ ଆମ୍ଭର କ୍ରୋଧ ନାହିଁ । ଅତଏବ ତୁମ୍ଭେ ଶୀଘ୍ର ଗମନ କର । ୧୬ ।

ତୁମ୍ଭେ ଏହି ସ୍ଥାନରେ ନିରନ୍ତର ରହିବାରୁ ତୁମ୍ଭ ଦର୍ଶନଦ୍ୱାରା ସ୍ନେହ ବଶତଃ ଆମ୍ଭର ତପସ୍ୟାରେ ବ୍ୟାଘାତ ହେଉଅଛି । ଆମ୍ଭେ କେବଳ ତୁମ୍ଭଙ୍କୁ ଦର୍ଶନ କରି ଆଜପର୍ଯ୍ୟନ୍ତ ଏହି ତପଃକୃଶ ଶରୀର ଧାରଣ କରି ରହିଅଛୁଁ ।୧୭। ଆମ୍ଭପରି ତୁମ୍ଭର ଏହି ମାତୃଦ୍ୱୟ ବହୁକାଳ ହେଲା ଶୀର୍ଣ୍ଣ ପତ୍ର ଭୋଜନକରି ବ୍ରତ ନିୟମରେ ରହିଅଛନ୍ତି । ହେ ପୁତ୍ର ! ଏହି ଦୁହେଁ ଇହଲୋକରେ ଆଉ ଅଧିକ ସମୟ ଅବସ୍ଥାନ କରିବେ ନାହିଁ । ୧୮ ।

ବ୍ୟାସଙ୍କ ତପୋବଳ ଓ ତୁମ୍ଭର ସମାଗମରେ ସେହି ଲୋକାନ୍ତରଗତ ଦୁର୍ଯ୍ୟୋଧନ ପ୍ରଭୃତି ପୁତ୍ର ଓ ବାନ୍ଧବଗଣ ଦୃଷ୍ଟ ହେଲେ । ୧୯ । ହେ ଅନଘ ! ଆମ୍ଭ ଜୀବନର ପ୍ରୟୋଜନ ନିବୃତ୍ତ ହୋଇଅଛି । ଅତଃପର ତୁମ୍ଭେ ଆଦେଶ କର, ଆମ୍ଭେ ଉଗ୍ର ତପସ୍ୟା ଅବଲମ୍ବନ କରିବୁଁ । ୨୦ ।

ହେ ପୁତ୍ର ! ମହାବାହୋ ! ଅଦ୍ୟ ପିତୃପିଣ୍ଡ, କୀର୍ତ୍ତି ଓ ଏହି କୁରୁକୁଳ ତୁମ୍ଭଠାରେ ପ୍ରତିଷ୍ଠିତ ହେଲା । ଅତଏବ ଅଦ୍ୟ କମ୍ବା କଲ୍ୟରେ ଗମନ କର । ଆଉ ବିଳମ୍ବ କରନା । ୨୧ । ହେ ବିଭୋ ! ଭରତର୍ଷଭ ! ତୁମ୍ଭେ ପ୍ରଚୁର

Digitized by srujanika@gmail.com

ମାତ୍ର ଶ୍ରବଣ କରିଅଛ । ସୁତରାଂ ତୁମ୍ଭପ୍ରତି ଆମ୍ଭର କୌଣସି ବକ୍ତବ୍ୟ ଦେଖୁନାହୁଁ । ୨୨ ।

ବୈଶମ୍ପାୟନ କହିଲେ—ରାଜା ଧୃତରାଷ୍ଟ୍ର ଏହିପ୍ରକାର କହିବାରୁ ନରନାଥ ଯୁଧିଷ୍ଠିର ତାହାଙ୍କୁ କହିଲେ ଯେ, ହେ ଧର୍ମଜ୍ଞ ! ଆମ୍ଭର ଅପରାଧ ନାହିଁ । ଅତଏବ ଆମ୍ଭଙ୍କୁ ପରିତ୍ୟାଗ କରିବାର ଆପଣଙ୍କର ଉଚିତ ନୁହେ । ୨୩ । ଆମ୍ଭର ଭ୍ରାତା ଓ ଅନୁଚରବର୍ଗ ସମସ୍ତେ ଇଚ୍ଛାନୁସାରେ ଗମନ କରନ୍ତୁ । ପରନ୍ତୁ ଆମ୍ଭେ ସଂଯତ ଓ ବ୍ରତନିଷ୍ଠ ହୋଇ ମାତା କୁନ୍ତୀ, ଗାନ୍ଧାରୀ ଓ ଆପଣଙ୍କର ଅନୁଗମନ କରିବୁଁ । ୨୪ ।

ତଦନନ୍ତର ଗାନ୍ଧାରୀ ଯୁଧିଷ୍ଠିରଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି କହିଲେ—ହେ ପୁତ୍ର ! ତୁମ୍ଭେ ଏପରି କହନା । ଆମ୍ଭ ବାକ୍ୟ ଶ୍ରବଣ କର । ଏହି କୁରୁକୁଳ ଓ ଆମ୍ଭ ଶ୍ୱଶୁରଙ୍କ ପିଣ୍ଡ ତୁମ୍ଭର ଅଧୀନ ହୋଇଅଛି । ୨୫ । ହେ ପୁତ୍ର ! ତୁମ୍ଭେ ଆମ୍ଭଙ୍କୁ ଯଥେଷ୍ଟ ସେବା କରିଅଛ । ରାଜା ଯାହା କହିଲେ ତାହା ପ୍ରତିପାଳନ କରିବା ତୁମ୍ଭର ଉଚିତ । ପିତୃବାକ୍ୟକୁ ଅତିକ୍ରମ କରିବାର ପୁତ୍ରର କର୍ତ୍ତବ୍ୟ ନୁହେ । ଅତଏବ ତୁମ୍ଭେ ଶୀଘ୍ର ଗମନ କର । ୨୬ ।

ବୈଶମ୍ପାୟନ କହିଲେ—ଯୁଧିଷ୍ଠିର ଗାନ୍ଧାରୀଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ସ୍ନେହବଶତଃ ବାଷ୍ପବାରିପରିପୂର୍ଣ୍ଣ ନୟନଯୁଗଳ ପରିମାର୍ଜନ କରି କ୍ରନ୍ଦନକାରିଣୀ କୁନ୍ତୀଙ୍କୁ ଏହି କଥା କହିଲେ—ହେ ମାତ ! ରାଜା ଏବଂ ଯଶସ୍ୱିନୀ ଗାନ୍ଧାରୀ ଆମ୍ଭଙ୍କୁ ରାଜଧାନୀଗମନ ବିଷୟରେ ଅନୁରୋଧ କରି ଅଛନ୍ତି । ପରନ୍ତୁ ଆମ୍ଭ ଚିତ୍ତ ଆପଣଙ୍କଠାରେ ବଦ୍ଧ ଥିବାରୁ ଆମ୍ଭେ ଦୁଃଖିତ ହୋଇ କିପରି ଗମନ କରିବୁଁ । ୨୮ ।

ହେ ଧର୍ମଚାରିଣି ! ଆମ୍ଭେ ଆପଣଙ୍କ ତପସ୍ୟା ବିଘ୍ନ କରିବାକୁ ଉତ୍ସାହିତ ହେଉନାହୁଁ । କାରଣ ତପସ୍ୟାଦ୍ୱାରା ମହାଫଳ ଲାଭ ହୁଏ । ସୁତରାଂ ତପସ୍ୟା ସମାନ ଅନ୍ୟ କିଛି ନାହିଁ । ୨୯ । ହେ ରାଜ୍ଞି ! ଆମ୍ଭର ପୂର୍ବବତ୍ ରାଜ୍ୟରେ ତାଦୃଶ ଅନୁରାଗ ହେଉନାହିଁ । ସଂପ୍ରତି ଆମ୍ଭ ମନ ତପସ୍ୟାରେ ସର୍ବତୋଭାବରେ ଅନୁରକ୍ତ ହେଉଅଛି । ୩୦ । ହେ ଶୁଭେ ! ଆମ୍ଭର ପୂର୍ବବତ୍ ବନ୍ଧୁବଳ ନାହିଁ । ସଂପ୍ରତି ଏହି ସମସ୍ତ ମହୀମଣ୍ଡଳ ଶୂନ୍ୟ ହେବାରୁ ଆମ୍ଭର ପ୍ରୀତିକର

Digitized by srujanika@gmail.com

ହେଉନାହିଁ । ୩୧ । ହେ ଶୁଭେ ! ପାଞ୍ଚାଳଗଣ ସର୍ବତୋଭାବରେ କ୍ଷୟପ୍ରାପ୍ତ ହୋଇଅଛନ୍ତି । କେବଳ କଥା ମାତ୍ର ଅବଶିଷ୍ଟ ଅଛି । ସେମାନଙ୍କର କୌଣସି କୁଳକର୍ତ୍ତାଙ୍କୁ ଆମ୍ଭେ ଦେଖୁନାହୁଁ । ୩୨ ।

ସେମାନେ ସମସ୍ତେ ଦ୍ରୋଣକର୍ତ୍ତୃକ ରଣାଙ୍ଗଣ ମଧ୍ୟରେ ଭସ୍ମୀଭୂତ ହୋଇଅଛନ୍ତି । ଯେଉଁମାନେ ଅବଶିଷ୍ଟ ଥିଲେ, ଦ୍ରୋଣନନ୍ଦନ ଅଶ୍ୱତ୍ଥାମା ରାତ୍ରିକାଳରେ ସେମାନଙ୍କୁ ବିନାଶ କରିଅଛନ୍ତି । ୩୩ ।

ଆମ୍ଭେ ଅର୍ଥ ବ୍ୟତିରେକେ କେବଳ ଧର୍ମ ନିମିତ୍ତ ଯେଉଁମାନଙ୍କୁ ଦେଖି ରହିବାକୁ ଇଚ୍ଛାକରୁଁ, ଆମ୍ଭମାନଙ୍କର ଦୃଷ୍ଟପୂର୍ବ ସେହି ଚେଦି ଓ ମତ୍ସ୍ୟବଂଶୀୟଗଣଙ୍କ ମଧ୍ୟରେ କେବଳ ବୃଷ୍ଣିବଂଶ ବାସୁଦେବଙ୍କ ପ୍ରସାଦରେ ଅବଶିଷ୍ଟ ଅଛି । ଆପଣ ଆମ୍ଭମାନଙ୍କୁ ଶୁଭନୟନରେ ଦର୍ଶନ କରିବା ଚହେଉନ୍ତୁ । ଆପଣଙ୍କ ଦର୍ଶନ ଅତ୍ୟନ୍ତ ଦୁର୍ଲଭ ଅଟେ । ୩୫ । ରାଜା ଅତିଶୟ ତୀବ୍ର ଅସହନୀୟ ତପସ୍ୟା ଆରମ୍ଭ କରିବେ ।

ଯୋଧଶ୍ରେଷ୍ଠ ମହାବାହୁ ସହଦେବ ଏହି କଥା ଶ୍ରବଣ କରି ବାଷ୍ପାକୁଳ ଲୋଚନରେ ଯୁଧିଷ୍ଠିରଙ୍କୁ କହିଲେ—ହେ ଭରତର୍ଷଭ ! ଆମ୍ଭେ ମାତାଙ୍କୁ ପରିତ୍ୟାଗ ପୂର୍ବକ ଗମନ କରିପାରିବୁଁ ନାହିଁ । ୩୭ । ଆପଣ ସତ୍ୱର ଗମନ କରିବା ନହେଉନ୍ତୁ । ହେ ବିଭୋ ! ଆମ୍ଭେ ତପସ୍ୟା କରି ଏହି ସ୍ଥାନରେ ତପୋବଳରେ ଶରୀର ଶୋଷଣ କରିବୁଁ । ୩୮ । ଏବଂ ରାଜା ଧୃତରାଷ୍ଟ୍ର, ମାତା କୁନ୍ତୀ ଓ ଗାନ୍ଧାରୀଙ୍କ ଚରଣଶୁଶ୍ରୂଷାରେ ଅନୁରକ୍ତ ହେବୁଁ ।

ତଦନନ୍ତର କୁନ୍ତୀ ମହାଭୁଜ ସହଦେବଙ୍କୁ ଆଲିଙ୍ଗନ କରି କହିଲେ— ହେ ବତ୍ସ ! ତୁମ୍ଭେ ଆମ୍ଭର ବାକ୍ୟ ପ୍ରତିପାଳନ କରି ଗମନ କର । ହେ ପୁତ୍ରଗଣ ! ତୁମ୍ଭମାନଙ୍କ ଆଗମନ ସଫଳ ଓ ଶୁଭକର ହେଉ ଏବଂ ତୁମ୍ଭେମାନେ ସୁସ୍ଥ ହୁଅ । ୪୦ । ଆମ୍ଭମାନଙ୍କ ତପସ୍ୟା ନିମିତ୍ତ ଏହି ଉପରୋଧ ହେଉଅଛି ଯେ, ତୁମ୍ଭେ ଯଦି ଏହି ସ୍ଥାନରେ ଅବସ୍ଥାନ କରିବ, ତେବେ ତୁମ୍ଭ ସ୍ନେହପାଶରେ ବଦ୍ଧ ହୋଇ ଆମ୍ଭେମାନେ ତପସ୍ୟାରୁ ଭ୍ରଷ୍ଟ ହେବୁଁ । ଅତଏବ, ହେ ପୁତ୍ର ! ତୁମ୍ଭେ ଗମନ କର । ଆମ୍ଭମାନଙ୍କ ତପସ୍ୟାର ଅତି ଅଳ୍ପ ମାତ୍ର ଅବଶିଷ୍ଟ ଅଛି ।

Digitized by srujanika@gmail.com

ହେ ରାଜନ୍ ! କୁନ୍ତୀଙ୍କର ଏବଂବିଧ ବହୁଳ ବାକ୍ୟ ଦ୍ୱାରା ରାଜା ଯୁଧିଷ୍ଠିର ଓ ସହଦେବଙ୍କ ମନ ସ୍ତମ୍ଭିତ ହେଲା । ସେହି କୁରୁପୁଙ୍ଗବଗଣ ମାତା କୁନ୍ତୀ-କର୍ତ୍ତୃକ ଗମନ ନିମିତ୍ତ ଅନୁଜ୍ଞା ପ୍ରାପ୍ତହୋଇ କୁରୁରାଜ ଧୃତରାଷ୍ଟ୍ରଙ୍କୁ ଅଭିବାଦନ ପୂର୍ବକ ଆମନ୍ତ୍ରଣ କରିବାକୁ ଆରମ୍ଭ କଲେ ।

ଯୁଧିଷ୍ଠିର କହିଲେ—ହେ ରାଜନ୍ ! ଆପଣ ମଙ୍ଗଳଦାତା । ଆମ୍ଭେମାନେ ଆପଣଙ୍କଦ୍ୱାରା ଯଦି ଅନୁଜ୍ଞାତ ଓ ଅଭିନନ୍ଦିତ ହେବୁଁ, ତେବେ ନିର୍ବିଘ୍ନରେ ରାଜ୍ୟକୁ ଗମନ କରିବୁଁ । ରାଜର୍ଷି ଧୃତରାଷ୍ଟ୍ର ମହାତ୍ମା ଧର୍ମରାଜ ଯୁଧିଷ୍ଠିରଙ୍କ ମୁଖରୁ ଏତାଦୃଶ ବାକ୍ୟ ଶ୍ରବଣ କରି ତାହାଙ୍କୁ ଅଭିନନ୍ଦନ ପୂର୍ବକ ଗମନ ନିମିତ୍ତ ଅନୁମତି କଲେ ।

ତଦନନ୍ତର ବଳଶ୍ରେଷ୍ଠ ଭୀମସେନ, ଅର୍ଜ୍ଜୁନ ଓ ଯମଜ ନକୁଳ ସହଦେବଙ୍କୁ ସାନ୍ତ୍ୱନା ପ୍ରଦାନ ପୂର୍ବକ ଆଶ୍ୱାସନା ଦେଇ ଆଲିଙ୍ଗନ ଓ ଅଭିନନ୍ଦନ କରି ଗମନ ନିମିତ୍ତ ଆଦେଶ କଲେ ।

ପାଣ୍ଡବଗଣ ଗାନ୍ଧାରୀକର୍ତ୍ତୃକ ଆଦିଷ୍ଟ ଓ ଜନନୀ କୁନ୍ତୀଙ୍କଦ୍ୱାରା ମସ୍ତକରେ ଆଘ୍ରାତ ହୋଇ ସେମାନଙ୍କୁ ଅଭିବାଦନ କରି ନିବାରିତ ବତ୍ସଗଣ ସଦୃଶ ପ୍ରଦକ୍ଷିଣ ପୂର୍ବକ ବାରମ୍ବାର ନିରୀକ୍ଷଣ କରି ଗମନ କଲେ । ଦ୍ରୌପଦୀ ପ୍ରଭୃତି କୁରୁନାରୀଗଣ ନ୍ୟାଯ୍ୟାନୁସାରେ ଶ୍ୱଶୁର ଧୃତରାଷ୍ଟ୍ର ଓ କୁନ୍ତୀଙ୍କଦ୍ୱାରା ଅନୁଜ୍ଞାତା ହୋଇ ଆଲିଙ୍ଗନ ପୂର୍ବକ ଅଭିନନ୍ଦିତା ଓ ଇତି କର୍ତ୍ତବ୍ୟ ବିଷୟ ସମୂହରେ ଆଦିଷ୍ଟ ହୋଇ ନିଜ ନିଜ ପତିଙ୍କ ସହିତ ଗମନ କଲେ ।

ତଦନନ୍ତର 'ବାହନ ଯୋଜନା କର', ସୂତଗଣଙ୍କର ଏହିପ୍ରକାର ନିନାଦ, ଉଷ୍ଟ୍ରମାନଙ୍କ ଆକ୍ରୋଶ ଏବଂ ଅଶ୍ୱବୃନ୍ଦର ହ୍ରେଷାରବ ଉତ୍ଥିତ ହେଲା । ତଦନନ୍ତର ରାଜା ଯୁଧିଷ୍ଠିର କଳତ୍ର, ବନ୍ଧୁ ଓ ସୈନିକଗଣଙ୍କ ସମଭିବ୍ୟାହାରରେ ହସ୍ତିନାନଗରକୁ ପୁନଶ୍ଚ ଆଗମନ କଲେ । ୫୩ ।

---

Digitized by srujanika@gmail.com

# ସପ୍ତତ୍ରିଂଶତ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! ପାଣ୍ଡବଗଣ ଧୃତରାଷ୍ଟ୍ରଙ୍କ ନିକଟରୁ ହସ୍ତିନାନଗରକୁ ଆଗମନ କରିବାର ଦୁଇବର୍ଷ ଉତ୍ତାରେ ଏକଦା ଦେବର୍ଷି ନାରଦ ଇଚ୍ଛାନୁସାରେ ଯୁଧିଷ୍ଠିରଙ୍କ ନିକଟକୁ ଆଗମନ କଲେ । ୧ । ନାରଦ, କୁରୁରାଜ ମହାବାହୁ ଯୁଧିଷ୍ଠିରକର୍ତ୍ତୃକ ଅର୍ଚ୍ଚିତ ହୋଇ ଉପବେଶନ କଲାରୁ, ବାଗ୍ମିବର ଧର୍ମରାଜ ତାହାଙ୍କୁ ବିଶ୍ୱସ୍ତ ଭାବରେ କହିଲେ । ୨ ।

ହେ ବିପ୍ରବର ! ଆମ୍ଭେ ଆପଣଙ୍କୁ ବହୁକାଳ ହେଲା ଆଗମନ କରିବାର ଦେଖିନଥିଲୁଁ । ସମ୍ପ୍ରତି ଆପଣଙ୍କର କୁଶଳ ? ହେ ଦ୍ୱିଜବର ! ଆପଣ କେତେ ଦେଶ ପରିଦର୍ଶନ କରିଅଛନ୍ତି । ଆମ୍ଭେ ସମ୍ପ୍ରତି ଅବା ଆପଣଙ୍କର କେଉଁ ମଙ୍ଗଳ କାର୍ଯ୍ୟ ସମ୍ପାଦନ କରିବୁଁ, ତାହା କହିବା ହେଉନ୍ତୁ । ଆପଣ ଆମ୍ଭମାନଙ୍କର ପରମ ଗତି । ୪ ।

ନାରଦ କହିଲେ—ହେ ନୃପ ! ଆମ୍ଭେ ଗଙ୍ଗା ପ୍ରଭୃତି ତୀର୍ଥସମୂହ ପରିଦର୍ଶନ କରିବାରେ ବହୁକାଳ ହେଲା ତୁମ୍ଭ ସହିତ ସାକ୍ଷାତ୍ ହୋଇନାହିଁ ବୋଲି ତପୋବନରୁ ଆଗମନ କରିଅଛୁଁ । ୫ ।

ଯୁଧିଷ୍ଠିର କହିଲେ—ହେ ତପୋଧନ ! ଗଙ୍ଗାତୀରନିବାସୀ ପୁରୁଷଗଣ ଆମ୍ଭ ନିକଟରେ ମହାତ୍ମା ଧୃତରାଷ୍ଟ୍ରଙ୍କର କଠୋର ତପୋନୁଷ୍ଠାନର ବିଷୟ କୀର୍ତ୍ତନ କରୁଥାଆନ୍ତି । ପରନ୍ତୁ ଆପଣ କି ସେଠାରେ କୁରୁରାଜ, ଗାନ୍ଧାରୀ, ପୃଥା ଓ ସୂତତନୟ ସଞ୍ଜୟ ଏହିମାନଙ୍କୁ କୁଶଳରେ ଥିବାର ଦେଖିଅଛନ୍ତି ? ହେ ଭଗବନ୍ ! ଆପଣ ଯଦି ସେହି ମହାୟ ପିତା ପୃଥ୍ୱୀପତି ଧୃତରାଷ୍ଟ୍ରଙ୍କୁ ଦର୍ଶନ କରି ଥାଆନ୍ତି, ତେବେ ସେ ସମ୍ପ୍ରତି କୀଦୃଶ ଅବସ୍ଥାରେ ଅବସ୍ଥାନ କରି ଅଛନ୍ତି, ତାହା ଆପଣଙ୍କ ନିକଟରୁ ଶୁଣିବାକୁ ଇଚ୍ଛା କରୁଅଛୁଁ । ୮ ।

ନାରଦ କହିଲେ—ହେ ମହାରାଜ ! ଆମ୍ଭେ ସେହି ତପୋବନରେ ଯାହା ଦର୍ଶନ ଓ ଶ୍ରବଣ କରିଅଛୁଁ, ତାହା ପ୍ରକୃତରୂପେ ଆପଣଙ୍କୁ କହୁଅଛୁଁ । ଆପଣ ସ୍ଥିର ହୋଇ ଶ୍ରବଣ କରିବା ହେଉନ୍ତୁ । ୯ ।

Digitized by srujanika@gmail.com

ହେ କୁରୁନନ୍ଦନ ! ଆପଣମାନେ ବନବାସରୁ ନିବୃତ୍ତ ହେଲାରୁ ଆପଣଙ୍କ ପିତା ଧୃତରାଷ୍ଟ୍ର ଗାନ୍ଧାରୀ, କୁନ୍ତୀ, ସୂତ ସଞ୍ଜୟ, ଅଗ୍ନିହୋତ୍ର ଓ ଯାଜକଗଣଙ୍କ ସହିତ କୁରୁକ୍ଷେତ୍ରରୁ ଗଙ୍ଗାଦ୍ୱାରକୁ ଗମନ କଲେ । ୧୧ ।

ତଦନନ୍ତର ସେହି ତପୋଧନ ଭୂପାଳ ପିତା ମୌନାବଲମ୍ବନ ପୂର୍ବକ ମୁଖମଧ୍ୟରେ ବୀଟା ଅର୍ଥାତ୍ ଗୁଳୀ ସ୍ଥାପନ କରି ବାୟୁଭକ୍ଷଣ ପୂର୍ବକ ତୀବ୍ର ତପସ୍ୟା ଅବଲମ୍ବନ କରିଥିଲେ । ୧୨ । ସେହି ମହାତପା ଏହିରୂପେ ଅତି କଠୋର ତପସ୍ୟା କରି ବନମଧ୍ୟରେ ମୁନିଗଣଙ୍କର ପୂଜିତ ହୋଇ ଛଅମାସ ମଧ୍ୟରେ ଅସ୍ଥି ଓ ଚର୍ମମାତ୍ରାବଶିଷ୍ଟ ହେଲେ । ୧୩ । ହେ ଭାରତ ! ଗାନ୍ଧାରୀ କେବଳ ଜଳପାନ କରି, କୁନ୍ତୀ ଏକମାସ ଉତ୍ତାରେ ଏକ ଦିନ ଓ ସଞ୍ଜୟ ପାଞ୍ଚଦିନ ପରେ ଏକ ଦିନ ମାତ୍ର ଆହାର କରି କାଳହରଣ କଲେ । ୧୪ ।

ହେ ପ୍ରଭୋ ! ସେଠାରେ ଯାଜକଗଣ ସେହି ନରନାଥଙ୍କ ସମକ୍ଷରେ ଯଥାବିଧାନରେ ଅଗ୍ନିରେ ଆହୁତି ପ୍ରଦାନ କଲେ । ତଦନନ୍ତର ରାଜା ନିକେତନ ପରିତ୍ୟାଗ ପୂର୍ବକ କାନନାଭିମୁଖେ ଯାତ୍ରା କରିବାରୁ ଦେବୀ ଗାନ୍ଧାରୀ, କୁନ୍ତୀ ଓ ସଞ୍ଜୟ ତାହାଙ୍କ ଅନୁଗାମୀ ହେଲେ । ୧୬ । ହେ ରାଜନ୍ ! ସଞ୍ଜୟ ନରପତିଙ୍କର ସମ ଓ ବିଷମ ପ୍ରଦେଶ ଗମନର ନାୟକ ହେଲେ ଏବଂ ଅନିନ୍ଦିତା ପୃଥା ଗାନ୍ଧାରୀଙ୍କର ଚକ୍ଷୁସ୍ୱରୂପା ହେଲେ । ୧୭ ।

ତଦନନ୍ତର ନୃପସତ୍ତମ ଧୃତରାଷ୍ଟ୍ର ଗଙ୍ଗାର କୌଣସି ତୀରକୁ ଗମନ କରି ଆଶ୍ରମାଭିମୁଖ ହୋଇ ଗଙ୍ଗାରେ ଅବଗାହନ କଲେ । ୧୮ । ପରିଶେଷରେ ମହାବାୟୁ ସମୁଦ୍ଭୂତ ହେବାରୁ ତାହାଦ୍ୱାରା ଦାବାଗ୍ନି ଉତ୍ପନ୍ନ ହେଲା । ସେହି ଦାବାନଳ କ୍ରମଶଃ ବନର ଚତୁଃପାର୍ଶ୍ୱ ବେଷ୍ଟନ କରି ସମସ୍ତ ଭସ୍ମ କଲା । ୧୯ । ମୃଗଯୂଥ ଓ ସର୍ପସମୂହ ଦଗ୍ଧ ହେଲେ ଏବଂ ବରାହକୁଳ ଜଳାଶ୍ରୟ ଆଶ୍ରୟ କଲେ । ସେହି ବନ ନଷ୍ଟ ଓ ଅତିଶୟ ବ୍ୟସନ ଉପସ୍ଥିତ ହେବାରୁ ରାଜା ଅନାହାରବଶତଃ ମନ୍ଦପ୍ରାଣ ଓ ନିଶ୍ଚେଷ୍ଟ ହେଲେ, ଏବଂ ତୁମ୍ଭର ମାତା କୁନ୍ତୀ ଓ ଗାନ୍ଧାରୀ ତାହାଙ୍କ ନିକଟରୁ ଗମନ କରିବା ବିଷୟରେ ଅସମର୍ଥା ହେଲେ ।

Digitized by srujanika@gmail.com

ତଦନନ୍ତର ନରପତି ନିକଟସ୍ଥ ହେବା ବହ୍ନି ଦେଖି ରାଜର୍ଷିପ୍ରବର ସୂତପୁତ୍ର ସଞ୍ଜୟଙ୍କୁ ଏହି କଥା କହିଲେ ଯେ, ହେ ସଞ୍ଜୟ ! ଯେଉଁ ସ୍ଥାନରେ ଅଗ୍ନି ଅଛି ତୁମ୍ଭେ ସେଠାକୁ ଗମନ କର । ବହ୍ନି ତୁମ୍ଭଙ୍କୁ କଦାପି ଦଗ୍ଧ କରିବେ ନାହିଁ । ୨୩ । ଆମ୍ଭେମାନେ ଏହି ସ୍ଥାନରେ ଅଗ୍ନିକର୍ତ୍ତୃକ ଗୃହୀତ ହୋଇ ପରମଗତି ଲଭ କରିବୁଁ । ବାଗ୍ମିବର ସଞ୍ଜୟ ଉଦ୍‌ବିଗ୍ନ ହୋଇ ତାହାଙ୍କୁ କହିଲେ—୨୪ ।

ହେ ରାଜନ୍ ! ଏହି ବୃଥା ଅଗ୍ନିରେ ଆପଣଙ୍କର ମୃତ୍ୟୁ ହେଲେ ତାହା ଅନିଷ୍ଟକର ହେବ । ପରନ୍ତୁ ଅଗ୍ନିରୁ ପରିତ୍ରାଣ ପାଇବାର ଉପାୟ ଆମ୍ଭେ ଦେଖୁନାହୁଁ । ୨୫ । ଅତଃପର ଯାହା କର୍ତ୍ତବ୍ୟ ଆପଣ ତାହା ଆଦେଶ କରିବା ହେଉନ୍ତୁ ।

ପାର୍ଥିବ ଧୃତରାଷ୍ଟ୍ର ସଞ୍ଜୟଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ପୁନଶ୍ଚ ତାହାଙ୍କୁ କହିଲେ—ହେ ସଞ୍ଜୟ ! ଆମ୍ଭେମାନେ ଯଦି ଗୃହରୁ ବହିର୍ଗତ ହୋଇଅଛୁଁ, ତେବେ ଏହି ମୃତ୍ୟୁ ଆମ୍ଭମାନଙ୍କର ଅନିଷ୍ଟକର ହେବ ନାହିଁ । ଜଳ, ବାୟୁ, ଅଗ୍ନି ଏବଂ ଯୋଗବଳରେ ପ୍ରାଣବାୟୁର ଆକର୍ଷଣ ହୁଏ । ଏହାସବୁ ତପସ୍ୱିମାନଙ୍କ ମୃତ୍ୟୁ ବିଷୟରେ ପ୍ରଶସ୍ତ ଅଟେ । ଅତଏବ ତୁମ୍ଭେ ବିଳମ୍ବ କରନା, ଶୀଘ୍ର ଗମନ କର । ରାଜା ସଞ୍ଜୟଙ୍କୁ ଏହି ପ୍ରକାର କହି ଯୋଗରେ ଚିତ୍ତସମାଧାନ ପୂର୍ବକ ଗାନ୍ଧାରୀ ଓ କୁନ୍ତୀଙ୍କ ସହିତ ପୂର୍ବମୁଖରେ ଉପବେଶନ କଲେ ।

ମେଧାବୀ ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ଯୋଗରେ ଚିତ୍ତସମାଧାନ କରିବାର ଦେଖି ତାହାଙ୍କୁ ପ୍ରଦକ୍ଷିଣ କରି କହିଲେ—ହେ ପ୍ରଭୋ ! ଆପଣ ଆତ୍ମାକୁ ମୁକ୍ତ କରନ୍ତୁ । ଋଷିପୁତ୍ର ମନୀଷୀ ରାଜା ଧୃତରାଷ୍ଟ୍ର ସଞ୍ଜୟଙ୍କ ସେହି ବାକ୍ୟ ଶ୍ରବଣ ପୂର୍ବକ ଇନ୍ଦ୍ରିୟମାନଙ୍କୁ ସମ୍ୟକ୍‌ରୂପେ ରୋଧକରି କାଷ୍ଠସଦୃଶ ଅବସ୍ଥାନ କଲେ ।

ତଦନନ୍ତର ମହାଭାଗା ଗାନ୍ଧାରୀ, ଭୂପତି ଜନନୀ ପୃଥା ଏବଂ ରାଜା ଦାବାଗ୍ନି ସହିତ ସଂଯୁକ୍ତ ହେଲେ । ମହାମାତ୍ର ସଞ୍ଜୟ ସେହି ଦାବାନଳରୁ ମୁକ୍ତ ହେଲେ । ୩୨ ।

Digitized by srujanika@gmail.com

ଆମ୍ଭେ ଦେଖିଲୁଁ ଯେ ତେଜସ୍ୱୀ ସଞ୍ଜୟ ଗଙ୍ଗାକୂଳରେ ତାପସଗଣ-କର୍ତ୍ତୃକ ପରିବାରିତ ହୋଇ ସେମାନଙ୍କୁ ଆମନ୍ତ୍ରଣ ପୂର୍ବକ ସମସ୍ତ ବୃତ୍ତାନ୍ତ ନିବେଦନ କରି ହିମାଳୟ ପର୍ବତକୁ ଗମନ କଲେ ।

ହେ ବିଶାଂପତେ ! ମହାମନା କୁରୁରାଜ, ଗାନ୍ଧାରୀ ଏବଂ ପୃଥା ଏହିରୂପେ ନିଧନପ୍ରାପ୍ତ ହୋଇଅଛନ୍ତି । ହେ ଭାରତ ! ଆମ୍ଭେ ଦୈବଗତିରେ ପରିଭ୍ରମଣ କରି ରାଜା, ଦେବୀ ଗାନ୍ଧାରୀ ଓ କୁନ୍ତୀଙ୍କ କଳେବର ଦର୍ଶନକଲୁଁ ।

ତଦନନ୍ତର ତପୋଧନ ଋଷିଗଣ ସେହି ତପୋବନକୁ ଆଗମନ କରି ରାଜାଙ୍କର ତାଦୃଶ ନିଷ୍ଠା ଶ୍ରବଣ କରି ଶୋକ କଲେ ନାହିଁ । ହେ ପୁରୁଷସତ୍ତମ ! ଆମ୍ଭେ ସେଠାରେ ଏହି ସମସ୍ତ ବୃତ୍ତାନ୍ତ ଶ୍ରବଣ କଲୁଁ । ୩୭ । ହେ ପାଣ୍ଡବ ! ନୃପତି, ଦେବୀ ଗାନ୍ଧାରୀ ଓ କୁନ୍ତୀଦେବୀ ଯେଉଁ ପ୍ରକାରରେ ଦଗ୍‌ଧ ହୋଇ ଅଛନ୍ତି, ତାହା ତୁମ୍ଭ ପକ୍ଷରେ ଶୋକର ବିଷୟ ନୁହେ । କାରଣ, ତୁମ୍ଭର ଜନନୀ, ଗାନ୍ଧାରୀ ଓ ରାଜା ସ୍ୱେଚ୍ଛାପୂର୍ବକ ଅନଳରେ ପ୍ରବେଶ କରିଥିବାରୁ ସେମାନଙ୍କ ସଦ୍‌ଗତି ବିଷୟରେ ସଂଶୟ ନାହିଁ । ୩୮ ।

ବୈଶମ୍ପାୟନ କହିଲେ—ହେ ମହାରାଜ ! ମହାତ୍ମା ପାଣ୍ଡବଗଣ ଧୃତରାଷ୍ଟ୍ରଙ୍କର ପରଲୋକଗମନ ବୃତ୍ତାନ୍ତ ଶ୍ରବଣ କରି ଅତିଶୟ ଶୋକାର୍ତ୍ତ ହେଲେ । ୩୯ । ରାଜାଙ୍କର ପରଲୋକଗମନ ବୃତ୍ତାନ୍ତ ଶ୍ରବଣ କରି ଅନ୍ତଃପୁର ଓ ପୁରବାସିମାନଙ୍କର ମହାନ୍ ଆର୍ତ୍ତନାଦ ଉତ୍ଥିତ ହେଲା । ୪୦ ।

ଯୁଧିଷ୍ଠିର ଓ ଭୀମସେନ ପ୍ରଭୃତି ଭ୍ରାତୃଗଣ ମାତାଙ୍କୁ ସ୍ମରଣ କରି ଅତ୍ୟନ୍ତ ଦୁଃଖିତ ହୋଇ 'ଅହୋ ଧିକ୍' ଏହି କଥା କହି ବାହୁଦ୍ୱୟ ଉତ୍ତୋଳନ ପୂର୍ବକ ଉଚ୍ଚୈଃସ୍ୱରରେ ରୋଦନ କଲେ । ୪୨ । ହେ ମହାରାଜ ! ପୃଥାଙ୍କର ମୃତ୍ୟୁ ସମ୍ବାଦ ଶ୍ରବଣ କରିବାରୁ ଅନ୍ତଃପୁର ମଧ୍ୟରେ ମହାନ୍ ରୋଦନଧ୍ୱନି ପ୍ରାଦୁର୍ଭୂତ ହେଲା । ହତପୁତ୍ର ବୃଦ୍ଧ ନରନାଥ ଧୃତରାଷ୍ଟ୍ର ଓ ତପସ୍ୱିନୀ ଗାନ୍ଧାରୀ ସେହିରୂପେ ଦଗ୍‌ଧ ହୋଇଥିବାର ଶ୍ରବଣ କରି ସମସ୍ତେ ରୋଦନ କଲେ । ୪୪ । ହେ ଭରତ ! ମୁହୂର୍ତ୍ତ ମଧ୍ୟରେ ସେହି ଶବ୍ଦ ନିବୃତ୍ତ ହେବାରୁ ଧର୍ମରାଜ ଧୈର୍ଯ୍ୟବଶତଃ ବାଷ୍ପସଂବରଣ କରି କହିଲେ । ୪୫ ।

Digitized by srujanika@gmail.com

# ଅଷ୍ଟତ୍ରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ ବ୍ରହ୍ମନ୍ ! ଆମ୍ଭେମାନେ ସମସ୍ତ ବନ୍ଧୁବାନ୍ଧବଙ୍କ ବିଦ୍ୟମାନତା ସତ୍ତ୍ୱେ ଉଗ୍ରତର ତପସ୍ୟାରେ ନିରତ ସେହି ମହାତ୍ମା ଧୃତରାଷ୍ଟ୍ରଙ୍କର ବନମଧ୍ୟରେ ଅନାଥ ସଦୃଶ ମୃତ୍ୟୁ ହେଲା । ୧ । ସେହି ବିଚିତ୍ରବୀର୍ଯ୍ୟସୁତ ଯଦି ଦାବାନଳରେ ଦଗ୍ଧ ହୋଇଅଛନ୍ତି, ତେବେ ଆମ୍ଭେ ନିଶ୍ଚୟ ଜାଣିଲୁଁ ଯେ, ପୁରୁଷର ଗତି ସହଜରେ ଜଣାଯାଏ ନାହିଁ । ୨ । ଯାହାଙ୍କର ବାହୁ-ବଳଶାଳୀ ଶତପୁତ୍ର ଜନ୍ମିଥିଲେ, ସେହି ଅୟୁତ ବାରଣ ସମ ବଳଶାଳୀ ରାଜା ଧୃତରାଷ୍ଟ୍ର ଦାବାନଳରେ ଦଗ୍ଧ ହେଲେ । ୩ ।

ପ୍ରଧାନ ରମଣୀଗଣ ଯାହାଙ୍କୁ ତାଳବୃନ୍ତଦ୍ୱାରା ବୀଜନ କରୁଥିଲେ, ସମ୍ପ୍ରତି ଦାବାଗ୍ନି ପରିଗୃହୀତ ସେହି ମହୀପତି ଧୃତରାଷ୍ଟ୍ରଙ୍କୁ ଗୃଧ୍ରଗଣ ବୀଜନ କଲେ । ୪ । ହା ଯେ ଉତ୍ତମ ଶଯ୍ୟାରେ ଶୟନ କରି ପ୍ରତିଦିନ ପ୍ରଭାତରେ ସୂତ ଓ ମାଗଧସମୂହଦ୍ୱାରା ପ୍ରବୋଧିତ ହୁଅନ୍ତି, ଅଦ୍ୟ ସେହି ନରପତି ଏହି ପାପାତ୍ମାର କାର୍ଯ୍ୟଦୋଷରେ ଧରାତଳରେ ଶୟନ କଲେ । ୫ । ଆମ୍ଭେ ସେହି ଭର୍ତ୍ତୃବ୍ରତନିରତା ପତିଲୋକଗତା ହତପୁତ୍ରା ଯଶସ୍ୱିନୀ ଗାନ୍ଧାରୀଙ୍କ ନିମିତ୍ତ ଶୋକ କରୁନାହୁଁ । କିନ୍ତୁ ଯେ ସମୃଦ୍ଧିସମ୍ପନ୍ନ ପ୍ରଦୀପ୍ତ ପୁତ୍ରଗଣଙ୍କ ଐଶ୍ୱର୍ଯ୍ୟ ପରିତ୍ୟାଗ ପୂର୍ବକ ବନବାସକୁ ଅଭିଳାଷ କରିଥିଲେ, ସେହି ପୃଥାଙ୍କ ନିମିତ୍ତ ଆମ୍ଭର ଅତ୍ୟନ୍ତ ଶୋକ ଉପସ୍ଥିତ ହେଉଅଛି । ୭ । ଆମ୍ଭମାନଙ୍କର ରାଜ୍ୟ, ବଳ, ପରାକ୍ରମ ଓ କ୍ଷତ୍ରଧର୍ମକୁ ଧିକ୍, ଏବଂ ଆମ୍ଭେମାନେ ଯେ ମୃତ ହୋଇ ପୁନର୍ଜୀବିତ ହେଲୁଁ ତାହାକୁ ମଧ୍ୟ ଧିକ୍ ।

ହେ ଦ୍ୱିଜବରୋତ୍ତମ ! କାଳର ଗତି ଅତି ସୂକ୍ଷ୍ମ । କାରଣ ରାଜା ଧୃତରାଷ୍ଟ୍ର ରାଜ୍ୟ ପରିତ୍ୟାଗ ପୂର୍ବକ ବନବାସରେ ଅଭିଳାଷୀ ହେଲେ; ପୃଥା ଯୁଧିଷ୍ଠିର, ଭୀମ ଓ ବିଜୟଙ୍କର ଜନନୀ ହୋଇ ଅନାଥା ସଦୃଶ କେଉଁ କାରଣରେ ଯେ ଦଗ୍ଧ ହେଲେ, ଏହା ଚିନ୍ତାକରି ଆମ୍ଭେ ବିମୋହିତ ହେଉଅଛୁଁ । ୧୦ ।

ସବ୍ୟସାଚୀ ଖାଣ୍ଡବବନରେ ଅନର୍ଥକ ଅଗ୍ନିର ତୃପ୍ତିସାଧନ କରି-ଥିଲେ । ସେ ସେ ଉପକାର ସ୍ୱୀକାର ନ କରିବାରୁ ତାହାଙ୍କୁ କୃତଘ୍ନ ବୋଲି ଆମ୍ଭେ ଜାଣି ପାରୁଅଛୁଁ । ଯେ ସେହି ବନମଧ୍ୟରେ ଭିକ୍ଷାର୍ଥୀ

Digitized by srujanika@gmail.com

ବ୍ରାହ୍ମଣ ଛଳରେ ନିକଟସ୍ଥ ହୋଇ ଅର୍ଜ୍ଜୁନଙ୍କୁ ଭିକ୍ଷା ଯାଚଞ୍ଚା କରିଥିଲେ, ସେହି ଭଗବାନ୍ ଅଗ୍ନିଦେବ ସବ୍ୟସାଚୀଙ୍କ ମାତା ପୃଥାଙ୍କୁ ଦଗ୍‌ଧ କରିଅଛନ୍ତି । ସେହି ଭଗବାନ୍ ବହ୍ନି ଏବଂ ପାର୍ଥଙ୍କ ବିଖ୍ୟାତ ସତ୍ୟସନ୍ଧତାକୁ ଧିକ୍ । କାରଣ, ହେ ଭଗବନ୍ ! ଏହା ସର୍ବାପେକ୍ଷା ଆମ୍ଭର କଷ୍ଟକର ବୋଲି ବୋଧ ହେଉଅଛି ।

ରାଜର୍ଷି ତପସ୍ୱୀ ପୃଥିବୀପତି କୁରୁପତିଙ୍କର ଯାହା ଅଗ୍ନିସଂଯୋଗ ହୋଇଅଛି, ତାହା ବୃଥା । ସେହି ମହାବନରେ ତାହାଙ୍କର ମନ୍ତ୍ରପୂତ ବହ୍ନି ବିଦ୍ୟମାନ ଥାଉଁ ଥାଉଁ କି ନିମିତ୍ତ ଏପ୍ରକାର ମୃତ୍ୟୁ ହେଲା ? ଆମ୍ଭଙ୍କୁ ଜଣା ଯାଉଅଛି ଯେ, ପିତାଙ୍କର ତାଦୃଶ ଅଗ୍ନିସହିତ ସଂଯୋଗ ହେବାଦ୍ୱାରା ନିଷ୍ଠା ଲାଭ ହୋଇଅଛି । ଏବଂ ସେହି ଅତ୍ୟନ୍ତ କୃଶା, ଶିରାବ୍ୟାପ୍ତା ପୃଥା ମହାଭୟରେ କମ୍ପିତା ହୋଇ, 'ହା ତାତ ! ଧର୍ମରାଜ !' ଏହି କଥା କହି ରୋଦନ କରି, 'ହେ ଭୀମ ! ଭୟରୁ ରକ୍ଷାକର', ଏହି ବାକ୍ୟ ଉଚ୍ଚାରଣ ପୂର୍ବକ ଅବସନ୍ନା ହୋଇ ଦାବାଗ୍ନିଦ୍ୱାରା ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଅଛନ୍ତି । ତାହାଙ୍କର ସମସ୍ତ ପୁତ୍ର ଅପେକ୍ଷା ଅଧିକ ପ୍ରିୟ ବୀରବର ମାଦ୍ରୀସୁତ ସହଦେବ ତାହାଙ୍କୁ ଅଗ୍ନିରୁ ମୋଚନ କରିପାରିଲେ ନାହିଁ !

ପଞ୍ଚପାଣ୍ଡବ ତାହା ଶୁଣି ସମସ୍ତେ ଦୁଃଖିତ ଚିତ୍ତରେ ପରସ୍ପର ଆଲିଙ୍ଗନ କରି ପ୍ରଳୟକାଳରେ ପ୍ରାଣିଗଣ ଯାଦୃଶ ରୋଦନ କରନ୍ତି, ତାଦୃଶ ରୋଦନ କଲେ । ସେହି ପୁରୁଷପ୍ରବର ପାଣ୍ଡବଗଣ ରୋଦନ କରୁଥିବା ସମୟରେ ସେମାନଙ୍କ ରୋଦନଧ୍ୱନି ପ୍ରାସାଦର ପରିସର ପ୍ରଦେଶରେ ପରିବ୍ୟାପ୍ତ ହେବାରୁ ସେହି ପ୍ରାସାଦ ପ୍ରଦେଶ ଗଗନମଣ୍ଡଳ ସହିତ ରୋଦନ କଲାପ୍ରାୟ ଜଣା ଯାଉଥିଲା । ୨୧ ।

---

## ଏକୋନଚତ୍ୱାରିଂଶତ୍ତମ ଅଧ୍ୟାୟ

ନାରଦ କହିଲେ—ହେ ଭରତ ! ଆମ୍ଭେ ସେହି ଅରଣ୍ୟରେ ଯେଉଁ ପ୍ରକାର ଶ୍ରବଣ କରିଅଛୁଁ ତାହା ତୁମ୍ଭଙ୍କୁ କହିବୁଁ । ତାହା ଅନ୍ୟଥା ହେବ ନାହିଁ । ଆମ୍ଭେ ଶୁଣିଲୁ ଯେ, ସେହି ବିଚିତ୍ରବୀର୍ଯ୍ୟତନୟ ନରପତି ଧୃତରାଷ୍ଟ୍ର ବୃଥା ଅଗ୍ନିରେ ଦଗ୍‌ଧ ହୋଇନାହାନ୍ତି ।

Digitized by srujanika@gmail.com

ହେ ଭରତସତ୍ତମ ! ଆମ୍ଭେମାନେ ଏହିପ୍ରକାର ଶୁଣିଅଛୁଁ ଯେ, ସେହି ଧୀମାନ୍ ନରନାଥ ବାୟୁଭକ୍ଷଣ ପୂର୍ବକ ବନରେ ପ୍ରବେଶ କରି ଯଜ୍ଞ କରାଇ ଅଗ୍ନିଙ୍କୁ ବିସର୍ଜନ କରିଥିଲେ ।

ତଦନନ୍ତର ଯାଜକଗଣ ନିର୍ଜନ ବନ ମଧ୍ୟରେ ତାହାଙ୍କର ସେହି ଅଗ୍ନିଙ୍କୁ ବିସର୍ଜନ କରି ଅଭିଲଷିତ ସ୍ଥାନକୁ ଗମନ କରିଥିଲେ । ତାପସଗଣ ଏହିପ୍ରକାର କହିଲେ ଯେ, ତେତେବେଳେ ସେହି ବହ୍ନି ବନ ମଧ୍ୟରେ ଅତିଶୟ ବର୍ଦ୍ଧିତ ହୋଇ ସେହି ଅରଣ୍ୟର ପ୍ରକୃଷ୍ଟ ଦୀପ୍ତି ସାଧନ କରିଥିଲେ ।

ହେ ଭରତପ୍ରବର ! ତଦନନ୍ତର ରାଜା ଜାହ୍ନବୀକୂଳରେ ସେହି ବହ୍ନି ସହିତ ସଂଯୁକ୍ତ ହେଲେ ।

ହେ ଯୁଧିଷ୍ଠିର ! ଭାଗୀରଥୀ ତୀରରେ ଆମ୍ଭେ ଯେଉଁ ମୁନିଗଣଙ୍କୁ ଦର୍ଶନ କରିଥିଲୁଁ, ସେମାନେ ଆମ୍ଭଙ୍କୁ ଏହି ବୃତ୍ତାନ୍ତସବୁ କହିଥିଲେ । ୬ ।

ହେ ମହୀପତେ ! ରାଜା ଯଦି ଏହିପରି ନିଜ ଅଗ୍ନିରେ ସଂଯୁକ୍ତ ହୋଇ ଅଛନ୍ତି, ତେବେ ସେ ନିଶ୍ଚୟ ପରମଗତି ଲାଭ କରିଅଛନ୍ତି । ତାହାଙ୍କ ନିମିତ୍ତ ଆପଣ ଶୋକ କରିବେ ନାହିଁ । ୭ ।

ହେ ଜନନାଥ ! ଆପଣଙ୍କ ଜନନୀ ଗୁରୁଶୁଶ୍ରୂଷାଦ୍ୱାରା ମହତୀ ସିଦ୍ଧି ଲାଭ କରିଅଛନ୍ତି । ତଦ୍‌ବିଷୟରେ ଆଉ ସଂଶୟ ନାହିଁ । ୮ ।

ହେ ରାଜେନ୍ଦ୍ର ! ସଂପ୍ରତି ଆପଣ ଭ୍ରାତୃଗଣଙ୍କ ସହିତ ସେମାନଙ୍କର ଯଥାବିଧି ଉଦକକ୍ରିୟା ସମ୍ପାଦନ କରିବା ହେଉନ୍ତୁ । ୯ ।

ବୈଶମ୍ପାୟନ କହିଲେ—ନରବର ! ତଦନନ୍ତର ସେହି ପାଣ୍ଡବ ଧୁରନ୍ଧର ପୃଥିବୀପତି ଯୁଧିଷ୍ଠିର ଭ୍ରାତା ଓ ପତ୍ନୀଗଣଙ୍କ ସମଭିବ୍ୟାହାରରେ ପୁରରୁ ବହିର୍ଗତ ହେଲେ । ୧୦ । ପୌର ଓ ଜନପଦବାସିଗଣ ରାଜଭକ୍ତି ପ୍ରଦର୍ଶନ ପୂର୍ବକ ଏକବସ୍ତ୍ରରେ ସମ୍ବୃତ ହୋଇ ସେମାନଙ୍କୁ ବେଷ୍ଟନ କରି ଗଙ୍ଗାଭିମୁଖରେ ଗମନ କଲେ । ୧୧ ।

ତଦନନ୍ତର ସେହି ନରପୁଙ୍ଗବଗଣ ଗଙ୍ଗା ସଲିଳରେ ଅବଗାହନ ପୂର୍ବକ ଯୁଯୁତ୍ସୁଙ୍କୁ ଅଗ୍ରରେ କରି ମହାତ୍ମା ଧୃତରାଷ୍ଟ୍ରଙ୍କୁ ସଲିଳ ପ୍ରଦାନ କଲେ । ୧୨ ।

Digitized by srujanika@gmail.com

ତଦନନ୍ତର ଗାନ୍ଧାରୀ ଓ ପୃଥାଙ୍କ ନାମ ଗୋତ୍ର ଉଚ୍ଚାରଣ ପୂର୍ବକ ଯଥାବିଧି ଶୌଚକାର୍ଯ୍ୟ ନିବର୍ତ୍ତିତ କରି ନଗରର ବହିର୍ଭାଗରେ ଅବସ୍ଥାନ କଲେ । ୧୩ ।

ଧୃତରାଷ୍ଟ୍ର ଯେଉଁ ସ୍ଥାନରେ ଦଗ୍ଧ ହୋଇଥିଲେ, ନରବର ଯୁଧିଷ୍ଠିର ସେହି ଗଙ୍ଗାଦ୍ୱାରକୁ ବିଧିଜ୍ଞ ଆପ୍ତକାରୀ ମନୁଷ୍ୟଗଣଙ୍କୁ ପ୍ରେରଣ କଲେ । ୧୪ । ମହାମତି ଯୁଧିଷ୍ଠିର ସେହି ନରଗଣଙ୍କୁ ଗଙ୍ଗାଦ୍ୱାରରେ ସେମାନଙ୍କର କର୍ତ୍ତବ୍ୟ କାର୍ଯ୍ୟସବୁ କରିବା ନିମିତ୍ତ ଆଦେଶ କଲେ ।

ତଦନନ୍ତର ପାଣ୍ଡୁନନ୍ଦନ ନରନାଥ ଯୁଧିଷ୍ଠିର ଦ୍ୱାଦଶାହରେ କୃତ-ଶୌଚ ହୋଇ ସେମାନଙ୍କୁ ବିଧିବିହିତ ଦକ୍ଷିଣାଯୁକ୍ତ ଶ୍ରାଦ୍ଧଦାନ କଲେ । ୧୬ । ସେ ଧୃତରାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ ସୁବର୍ଣ୍ଣ, ରଜତ, ଗୌ ଓ ମହାମୂଲ୍ୟ ଶଯ୍ୟା ପ୍ରଦାନ କଲେ । ୧୭ ।

ତଦନନ୍ତର ପୃଥକ୍‌ରୂପେ ଗାନ୍ଧାରୀ ଓ ପୃଥାଙ୍କ ନାମ ଉଚ୍ଚାରଣ ପୂର୍ବକ ଉତ୍ତମ ବସ୍ତୁସମୂହ ଦାନକଲେ । ୧୮ । ସେତେବେଳେ ଶଯ୍ୟା, ଭୋଜନପାତ୍ର, ଯାନ, ମଣି, ରତ୍ନ, ଧନ ପ୍ରଭୃତି ଯାହାଙ୍କର ଯାହା ଇଚ୍ଛାହେଲା ସେ ତାହା ପ୍ରାପ୍ତ ହେଲେ । ୧୯ । ରାଜା ଯୁଧିଷ୍ଠିର ତାହାଙ୍କ ମାତା ପୃଥା ଓ ଗାନ୍ଧାରୀଙ୍କ ଉଦ୍ଦେଶ୍ୟରେ ଯାନ, ଆଚ୍ଛାଦନ, ବସ୍ତ୍ର, ବିବିଧ ଭୋଗ୍ୟବସ୍ତୁବୃନ୍ଦ ଏବଂ ସାଳଂକୃତା ଦାସୀଗଣ ଦାନକଲେ । ୨୦ ।

ତଦନନ୍ତର ସେ ପିତୃମାତୃଙ୍କ ଉଦ୍ଦେଶ୍ୟରେ ଅନେକପ୍ରକାର ଶ୍ରାଦ୍ଧୀୟ ଦ୍ରବ୍ୟ ଦାନକରି ହସ୍ତିନାନଗରରେ ପ୍ରବେଶ କଲେ । ୨୧ ।

ରାଜାଙ୍କ ଆଦେଶାନୁସାରେ ଯେଉଁ ପୁରୁଷଗଣ ଧୃତରାଷ୍ଟ୍ର ପ୍ରଭୃତିଙ୍କର ସଂସ୍କାର ନିମିତ୍ତ ଗମନ କରିଥିଲେ, ସେମାନେ ସେମାନଙ୍କ ଅସ୍ଥି ଏକତ୍ରିତ କରି ପୁନଶ୍ଚ ପ୍ରତ୍ୟାଗତ ହେଲେ । ୨୨ । ଯୁଧିଷ୍ଠିର ବିବିଧ ମାଲ୍ୟ, ଗନ୍ଧଦ୍ୱାରା ଯଥାବିଧି ଅର୍ଚ୍ଚନାକରି ଗଙ୍ଗା ସହିତ ସଂଯୋଗ କରିବାକୁ କହିଲେ । ୨୩ ।

ହେ ରାଜନ୍ ! ପରମର୍ଷି ନାରଦ ଧର୍ମାତ୍ମା ଯୁଧିଷ୍ଠିରଙ୍କୁ ଆଶ୍ୱାସନା କରି ଅଭିଳଷିତ ସ୍ଥାନକୁ ଗମନ କଲେ । ୨୪ ।

Digitized by srujanika@gmail.com

ସମରରେ ହତ ପୁତ୍ର, ଜ୍ଞାତି, ସମ୍ବନ୍ଧୀ, ମିତ୍ର, ଭ୍ରାତା ଓ ସ୍ୱଜନଗଣଙ୍କୁ ସର୍ବଦା ଧନଦାନ କରି ଧୀମାନ୍ ଧୃତରାଷ୍ଟ୍ର ଏହିରୂପେ ନଗରରେ ପଞ୍ଚଦଶ ବର୍ଷ ଏବଂ ବନବାସରେ ତିନିବର୍ଷ ସମସ୍ତ ଅତିବାହନ କରିଥିଲେ । ୨୬ । ଜ୍ଞାତି-ବାନ୍ଧବ ନିହତ ହେବାରୁ ସେତେବେଳେ ଯୁଧିଷ୍ଠିର ରାଜ୍ୟଲାଭ କରିବାରେ ଅତିଶୟ ପ୍ରୀତଚିତ୍ତ ହେଲେ ନାହିଁ, କିନ୍ତୁ ଅତି ଦୁଃଖିତ ହୋଇ ରାଜ୍ୟଶାସନ କଲେ । ୨୭ ।



Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

ନାରାୟଣ, ନରୋତ୍ତମ, ନର ଏବଂ ଦେବୀ ସରସ୍ୱତୀଙ୍କୁ ପ୍ରଣାମ କରି ଜୟ ନାମକ ଗ୍ରନ୍ଥ କୀର୍ତ୍ତନ କରିବାର ବିଧେୟ ।

ବୈଶମ୍ପାୟନ କହିଲେ—କୌରବନନ୍ଦନ ଯୁଧିଷ୍ଠିର ରାଜ୍ୟପ୍ରାପ୍ତି ଉତ୍ତାରେ ଷଟ୍‌ତ୍ରିଂଶ ବର୍ଷରେ ପ୍ରାରମ୍ଭରେ ବହୁବିଧ ଦୁର୍ନିମିତ୍ତମାନ ଦର୍ଶନ କଲେ ।୧। ଚତୁର୍ଦ୍ଦିଗରେ ଶର୍କରାମିଶ୍ରିତ ରୁକ୍ଷ ବାୟୁ ନିର୍ଘାତ ଶବ୍ଦରେ ପ୍ରବାହିତ ହେଲା ଏବଂ ବିହଙ୍ଗମଗଣ ଦକ୍ଷିଣାବର୍ତ୍ତ ମଣ୍ଡଳ ନିର୍ମାଣ ପୂର୍ବକ ଆକାଶରେ ପରିଭ୍ରମଣ କଲେ ।୨। ମହାନଦୀସମୂହ ଶୁଷ୍କ ଓ ଦିକ୍‌ସମୂହ ନୀହାରରେ ଆବୃତ ହେଲେ ଏବଂ ଅଙ୍ଗାରବର୍ଷୀ ଉଲ୍‌କାସମୂହ ଗଗନମଣ୍ଡଳରୁ ଭୂତଳରେ ପତିତ ହେଲେ ।୩।

ହେ ରାଜନ୍ ! ଆଦିତ୍ୟ ରଶ୍ମିବିହୀନ ହେଲେ ଏବଂ ତତ୍ପରେ ମଣ୍ଡଳ ଧୂଳିଧୂସରିତ ଓ କବନ୍ଧଗଣରେ ପରିପୂର୍ଣ୍ଣ ହେବାର ଦୃଷ୍ଟ ହେଲା ।୪। ଚନ୍ଦ୍ର ଓ ସୂର୍ଯ୍ୟଙ୍କର ପରିଧିମଣ୍ଡଳ ଶ୍ୟାମ, ଅରୁଣ ଓ ଧୂସର ଏହି ତ୍ରିବିଧବର୍ଣ୍ଣରେ ରଂଜିତ ହେବାରୁ ଅତି ଭୟାନକ ହେଲା ।୫। ହେ ରାଜନ୍ ! ହୃଦୟର ଉଦ୍‌ବେଗକାରୀ ଓ ଭୟସୂଚକ ଏପ୍ରକାର ଅନ୍ୟ ଅନେକ ଉତ୍ପାତ ଦୃଷ୍ଟ ହେଲା ।

ଏକଦିନ କୁରୁରାଜ ଯୁଧିଷ୍ଠିର ଶ୍ରବଣ କଲେ ଯେ, ବୃଷ୍ଣିବଂଶୀୟଗଣ ସମସ୍ତେ ମୌଷଳ ଯୁଦ୍ଧରେ ବିନଷ୍ଟ ହୋଇଅଛନ୍ତି ଏବଂ ରାମ ଓ ବାସୁଦେବ ଦେହତ୍ୟାଗ କରିଅଛନ୍ତି ।

ପାଣ୍ଡୁନନ୍ଦନ ଯୁଧିଷ୍ଠିର ଏହି କଥା ଶୁଣି ଭ୍ରାତୃଗଣଙ୍କୁ ଆହ୍ୱାନ କରି କହିଲେ—ବ୍ରହ୍ମଶାପବଶତଃ ବୃଷ୍ଣିବଂଶୀୟଗଣ ପରସ୍ପର ସମରାସକ୍ତ ହୋଇ

Digitized by srujanika@gmail.com

ସମସ୍ତେ ବିନଷ୍ଟ ହୋଇଅଛନ୍ତି । ଅତଏବ ଅଧୁନା ଆମ୍ଭମାନଙ୍କର କେଉଁ କାର୍ଯ୍ୟ କରିବା ଉଚିତ ?

ବୀରବର ପାଣ୍ଡୁନନ୍ଦନଗଣ ତାହା ଶ୍ରବଣ କରି ଅତିଶୟ ବ୍ୟଥିତ ହେଲେ । ୯ । ପରନ୍ତୁ ବଳଦେବ ଓ ଶ୍ରୀକୃଷ୍ଣ ଯେ ବିନଷ୍ଟ ହୋଇଅଛନ୍ତି, ଏହା ସମୁଦ୍ରଶୋଷଣ ସଦୃଶ ଅସମ୍ଭବ ବୋଲି ପ୍ରଥମତଃ କେହି ବିଶ୍ୱାସ କଲେ ନାହିଁ । ୧୦ ।

ତଦନନ୍ତର ମୌଷଲୀ ସମର ବିଷୟକ ସମସ୍ତ ସମ୍ବାଦ ଶ୍ରବଣ କରି ଦୁଃଖ ଓ ଶୋକରେ ଅଭିଭୂତ ଏବଂ ବିଷଣ୍ଣ ଓ ହତସଙ୍କଳ୍ପ ହୋଇ ଉପବେଶନ କଲେ । ୧୧ ।

ଜନମେଜୟ କହିଲେ—ହେ ଭଗବନ୍ ! ଅନ୍ଧକ, ବୃଷ୍ଣି ଏବଂ ମହାରଥ ଭୋଜବଂଶୀୟଗଣ ବାସୁଦେବଙ୍କ ସମ୍ମୁଖରେ କେଉଁପରି ବିନଷ୍ଟ ହେଲେ, ଏହି ସମସ୍ତ ବିଷୟ ଆପଣ ବିସ୍ତୃତରୂପେ ଆମ୍ଭ ନିକଟରେ ପ୍ରକାଶ କରି କହିବା ହେଉନ୍ତୁ । ୧୨ ।

ବୈଶମ୍ପାୟନ କହିଲେ—ଯୁଧିଷ୍ଠିରଙ୍କ ରାଜ୍ୟଲାଭ ପରେ ଷଟ୍‌ତ୍ରିଂଶ ବର୍ଷରେ ବୃଷ୍ଣିବଂଶୀୟଗଣଙ୍କର ମହତୀ ଦୁର୍ନୀତି ଉପସ୍ଥିତ ହେବାରୁ କାଳପ୍ରଭାବରେ ସେମାନେ ମୁଷଳଦ୍ୱାରା ପରସ୍ପରକୁ ଆଘାତକରି ବିନଷ୍ଟ ହୋଇଥିଲେ । ୧୩ ।

ଜନମେଜୟ କହିଲେ—ହେ ଦ୍ୱିଜଶ୍ରେଷ୍ଠ ! ବୃଷ୍ଣି, ଅନ୍ଧକ ଓ ଭୋଜବଂଶୀୟଗଣ କାହା ଶାପରେ ଏପ୍ରକାର କ୍ଷୟପ୍ରାପ୍ତ ହେଲେ, ଆପଣ ଏହି ସମସ୍ତ ବିଷୟ ଆମ୍ଭ ନିକଟରେ ବିସ୍ତାରକ୍ରମେ କହିବା ହେଉନ୍ତୁ । ୧୪ ।

ବୈଶମ୍ପାୟନ କହିଲେ—ଏକଦା ସାରଣ ପ୍ରଭୃତି ବୀରଗଣ ବିଶ୍ୱାମିତ୍ର, କଣ୍ୱ ଏବଂ ତପୋଧନ ନାରଦଙ୍କୁ ଦ୍ୱାରକା ନଗରରେ ସମାଗତ ହୋଇ-ଥିବାର ଦେଖି ସାମ୍ବଙ୍କୁ ସ୍ତ୍ରୀସଦୃଶ ସଜ୍ଜିତ କରି କାଳପ୍ରେରିତ ହେଲାପରି ଋଷିଗଣଙ୍କ ସନ୍ନିଧାନକୁ ଗମନ କରି କହିଲେ—ହେ ମହର୍ଷିଗଣ ! ପୁତ୍ରାଭିଳାଷୀ ଅମିତ ତେଜସ୍ୱୀ ବଭ୍ରୁଙ୍କର ଏହି ପତ୍ନୀ କ'ଣ ପ୍ରସବ କରିବେ, ତାହା ଆପଣମାନେ ଉତ୍ତମରୂପେ ଗଣନା କରି ଦେଖିବା ହେଉନ୍ତୁ । ୧୭ ।

Digitized by srujanika@gmail.com

ହେ ମହାରାଜ ! ମହର୍ଷିଗଣ ଏହି ବାକ୍ୟ ଶ୍ରବଣ କରି ବୃଷ୍ଣିବଂଶୀୟଗଣଙ୍କ ବଞ୍ଚନା ବାକ୍ୟରେ ଅତିଶୟ ରୁଷ୍ଟ ହେଲେ, ଏବଂ ଯେଉଁ ପ୍ରତ୍ୟୁତ୍ତର ପ୍ରଦାନ କଲେ, ତାହା ଶ୍ରବଣ କରିବା ହେଉନ୍ତୁ । ୧୮ ।

ସେମାନେ କହିଲେ—ଏହି ବାସୁଦେବଙ୍କ ନନ୍ଦନ ସାମ୍ବ, ବୃଷ୍ଣି ଓ ଅନ୍ଧକଗଣଙ୍କ ବିନାଶ ନିମିତ୍ତ ଗୋଟିଏ ଘୋର ଆୟସ ମୂଷଳ ପ୍ରସବ କରିବେ । ୧୯ । ତୁମ୍ଭେମାନେ ଅତିଶୟ ଦୁର୍ବୃତ୍ତ, ଗର୍ବିତ ଓ ନୃଶଂସ ହୋଇଅଛ । ଅତଏବ ତୁମ୍ଭମାନଙ୍କ ଦୋଷରେ ରାମ କୃଷ୍ଣଙ୍କ ବ୍ୟତିରେକେ ସମଗ୍ର ଯଦୁକୁଳ ବିନଷ୍ଟ ହେବେ । ୨୦ ।

ଶ୍ରୀମାନ୍ ହଳାୟୁଧ ସମୁଦ୍ରରେ ପ୍ରବେଶ କରି ଯୋଗବଳରେ ଦେହତ୍ୟାଗ କରିବେ ଏବଂ ଜରା ନାମକ କୌଣସି କୈବର୍ତ୍ତ ଭୂତଳରେ ଶୟାନ ମହାତ୍ମା କୃଷ୍ଣଙ୍କୁ ଶର ପ୍ରହାର କରିବ । ୨୧ ।

ହେ ନରନାଥ ! ଦୁଃସ୍ୱଭାବ ଯାଦବଗଣକର୍ତ୍ତୃକ ପ୍ରତାରିତ ସେହି ମୁନିଗଣ କ୍ରୋଧରେ ଲୋହିତଲୋଚନ ହୋଇ ପରସ୍ପର ପରସ୍ପରଙ୍କୁ ଅବଲୋକନ କରି ଏହି କଥା କହି କାଳେ କୃଷ୍ଣ କ୍ରୁଦ୍ଧ ହେବେ ଏହି ଭୟରେ ମନୋମଧ୍ୟରେ ଚିନ୍ତାକରି ତାଙ୍କ ନିକଟକୁ ଗମନ କଲେ ।

ଅନାଗତବିଜ୍ଞ ମତିମାନ୍ ମଧୁସୂଦନ ସେମାନଙ୍କ ନିକଟରୁ ଏହି ସମସ୍ତ ବିବରଣ ଶ୍ରବଣ କରି ବୃଷ୍ଣିବଂଶୀୟଗଣଙ୍କୁ କହିଲେ ଯେ, ମୁନିଗଣ ଯେଉଁ ପ୍ରକାର କହିଛନ୍ତି ତଦନୁରୂପ ହେବ ।

ତଦନନ୍ତର ସେହି ଜଗତ୍ପ୍ରଭୁ ହୃଷୀକେଶ କାଳବଶତଃ ଯାହା ହୋଇଅଛି ତାହାର ଅନ୍ୟଥାକରଣ ନିମିତ୍ତ ଅଭିଳାଷୀ ନ ହୋଇ ପୁରମଧ୍ୟରେ ପ୍ରବେଶ କଲେ ।

ପରଦିନ ପ୍ରାତଃକାଳରେ ସାମ୍ବ, ଯାହାଦ୍ୱାରା ବୃଷ୍ଣି ଓ ଅନ୍ଧକକୁଳର ପୁରୁଷଗଣ ଭସ୍ମାବଶେଷ ହୋଇଥିଲେ, ସେହି ମୂଷଳକୁ ପ୍ରସବ କଲେ ।

ହେ ରାଜନ୍ ! ତଦନନ୍ତର ବୃଷ୍ଣି ଓ ଅନ୍ଧକଗଣର ବିନାଶ ନିମିତ୍ତ ମୁନିଶାପବଶତଃ ସାମ୍ବକର୍ତ୍ତୃକ ପ୍ରସୂତ ଯମଦୂତସଦୃଶ ସେହି ସୁମହତ୍ ମୂଷଳର ବିଷୟ ଯାଦବମାନେ ରାଜା ଉଗ୍ରସେନଙ୍କ ନିକଟରେ ନିବେଦନ କଲେ ।

Digitized by srujanika@gmail.com

ସେ ବିଷଣ୍ଣ ହୋଇ ତାହାକୁ ସୂକ୍ଷ୍ମ ଚୂର୍ଣ୍ଣ କରାଇଲେ, ଏବଂ ଯାଦବଗଣ ସେହି ଚୂର୍ଣ୍ଣସବୁ ସାଗରରେ ନିକ୍ଷେପ କଲେ ।

ତଦନନ୍ତର ସେମାନେ ମହାତ୍ମା ଜନାର୍ଦ୍ଦନ, ରାମ, ବଭ୍ରୁ ଓ ଆହୁକଙ୍କ ବଚନାନୁସାରେ ନଗର ମଧ୍ୟରେ ଏହିପ୍ରକାର ଘୋଷଣା କଲେ ଯେ, ଅଦ୍ୟାବଧି ନଗରବାସୀ ବୃଷ୍ଣି ଓ ଅନ୍ଧକବଂଶୀୟ ଜନଗଣଙ୍କ ମଧ୍ୟରେ କେହି ଯେଉଁପରି ସୁରା ପ୍ରଭୃତିର ପାନଦ୍ୱାରା ମତ୍ତ ହେବେ ନାହିଁ । କୌଣସି ବ୍ୟକ୍ତି ମଦ୍ୟପାନ କରଅଛି ବୋଲି ଆମ୍ଭେମାନେ ଯଦି ଶୁଣିପାରିବୁ, ତେବେ ସେ ବ୍ୟକ୍ତି ଏକାକୀ ପାନ କରିଥିଲେହେଁ ସେ ସବାନ୍ଧବ ହୋଇ ଜୀବିତାବସ୍ଥାରେ ଶୂଳରେ ଆରୋହଣ କରିବେ । ୩୦ ।

ଦ୍ୱାରକାବାସିଗଣ ଅକ୍ଲିଷ୍ଟକର୍ମା ରାମଙ୍କର ଏତାଦୃଶ ଶାସନ ଅବଗତ ହୋଇ ରାଜଭୟରେ 'ଆମ୍ଭେମାନେ ଆଉ ମଦ୍ୟପାନ କରିବା ନାହିଁ' ଏହିପ୍ରକାର ନିୟମ ସଂସ୍ଥାପନ କଲେ । ୩୧ ।

---

# ଦ୍ୱିତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଅନ୍ଧକଗଣଙ୍କ ସହିତ ବୃଷ୍ଣିବଂଶୀୟଗଣ ଏହିପ୍ରକାର ସାବଧାନ ହେବାରୁ କାଳପୁରୁଷ ନିରନ୍ତର ସମସ୍ତଙ୍କ ଗୃହରେ ପରିଭ୍ରମଣ କଲେ । ୧ । କୌଣସି କୌଣସି ଗୃହରେ ସେହି କାଳପୁରୁଷ ଦୃଷ୍ଟ ନହେଲେ ସୁଦ୍ଧା ମୁଣ୍ଡିତମସ୍ତକ କରାଳବଦନ ବିକଟଦର୍ଶନ କାଳପୁରୁଷ ବୃଷ୍ଣିବଂଶୀୟମାନଙ୍କ ସମସ୍ତ ଗୃହ ପର୍ଯ୍ୟବେକ୍ଷଣ କରୁଥିବାର ଦେଖାଯାଉଥିଲା । ୨ ।

ଯାଦବଗଣ ତାହାକୁ ବଧ କରିବା ନିମିତ୍ତ ଅସଂଖ୍ୟ ଶର କ୍ଷେପଣ କଲେ କିନ୍ତୁ କୌଣସି ଶରଦ୍ୱାରା ସେମାନେ ସେହି ସର୍ବଭୂତ କ୍ଷୟକାରୀକୁ ପୀଡ଼ା ଦେବା ନିମିତ୍ତ ସମର୍ଥ ହେଲେ ନାହିଁ । ୩ ।

ତତ୍ସମୟରେ ପ୍ରତିଦିନ ବୃଷ୍ଣି ଓ ଅନ୍ଧକବଂଶୀୟଗଣଙ୍କ ବିନାଶସୂଚକ ପ୍ରବଳତର ଲୋମହର୍ଷଣ ନିଦାରୁଣ ମହାବାତ ପ୍ରବାହିତ ହେଲା । ୪ ।

Digitized by srujanika@gmail.com

ମାର୍ଗମଧ୍ୟରେ ଅସଂଖ୍ୟ ମୂଷିକ ଓ ଭଗ୍ନମୃତ୍ପାତ୍ରସମୂହ ଦୃଷ୍ଟିଗୋଚର ହେଲା, ଏବଂ ଯଦୁବଂଶୀୟଗଣ ସୁପ୍ତ ହେବାରୁ ରଜନୀରେ ମୂଷିକଗଣ ସେମାନଙ୍କର ନଖ ଓ କେଶସମୂହ ଛେଦନ କଲେ । ୫ । ବୃଷ୍ଣିବଂଶୀୟଗଣଙ୍କର ଗୃହସ୍ଥିତ ସାରିକାସମୂହ ନିରନ୍ତର ଚୀ ଚୀ କୂଚୀରବ ଅର୍ଥାତ୍ ଅପ୍ରୀତିକର ଶବ୍ଦରେ ରୋଦନ କଲେ ଏବଂ ସେହି ଶବ୍ଦ ଅହୋରାତ୍ର ମଧ୍ୟରେ ଥରେ ସୁଦ୍ଧା ଉପଶାନ୍ତ ହେଲା ନାହିଁ । ୬ ।

ହେ ଭାରତ ! ଭଦ୍ରସମୂହରେ ସାରସଗଣ ଉଲୂକମାନଙ୍କର ଏବଂ ଅଜଗଣ ଶିବାଗଣଙ୍କର ରବ ଅନୁକରଣ କଲେ । ୭ । ପାଣ୍ଡୁରବର୍ଣ୍ଣ ଓ ରକ୍ତପାଦ କପୋତ ପ୍ରଭୃତି ବିହଙ୍ଗମଗଣ କାଳକର୍ତ୍ତୃକ ପ୍ରେରିତ ହୋଇ ବୃଷ୍ଣି ଓ ଅନ୍ଧକଗଣଙ୍କ ପ୍ରତି ଗୃହରେ ବିଚରଣ କଲେ । ୮ । ଗୋଯୋନିରେ ଗର୍ଦ୍ଦଭ, ଅଶ୍ୱତରୀମାନଙ୍କ ଗର୍ଭରେ କରଭ, ଶୁନୀମାନଙ୍କ ଗର୍ଭରୁ ବିଡ଼ାଳ ଏବଂ ନକୁଳୀଗଣଙ୍କ ଗର୍ଭରୁ ମୂଷିକସମୂହ ଉତ୍ପନ୍ନ ହେଲେ । ୯ ।

ତେତେବେଳେ ବାର୍ଷ୍ଣେୟଗଣ ପାପକାର୍ଯ୍ୟ କରି ଲଜ୍ଜାବୋଧ କଲେ ନାହିଁ ଏବଂ ଦେବତା, ବ୍ରାହ୍ମଣ ଓ ପିତୃଗଣଙ୍କୁ ଦ୍ୱେଷକଲେ । ୧୦ । ରାମ ଓ କୃଷ୍ଣଙ୍କ ବ୍ୟତିରେକେ ପ୍ରାୟ ସମସ୍ତ ଯାଦବ ଗୁରୁଗଣଙ୍କୁ ଅବମାନନା କଲେ ଏବଂ ପତ୍ନୀଗଣ ପତିମାନଙ୍କୁ ଏବଂ ପତିଗଣ ପତ୍ନୀମାନଙ୍କୁ ବଞ୍ଚନା କଲେ । ୧୧ ।

ବିଭାବସୁ ନୀଳ, ଲୋହିତ ଓ ମଂଜିଷ୍ଠାବର୍ଣ୍ଣ ଶିଖାସମୂହ ସହିତ ବାମ ଆବର୍ତ୍ତରେ ପ୍ରଜ୍ୱଳିତ ହେଲେ । ୧୨ । ସେ ପୁରୀରେ ଉଦୟାସ୍ତ ସମୟରେ ଦିବାକର ବାରଂବାର କବନ୍ଧ ପୁରୁଷଗଣଙ୍କ ଦ୍ୱାରା ପରିବୃତ ହୋଇଥିବାର ଦୃଷ୍ଟ ହେଲେ । ୧୩ ।

ହେ ଭାରତ ! ସିଦ୍ଧ ପାକଶାଳା ମଧ୍ୟରେ ସୁସଂକୃତ ଅନ୍ନାଦ ଆହାରୀୟ ଦ୍ରବ୍ୟରେ ସହସ୍ର ସହସ୍ର କୃମି ଦୃଷ୍ଟ ହେଲେ । ୧୪ । ଯେତେବେଳେ ସେହି ମହାତ୍ମାଗଣ ପୁଣ୍ୟାହବାଚନ ଓ ଜପ ପ୍ରଭୃତିରେ ନିରତ ଥାଆନ୍ତି, ତେତେବେଳେ ଜଣାଯାଉଥିଲା ଯେଉଁପରି କୌଣସି ବ୍ୟକ୍ତି ସେହି ସ୍ଥାନରେ ଧାବିତ ହେଉଅଛି । କିନ୍ତୁ ସେଠାରେ ତେତେବେଳେ କୌଣସି ବ୍ୟକ୍ତି ଦେଖାଯାଏ ନାହିଁ । ୧୫ ।

Digitized by srujanika@gmail.com

ଯାଦବଗଣ ପରସ୍ପର ନକ୍ଷତ୍ରକୁ ଗ୍ରହଣକର୍ତ୍ତାଙ୍କ ଦ୍ୱାରା ଆକ୍ରାନ୍ତ ହେବାର ଦେଖୁଥିଲେ। କିନ୍ତୁ କେହି ଆପଣାର ନକ୍ଷତ୍ରକୁ ଦେଖିଲେ ନାହିଁ । ୧୬ । ବୃଷ୍ଣି ଓ ଅନ୍ଧକବଂଶୀୟମାନଙ୍କ ଗୃହରେ ପାଞ୍ଚଜନ୍ୟ ଶଙ୍ଖ ଶବ୍ଦର ସମାନ ସମୟରେ ଦାରୁଣସ୍ୱର ଗର୍ଦ୍ଦଭଗଣ ଶବ୍ଦ କରୁଥିଲେ । ୧୭ ।

ସେହି ସମୟରେ ଏକଦା ତ୍ରୟୋଦଶୀରେ ଅମାବାସ୍ୟାର ସଂଯୋଗ ହେବାରୁ ହୃଷୀକେଶ ନିତାନ୍ତ ଦୁର୍ଲକ୍ଷଣ ବିବେଚନା କରି ଯାଦବଗଣଙ୍କୁ କହିଲେ—ହେ ବୀରଗଣ ! ଦେଖ ! ଭାରତଯୁଦ୍ଧ ସମୟରେ ଯେଉଁ ପ୍ରକାର ହୋଇଥିଲା, ଅଧୁନା ଆମ୍ଭମାନଙ୍କ ବିନାଶ ନିମିତ୍ତ ତଦ୍‌ବତ୍‌ ରାହୁଦ୍ୱାରା ତ୍ରୟୋଦଶୀରେ ପୌର୍ଣ୍ଣମାସୀର କାର୍ଯ୍ୟ ସମ୍ପାଦିତ ହୋଇଅଛି । କେଶୀନିସୂଦନ ଜନାର୍ଦ୍ଦନ ଏହି କଥା କହି କ୍ଷଣମାତ୍ର ଚିନ୍ତାକରି ନିର୍ଦ୍ଧାରିତ ସମୟ ସମାଗତ ହେଲା ବୋଲି ମନେକରି ପୁନଶ୍ଚ କହିଲେ—ହତବାନ୍ଧବା ଗାନ୍ଧାରୀ ପୁତ୍ର-ଶୋକରେ ସନ୍ତପ୍ତା ହୋଇ ଆର୍ତ୍ତଭାବରେ ଯାହା କହିଥିଲେ, ସେହି ଷଟ୍‌ତ୍ରିଂଶ ବର୍ଷ ଉପସ୍ଥିତ ହୋଇଅଛି । ଅପିଚ ପୂର୍ବେ ସୈନ୍ୟବୃନ୍ଦ ବ୍ୟୂହ ରଚନାରେ ବିନ୍ୟସ୍ତ ହେବା ସମୟରେ ଯୁଧିଷ୍ଠିର ନିଦାରୁଣ ଉତ୍ପାତସମୂହ ଦର୍ଶନ କରି ଯାହା ଆଶଙ୍କା କରିଥିଲେ, ସମ୍ପ୍ରତି ତାହା ଉପସ୍ଥିତ ହୋଇଅଛି ।

ଅରିନ୍ଦମ ବାସୁଦେବ ଏହି କଥା କହି ସେହି ଦୈବକୃତ ଦୁର୍ନିମିତ୍ତମାନଙ୍କୁ ସତ୍ୟ କରିବା ଅଭିଳାଷରେ ତେତେବେଳେ ତୀର୍ଥଯାତ୍ରା ନିମିତ୍ତ ଆଦେଶ କଲେ । ୨୩ । ତେତେବେଳେ ପୁରୁଷଗଣ ନଗରମଧ୍ୟରେ ଏହି ପ୍ରକାର ଘୋଷଣା କଲେ ଯେ, ହେ ପୁରୁଷପୁଙ୍ଗବଗଣ ! କେଶବଙ୍କ ଆଦେଶାନୁସାରେ ତୁମ୍ଭେମାନେ ସମସ୍ତେ ତୀର୍ଥଯାତ୍ରା ନିମିତ୍ତ ପ୍ରଭାସ ତୀର୍ଥକୁ ଗମନ କରିବ । ୨୪ ।

---

## ତୃତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ନାରୀଗଣ ସ୍ୱପ୍ନାବସ୍ଥାରେ ଦେଖିଲେ ଯେ, ତେତେବେଳେ ଏକ କାଳୀ ସ୍ତ୍ରୀ ରଜନୀରେ ପାଣ୍ଡୁରବର୍ଣ୍ଣ ଦନ୍ତ ବାହାର କରି ହସି ହସି ଯାଦବଗଣଙ୍କ ଗୃହରେ ପ୍ରବେଶ କଲା ଏବଂ ନିଦ୍ରାବସ୍ଥାରେ

Digitized by srujanika@gmail.com

ଯାଦବରମଣୀଗଣଙ୍କର ମଙ୍ଗଳସୂତ୍ର ପ୍ରଭୃତି ହରଣ କରି ଦ୍ୱାରକାନଗରର ସର୍ବତ୍ର ପରିଭ୍ରମଣ କଲା । ୧ ।

ବୃଷ୍ଣି ଓ ଅନ୍ଧକବଂଶୀୟଗଣ ସ୍ୱପ୍ନାବସ୍ଥାରେ ଏହିପ୍ରକାର ଦେଖିଲେ ଯେ, ଭୟାନକ ଗୃଧ୍ରଗଣ ସେମାନଙ୍କ ଅଗ୍ନିହୋତ୍ର ଗୃହ ଓ ବାସଗୃହ ସମୂହରେ ସେମାନଙ୍କୁ ଭକ୍ଷଣ କରୁଅଛନ୍ତି ଏବଂ ଭୟାନକ ନିଶାଚରଗଣକର୍ତ୍ତୃକ ସେମାନଙ୍କର ଅଳଙ୍କାର, ଛତ୍ର, ଧ୍ୱଜ ଓ କବଚନିକର ଅପହୃତ ହୋଇଅଛି ।୩।

ପୂର୍ବେ ହୁତାଶନ ଯେଉଁ ଅୟୋମୟ ବଜ୍ରନାଭ ଚକ୍ର ପ୍ରଦାନ କରିଥିଲେ, ତାହା ବାର୍ଷ୍ଣେୟଗଣଙ୍କ ସମ୍ମୁଖରେ ଆକାଶରେ ଆରୋହଣ କଲା । ୪ । ଦାରୁକଙ୍କ ସମ୍ମୁଖରେ ତଦୀୟ ମନୋଜବ ଅଶ୍ୱଗଣ ସେହି ସଂଯୋଜିତ ଆଦିତ୍ୟବର୍ଣ୍ଣ ଦିବ୍ୟ ରଥ ହରଣ କରି ସମୁଦ୍ରମଧ୍ୟକୁ ଗମନ କଲେ । ୫ ।

ରାମ ଓ ଜନାର୍ଦ୍ଦନ ତାଳଧ୍ୱଜ ଓ ଗରୁଡ଼ଧ୍ୱଜ ନାମକ ଯେଉଁ ମହାରଥଦ୍ୱୟ ସର୍ବଦା ପୂଜା କରନ୍ତି, ଅପ୍‌ସରାଗଣ ଅନ୍ତରୀକ୍ଷକୁ ସେହି ରଥଦ୍ୱୟକୁ ହରଣ କରି ନେଲେ, ଏବଂ ଦିବସ ଓ ରଜନୀରେ 'ତୁମ୍ଭେମାନେ ତୀର୍ଥଯାତ୍ରା କର' ଏହିପ୍ରକାର ବଚନ କହୁଥିଲେ । ୬ ।

ଅନନ୍ତର ବୃଷ୍ଣି ଓ ଅନ୍ଧକବଂଶୀୟ ମହାରଥ ନରବରଗଣ ଜିଗମିଷୁ ହୋଇ ଅନ୍ତଃପୁରଚାରିଣୀ ମହିଳାଗଣଙ୍କ ସହିତ ତୀର୍ଥଯାତ୍ରା କରିବାକୁ ଅଭିଳାଷୀ ହେଲେ । ୭ ।

ତେତେବେଳେ ସେମାନେ ନାନାବିଧ ଭକ୍ଷ୍ୟ, ଭୋଜ୍ୟ ଓ ପେୟ ଦ୍ରବ୍ୟ ପ୍ରସ୍ତୁତ କରି ବହୁପରିମିତ ମଦ୍ୟ ଓ ମାଂସ ଆହରଣ କଲେ, ଏବଂ ଉଗ୍ରବୀର୍ଯ୍ୟ ସମୁଜ୍ଜ୍ୱଳ ସୈନିକଗଣଙ୍କ ସହିତ ଅଶ୍ୱ, ଗଜ ଓ ଯାନସମୂହରେ ଆରୋହଣ କରି ନଗରରୁ ନିର୍ଗତ ହେଲେ ।

ଏହି ପ୍ରକାରରେ ସେହି ସଦାର ଯଦୁବଂଶୀୟଗଣ ପ୍ରଭୂତ ପେୟ ଓ ଭକ୍ଷ୍ୟସମୂହ ସହିତ ପ୍ରଭାସତୀର୍ଥକୁ ଗମନ କରି ଇଚ୍ଛାନୁସାରେ ଗୃହବାସାନୁରୂପ ସୁଖଭୋଗ କଲେ । ୧୦ ।

Digitized by srujanika@gmail.com

ସେତେବେଳେ ମୋକ୍ଷବିଶାରଦ ଉଦ୍ଧବ ସେମାନଙ୍କୁ ପ୍ରଭାସତୀର୍ଥରେ ଯଦୁବଂଶ ନଷ୍ଟ ହୋଇଥିବାର ଯୋଗବଳରେ ଅବଗତ ହୋଇ ସେହି ବୀରଗଣଙ୍କୁ ଆମନ୍ତ୍ରଣ କରି ପ୍ରସ୍ଥାନ କଲେ ।

ସେହି ମହାତ୍ମା କୃତାଞ୍ଜଳିପୁଟରେ ଅଭିବାଦନ କରି ପ୍ରସ୍ଥିତ ହେବାରୁ ଭଗବାନ୍ ବାସୁଦେବ ତାହାଙ୍କୁ ନିବାରଣ କରିବା ନିମିତ୍ତ ଅଭିଳାଷୀ ହେଲେ ନାହିଁ । କାରଣ, ବୃଷ୍ଣିବଂଶୀୟଗଣ ଯେ ବିନଷ୍ଟ ହେବେ, ତାହା ସେ ପୂର୍ବରୁ ଜାଣିଥିଲେ । ୧୨ ।

କାଳବିପର୍ଯ୍ୟସ୍ତ ବୃଷ୍ଣି ଓ ମହାରଥ ଅନ୍ଧକବଂଶୀୟଗଣ କେବଳ ଏତିକି ଦେଖିଥିଲେ ଯେ, ଉଦ୍ଧବ ସ୍ୱୀୟ ତେଜଦ୍ୱାରା ମହୀତଳ ଓ ଆକାଶମଣ୍ଡଳ ଆବରଣ କରି ଗମନ କରୁଥିଲେ । ୧୩ ।

ଏହିରୂପେ ଉଦ୍ଧବ ପ୍ରସ୍ଥାନ କଲାରୁ ସେହି ପ୍ରଭାସତୀର୍ଥରେ ଉଗ୍ରବୀର୍ଯ୍ୟ ଯାଦବଗଣଙ୍କର ଶତ ଶତ ତୂର୍ଯ୍ୟରବ ଓ ନଟନର୍ତ୍ତକଗଣଙ୍କର ନୃତ୍ୟଗୀତାଦି-ସମନ୍ୱିତ ମହାପାନ ଆରମ୍ଭ ହେଲା । ୧୪ ।

ବ୍ରାହ୍ମଣମାନଙ୍କ ନିମିତ୍ତ ଯେଉଁ ଅନ୍ନସବୁ ପାକ କରାହୋଇଥିଲା, ତାହା ସେମାନେ ମଦମତ୍ତ ହୋଇ ବାନରଗଣଙ୍କୁ ପ୍ରଦାନ କଲେ । ୧୫ । ରାମ, କୃତବର୍ମା, ସାତ୍ୟକି, ଗଦ ଓ ବଭ୍ରୁ ପ୍ରଭୃତି ବୀରଗଣ କୃଷ୍ଣଙ୍କ ସମ୍ମୁଖରେ ମଦ୍ୟପାନ କଲେ । ୧୬ ।

ତଦନନ୍ତର ଯୁଯୁଧାନ ମଦମତ୍ତ ହୋଇ ସଭାମଧ୍ୟରେ ଉପହାସ ଓ ଅବମାନନା କରି କୃତବର୍ମାଙ୍କୁ କହିଲେ—ହେ ହାର୍ଦ୍ଦିକ୍ୟ ! କେଉଁ ବ୍ୟକ୍ତି କ୍ଷତ୍ରିୟକୁଳରେ ଜନ୍ମଗ୍ରହଣ କରି ମୃତ ସଦୃଶ ସୁପ୍ତବ୍ୟକ୍ତିଗଣଙ୍କୁ ବଧ କରେ ? ତୁମ୍ଭେ ଯେଉଁ କାର୍ଯ୍ୟ କରିଅଛ, ଯଦୁବଂଶୀୟଗଣ ତାହା କଦାପି ସହ୍ୟ କରିବେ ନାହିଁ । ୧୮ ।

ସାତ୍ୟକି ଏହି କଥା କହିବାରୁ ରଥିପ୍ରବର ପ୍ରଦ୍ୟୁମ୍ନ କୃତବର୍ମାଙ୍କୁ ଅବଜ୍ଞା କରି ଯୁଯୁଧାନଙ୍କ ସମୀଚୀନ ବାକ୍ୟକୁ ଭୂୟସୀ ପ୍ରଶଂସା କଲେ । ୧୯ । କୃତବର୍ମା ତାହା ଶ୍ରବଣ କରି ଅତିଶୟ କ୍ରୁଦ୍ଧ ହେଲେ ଏବଂ ଅବଜ୍ଞାସୂଚକ ବାମହସ୍ତଦ୍ୱାରା ନିର୍ଦ୍ଦେଶ କରି କହିଲେ—

Digitized by srujanika@gmail.com

ହେ ଶୈନେୟ ! ଛିନ୍ନବାହୁ ଭୂରିଶ୍ରବା ରଣମଧ୍ୟରେ ପ୍ରାୟୋପବିଷ୍ଟ ହେବାରୁ ତୁମ୍ଭେ ବୀର ହୋଇ କେଉଁ ପ୍ରକାରରେ ତାହାଙ୍କୁ ନୃଶଂସରୂପେ ବଧକରି ରଣମଧ୍ୟରେ ପକାଇଅଛ ? ୨୧ ।

ପରବୀରନିସୂଦନ କେଶବ ତାହାଙ୍କର ଏହି କଥା ଶୁଣି ଅତିଶୟ ରୁଷ୍ଟ ହେଲେ ଏବଂ ସରୋଷ ବଙ୍କିମ ନୟନରେ ତାହାଙ୍କୁ ଅବଲୋକନ କଲେ । ୨୨ ।

ତେତେବେଳେ ସାତ୍ୟକି ସତ୍ରାଜିତଙ୍କର ସ୍ୟମନ୍ତକ ମଣି ସମ୍ବନ୍ଧୀୟ ସମ୍ବାଦ ବାବୁ ମଧୁସୂଦନଙ୍କୁ ଶୁଣାଇଲେ । ସତ୍ୟଭାମା ତାହା ଶ୍ରବଣ କରି କ୍ରୁଦ୍ଧା ହୋଇ ଜନାର୍ଦ୍ଦନ କେଶବଙ୍କ କ୍ରୋଧ ଉଦ୍ଦୀପନ ନିମିତ୍ତ ରୋଦନ କରି କରି ତଦୀୟ କ୍ରୋଡ଼ରେ ପତିତା ହେଲେ । ୨୪ ।

ଅନନ୍ତର ସାତ୍ୟକି ସକ୍ରୋଧରେ ଉତ୍ଥିତ ହୋଇ କହିଲେ— ଅୟି ସୁମଧ୍ୟମେ ! ଆମ୍ଭେ ସତ୍ୟଦ୍ୱାରା ଶପଥ କରି କହୁଅଛୁଁ ଯେ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଏବଂ ଦ୍ରୌପଦୀଙ୍କ ପଞ୍ଚ ପୁତ୍ରଗଣ ଯେଉଁ ମାର୍ଗରେ ଗମନ କରିଅଛନ୍ତି, ଆମ୍ଭେ ଅଦ୍ୟ ଏହି ପାପପରାୟଣ କୃତବର୍ମାଙ୍କୁ ସେହି ପଥରେ ପଥିକ କରାଇବୁଁ । ଯେଉଁ ପାପାଶୟ ଦ୍ରୋଣପୁତ୍ରଙ୍କ ସାହାଯ୍ୟରେ ସୌପ୍ତିକ ଅବସ୍ଥାରେ ବୀରଗଣଙ୍କୁ ବିନାଶ କରିଥିଲେ, ସେହି ପାପରେ ଅଦ୍ୟ ସେହି ଦୁରାତ୍ମା କୃତବର୍ମାଙ୍କର ଯଶ ଓ ଆୟୁଃକାଳ ଶେଷ ହୋଇଅଛି । ୨୭ ।

ଯୁଯୁଧାନ ଏହି କଥା କହି ସରୋଷରେ ସମ୍ମୁଖକୁ ଗମନ କରି କେଶବଙ୍କ ସମ୍ମୁଖରେ ଖଡ୍‌ଗଦ୍ୱାରା କୃତବର୍ମାଙ୍କ ମସ୍ତକ ଛେଦନ କଲେ । ୨୮ । ଓ ତଦୀୟ ଅନ୍ୟାନ୍ୟ ବାନ୍ଧବଗଣଙ୍କୁ ବଧକରି ଚତୁର୍ଦ୍ଦିଗରେ ପରିଭ୍ରମଣ କରିବାରୁ କେଶବ ତାହାଙ୍କୁ ନିବାରଣ କରିବା ନିମିତ୍ତ ଅଗ୍ରସର ହେଲେ । ୨୯ ।

ହେ ମହାରାଜ ! ଏହି ଅବସର ମଧ୍ୟରେ ଭୋଜ ଓ ଅନ୍ଧକଗଣ କାଳ ପ୍ରଭାବରେ ଏକତ୍ରିତ ହୋଇ ଶିନିନନ୍ଦନଙ୍କୁ ବେଷ୍ଟନ କଲେ । ୩୦ । ପରନ୍ତୁ ମହାତେଜସ୍ୱୀ ବାସୁଦେବ ସେମାନଙ୍କୁ କ୍ରୋଧଭରରେ ସତ୍ୱର ଆପତିତ ହେବାର ଦେଖି କ୍ରୁଦ୍ଧ ହେଲେ ନାହିଁ । କାରଣ, ସେ କାଳବିପର୍ଯ୍ୟୟର ବିଷୟ ପୂର୍ବରୁ ଅବଗତ ହୋଇଥିଲେ । ୩୧ ।

Digitized by srujanika@gmail.com

ଅନନ୍ତର ସେହି ମଦମତ୍ତ ବୀରଗଣ କାଳପ୍ରେରିତ ହୋଇ ଉଚ୍ଛିଷ୍ଟ ପାତ୍ର-ସମୂହଦ୍ୱାରା ସାତ୍ୟକିଙ୍କୁ ଆଘାତ କଲେ । ୩୨ । ତେତେବେଳେ ରୁକ୍ମିଣୀ-ନନ୍ଦନ ଶୈନେୟଙ୍କୁ ହନ୍ୟମାନ ହେଉଥିବାର ଦର୍ଶନ କରି ତାହାଙ୍କୁ ରକ୍ଷାକରିବା ନିମିତ୍ତ କ୍ରୋଧଭରରେ ଅଭିଦ୍ରୁତ ହୋଇ ଭୋଜଗଣଙ୍କ ସହିତ ଏବଂ ସାତ୍ୟକି ଅନ୍ଧକଗଣଙ୍କ ସହିତ ସମରରେ ଆସକ୍ତ ହେଲେ ।

ବାହୁବଳଶାଳୀ ସେହି ବୀରଦ୍ୱୟ ଅନେକ ଯୁଦ୍ଧକରି ଶତ୍ରୁଗଣଙ୍କର ବହୁତ୍ୱ ବଶତଃ କୃଷ୍ଣଙ୍କ ସମ୍ମୁଖରେ ନିହତ ହେଲେ । ଯଦୁନନ୍ଦନ କେଶବ ପୁତ୍ର ଏବଂ ଶିନିନନ୍ଦନଙ୍କୁ ନିହତ ହେବାର ଦେଖି କ୍ରୋଧଭରରେ ଏକ ମୁଷ୍ଟି ଏରକା ଗ୍ରହଣ କଲେ ଯେ, ତାହା ବଜ୍ରକଳ୍ପ ଭୟଙ୍କର ଅୟୋମୟ ମୂଷଳ ହେଲା । ୩୬ ।

ଅନନ୍ତର ସେ ସମ୍ମୁଖରେ ଯେଉଁ ଯେଉଁମାନଙ୍କୁ ଦେଖିଲେ, ସେହି ମୂଷଳଦ୍ୱାରା ସେହି ସମସ୍ତଙ୍କୁ ବିନଷ୍ଟ କଲେ । କାଳପ୍ରେରିତ ଅନ୍ଧକ, ଭୋଜ, ଶୈନେୟ ଓ ବୃଷ୍ଣିବଂଶୀୟଗଣ ତାହା ଦର୍ଶନ କରି ମୂଷଳଭୂତ ସେହି ଏରକାସମୂହ ଦ୍ୱାରା ପରସ୍ପରକୁ ବିନଷ୍ଟ କଲେ ।

ହେ ବିଭୋ ! ମହାରାଜ ! ତେତେବେଳେ ସେମାନଙ୍କ ମଧ୍ୟରୁ ଯେ କେହି କୋପପରିପୂର୍ଣ ହୋଇ ଗୋଟିଏ ଏରକା ଗ୍ରହଣ କଲେ, ବ୍ରହ୍ମଶାପ ବଶତଃ ତାହା ବଜ୍ର ସଦୃଶ ସାରବାନ୍ ହେଲା ଏବଂ ତୃଣନିକର ମୂଷଳ ହେଲା । ୩୯ ।

ହେ ପାର୍ଥିବ ! ସେମାନେ ଯେଉଁ ତୃଣସମୂହ କ୍ଷେପଣ କରୁଥିଲେ, ତାହାସବୁ ବଜ୍ରସଦୃଶ ସାରବାନ୍ ମୂଷଳ ହୋଇ ବଧିର ଅନର୍ହ ବ୍ୟକ୍ତିଗଣଙ୍କୁ ବଧ କରିବାର ଦେଖାଯାଉଥିଲା ।

ହେ ଭରତ ! ସେମାନେ ଏପ୍ରକାର ମତ୍ତ ହୋଇଥିଲେ ଯେ, ପରସ୍ପର ସମରାସକ୍ତ ହୋଇ ପିତା ପୁତ୍ରକୁ ଏବଂ ପୁତ୍ର ପିତାକୁ ଆଘାତ କରି ନିପତିତ ହେଉଥିଲେ । ୪୧ । ହେ ମହାରାଜ ! ପତଙ୍ଗଗଣ ଯେଉଁପରି ଅଗ୍ନିରେ ନିପତିତ ହୁଅନ୍ତି, ତଦ୍‌ବତ୍ ସେହି କୁକୁର ଓ ଅନ୍ଧକବଂଶୀୟଗଣ ସମରରେ ପତିତ ହେଉଥିଲେ । ୪୨ । ତଥାପି ପଳାୟନ ବିଷୟରେ କାହାର ବୁଦ୍ଧି ହେଲା ନାହିଁ ।

Digitized by srujanika@gmail.com

ମହାବାହୁ ମଧୁସୂଦନ କାଳକୃତ ବିପର୍ଯ୍ୟୟ ବିଷୟ ଜାଣିପାରିଥିଲେ । ସୁତରାଂ ସେହି ସମରରେ ଯେଉଁ ମୂଷଳ ଦେଖିଥିଲେ ତାହା ଗ୍ରହଣ କରି ତଦ୍ଦ୍ୱାରା ସମସ୍ତଙ୍କୁ ନଷ୍ଟକଲେ । ଶାର୍ଙ୍ଗ ଧନୁ, ଗଦା ଓ ଚକ୍ରଧାରୀ ଦାଶାର୍ହ ମାଧବ, ସାମ୍ବ, ଚାରୁଦେଷ୍ଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ଗଦ ପ୍ରଭୃତି ବୀରଗଣଙ୍କୁ ନିହତ ଓ ଭୂତଳରେ ଶୋଇଥିବାର ଦେଖି ଅତିଶୟ କ୍ରୁଦ୍ଧ ହେଲେ ଏବଂ ସେହିରୂପେ ଅବଶିଷ୍ଟଗଣଙ୍କୁ ବିନାଶ କରି ଯଦୁକୁଳ ନିଃଶେଷ କଲେ । ପରପୁରବିଜୟୀ ମହାତେଜସ୍ୱୀ ବଭ୍ରୁ ଓ ଦାରୁକ ତାହାଙ୍କ ନିକଟସ୍ଥ ହୋଇ ଯାହା କହିଲେ ତାହା ଶ୍ରବଣ କରିବାକୁ ପ୍ରସ୍ତୁତ ହୁଅନ୍ତୁ ।

ସେ ଦୁହେଁ କହିଲେ—ହେ ଭଗବନ୍ ! ଆପଣ ସମସ୍ତଙ୍କୁ ନଷ୍ଟକରି ଯଦୁକୁଳକୁ ନିଃଶେଷ କରିଅଛନ୍ତି । ସମ୍ପ୍ରତି ରାମ ଯେଉଁ ସ୍ଥାନରେ ଅବସ୍ଥାନ କରିଅଛନ୍ତି ସେହି ସ୍ଥାନକୁ ଚାଲିବା ହୁଅନ୍ତୁ । ଆମ୍ଭେମାନେ ଆପଣଙ୍କର ଅନୁଗାମୀ ହେଉଅଛୁଁ । ୪୭ ।

—0—

## ଚତୁର୍ଥ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର କେଶବ, ଦାରୁକ ଓ ବଭ୍ରୁ ସତ୍ୱର ପ୍ରସ୍ଥାନ କରି ରାମଙ୍କ ନିକଟକୁ ଗମନ ପୂର୍ବକ ଦେଖିଲେ, ସେହି ଅନନ୍ତ-ବୀର୍ଯ୍ୟ ବଳରାମ ନିର୍ଜନ ପ୍ରଦେଶରେ ବୃକ୍ଷୋପରି ଉପବିଷ୍ଟ ହୋଇ ଚିନ୍ତା କରୁଛନ୍ତି । ୧ । ମାଧବ ମହାନୁଭବ ବଳଦେବଙ୍କୁ ତାଦୃଶ ଭାବରେ ଉପବିଷ୍ଟ ହୋଇଥିବାର ଦର୍ଶନ କରି ଦାରୁକଙ୍କୁ କହିଲେ—ହେ ଦାରୁକ ! ତୁମ୍ଭେ ସତ୍ୱର ଗମନ କରି କୌରବମାନଙ୍କ ନିକଟରେ ବିଶେଷତଃ ପାର୍ଥ ସନ୍ନିଧିରେ ଯାଦବମାନଙ୍କ ନିଦାରୁଣ ନିଧନ ସମ୍ବାଦ ଦିଅ । ୨ । ଏବଂ ଯେଉଁ ପ୍ରକାରରେ ଯାଦବଗଣଙ୍କର ବ୍ରହ୍ମଶାପଜନିତ ମୃତ୍ୟୁସମ୍ବାଦ ଶ୍ରବଣ କରି ଅର୍ଜୁନ ଶୀଘ୍ର ଏହିସ୍ଥାନକୁ ଆସନ୍ତି, ତଦ୍‌ବିଷୟରେ ସାବଧାନ ହୁଅ ।

ଦାରୁକ ଏହି କଥା ଶ୍ରବଣ କରି ବିକଳ ଚିତ୍ତରେ ରଥୋପରି ଆରୋହଣକରି କୌରବଗଣଙ୍କ ସନ୍ନିଧିକୁ ଗମନ କଲେ । ୩ । ଦାରୁକ ପ୍ରସ୍ଥାନ କଲାରୁ କେଶବ ପାର୍ଶ୍ୱସ୍ଥିତ ବଭ୍ରୁଙ୍କ ପ୍ରତି ଦୃଷ୍ଟିନିକ୍ଷେପ କରି

Digitized by srujanika@gmail.com

କହିଲେ—ଆପଣ ଶୀଘ୍ର ଦ୍ୱାରକା ନଗରକୁ ଗମନ କରି ରମଣୀଗଣଙ୍କୁ ରକ୍ଷାକରନ୍ତୁ । ଦସ୍ୟୁଗଣ ଧନଲୋଭରେ ସେହିମାନଙ୍କୁ ଯେଉଁପରି ହିଂସା ନ କରିବେ ତଦ୍‌ବିଷୟରେ ଯତ୍ନଶୀଳ ହେଉନ୍ତୁ । ୪ ।

ଜ୍ଞାତିବଧ-ସନ୍ତପ୍ତ ମଦମତ୍ତ ବଭ୍ରୁ ଶାନ୍ତ ହୋଇଥିଲେ ମଧ୍ୟ କେଶବଙ୍କ ଦ୍ୱାରା ଏହିପ୍ରକାର ଆଦିଷ୍ଟ ହୋଇ ପ୍ରସ୍ଥାନ କରୁଅଛନ୍ତି, ଏହି ଅବସରରେ ବ୍ରହ୍ମଶାପ ବଶତଃ କୌଣସି ଲୁବ୍‌ଧକର ଗୋଟିଏ କୂଟ ସଂଯୁକ୍ତ ଅର୍ଥାତ୍ ଲୌହମୟ ମୁଦ୍‌ଗରରୁ ତୁରନ୍ତ ଆବିର୍ଭୂତ ମୂଷଳରେ ସହସା ପତିତ ହୋଇ କୃଷ୍ଣଙ୍କ ସନ୍ନିଧିରେ ପ୍ରାଣତ୍ୟାଗ କଲେ ।

ଉଗ୍ରବୀର୍ଯ୍ୟ ମାଧବ ବଭ୍ରୁଙ୍କୁ ନିହତ ହେବାର ଦେଖି ଅଗ୍ରଜଙ୍କୁ କହିଲେ—ଆମ୍ଭେ ଯାବତ୍କାଳ ପର୍ଯ୍ୟନ୍ତ କାମିନୀଗଣଙ୍କୁ ଜ୍ଞାତିମାନଙ୍କ ତତ୍ତ୍ୱାବଧାନରେ ରଖି ପ୍ରତ୍ୟାଗତ ହୋଇନାହୁଁ, ତାବତ୍ପର୍ଯ୍ୟନ୍ତ ଆପଣ ଏହି ସ୍ଥାନରେ ଆମ୍ଭଙ୍କୁ ପ୍ରତୀକ୍ଷା କରନ୍ତୁ ।

ଜନାର୍ଦ୍ଦନ ଏହି କଥା କହି ଦ୍ୱାରକା ନଗରୀରେ ପ୍ରବେଶ କରି ପିତାଙ୍କୁ କହିଲେ—ହେ ତାତ ! ଯାବତ୍ପର୍ଯ୍ୟନ୍ତ ଅର୍ଜ୍ଜୁନ ଆସି ନାହାନ୍ତି, ତାବତ୍ ପର୍ଯ୍ୟନ୍ତ ଆପଣ ଆମ୍ଭର ଏହି ପୁରନାରୀଗଣଙ୍କୁ ରକ୍ଷା କରନ୍ତୁ ।

ରାମ ବନମଧ୍ୟରେ ଆମ୍ଭଙ୍କୁ ଅପେକ୍ଷା କରିଅଛନ୍ତି । ଅତଏବ ଆମ୍ଭେ ଅଦ୍ୟ ଶୀଘ୍ର ଗମନ କରି ତାହାଙ୍କ ସହିତ ସମ୍ମିଳିତ ହେବୁଁ । ୮ । ପୂର୍ବେ ଅସଂଖ୍ୟ ନୃପତି ଓ କୌରବଗଣଙ୍କର ନିଧନ ଦେଖି ଏବଂ ସମ୍ପ୍ରତି ଯାଦବଗଣଙ୍କର ନିଧନ ଦର୍ଶନ କରି ଏହି ଯାଦବବିହୀନ ଯଦୁନଗରୀରେ ରହିବାକୁ ଆଉ ଆମ୍ଭର ଅଭିଳାଷ ହେଉନାହିଁ । ଅତଏବ ସମ୍ପ୍ରତି ଏହିପ୍ରକାର ଅଭିଳାଷ କରିଅଛୁଁ ଯେ, ରାମଙ୍କ ସହିତ ବନବାସୀ ହୋଇ ତପସ୍ୟାନୁଷ୍ଠାନ ପୂର୍ବକ ଶେଷକାଳ ଅତିବାହନ କରିବୁଁ ।

ବାସୁଦେବ ଏହି କଥା କହି ଅବନତମସ୍ତକରେ ତାଙ୍କ ପଦଯୁଗଳ ଗ୍ରହଣ କରି ତ୍ୱରାଯୁକ୍ତ ହୋଇ ଗମନ କଲେ । ୧୦ । ସେତେବେଳେ ସ୍ତ୍ରୀବାଳକପରିପୂର୍ଣ୍ଣ ପୁରମଧ୍ୟରୁ କାମିନୀଗଣଙ୍କର ମହାନ୍ ରୋଦନଧ୍ୱନି ସମୁତ୍ଥିତ ହେଲା । କେଶବ ତାହା ଶ୍ରବଣ କରି ଖିନ୍ନଚିତ୍ତ ହୋଇ ସେହି

Digitized by srujanika@gmail.com

ରୋରୂଦ୍ୟମାନା ଲଲନାଗଣଙ୍କୁ କହିଲେ—ନରଶ୍ରେଷ୍ଠ ଅର୍ଜ୍ଜୁନ ଏହି ଦ୍ୱାରକା ପୁରକୁ ସମାଗତ ହୋଇ ତୁମ୍ଭମାନଙ୍କ ଦୁଃଖ ଧ୍ୱଂସ କରିବେ ।

ତଦନନ୍ତର କେଶବ ବନମଧ୍ୟକୁ ଗମନ କରି ଦେଖିଲେ, ବଳରାମ ନିର୍ଜ୍ଜନରେ ଏକାକୀ ଯୋଗଯୁକ୍ତ ହୋଇ ବସିଅଛନ୍ତି ଏବଂ ତଦୀୟ ମୁଖରୁ ଗୋଟିଏ ଶ୍ୱେତବର୍ଣ୍ଣ ମହାନାଗ ନିଃସୃତ ହୋଇଅଛନ୍ତି । ସମୁଦ୍ର ତଦ୍ଦ୍ୱାରା ଆପଣାକୁ ମହାନୁଭବ ବୋଲି ବୋଧ କରନ୍ତି । ୧୩ । ସ୍ୱହୁଁ ସ୍ୱହୁଁ ସେହି ସହସ୍ରଶୀର୍ଷ ପର୍ବତାଭୋଗ ସଦୃଶ ଲୋହିତବଦନ ନାଗ ସ୍ୱୀୟ ମାନୁଷୀ ତନୁ ପରିତ୍ୟାଗ କରି ସମୁଦ୍ରମଧ୍ୟରେ ପ୍ରବେଶ କଲେ ।

ହେ ରାଜନ୍ ! ତେତେବେଳେ ସାଗର, ପବିତ୍ର ନଦୀବୃନ୍ଦ, ଉଗ୍ରତେଜା ମହାତ୍ମା କର୍କୋଟକ, ବାସୁକି, ତକ୍ଷକ, ପୃଥୁଶ୍ରବା, ଅରୁଣ, କୁଞ୍ଜର, ମିଶ୍ରୀ, ଶଂଖ, କୁମୁଦ, ପୁଣ୍ଡରୀକ, ଧୃତରାଷ୍ଟ୍ର, ହ୍ରାଦ, କ୍ରାଥ, ଶିତିକଣ୍ଠ, ଚନ୍ଦ୍ରମନ୍ଦ, ଅତିଷଣ୍ଡ, ଦୁର୍ମୁଖ ଓ ଅମ୍ବରୀଷ ପ୍ରଭୃତି ନାଗଶ୍ରେଷ୍ଠଗଣ ଏବଂ ରାଜା ବରୁଣ ସ୍ୱୟଂ ପ୍ରତ୍ୟୁଦ୍‌ଗତ ହୋଇ ତାହାଙ୍କୁ ଗ୍ରହଣ କରି ସ୍ୱାଗତ ପ୍ରଶ୍ନ କଲେ ଓ ପାଦ୍ୟ ଅର୍ଘ୍ୟ ପ୍ରଭୃତି ଦ୍ୱାରା ପୂଜାକଲେ । ଉଗ୍ରବୀର୍ଯ୍ୟ ବାସୁଦେବ ଭ୍ରାତାଙ୍କୁ ଗମନ କରିବାର ଦେଖି ଦିବ୍ୟଦୃଷ୍ଟିଦ୍ୱାରା କାଳର ଗତିସବୁ ପର୍ଯ୍ୟବେକ୍ଷଣ କରି ବିଜନ ବନରେ ବିଚରଣ କରି କରି ଭୂତଳରେ ଉପବିଷ୍ଟ ହେଲେ ।

ପୂର୍ବେ ସେହି ମହାନୁଭବ ଏହି ସମସ୍ତ ବିଷୟ ଚିନ୍ତା କରିଥିଲେ । ତଥାପି ପୂର୍ବେ ଗାନ୍ଧାରୀ, ଏବଂ ଉଚ୍ଛିଷ୍ଟ ପାୟସ ଲେପନ କାଳରେ ଦୁର୍ବାସା ମୁନି ଯାହା କହିଥିଲେ, ସେହି ସମସ୍ତ କଥା ସ୍ମୃତିପଥରେ ସମାରୂଢ଼ ହେବାରୁ କୁରୁ, ଅନ୍ଧକ ଓ ବୃଷ୍ଣିବଂଶୀୟଗଣଙ୍କ ନିଧନ ବିଷୟ ଚିନ୍ତାକରି ସେହି ସମୟକୁ ସଂକ୍ରମଣର ଉପଯୁକ୍ତ କାଳ ବିବେଚନା କରି ଇନ୍ଦ୍ରିୟଗଣଙ୍କ ସଂଯମନ କଲେ ।

ଅପିଚ ସେହି ସର୍ବାର୍ଥତତ୍ତ୍ୱବିତ୍ ଦେବପ୍ରବର କୃଷ୍ଣ ସମର୍ଥ ହୋଇ ସୁଦ୍ଧା ମହର୍ଷି ଅତ୍ରିଙ୍କ ବାକ୍ୟ ପ୍ରତିପାଳନ ନିମିତ୍ତ ଏବଂ ଲୋକତ୍ରୟର ସ୍ଥିତି ଓ ସନ୍ଦେହ ନିରାକରଣ ନିମିତ୍ତ ନିୟମିତ ମୃତ୍ୟୁର ଅଧୀନ ହେବାକୁ ଅଭିଳାଷୀ ହୋଇ ବାଙ୍ମନଃ ପ୍ରଭୃତି ଇନ୍ଦ୍ରିୟଗ୍ରାମର ସନ୍ନିରୋଧରୂପ ମହାଯୋଗ ଅବଲମ୍ବନ କରି ଶୟାନ ହେଲେ । ୨୧ ।

Digitized by srujanika@gmail.com

ଏହି ଅବସର ମଧ୍ୟରେ ଜରା ନାମକ କୌଣସି ଉଗ୍ରମୂର୍ତ୍ତି ଲୁବ୍ଧକ ମୃଗପ୍ରାପ୍ତିଲାଷୀ ହୋଇ ସେହି ସ୍ଥାନକୁ ଆଗମନ କରି ଶୟାନ ଯୋଗଯୁକ୍ତ ମାଧବଙ୍କୁ ମୃଗ ବୋଲି ଜାଣି ସାୟକଦ୍ୱାରା ସତ୍ୱର ବିଦ୍ଧକରି ଗ୍ରହଣାଭିଳାଷରେ ନିକଟକୁ ଗମନ କଲା ଏବଂ ନିକଟସ୍ଥ ହୋଇ ସେହି ଯୋଗଯୁକ୍ତ ପୀତାମ୍ବରଧାରୀ ଚତୁର୍ଭୁଜ ପୁରୁଷଙ୍କୁ ଦର୍ଶନକରି ଆପଣାକୁ କୃତାପରାଧ ଜାଣି ଶଂକିତ ମନରେ ତଦୀୟ ଚରଣଯୁଗଳ ଧାରଣକଲା ।

ତେତେବେଳେ ମହାତ୍ମା ମାଧବ ତାହାକୁ ଆଶ୍ୱାସନା ପ୍ରଦାନ ପୂର୍ବକ ସ୍ୱୀୟ କାନ୍ତିଦ୍ୱାରା ଆକାଶ ଓ ପୃଥିବୀକୁ ଆବରଣ କରି ଊର୍ଦ୍ଧ୍ୱାଭିମୁଖରେ ଗମନ କଲେ । ୨୪ ।

ସେ ସ୍ୱର୍ଗ ନିକଟରେ ଉପସ୍ଥିତ ହେବାରୁ ମୁନିଗଣ, ଦେବରାଜ, ଅଶ୍ୱିନୀକୁମାରଯୁଗଳ, ରୁଦ୍ର, ଆଦିତ୍ୟ, ବସୁ ଓ ବିଶ୍ୱଦେବଗଣ ଏବଂ ଅପ୍‌ସରାଗଣଙ୍କ ସହିତ ଗନ୍ଧର୍ବ ଓ ସିଦ୍ଧଗଣ ପ୍ରତ୍ୟାଗମନ କରି ତାହାଙ୍କୁ ଅଭ୍ୟର୍ଥନା କଲେ । ୨୫ ।

ହେ ରାଜନ୍ ! ତଦନନ୍ତର ସେହି ଉଗ୍ରବୀର୍ଯ୍ୟ ଯୋଗାଚାର୍ଯ୍ୟ ସର୍ବଭୂତପ୍ରଭବ ଅବ୍ୟୟ ମହାତ୍ମା ଭଗବାନ୍ ନାରାୟଣ ସ୍ୱୀୟ ଶୋଭା ଦ୍ୱାରା ସୁରଲୋକକୁ ଦେଦୀପ୍ୟମାନ କରାଇ ଦେବତା, ଋଷି ଓ ଚାରଣଗଣଙ୍କ ସହିତ ସମ୍ମିଳିତ ଏବଂ ପ୍ରଣତ ପ୍ରଧାନତମ ସିଦ୍ଧ, ଗନ୍ଧର୍ବ ଓ ଶ୍ରେଷ୍ଠ ଅପ୍‌ସରାଗଣକର୍ତ୍ତୃକ ପୂଜିତ ହୋଇ ସ୍ୱୀୟ ଧାମ ଅଭିମୁଖରେ ପ୍ରସ୍ଥାନ କଲେ ।

ହେ ରାଜନ୍ ! ତେତେବେଳେ ମୁନିଶ୍ରେଷ୍ଠଗଣ ଉଚ୍ଚୈଃସ୍ୱରରେ ଋକ୍ ସମୂହ ଉଚ୍ଚାରଣ କରି ସେହି ଜଗଦୀଶ୍ୱରଙ୍କର ଯଶୋଗାନ କଲେ । ବାସବ ପ୍ରଭୃତି ଦେବଗଣ ସ୍ୱାଗତ ପ୍ରଶ୍ନାଦିଦ୍ୱାରା ତାହାଙ୍କୁ ପ୍ରତ୍ୟଭିନନ୍ଦନ କଲେ ଏବଂ ଗନ୍ଧର୍ବଗଣ ପ୍ରୀତି ସହକାରରେ ତଦୀୟ ସ୍ତୁତିଗାନ କରି କରି ତାହାଙ୍କ ଅନୁସରଣ କଲେ । ୨୮ ।

---

Digitized by srujanika@gmail.com

# ପଞ୍ଚମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଦାରୁକ କୌରବନଗରକୁ ଗମନ କରି ପୃଥାନନ୍ଦନଗଣଙ୍କ ନିକଟରେ ବୃଷ୍ଣିବଂଶୀୟଗଣଙ୍କର ପରସ୍ପର ମୌଷଳ ଘଟିତ ଯୁଦ୍ଧ ଓ ନିଧନ ସମ୍ବାଦ ପ୍ରଦାନ କଲେ । ପାଣ୍ଡୁନନ୍ଦନଗଣ ଭୋଜ, ଅନ୍ଧକ ଓ କୁକୁରଗଣଙ୍କ ସହିତ ବୃଷ୍ଣିବଂଶୀୟଗଣଙ୍କ ନିଧନ ବୃତ୍ତାନ୍ତ ଶ୍ରବଣ କରି ନିରତିଶୟ ଶୋକସନ୍ତପ୍ତ ଓ ବ୍ୟାକୁଳଚିତ୍ତ ହେଲେ । ୨ ।

ଅନନ୍ତର କେଶବଙ୍କ ପ୍ରିୟ ସଖା ଅର୍ଜ୍ଜୁନ 'ଜଣାଯାଏ ଯଦୁକୁଳ ଧ୍ୱଂସ ହୋଇଅଛି' ଏହି କଥା କହି ସମସ୍ତଙ୍କୁ ଆମନ୍ତ୍ରଣ କରି ମାତୁଳ ବସୁଦେବଙ୍କୁ ଦେଖିବା ନିମିତ୍ତ ପ୍ରସ୍ଥାନ କଲେ । ୩ ।

ହେ ମହାରାଜ ! ସେହି ବୀର ଦାରୁକଙ୍କ ସହିତ ବୃଷ୍ଣିନଗରକୁ ଗମନ କରି ଦେଖିଲେ, ଦ୍ୱାରକାନଗରୀ ହତନାଥ ରମଣୀସଦୃଶ ଶୋଭାବିହୀନା ହୋଇଅଛି । ୪ । ପୂର୍ବେ ଯେଉଁମାନେ ଲୋକନାଥ କୃଷ୍ଣଙ୍କ ଅଧିଷ୍ଠାନ ହେତୁରୁ ସନାଥା ହୋଇଥିଲେ, ସେହି ନାଥବିହୀନା ରମଣୀଗଣ ତେତେବେଳେ ନାଥଙ୍କ ସଖା ପାର୍ଥଙ୍କୁ ଦେଖି ରୋଦନ କଲେ । ୫ । ବାସୁଦେବଙ୍କର ଷୋଡ଼ଶ ସହସ୍ର କାମିନୀ ଇନ୍ଦ୍ରକୁମାର ଅର୍ଜ୍ଜୁନଙ୍କୁ ସମାଗତ ହେବାର ଦେଖି ମହାଶବ୍ଦରେ ରୋଦନ କଲେ ଏବଂ ସେ କୃଷ୍ଣହୀନା ଓ ପୁତ୍ର ପ୍ରଭୃତି ବିହୀନା ଯାଦବ ରମଣୀଗଣଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୭ ।

ତଦନନ୍ତର ଇତସ୍ତତଃ ପର୍ଯ୍ୟବେକ୍ଷଣ କରି ଦେଖିଲେ, ଶୀତକାଳୀନା ଶ୍ରୀବିହୀନା ରମଣୀଙ୍କ ସଦୃଶ ସେହି ବୃଷ୍ଣିପୁଙ୍ଗବଗଣବିହୀନା କାଳପାଶଗ୍ରସ୍ତା ଯାଦବନଗରୀ ଭୟଙ୍କର ବୈତରଣୀ ନଦୀ ସଦୃଶ ପ୍ରତୀୟମାନ ହେଉଅଛି । ସେ ଦ୍ୱାରକାକୁ ସମୁଦ୍ର ବୋଲି ଭାବି, ବୃଷ୍ଣି ଓ ଅନ୍ଧକଗଣଙ୍କୁ ତାହାର ଜଳ, ଅଶ୍ୱମାନଙ୍କୁ ମତ୍ସ୍ୟ, ରଥସମୂହକୁ ଉଡ଼ୁପ, ବାଦିତ୍ର ଓ ରଥ ନିର୍ଘୋଷକୁ ତରଙ୍ଗ, ପ୍ରାସାଦସମୂହକୁ ମହାହ୍ରଦ, ରତ୍ନସମୂହକୁ ଶୈବାଳ, ବଜ୍ରପ୍ରାକାରକୁ ବେଳା, ପ୍ରଶସ୍ତ ପଥସମୂହକୁ ସ୍ରୋତ ଓ ଆବର୍ତ୍ତ, ଚତ୍ୱରସମୂହକୁ ସ୍ଥିରହ୍ରଦ, ବଳରାମ ଓ କୃଷ୍ଣଙ୍କୁ ମହାନକ୍ର ବୋଲି ବୋଧକଲେ । ୧୦ ।

Digitized by srujanika@gmail.com

ଅନନ୍ତର ବାସବନନ୍ଦନ ଅର୍ଜୁନ ବୃଷ୍ଣିପୁଙ୍ଗବବିହୀନା ସେହି ଦ୍ୱାରକାନଗରୀ ଓ କୃଷ୍ଣଙ୍କ ରମଣୀଗଣଙ୍କ ହେମନ୍ତକାଳୀନ ନଳିନୀ ସଦୃଶ ଅତ୍ୟନ୍ତ ଶ୍ରୀଭ୍ରଷ୍ଟ ଓ ପ୍ରଭାଶୂନ୍ୟ ଦର୍ଶନ କଲେ । ୧୧ । ପୃଥାନନ୍ଦନ ଦ୍ୱାରକା ଏବଂ ବାସୁଦେବ ରମଣୀଗଣଙ୍କର ଏତାଦୃଶ ଅବସ୍ଥା ଦର୍ଶନ କରି ସଶବ୍ଦରେ ବାଷ୍ପବାରି ବିସର୍ଜନ ପୂର୍ବକ ଧରଣୀତଳରେ ପତିତ ହେଲେ । ୧୨ ।

ହେ ବିଶାଂପତେ ! ତଦନନ୍ତର ରୁକ୍ମିଣୀ ଓ ସତ୍ରାଜିତ୍‌କୁମାରୀ ସତ୍ୟଭାମା ପ୍ରଭୃତି କୃଷ୍ଣଙ୍କ କାମିନୀଗଣ ତାହାଙ୍କୁ ଦର୍ଶନ କରି ଶୀଘ୍ର ସେହିସ୍ଥାନକୁ ଆଗମନ କରି ତାହାଙ୍କ ଚତୁର୍ଦିଗରେ ରୋଦନ କଲେ । ୧୩ । କିଛିକ୍ଷଣ ପରେ ସେହିମାନେ ସେହି ମହାତ୍ମାଙ୍କୁ ଉଠାଇ ରତ୍ନମୟ ପୀଠରେ ଉପବେଶନ କରାଇ ତଦୀୟ ଚତୁର୍ଦିଗରେ ବେଷ୍ଟନ କରି ନୀରବରେ ଉପବିଷ୍ଟା ହେଲେ । ୧୪ ।

ତେତେବେଳେ ଅର୍ଜୁନ ଗୋବିନ୍ଦଙ୍କ କାର୍ଯ୍ୟାବଳୀ କୀର୍ତ୍ତନ କରି ଓ ତାହାଙ୍କୁ ବହୁବିଧ ସ୍ତବ କରି କେଶବଙ୍କ ରମଣୀଗଣଙ୍କୁ ଆଶ୍ୱାସନା ପ୍ରଦାନ ପୂର୍ବକ ମାତୁଳଙ୍କୁ ଦେଖିବା ନିମିତ୍ତ ଗମନ କଲେ । ୧୫ ।

---

# ଷଷ୍ଠ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! କୁରୁପୁଙ୍ଗବ ଧନଂଜୟ ବସୁଦେବଙ୍କ ଗୃହକୁ ଗମନ କରି ପୁତ୍ରଶୋକରେ ସନ୍ତପ୍ତ ବୀରବର ବସୁଦେବଙ୍କୁ ଶୟନ କରିଥିବାର ଦେଖିଲେ । ୧ ।

ହେ ଭାରତ ! ତେତେବେଳେ ବିଶାଳବକ୍ଷା ମହାଭୁଜ ପୃଥାନନ୍ଦନ ଅଶ୍ରୁପୂର୍ଣ୍ଣଲୋଚନ ହୋଇ ଅଧିକତର ଆର୍ତ୍ତଭାବରେ ତଦୀୟ ପଦଯୁଗଳ ଗ୍ରହଣ କଲେ । ୨ । ମହାବାହୁ ବୃଦ୍ଧ ଅରିନ୍ଦମ ବସୁଦେବ ଭାଗିନେୟଙ୍କ ମସ୍ତକ ଆଘ୍ରାଣ କରିବାକୁ ଅଭିଳାଷୀ ହୋଇ ଶୋକ ହେତୁରୁ ପ୍ରଥମତଃ ଅକ୍ଷମ ହେଲେ । ୩ । କିଛିକ୍ଷଣ ପରେ ସ୍ୱୀୟ ଭୁଜଯୁଗଳଦ୍ୱାରା ବହୁକଷ୍ଟରେ ମହାଭୁଜ ଅର୍ଜୁନଙ୍କୁ ଆଲିଙ୍ଗନ କରି ପୁତ୍ର, ପୌତ୍ର, ଦୌହିତ୍ର, ଭ୍ରାତା ଓ ବନ୍ଧୁଗଣଙ୍କୁ ସ୍ମରଣ କରି ବିହ୍ୱଳଚିତ୍ତରେ ରୋଦନ ଓ ବିଳାପ କଲେ । ୪ ।

Digitized by srujanika@gmail.com

ବସୁଦେବ କହିଲେ—ହେ ଧନଞ୍ଜୟ ! ଜଣାପାଏ ଆମ୍ଭର ମୃତ୍ୟୁ ହେବ ନାହିଁ, କାରଣ ଯେଉଁମାନେ ଶତ ଶତ ଦୈତ୍ୟ ଓ ଭୂମିପାଳଗଣଙ୍କୁ ଜୟ କରିଥିଲେ, ସେମାନଙ୍କୁ ନିହତ ଦେଖି ଅଦ୍ୟାପି ଯାହା ଆମ୍ଭେ ଜୀବନ ଧାରଣ କରିଅଛୁ । ୫ । ହେ ପୃଥାକୁମାର ଅର୍ଜୁନ ! ଯେଉଁ ଦୁଇ ବ୍ୟକ୍ତି ତୁମ୍ଭର ବହୁମତ ପ୍ରିୟଶିଷ୍ୟ ଥିଲେ, ସେହି ଦୁହିଙ୍କର ଦୁର୍ମତିବଶତଃ ବାର୍ଷ୍ଣେୟଗଣ ନିହତ ହୋଇଅଛନ୍ତି । ୬ । ହେ କୁରୁଶାର୍ଦ୍ଦୂଳ ଧନଞ୍ଜୟ ! ଯେଉଁ ଦୁଇ ବ୍ୟକ୍ତି ବୃଷ୍ଣିବୀରଗଣଙ୍କ ମଧ୍ୟରେ ଅତିରଥ ଓ କୃଷ୍ଣଙ୍କର ପ୍ରିୟତମ ଥିଲେ, ଓ ତୁମ୍ଭେ କଥାଛଳରେ ସର୍ବଦା ଯେଉଁ ଦୁହିଙ୍କର ପ୍ରଶଂସା କରୁଥିଲ, ସେହି ପ୍ରଦ୍ୟୁମ୍ନ ଓ ସାତ୍ୟକି ଉଭୟ ବ୍ୟକ୍ତି ବୃଷ୍ଣିବଂଶ ବିନାଶର ଅଧିନାୟକ । ୮ ।

ହେ ଅର୍ଜୁନ ! ଅଥବା ସାତ୍ୟକି, କୃତବର୍ମା, ରୁକ୍ମିଣୀନନ୍ଦନ ଅବା ଅକ୍ରୂରଙ୍କୁ ଆମ୍ଭେ ନିନ୍ଦା କରୁନାହୁଁ । କାରଣ, ଋଷିଗଣଙ୍କ ଶାପ ଆମ୍ଭମାନଙ୍କ ବଂଶନାଶର କାରଣ ଅଟେ । ୯ । ହେ ପାର୍ଥ ! ଯେଉଁ ଜଗତ୍‌ପ୍ରଭୁ ବିକ୍ରମ ପ୍ରକାଶ ପୂର୍ବକ କେଶୀ, କଂସ, ଚେଦିରାଜ ଶିଶୁପାଳଙ୍କୁ ବିଦେହ ଏବଂ ନିଷାଦ-ରାଜ ଏକଲବ୍ୟ, କାଶୀରାଜ ପୌଣ୍ଡ୍ରକ, କାଳିଙ୍ଗ, ମାଗଧ, ଗାନ୍ଧାର, ପ୍ରାଚ୍ୟ, ଦାକ୍ଷିଣାତ୍ୟ, ପାର୍ବତୀୟ ଓ ମରୁଦେଶୀୟ ଭୂପାଳଗଣଙ୍କୁ ଆପଣାର ଅଧୀନ କରିଥିଲେ, ସେହି ମଧୁସୂଦନ ବାଳକଗଣଙ୍କ ଅପରାଧ ବଶତଃ ଯଦୁକୁଳ କ୍ଷୟ ହେବାର ଦେଖି ଉପେକ୍ଷା କରିଅଛନ୍ତି । ୧୨ ।

ହେ ଅର୍ଜୁନ ! ଆମ୍ଭର ସେହି ପୁତ୍ର ଅଚ୍ୟୁତ ଅନିନ୍ଦ୍ୟ ଗୋବିନ୍ଦ ଯେ ସନାତନ ବିଷ୍ଣୁ, ତାହା ତୁମ୍ଭେ ଜାଣିଅଛ ଏବଂ ଆମ୍ଭେ ମଧ୍ୟ ନାରଦ ଏବଂ ଅନ୍ୟାନ୍ୟ ମୁନିଗଣଙ୍କ ନିକଟରୁ ଶୁଣିଥିଲୁଁ । ୧୩ । ହେ ପରନ୍ତପ ! ଆମ୍ଭର ସେହି ପୁତ୍ର ଅଧୋକ୍ଷଜ ବିଭୁ ଜଗଦୀଶ୍ୱର କୁଳକ୍ଷୟର ବିଷୟ ଜାଣିପାରି ଯଦି ତାହା ଉପେକ୍ଷା କରିଅଛନ୍ତି, ତେବେ ନିଶ୍ଚୟ ଜଣାଯାଉଅଛି ଯେ, ସେ ଗାନ୍ଧାରୀ ଓ ମହାଭାଗ ଋଷିଗଣଙ୍କ ବାକ୍ୟ ଅନ୍ୟଥା କରିବାକୁ ଅଭିଳାଷୀ ହେଲେ ନାହିଁ । ୧୫ ।

ହେ ଅରିନ୍ଦମ ! ତୁମ୍ଭର ପୌତ୍ର ପରୀକ୍ଷିତ ଅଶ୍ୱତ୍ଥାମାକର୍ତ୍ତୃକ ନିହତ ହେବାରୁ ସେ ତୁମ୍ଭର ସମ୍ମୁଖରେ ସ୍ୱୀୟ ତେଜଦ୍ୱାରା ତାହାଙ୍କୁ ପୁନର୍ଜୀବିତ କରିଥିଲେ । ପରନ୍ତୁ ସମ୍ପ୍ରତି ସ୍ୱୀୟ ଜ୍ଞାତିଗଣଙ୍କୁ ନିହତ ହେବାର ଦେଖି ରକ୍ଷା କରିବାକୁ ଅଭିଳାଷୀ ହେଲେ ନାହିଁ ।

Digitized by srujanika@gmail.com

ହେ ଭରତ ! ତୁମ୍ଭର ସେହି ସଖା ସ୍ତ୍ରୀପୁ ପୁତ୍ର, ପୌତ୍ର, ଭ୍ରାତା ଓ ବୟସ୍ୟଗଣଙ୍କୁ ନିହତ ଓ ଶୟାନ ହୋଇଥିବାର ଦେଖି ଆମ୍ଭଙ୍କୁ ଏହି କଥା କହିଲେ ଯେ, "ଅଦ୍ୟ ଏହି ଯଦୁକୁଳର ଅବସାନ ସମୟ ଉପସ୍ଥିତ ହୋଇଅଛି । ଅତଏବ ଆପଣ ଧନଞ୍ଜୟଙ୍କୁ ବୃଷ୍ଣିବଂଶୀୟଗଣଙ୍କର ଏହି ନିଦାରୁଣ ନିଧନ ସମ୍ବାଦ ପ୍ରଦାନ କଲେ ସେ ଦ୍ୱାରକାନଗରୀକୁ ଆଗମନ କରିବେ ।

"ହେ ପ୍ରଭୋ ! ସେହି ମହାତେଜସ୍ୱୀ ଭରତଶ୍ରେଷ୍ଠ ଯଦୁଗଣଙ୍କ ନିଧନ ସମ୍ବାଦ ଶ୍ରବଣ କରି ଯେ ଶୀଘ୍ର ଏସ୍ଥାନକୁ ଆଗମନ କରିବେ, ତହିଁରେ ଆମ୍ଭର ଅଣୁମାତ୍ର ସନ୍ଦେହ ନାହିଁ । ଆପଣ ଜାଣିବା ହେଉନ୍ତୁ, ଯେ ଅର୍ଜୁନ ସେ ଆମ୍ଭେ, ଏବଂ ଯେ ଆମ୍ଭେ ସେ ଅର୍ଜୁନ । ଆମ୍ଭ ଉଭୟଙ୍କର କିଛିମାତ୍ର ଭେଦ ନାହିଁ । ୨୧ ।

"ସେ ଯେଉଁ ପ୍ରକାର କହିବେ ତଦନୁସାରେ କାର୍ଯ୍ୟର ଅନୁବର୍ତ୍ତୀ ହେବେ । ଅତଏବ ସେ ଏହି ନଗରୀକୁ ଆଗମନ କରି ଯାହା କହିବେ ଆପଣ ତାହା ଅବିକୃତ ଚିତ୍ତରେ ଅନୁଷ୍ଠାନ କରିବେ । ତାହାହେଲେ ସେହି ପାଣ୍ଡୁନନ୍ଦନ ବୀଭତ୍ସୁ କାଳପତିତ ବାଳକ ଓ ସ୍ତ୍ରୀଗଣଙ୍କ ରକ୍ଷାବିଧାନ କରିବେ ଏବଂ ଆପଣଙ୍କର ଔର୍ଦ୍ଧ୍ୱଦେହିକ କାର୍ଯ୍ୟସମୂହ ସମ୍ପାଦନ କରିବେ । ଧନଞ୍ଜୟ ଦ୍ୱାରକାରୁ ପ୍ରତିନିବୃତ୍ତ ହେଲେ, ତତ୍କ୍ଷଣାତ୍ ସମୁଦ୍ର ପ୍ରାକାର ଓ ଅଟ୍ଟାଳିକାସମୂହ ସହିତ ଏହି ନଗରୀକୁ ପ୍ଲାବନ କରିବ । ଆମ୍ଭେ ଧୀମାନ୍ ବଳରାମଙ୍କ ସହିତ କୌଣସି ପବିତ୍ର ପ୍ରଦେଶରେ ଯୋଗାବଲମ୍ବନ କରି ଦେହତ୍ୟାଗ କରିବୁଁ । ଆମ୍ଭେ ସତ୍ୟ କହିଲୁଁ, ଆପଣ ଏଥିରେ ଅଣୁପରିମାଣରେ ସଂଶୟ କରନ୍ତୁ ନାହିଁ ।"

ହେ ପାର୍ଥ ! ଅଚିନ୍ତ୍ୟପରାକ୍ରମ ସର୍ବଶକ୍ତିମାନ୍ ହୃଷୀକେଶ ଏହି କଥା କହି ବାଳକଗଣଙ୍କ ସହିତ ଆମ୍ଭଙ୍କୁ ପରିତ୍ୟାଗ ପୂର୍ବକ ପ୍ରସ୍ଥାନ କରିଅଛନ୍ତି । ସେ ଆମ୍ଭଙ୍କୁ ଏହି ସ୍ଥାନରେ ରଖି ଯେ କେଉଁଆଡ଼କୁ ଯାଇଅଛନ୍ତି ତାହା ଆମ୍ଭେ କହିପାରିବୁ ନାହିଁ । ସମ୍ପ୍ରତି ଆମ୍ଭେ ତୁମ୍ଭର ସେହି ମହାତ୍ମା ଭ୍ରାତୃଯୁଗଳଙ୍କୁ ଏବଂ ଏହି ନିଦାରୁଣ ଜ୍ଞାତିବଧର ବିଷୟକୁ ଚିନ୍ତାକରି ଅତିଶୟ ଶୋକପୀଡ଼ିତ ହୋଇଅଛୁଁ ଏବଂ ଆହାର ପ୍ରଭୃତି ମଧ୍ୟ ପରିତ୍ୟାଗ କରିଅଛୁଁ । କାରଣ, ଜୀବନଧାରଣ ଅଥବା ଭୋଜନ ପ୍ରଭୃତି କରିବାକୁ ଅଭିଳାଷ

Digitized by srujanika@gmail.com

ହେଉନାହିଁ । ଅତଏବ ଆମ୍ଭେ ଭୋଜନ କରିବୁଁ ନାହିଁ ଆଉ ପ୍ରାଣଧାରଣ କରିବୁଁ ନାହିଁ ।

ହେ ପାଣ୍ଡୁନନ୍ଦନ ! ତୁମ୍ଭେ ଆମ୍ଭର ଭାଗ୍ୟବଶତଃ ଉପସ୍ଥିତ ହୋଇଅଛ । କୃଷ୍ଣ ଯାହା କହିଅଛନ୍ତି ସଂପ୍ରତି ତାହା ସମ୍ପାଦନ କର । ହେ ଶତ୍ରୁନିସୂଦନ ! ପୃଥାନନ୍ଦନ ! ଆମ୍ଭେ ଏହି ରାଜ୍ୟ, ଐଶ୍ୱର୍ଯ୍ୟ, ରମଣୀମଣି ଏବଂ ସ୍ୱକୀୟ ପ୍ରିୟ-ପ୍ରାଣଗଣଙ୍କୁ ତୁମ୍ଭ ହସ୍ତରେ ସମର୍ପଣ କରୁଅଛୁଁ । ଯାହା ଉଚିତ ଅଟେ ତାହା କର ।

---

# ସପ୍ତମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଅରିନ୍ଦମ ବୀଭତ୍ସୁ ଦୀନମନା ମାତୁଳ ବସୁଦେବଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଦୁର୍ମନା ହୋଇ କହିଲେ—ହେ ମାତୁଳ ! ଆମ୍ଭେ ସେହି ବୃଷ୍ଣିପ୍ରବୀର ଏବଂ ରକ୍ଷକବିହୀନା ଏହି ବସୁମତୀଙ୍କୁ ଆଉ କଦାପି ଅବଲୋକନ କରିପାରିବୁ ନାହିଁ । ୨ । ଜଣାଯାଏ, ପାଣ୍ଡୁନନ୍ଦନ ଯୁଧିଷ୍ଠିର, ଭୀମସେନ, ସହଦେବ, ନକୁଳ ଏବଂ ଯାଜ୍ଞସେନୀଙ୍କର ମଧ୍ୟ ଏହି ଦଶା ଘଟିବ । କାରଣ, ଛଅଜଣଯାକ ଏକମନା ଅଟୁଁ । ୩ ।

ହେ କାଳଜ୍ଞ ଅର୍ଥାତ୍ ମର୍ତ୍ତ୍ୟଲୋକ-ପରିତ୍ୟାଗ-ସମୟପ୍ରବର ! ଧର୍ମରାଜଙ୍କର ସଂକ୍ରମଣ ସମୟ ଉପସ୍ଥିତ ହୋଇଅଛି । ଅତଏବ ଆପଣ ନିଶ୍ଚୟ ଜାଣନ୍ତୁ ଯେ, ସେ ଅଚିରାତ୍ କାଳଙ୍କ କରଗତ ହେବେ । ହେ ଅରିନ୍ଦମ ! ସଂପ୍ରତି ଆମ୍ଭେ ବାର୍ଷ୍ଣେୟଗଣଙ୍କର ରମଣୀ, ବାଳକ ଓ ବୃଦ୍ଧଗଣଙ୍କୁ ଯତ୍ନ ସହକାରରେ ଶୀଘ୍ର ଇନ୍ଦ୍ରପ୍ରସ୍ଥକୁ ନେଇଯିବୁଁ । ୫ ।

ଧନଞ୍ଜୟ ମାତୁଳଙ୍କୁ ଏହି କଥା କହି ଦାରୁକଙ୍କୁ କହିଲେ—ହେ ଦାରୁକ ! ଚାଲ, ଆଉ ବିଳମ୍ବର ଆବଶ୍ୟକତା ନାହିଁ । ଆମ୍ଭେ ସଂପ୍ରତି ବୃଷ୍ଣିବୀରମାନଙ୍କ ଅମାତ୍ୟଗଣଙ୍କୁ ଦେଖିବା ନିମିତ୍ତ ଇଚ୍ଛା କରୁଅଛୁଁ । ୬ ।

ଶୂରବର ଅର୍ଜ୍ଜୁନ ଏହି କଥା କହି ମହାରଥ ଯାଦବଗଣଙ୍କ ନିମିତ୍ତ ଶୋକ କରି ସୁଧର୍ମାନାମ୍ନୀ ଯାଦବଗଣଙ୍କ ସଭାରେ ପ୍ରବେଶ କଲେ । ୭ ।

Digitized by srujanika@gmail.com

ସେ ସଭାରେ ପ୍ରବେଶ କରି ଆସନରେ ସମାସୀନ ହେବାରୁ ବ୍ରାହ୍ମଣ, ବଣିକ ଓ ପ୍ରକୃତିଗଣ ତାହାଙ୍କ ଚତୁର୍ଦିଗରେ ବେଷ୍ଟନ କରି ଉପସ୍ଥିତ ହେଲେ ।୮। ପୃଥାନନ୍ଦନ ସେମାନଙ୍କୁ ଦୀନମନା, କିଂକର୍ତ୍ତବ୍ୟବିମୂଢ଼ ଓ ମୁମୂର୍ଷୁ ସଦୃଶ ଦେଖି ଅତିଶୟ ଦୀନଭାବରେ ତତ୍କାଳୋଚିତ ଏହି ବାକ୍ୟ କହିଲେ— ଅଳ୍ପକାଳ ମଧ୍ୟରେ ସମୁଦ୍ର ସମଗ୍ର ଦ୍ୱାରକାନଗରୀକୁ ପ୍ଲାବନ କରିବ । ସେହି କାରଣରୁ ଆମ୍ଭେ ବୃଷ୍ଣି ଓ ଅନ୍ଧକବଂଶର ଅବଶିଷ୍ଟ ଜନଗଣଙ୍କୁ ଇନ୍ଦ୍ରପ୍ରସ୍ଥକୁ ନେଇଯିବୁଁ ।୧୦। ସେହି ଇନ୍ଦ୍ରପ୍ରସ୍ଥରେ କୃଷ୍ଣଙ୍କ ପୌତ୍ର ବଜ୍ର ତୁମ୍ଭମାନଙ୍କ ରାଜପଦରେ ପ୍ରତିଷ୍ଠିତ ହେବେ । ଅତଏବ ତୁମ୍ଭେମାନେ ବହୁବିଧ ଯାନ ବାହନ ଓ ରତ୍ନସମୂହ ସହ ସଜ୍ଜିତ ହୁଅ ।୧୧। ଅଦ୍ୟାବଧି ସପ୍ତମ ଦିବସର ସୂର୍ଯ୍ୟୋଦୟ ସମୟରେ ଆମ୍ଭେମାନେ ଏହି ନଗରରୁ ବହିର୍ଗତ ହେବୁଁ । ଅତଏବ ତୁମ୍ଭେମାନେ ସମସ୍ତେ ବିଳମ୍ବ ନକରି ଏଥିମଧ୍ୟରେ ସଜ୍ଜିତ ହୋଇଥାଅ ।୧୨।

ଅକ୍ଲିଷ୍ଟକର୍ମା ପୃଥାନନ୍ଦନ ଅର୍ଜୁନଙ୍କଦ୍ୱାରା ଏତାଦୃଶ ଆଦେଶପ୍ରାପ୍ତ ହୋଇ ସେମାନେ ସମସ୍ତେ ନିଜ ନିଜ ପ୍ରାଣରକ୍ଷା ନିମିତ୍ତ ସମ୍ୟକ୍ ଉତ୍ସୁକ ହେଲେ ଏବଂ ଶୀଘ୍ର ଯାନ ପ୍ରଭୃତି ସୁସଜ୍ଜିତ କଲେ ।୧୩।

ଅର୍ଜୁନ ସୁମହତ୍ ଶୋକ ଓ ମୋହରେ ଅଭିଭୂତ ହୋଇ ସେହି ରାତ୍ରି କେଶବଙ୍କ ଗୃହରେ ଅବସ୍ଥାନ କଲେ ।୧୪। ପରଦିବସ ପ୍ରାତଃକାଳରେ ପ୍ରତାପଶାଳୀ ମହାତେଜସ୍ୱୀ ବସୁଦେବ ଯୋଗାବଲମ୍ବନ କରି କଳେବର ତ୍ୟାଗମୂଳକ ଉତ୍ତମଗତି ପ୍ରାପ୍ତ ହେଲେ ।୧୫। ତେତେବେଳେ ବସୁଦେବଙ୍କ ଗୃହରେ ରୋରୁଦ୍ୟମାନା ରମଣୀବୃନ୍ଦଙ୍କ ନିଦାରୁଣ ରୋଦନଧ୍ୱନି ସମୁତ୍ଥିତ ହେଲା ।୧୬। ରମଣୀଗଣ ମାଲ୍ୟ ଓ ଆଭରଣ ପରିତ୍ୟାଗ ପୂର୍ବକ ଆଲୁଲାୟିତ କେଶରେ ନିଜ ନିଜ ବକ୍ଷସ୍ଥଳରେ କରାଘାତ କରି କରୁଣସ୍ୱରରେ ରୋଦନ କଲେ ।୧୭। ସ୍ତ୍ରୀରତ୍ନ ଦେବକୀ, ଭଦ୍ରା, ମଦିରା ଓ ରୋହିଣୀ ସ୍ୱାମିଙ୍କ ସହିତ ଚିତାରେ ଆରୋହଣ କରିବା ଅଭିଳାଷିବତୀ ହେଲେ ।୧୮।

ହେ ଭରତ ! ତଦନନ୍ତର ଧନଞ୍ଜୟ ମନୁଷ୍ୟବାହିତ ମହାର୍ହ ସୁମହତ୍ ଯାନଦ୍ୱାରା ବସୁଦେବଙ୍କ ଶବକୁ ନଗରରୁ ନିଷ୍କ୍ରମଣ କଲେ ।୧୯। ଏକାନ୍ତ ଅନୁରକ୍ତ ଦ୍ୱାରକାନିବାସୀ ପୌରଗଣ ଦୁଃଖ ଓ ଶୋକରେ ଅଭିଭୂତ ହୋଇ ତାହାଙ୍କ ପଶ୍ଚାତ୍ ଗମନ କଲେ ।୨୦। ଯାଜକଗଣ

Digitized by srujanika@gmail.com

ଅଗ୍ରଗାମୀ ହେଲେ ଏବଂ ଆଶ୍ୱମେଧିକ ଦ୍ରବ୍ୟପ୍ରଦୀପ୍ତ ଅନଲ ତଦୀୟ ଯାନର ଅଗ୍ରଭାଗରେ ନୀତ ହେଲେ । ୨୧ । ଦେବକୀ ପ୍ରଭୃତି ଦେବୀଗଣ ଅଳଂକାରରେ ସଜ୍ଜିତା ଏବଂ ଅସଂଖ୍ୟ ରମଣୀ ଓ ବଧୂଗଣରେ ପରିବୃତା ହୋଇ ସେହି ବୀରବରଙ୍କ ପଶ୍ଚାତ୍ ଗମନ କଲେ । ୨୨ ।

ଅନନ୍ତର ଯେଉଁ ସ୍ଥାନ ସେହି ମହାତ୍ମା ଶୂରପୁତ୍ରଙ୍କର ଜୀବିତ ସମୟରେ ପରମ ପ୍ରିୟ ଥିଲା, ସେହି ସ୍ଥାନରେ ତଦୀୟ ଶବକୁ ସ୍ଥାପନ କରି ପିତୃମେଧ କାର୍ଯ୍ୟ ଆରମ୍ଭ କଲେ । ୨୩ । ରମଣୀରତ୍ନ ତଦୀୟ ପତ୍ନୀ ଚତୁଷ୍ଟୟ ସେହି ଚିତାଗ୍ନିର ମଧ୍ୟଗତ ବୀରଙ୍କ ସହିତ ଚିତାରେ ଆରୋହଣ କରି ପତିଲୋକ-ଗାମିନୀ ହେଲେ । ୨୪ ।

ପାଣ୍ଡୁନନ୍ଦନ ଅର୍ଜ୍ଜୁନ ଏହିରୂପେ ଚନ୍ଦନ ପ୍ରଭୃତି ବହୁବିଧ ଗନ୍ଧଦ୍ରବ୍ୟ ଦ୍ୱାରା ସ୍ତ୍ରୀଚତୁଷ୍ଟୟ ସମନ୍ୱିତ ସେହି ଶବକୁ ଦାହ କରାଇଲେ । ୨୫ । ସେତେବେଳେ ଦେଦୀପ୍ୟମାନ ଅନଳ, ସାମଗ ବ୍ରାହ୍ମଣଗଣ ଓ ରୋରୁଦ୍ୟମାନ ଜନଗଣଙ୍କ ଶବ୍ଦ ଏକାବେଳକେ ସମୁତ୍ଥିତ ହେଲା । ୨୬ ।

ତଦନନ୍ତର ବଜ୍ରପ୍ରଭୃତି କୃଷ୍ଣଙ୍କ କୁମାରଗଣ, ବୃଷ୍ଣିବଂଶୀୟ ଓ ଅନ୍ଧକବଂଶୀୟ କୁମାରଗଣ ଏବଂ ରମଣୀବୃନ୍ଦ ସମସ୍ତେ ଏକତ୍ରିତ ହୋଇ ସେହି ମହାତ୍ମାଙ୍କର ତର୍ପଣକାର୍ଯ୍ୟ ସମାଧାନ କଲେ । ୨୭ ।

ହେ ଭରତଶ୍ରେଷ୍ଠ ! ଧାର୍ମିକପ୍ରବର ଧନଞ୍ଜୟ ଧର୍ମାନୁସାରେ ସେହି ସମସ୍ତ କାର୍ଯ୍ୟ ସମ୍ପାଦନ କରି ଯେଉଁଠାରେ ବୃଷ୍ଣିବଂଶୀୟଗଣ ବିନଷ୍ଟ ହୋଇଥିଲେ, ସେହି ସ୍ଥାନକୁ ଗମନ କଲେ । ୨୮ । କୁରୁନନ୍ଦନ ସେହି ସ୍ଥାନରେ ଉପସ୍ଥିତ ହୋଇ ରଣମଧ୍ୟରେ ସେହି ସମସ୍ତଙ୍କୁ ନିହତ ହୋଇଥିବାର ଦର୍ଶନକରି ଅତିଶୟ ଦୁଃଖିତ ହେଲେ, ଏବଂ ତତ୍କାଳର ଉଚିତ କାର୍ଯ୍ୟ କଲେ । ୨୯ । ଯେଉଁମାନେ ବ୍ରହ୍ମଶାପ ବଶତଃ ଏରକା ସମୁଦ୍ଭୂତ ମୂଷଳସମୂହଦ୍ୱାରା ନିହତ ହୋଇଥିଲେ, ପ୍ରଧାନାନୁସାରେ ସେମାନଙ୍କ ଅନ୍ତ୍ୟେଷ୍ଟିକାର୍ଯ୍ୟ ନିର୍ବାହ କଲେ । ୩୦ ।

ତଦନନ୍ତର ଅନୁଗତ ଜନଗଣଦ୍ୱାରା ବଳରାମ କୃଷ୍ଣ ଉଭୟଙ୍କର ଶରୀର ଅନୁସନ୍ଧାନ କରି ଦାହ କରାଇଲେ ଓ ପ୍ରେତକାର୍ଯ୍ୟସବୁ ସମ୍ପାଦନ କରି ସପ୍ତମ ଦିବସରେ ସେହି ସ୍ଥାନରୁ ବହିର୍ଗତ ହେଲେ । ବୃଷ୍ଣିବଂଶୀୟ ବୀରଗଣଙ୍କର

Digitized by srujanika@gmail.com

ଶୋକକର୍ଷିତ ରମଣୀଗଣ ରୋଦନ କରି ଅଶ୍ୱ, ଗୋଖର ଓ ଉଷ୍ଟ୍ରଦ୍ୱାରା ସଂଯୁକ୍ତ ରଥସମୂହରେ ଆରୋହଣ କରି ମହାତ୍ମା ପାଣ୍ଡୁନନ୍ଦନ ଧନଞ୍ଜୟଙ୍କ ଅନୁଗାମିନୀ ହେଲେ । ଅନ୍ଧକ ଓ ବୃଷ୍ଣିବଂଶୀୟ ରଥୀ ଓ ଅଶ୍ୱାରୋହୀ ପ୍ରଭୃତି ଭୃତ୍ୟବର୍ଗ ଏବଂ ପୌର ଓ ଜାନପଦଗଣ ପାର୍ଥଙ୍କ ଆଦେଶାନୁସାରେ ସେହି କାଳବୃଦ୍ଧାବଶେଷିତ ବୀରବିହୀନ କଳତ୍ରଗଣଙ୍କୁ ରକ୍ଷାକରିବା ନିମିତ୍ତ ସେମାନଙ୍କ ଚତୁଃପାର୍ଶ୍ୱରେ ଏବଂ ପାଦତ୍ରାଣସମନ୍ୱିତ ପଦାତି ଓ ଗଜାରୋହିଗଣ ଗିରିସଦୃଶ ମାତଙ୍ଗୋପରି ଆରୋହଣ କରି ଅଗ୍ର ପଶ୍ଚାତ୍ ଗମନ କଲେ ।

ବ୍ରାହ୍ମଣ, କ୍ଷତ୍ରିୟ, ମହାଧନ ବୈଶ୍ୟ ଓ ଶୂଦ୍ରଗଣ ଏବଂ ଅନ୍ଧକ ଓ ବୃଷ୍ଣିବଂଶୀୟ ବାଳକଗଣ ପାର୍ଥଙ୍କ ଅନୁଗାମୀ ହେଲେ । ୩୭ । ଧୀମାନ୍ ବସୁଦେବନନ୍ଦନ କୃଷ୍ଣଙ୍କ ଷୋଡ଼ଶ ସହସ୍ର ରମଣୀଗଣ ତନୟ ପୌତ୍ର ବଜ୍ରଙ୍କୁ ପୁରୋବର୍ତ୍ତୀ କରାଇ ନିର୍ଗତ ହେଲେ । ବୃଷ୍ଣି ଓ ଅନ୍ଧକବଂଶୀୟ ଅବଶିଷ୍ଟ ହତନାଥା ରମଣୀଗଣ ସେମାନଙ୍କ ଅନୁଗାମିନୀ ହେଲେ । ଏହିରୂପେ ପରପୁର-ଞ୍ଜୟୀ ରଥୀପ୍ରବର ପାର୍ଥ ସେହି ହତାବଶିଷ୍ଟ ମହାସମୃଦ୍ଧିଶାଳୀ ବୃଷ୍ଣିବଂଶୀୟ-ଗଣଙ୍କୁ ନେଇ ଗମନ କଲେ । ସେମାନେ ନିର୍ଗତ ହେବାରୁ ମକରାଳୟ ସମୁଦ୍ର ସମସ୍ତ ରତ୍ନସମ୍ପୂର୍ଣ୍ଣ ଦ୍ୱାରକାନଗରକୁ ଜଳଦ୍ୱାରା ପ୍ଳାବିତ କରାଇଲେ । ୪୧ ।

ପୁରୁଷଶାର୍ଦ୍ଦୂଳ ଧନଞ୍ଜୟ ରମଣୀୟ ଭୂଭାଗର ଯେଉଁ ଯେଉଁ ଅଂଶ ପରିତ୍ୟାଗ କରୁଥିଲେ, ସାଗର ଅବିଳମ୍ବରେ ସେହି ସେହି ସ୍ଥାନକୁ ଜଳଦ୍ୱାରା ପ୍ଳାବିତ କରାଉଥିଲେ । ୪୨ । ଦ୍ୱାରକାବାସିଗଣ ଅଦ୍ଭୁତ ଘଟନା ଦର୍ଶନ କରି 'କି ଦୈବ ଦୁର୍ଘଟନା ହେଲା' ଏହିପରି କହି କହି ଅତିଶୀଘ୍ର ନଗରରୁ ନିର୍ଗତ ହେଲେ । ୪୩ ।

ଧୀମାନ୍ ଅର୍ଜ୍ଜୁନ ରମଣୀୟ ବନପର୍ବତ ଓ ନଦୀତୀରରେ ଅବସ୍ଥାନ କରି ବୃଷ୍ଣିବଂଶୀୟ ରମଣୀଗଣଙ୍କୁ ନେଇ ଯାଉଥିଲେ । ୪୪ । ପରେ ପଞ୍ଚନଦର ସମୀପବର୍ତ୍ତୀ ଗୋ-ପଶୁ-ଧାନ୍ୟପୂର୍ଣ୍ଣ କୌଣସି ଗୋଟିଏ ସମୃଦ୍ଧିଶାଳୀ ପ୍ରଦେଶରେ ଅବସ୍ଥାନ କଲେ । ୪୫ ।

Digitized by srujanika@gmail.com

ହେ ଭରତ ! ସେହି ସ୍ଥାନରେ ବହୁସଂଖ୍ୟକ ଦସ୍ୟୁ ବାସକରନ୍ତି । ସେମାନେ ଧନଞ୍ଜୟ ବୃଷ୍ଣିବଂଶୀୟ ସ୍ତ୍ରୀବାଳକମାନଙ୍କୁ ନେଇ ଯାଉଥିବାର ଦେଖି ଲୋଭର ପରବଶ ହେଲେ । ୪୬ । ହେ ରାଜନ୍ ! ସେହି ପାପକର୍ମା ଆଭୀରଗଣ ଲୋଭରେ ଅନ୍ଧ ହେଲେ ଏବଂ ପରସ୍ପର ସମ୍ମିଳିତ ହୋଇ ଏହି ପ୍ରକାର ମନ୍ତ୍ରଣା କଲେ ଯେ, ପାର୍ଥ ଏକାକୀ ଧନୁର୍ଦ୍ଧର ହୋଇ ଅଛନ୍ତି ଏବଂ ତଦୀୟ ଯୋଧଗଣ ସମସ୍ତେ ଜ୍ୟୋତିର୍ବିହୀନ ହୋଇଅଛନ୍ତି । ସୁତରାଂ ଆମ୍ଭମାନଙ୍କୁ ଅତିକ୍ରମ କରି କଦାପି ଏହି ବାଳବୃଦ୍ଧାବଶେଷିତ ହତନାଥା ରମଣୀଗଣଙ୍କୁ ନେଇ ଯିବାକୁ ସମର୍ଥ ହେବେ ନାହିଁ । ୪୮ । ସେହି ପରସ୍ୱାପହାରୀ ଅସଂଖ୍ୟ ଦସ୍ୟୁଗଣ ଏହିପ୍ରକାର ମନ୍ତ୍ରଣା କରି ଯଷ୍ଟିରୂପ ପ୍ରହରଣ ନେଇ ବୃଷ୍ଣିବଂଶୀୟ ରମଣୀଗଣଙ୍କ ଅଭିମୁଖକୁ ଧାବିତ ହେଲେ । ୪୯ ।

ହେ ଭରତ ! ସେମାନେ ଅନ୍ୟାନ୍ୟ ଅନୁଯାତ୍ରିକଗଣଙ୍କୁ ସିଂହନାଦଦ୍ୱାରା ତ୍ରାସିତ କରାଇ କାଳଦ୍ୱାରା ପ୍ରେରିତ ହୋଇ ଅର୍ଜ୍ଜୁନଙ୍କୁ ବଧ କରିବା ନିମିତ୍ତ ଗମନ କଲେ । ୫୦ । ମହାବାହୁ କୁନ୍ତୀନନ୍ଦନ ଧନଞ୍ଜୟ ସେମାନଙ୍କୁ ଦେଖି ପଦାତିଗଣଙ୍କ ସହିତ ନିବୃତ୍ତ ହୋଇ ହସି ହସି ସେମାନଙ୍କୁ କହିଲେ— ରେ ଅଧାର୍ମିକଗଣ ! ଯଦି ତୁମ୍ଭମାନଙ୍କର ବଞ୍ଚିବାର ବାସନା ଥାଏ, ତେବେ ନିବୃତ୍ତ ହୁଅ । ଅନ୍ୟଥା ହେଲେ ଏହି ମୂହୂର୍ତ୍ତ ମଧ୍ୟରେ ମଦୀୟ ଶରବୃନ୍ଦଦ୍ୱାରା ନିର୍ଭିନ୍ନ ଓ ନିହତ ହୋଇ ଅନୁତାପ କରିବ । ୫୨ । ପରନ୍ତୁ ମୂଢ଼ ଆଭୀରଗଣ ବୀରଶ୍ରେଷ୍ଠଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି ଏବଂ ବାରମ୍ବାର ନିବାରିତ ହୋଇ ସୁଦ୍ଧା ତଦୀୟ ବାକ୍ୟକୁ ଉପହାସ କରି ରମଣୀଗଣଙ୍କ ଅଭିମୁଖକୁ ଧାବିତ ହେଲେ । ୫୩ ।

ତଦନନ୍ତର ଅର୍ଜ୍ଜୁନ ସ୍ୱୀୟ ସୁମହତ୍ ଦିବ୍ୟ ଅଜର ଗାଣ୍ଡୀବ ଧନୁରେ ଜ୍ୟା ଆରୋପଣ କରିବା ନିମିତ୍ତ ବହୁଯତ୍ନରେ ବିନମନ କଲେ ଏବଂ ଅତିଶୟ ଆୟାସରେ ବହୁକଷ୍ଟରେ ଜ୍ୟା ଆରୋପଣ କରି ଅସ୍ତ୍ରସମୂହକୁ ଧ୍ୟାନକଲେ । କିନ୍ତୁ ସେତେବେଳେ କୌଣସି ଅସ୍ତ୍ର ତାହାଙ୍କ ସ୍ମୃତିପଥରେ ସମାରୂଢ଼ ହେଲେ ନାହିଁ । ୫୫ । କୁନ୍ତୀନନ୍ଦନ ନିଜ ଭୁଜ ବୀର୍ଯ୍ୟର ବୈପରୀତ୍ୟ ଓ ଦିବ୍ୟ ମହାଅସ୍ତ୍ରବୃନ୍ଦର ବିନାଶ ଦର୍ଶନ କରି ଅତିଶୟ ଲଜ୍ଜିତ ହେଲେ । ୫୬ ।

Digitized by srujanika@gmail.com

ତେତେବେଳେ ବୃଷ୍ଣିପକ୍ଷୀୟ ରଥୀ, ଅଶ୍ୱାରୋହୀ ଓ ଗଜାରୋହୀ ପ୍ରଭୃତି ଯୋଧଗଣ ସେହି ହ୍ରିୟମାଣ ରମଣୀଗଣଙ୍କୁ ଆବର୍ତ୍ତନ କରିବା ନିମିତ୍ତ ସମର୍ଥ ହେଲେ ନାହିଁ । ୫୭ ।

ସେହି ରମଣୀଗଣ ବହୁସଂଖ୍ୟକ, ସୁତରାଂ ଦସ୍ୟୁଗଣ ଚତୁର୍ଦ୍ଦିଗରେ ଆପତିତ ହୋଇ ଆକ୍ରମଣ କରୁଥିଲେ । ଧନଞ୍ଜୟ ଅବଳାଗଣଙ୍କୁ ରକ୍ଷାକରିବା ନିମିତ୍ତ ବହୁତର ଯତ୍ନକଲେ । ୫୮ । ପରନ୍ତୁ ଦସ୍ୟୁଗଣ ଯୋଧଗଣକର୍ତ୍ତୃକ ନିବାରିତ ହୋଇ ସୁଦ୍ଧା ସେହି ବରବର୍ଣ୍ଣିମାଗଣଙ୍କୁ ସର୍ବତୋଭାବରେ ଆକର୍ଷଣ କରି ନେଇ ଯାଉଥିଲେ । ଏବଂ କୌଣସି କୌଣସି ରମଣୀ ଇଚ୍ଛାନୁସାରେ ଆଭୀରଗଣଙ୍କ ଅନୁଗାମିନୀ ହେଲେ । ୫୯ । ପ୍ରଭାବଶାଳୀ ଧନଞ୍ଜୟ ତାହା ଦର୍ଶନ କରି ଅତିଶୟ ଉଦ୍‌ବିଗ୍ନ ହେଲେ ଏବଂ ବୃଷ୍ଣିବଂଶୀୟ ଭୃତ୍ୟବର୍ଗଙ୍କ ସହିତ ଗାଣ୍ଡୀବନିର୍ମୁକ୍ତ ଶରବୃନ୍ଦଦ୍ୱାରା ଦସ୍ୟୁଗଣଙ୍କୁ ଆଘାତ କଲେ । ୬୦ । ପରନ୍ତୁ, ହେ ରାଜନ୍ ! ଯେଉଁମାନେ ପୂର୍ବେ ରୁଧିର ପାନ ନକରି ନିବୃତ୍ତ ହେଉ ନଥିଲେ, ତେତେବେଳେ ସେହି ସମସ୍ତ ଅଜିହ୍ମଗାମୀ ଅକ୍ଷୟ ଶରଗଣ କ୍ଷୀଣବୀର୍ଯ୍ୟ ହୋଇ ତାହାଙ୍କ ସମ୍ମୁଖରେ ବିଫଳ ହେଲେ ।

ଇନ୍ଦ୍ରନନ୍ଦନ ସ୍ୱୀୟ ଶରଗଣଙ୍କୁ ବ୍ୟର୍ଥ ହେବାର ଦେଖି ଦୁଃଖ ଓ ଶୋକରେ ଅଭିଭୂତ ହେଲେ ଏବଂ ଧନୁଷ୍କୋଟି ଦ୍ୱାରା ଦସ୍ୟୁଗଣଙ୍କୁ ପ୍ରହାର କଲେ । ୬୨ । ପରନ୍ତୁ, ହେ ଜନମେଜୟ ! ମ୍ଳେଚ୍ଛଗଣ ଗୃହୀଁ ଗୃହୀଁ ପାର୍ଥଙ୍କ ସମ୍ମୁଖରେ ସେହି ବୃଷ୍ଣି ଓ ଅନ୍ଧକବଂଶୀୟ ରମଣୀରତ୍ନଗଣଙ୍କୁ ନେଇ ଚତୁର୍ଦ୍ଦିଗକୁ ପ୍ରସ୍ଥାନ କଲେ । ୬୩ ।

ପ୍ରଭାବଶାଳୀ ଧନଞ୍ଜୟ ସେହି ଦୈବଦୁର୍ଘଟନାର ବିଷୟ ଚିନ୍ତାକରି ଦୁଃଖ ଓ ଶୋକରେ ଅଭିଭୂତ ହେଲେ ଏବଂ ଦୀର୍ଘନିଶ୍ୱାସ ପରିତ୍ୟାଗ କଲେ । ୬୪ । ସେ ସ୍ୱୀୟ ବାହୁବୀର୍ଯ୍ୟ, ଅସ୍ତ୍ର ଓ ଶରବୃନ୍ଦର କ୍ଷୟ ଏବଂ ଶରାସନକୁ ଶାସନର ବହିର୍ଭୂତ ହେବାର ଦର୍ଶନ କରି ବିମନା ହୋଇ ବହୁକ୍ଷଣ ଚିନ୍ତାକରି, ଏହା ଦୈବକୃତ ଅଟେ, ତାହା ନ ହେଲେ କଦାପି ଏପରି ହୁଅନ୍ତା ନାହିଁ, ଏହି କଥା କହି ନିବୃତ୍ତ ହେଲେ ।

ହେ ରାଜନ୍ ! ତଦନନ୍ତର ମହାମତି କୁରୁନନ୍ଦନ ଧନଞ୍ଜୟ ସେହି ହୃତା-ବଶିଷ୍ଟ ହୃତରତ୍ନ ଯାଦବରମଣୀଗଣଙ୍କୁ କୁରୁକ୍ଷେତ୍ରକୁ ଆନୟନ କରି ସ୍ଥାନେ

Digitized by srujanika@gmail.com

ସ୍ଥାନେ ବାସସ୍ଥାନ ପ୍ରଦାନ କଲେ । ସେ କୃତବର୍ମାନନ୍ଦନ ଓ ହୃତାବଶିଷ୍ଟ ଭୋଜରାଜଙ୍କ ରମଣୀଗଣଙ୍କୁ ମାର୍ତ୍ତିକାବତ ନଗରରେ ରଖି ଅବଶିଷ୍ଟ ବୀର-ବିହୀନ ବାଳକ, ବୃଦ୍ଧ ଓ ରମଣୀଗଣଙ୍କୁ ଇନ୍ଦ୍ରପ୍ରସ୍ଥକୁ ନେଇଗଲେ । ୭୦ ।

ଅନନ୍ତର ପରବୀରନିସୂଦନ ପାଣ୍ଡୁନନ୍ଦନ ଧର୍ମାତ୍ମା ନରୋତ୍ତମ ପାର୍ଥ ସାତ୍ୟକିନନ୍ଦନ ଯୁଯୁଧାନଙ୍କ ପ୍ରିୟ ପୁତ୍ରଙ୍କୁ ବୃଦ୍ଧ ଓ ବାଳକଗଣଙ୍କ ସହିତ ସରସ୍ୱତୀ ନଦୀତୀରରେ ସ୍ଥାପନ କରି ବଜ୍ରଙ୍କୁ ଇନ୍ଦ୍ରପ୍ରସ୍ଥରେ ରାଜ୍ୟ ପ୍ରଦାନ କଲେ । ବଜ୍ର ଇନ୍ଦ୍ରପ୍ରସ୍ଥରେ ରାଜା ହୋଇ ଅକ୍ରୂରଙ୍କ ରମଣୀମାନଙ୍କୁ ବାରମ୍ବାର ନିଷେଧ କଲେ ସୁଦ୍ଧା ସେମାନେ ପ୍ରବ୍ରଜ୍ୟା ଗ୍ରହଣକଲେ । ୭୨ । ରୁକ୍ମିଣୀ, ଗାନ୍ଧାରୀ, ଶୈବ୍ୟା, ହୈମବତୀ ଓ ଦେବୀ ଜାମ୍ବବତୀ ଏମାନେ ଅଗ୍ନିରେ ପ୍ରବେଶ କଲେ । ୭୩ । ଏବଂ ବାସୁଦେବଙ୍କ ସତ୍ୟଭାମା ପ୍ରଭୃତି ଅନ୍ୟାନ୍ୟ ପ୍ରିୟ ମହିଷୀଗଣ ତପଶ୍ଚରଣ ବିଷୟରେ କୃତନିଶ୍ଚୟା ହୋଇ ବନମଧ୍ୟରେ ପ୍ରବେଶ କଲେ । ସେମାନେ ଫଳ ମୂଳ ପ୍ରଭୃତି ଭୋଜନ କରି ମନୋ-ମଧ୍ୟରେ କେବଳ ବାସୁଦେବଙ୍କୁ ଧ୍ୟାନ କରୁଥିଲେ । ୭୪ । ସେମାନେ ହିମାଳୟ ଅତିକ୍ରମ ପୂର୍ବକ କାଳଗ୍ରାସରେ ପ୍ରବେଶ କଲେ ।

ଯେଉଁ ଦ୍ୱାରକାବାସିଗଣ ପୃଥାନନ୍ଦନ ଧନଞ୍ଜୟଙ୍କ ସହିତ ଆସିଥିଲେ, ସେମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତିଙ୍କୁ ଅର୍ଜୁନ ବିଭାଗ କ୍ରମରେ ବଜ୍ରଙ୍କ ନିକଟରେ ସ୍ଥାପନ କଲେ । ଅର୍ଜୁନ ସମୟାନୁସାରେ ଏହି ସମସ୍ତ କାର୍ଯ୍ୟ କରି ନୟନଜଳ ବିସର୍ଜନ ପୂର୍ବକ ଭଗବାନ୍ କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ ଆଶ୍ରମକୁ ଯାଇ ତାହାଙ୍କୁ ଦର୍ଶନ କଲେ । ୭୬ ।

---

## ଅଷ୍ଟମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ରାଜନ୍ ! ଅର୍ଜୁନ ସତ୍ୟବାଦୀ ବ୍ୟାସଦେବଙ୍କ ଆଶ୍ରମରେ ପ୍ରବେଶ କରି ଦେଖିଲେ, ମୁନିବର ସତ୍ୟବତୀଙ୍କ ନନ୍ଦନ ନିର୍ଜନରେ ଏକାକୀ ହୋଇ ବସିଥିଲେ । ୧ । ସେ ତାହା ଦେଖି ସେହି ମହାବ୍ରତ ଧାର୍ମିକପ୍ରବରଙ୍କ ନିକଟକୁ ଯାଇ 'ଅର୍ଜୁନ' ଏହିରୂପେ ସ୍ୱୀୟ ନାମ କୀର୍ତ୍ତନ କରି ଅଭିବାଦନ କଲେ । ୨ । ମହାମୁନି ସତ୍ୟବତୀନନ୍ଦନ ବ୍ୟାସ

Digitized by srujanika@gmail.com

ସ୍ୱାଗତ ପ୍ରଶ୍ନ ଉତ୍ତରେ ଉପବେଶନ କରିବାକୁ କହି ଧନଞ୍ଜୟଙ୍କୁ କାତର, ବିମନା ଓ ବାରମ୍ବାର ଦୀର୍ଘନିଶ୍ୱାସ ପରିତ୍ୟାଗ କରୁଥିବାର ଦେଖି କହିଲେ—ହେ ଭରତପୁଙ୍ଗବ ! ତୁମ୍ଭେ କଦାପି ପରାଜିତ ହୋଇଥାଅ ବୋଲି ଆମ୍ଭେ ଶୁଣିନାହୁଁ । ତେବେ ଆମ୍ଭେ ସମ୍ପ୍ରତି କେଉଁ କାରଣରୁ ତୁମ୍ଭଙ୍କୁ ଏତାଦୃଶ ଶ୍ରୀବିହୀନ ହୋଇଥିବାର ଦେଖୁଅଛୁଁ ? ତୁମ୍ଭେ ନଖୋଦକ, କେଶଜଳ, ବସ୍ତ୍ରାଞ୍ଚଳ ବାରି ଅଥବା କୁମ୍ଭର ମୁଖୋଦକଦ୍ୱାରା ଅଭିଷିକ୍ତ ହୋଇନାହିଁ ତ ? ତୁମ୍ଭେ ନିବାସ ମଧ୍ୟରେ କି ରଜସ୍ୱଲାଗମନ ଅବା ବ୍ରହ୍ମହତ୍ୟା କରିଅଛ ? ନା କୌଣସି ଯୁଦ୍ଧରେ ପରାଜିତ ହୋଇଅଛ ? ହେ ପାର୍ଥ ! ତୁମ୍ଭର ଏତାଦୃଶୀ ଅବସ୍ଥା କେଉଁ କାରଣରୁ ହୋଇଅଛି ? ହେ ଅର୍ଜୁନ ! ଏହା ଯଦି ଆମ୍ଭର ଶୁଣିବାର ଯୋଗ୍ୟ ଅଟେ, ତେବେ ଶୀଘ୍ର ପ୍ରକାଶ କରି କହ ।

ଅର୍ଜୁନ କହିଲେ—ଯାହାଙ୍କ ଦେହଶ୍ରୀ ଜଳଧର ସଦୃଶ ଏବଂ ଲୋଚନ-ଯୁଗଳ ବିଶାଳ କମଳଦଳସଦୃଶ ଥିଲା, ସେହି ଶ୍ରୀମାନ୍ କୃଷ୍ଣ ରାମଙ୍କ ସହିତ ଦେହତ୍ୟାଗ କରି ସୁରଲୋକକୁ ଗମନ କରିଅଛନ୍ତି । ବ୍ରହ୍ମଶାପ ବଶତଃ ପ୍ରଭାସରେ ମୂଷଳଜନିତ ଯୁଦ୍ଧରେ ବୃଷ୍ଣିବୀରଗଣଙ୍କର ନିଦାରୁଣ ଲୋମହର୍ଷଣ ବିନାଶ ହୋଇଅଛି । ୮ ।

ବ୍ରହ୍ମନ୍ ! ଭୋଜ, ବୃଷ୍ଣି ଓ ଅନ୍ଧକବଂଶୀୟ ଯେଉଁ ମହାବଳ ଶୂରବୀରଗଣ ପଞ୍ଚାସ୍ୟ ସଦୃଶ ପରାକ୍ରାନ୍ତ ଓ ଦର୍ପଶାଳୀ ଥିଲେ, ସେମାନେ ପରସ୍ପର ଯୁଦ୍ଧକରି ବିନଷ୍ଟ ହୋଇଅଛନ୍ତି । ହେ ମହାଭାଗ ! କାଳର ବିପରୀତ ଗତିକି ଦେଖିବା ହେଉନ୍ତୁ । ଯେଉଁମାନଙ୍କ ବାହୁ ପରିଘସଦୃଶ ଥିଲା ଓ ଯେଉଁମାନେ ପରିଘ ଏବଂ ଶକ୍ତି ପ୍ରଭୃତି ଆୟୁଧମାନଙ୍କ ପ୍ରହାର ଅନାୟାସରେ ସହ୍ୟକରି ପାରୁଥିଲେ, ସେମାନେ ଏରକାର ଆଘାତରେ ନିହତ ହୋଇଅଛନ୍ତି ।

ହା ଯଦୁବଂଶୀୟ ପଞ୍ଚଲକ୍ଷ ବିଶାଳବାହୁ ବୀର ପରସ୍ପର ସମରାସକ୍ତ ହୋଇ ଆହତ ଓ ନିହତ ହୋଇଅଛନ୍ତି । ତଥାପି ଆମ୍ଭେ ବାରମ୍ବାର ଚିନ୍ତା କରୁଅଛୁଁ, ଯଦୁବଂଶୀୟଗଣ ଏବଂ ଶ୍ରୀକୃଷ୍ଣ ଯେ ନିହତ ହୋଇଅଛନ୍ତି, ତଦ୍‌ବିଷୟରେ ଆମ୍ଭର ଅଣୁମାତ୍ର ବିଶ୍ୱାସ ହେଉନାହିଁ । ସାଗରର ଶୋଷଣ, ପର୍ବତର ଚଳନ, ଆକାଶର ପତନ ଏବଂ ହୁତାଶନର ଶୈତ୍ୟଗୁଣ ସଦୃଶ ଶ୍ରୀକୃଷ୍ଣଙ୍କ ବିନାଶ ବିଷୟରେ କଦାପି ବିଶ୍ୱାସ ହୋଇପାରେ କି ? ୧୪ ।

Digitized by srujanika@gmail.com

ସେ ଯାହାହେଉ ଆମ୍ଭେ ଶ୍ରୀକୃଷ୍ଣଙ୍କ ବିନା ଆଉ ଏହି ପୃଥିବୀରେ ରହିବାକୁ ଇଚ୍ଛା କରୁନାହୁଁ । ଅପିଚ ହେ ତପୋଧନ ! ଆମ୍ଭେ ସଂପ୍ରତି ଯାହା କହିଲୁଁ, ଏହା ଅପେକ୍ଷା ଆଉ ଗୋଟିଏ କ୍ଲେଶକର ବିଷୟ ଚିନ୍ତାକରି ଆମ୍ଭ ହୃଦୟ ନିରନ୍ତର ବିଦୀର୍ଣ୍ଣ ହେଉଅଛି ।

ସଂପ୍ରତି ଆମ୍ଭେ ସେହି ବୃତ୍ତାନ୍ତ କୀର୍ତ୍ତନ କରୁଅଛୁଁ, ଶ୍ରବଣ କରିବା ହେଉନ୍ତୁ । ହେ ବ୍ରହ୍ମନ୍ ! ଆମ୍ଭେ ଯାଦବରମଣୀଗଣଙ୍କୁ ନେଇ ଆସୁଥିଲୁଁ । ଏହି ଅବସରରେ ମାର୍ଗମଧ୍ୟରେ ପଞ୍ଚନଦନିବାସୀ ଆଭୀରଗଣ ସମର ଅଭିଳାଷରେ ଆମ୍ଭର ସମ୍ମୁଖୀନ ହୋଇ ଗୃହ୍ଣ ଗୃହ୍ଣ ସେହି କାମିନୀଗଣଙ୍କୁ ବଳପୂର୍ବକ ଅପହରଣ କଲେ । ତେତେବେଳେ ଆମ୍ଭେ ସ୍ୱୀୟ ଗାଣ୍ଡୀବଧନୁ ଧାରଣ କରିଥିଲୁଁ ସତ୍ୟ, କିନ୍ତୁ ମଦୀୟ ଭୁଜଯୁଗଳ ପୂର୍ବ ସଦୃଶ ପରାକ୍ରମ ପ୍ରକାଶ ବିଷୟରେ ଅସମର୍ଥ ହେବାରୁ ଆମ୍ଭେ ସେହି ଧନୁରେ ଜ୍ୟା ଆରୋପଣ ଅଥବା ତାହାକୁ ଆକର୍ଷଣ କରି ପାରିଲୁ ନାହିଁ ।

ହେ ମହାମୁନେ ! ତେତେବେଳେ ଆମ୍ଭେ ବହୁବିଧ ଅସ୍ତ୍ର ବିସ୍ମରଣ କରିଥିଲୁଁ, ଏବଂ ଶରବୃନ୍ଦ ମୁହୂର୍ତ୍ତ ସମୟ ମଧ୍ୟରେ ସର୍ବତୋଭାବରେ କ୍ଷୟ-ପ୍ରାପ୍ତ ହୋଇଥିଲେ । ହେ ତପୋଧନ ! ଯାହାଙ୍କ ନୟନଯୁଗଳ କମଳଦଳ ସଦୃଶ ବିଶାଳ, ସେହି ଶଂଖ, ଚକ୍ର ଓ ଗଦାଧର ଶ୍ୟାମବର୍ଣ୍ଣ ଚତୁର୍ଭୁଜ ପୀତବସନ ଅପ୍ରମେୟାତ୍ମା ପରମପୁରୁଷ ଗୋବିନ୍ଦଙ୍କୁ ଯଦି ଦେଖି ନପାରିଲୁଁ, ତେବେ ଆମ୍ଭର ଆଉ ଜୀବନଧାରଣରେ କେଉଁ ଫଳ ? ହା ଯେଉଁ ମହାତେଜସ୍ୱୀ ଶତ୍ରୁସୈନ୍ୟଗଣଙ୍କୁ ଦଗ୍ଧ କରି କରି ଆମ୍ଭ ରଥର ଅଗ୍ରଭାଗରେ ଗମନ କରୁଥିଲେ ସେହି ଅଚ୍ୟୁତଙ୍କୁ ଆମ୍ଭେ ଆଉ ଦେଖିପାରୁ ନାହୁଁ । ୨୧ ।

ହା ସେ ପ୍ରଥମତଃ ସ୍ୱୀୟ ତେଜଦ୍ୱାରା ଶତ୍ରୁସୈନ୍ୟଗଣଙ୍କୁ ଦଗ୍ଧ କରନ୍ତି । ତଦନନ୍ତର ଆମ୍ଭେ ଗାଣ୍ଡୀବନିର୍ମୁକ୍ତ ଶରବୃନ୍ଦଦ୍ୱାରା ସେମାନଙ୍କୁ ବିନଷ୍ଟ କରୁଥିଲୁଁ । ହେ ସତ୍ତମ ! ଆମ୍ଭେ ସଂପ୍ରତି ତାହାଙ୍କୁ ନ ଦେଖି ବିଷଣ୍ଣ ହେଉଅଛୁଁ ଏବଂ ଆମ୍ଭର ଅନ୍ତଃକରଣ ଏପ୍ରକାର କାତର ଏବଂ ବିଘୂର୍ଣ୍ଣିତ ହେଉଅଛି ଯେ, କଦାପି ଶାନ୍ତିଲାଭ କରିପାରୁ ନାହୁଁ । ଜନାର୍ଦ୍ଦନ ବିଷ୍ଣୁ ଅନ୍ତର୍ହିତ ହୋଇଅଛନ୍ତି, ଏହି କଥା ଶୁଣିବା ଅବଧି ଦିକ୍‌ସମୂହକୁ ଅନ୍ଧକାରମୟ ଦେଖୁଅଛୁଁ । ଅତଏବ କୃଷ୍ଣବିହୀନ ହୋଇ ଆମ୍ଭର ଆଉ ଜୀବନଧାରଣ କରିବାକୁ ଉତ୍ସାହ ହେଉନାହିଁ ।

Digitized by srujanika@gmail.com

ହେ ସତ୍ତମ ! ଆମ୍ଭର ବୀର୍ଯ୍ୟ ଓ ଜ୍ଞାତିଗଣ ବିନଷ୍ଟ ହେବାରୁ ଚିତ୍ତ ଉଦ୍‌ଭ୍ରାନ୍ତ ହେଉଅଛି ଏବଂ ଜଗନ୍ମଣ୍ଡଳକୁ ଶୂନ୍ୟମୟ ଦେଖୁଅଛୁଁ । ଅତଏବ ଯାହାଦ୍ୱାରା ଆମ୍ଭର ମଙ୍ଗଳ ହେବ ଆମ୍ଭଙ୍କୁ ତାଦୃଶ ଉପଦେଶ ପ୍ରଦାନ କରିବା ହେଉନ୍ତୁ । ୨୫ ।

ବ୍ୟାସ କହିଲେ—ହେ କୁରୁଶାର୍ଦ୍ଦୂଳ ! ବୃଷ୍ଣି ଓ ଅନ୍ଧକବଂଶୀୟ ମହାରଥଗଣ ବ୍ରହ୍ମଶାପରେ ଦଗ୍‌ଧ ହୋଇ ବିନଷ୍ଟ ହୋଇଅଛନ୍ତି । ଅତଏବ ସେମାନଙ୍କ ନିମିତ୍ତ ଶୋକ କରନା । ଯାହା ଭବିତବ୍ୟ ତାହା ଅବଶ୍ୟ ଘଟୁଥାଏ । ସୁତରାଂ କୃଷ୍ଣ ସମର୍ଥ ହୋଇ ସୁଦ୍ଧା ମହାତ୍ମା ଯଦୁବଂଶୀୟ-ଗଣଙ୍କର ଏହି ଅବଶ୍ୟମ୍ଭାବୀ ବିନାଶର ବିଷୟ ଜାଣିପାରି ସୁଦ୍ଧା ନିବାରଣ କରିବାର ଚେଷ୍ଟା କଲେ ନାହିଁ, ବରଂ ଉପେକ୍ଷା କରିଥିଲେ । ଯେଉଁ ଗୋବିନ୍ଦ ଇଚ୍ଛା କଲେ ସ୍ଥାବର ଓ ଜଙ୍ଗମବୃନ୍ଦ ସହିତ ସମସ୍ତ ତ୍ରୈଲୋକ୍ୟକୁ ଅନ୍ୟଥା କରିପାରନ୍ତି, ତାଙ୍କ ପକ୍ଷେ ସେହି ଯଦୁବଂଶୀୟ ମହାତ୍ମାଗଣଙ୍କର ଏହି ବ୍ରହ୍ମଶାପ କଥା ଅଧିକ ନୁହେ । ୨୭ । ସେହି ଶଙ୍ଖ-ଚକ୍ର-ଗଦାଧାରୀ ଚତୁର୍ଭୁଜ ବିଶାଳଲୋଚନ ପୁରାତନ ଋଷି ବାସୁଦେବ ଶ୍ରୀକୃଷ୍ଣ ସ୍ନେହବଶତଃ ତୁମ୍ଭର ରଥର ଅଗ୍ରଭାଗରେ ଗମନ କରନ୍ତି । ପୃଥୁଲଲୋଚନ କୃଷ୍ଣ ସମ୍ପ୍ରତି ପୃଥିବୀର ଭାର ହରଣ କରି କଳେବର ପରିତ୍ୟାଗ ପୂର୍ବକ ସ୍ୱୀୟ ଧାମକୁ ଗମନ କରିଅଛନ୍ତି । ୨୯ ।

ହେ ମହାବାହୋ ! ପୁରୁଷପୁଙ୍ଗବ ! ତୁମ୍ଭେ ଭୀମ ଏବଂ ନକୁଳ-ସହଦେବଙ୍କ ସାହାଯ୍ୟରେ ଦେବଗଣଙ୍କର ସୁମହତ୍ କାର୍ଯ୍ୟ ସାଧନ କରିଅଛ । ହେ ବିଭୋ ! କୁରୁପୁଙ୍ଗବ ! ଭରତ ! ତୁମ୍ଭେମାନେ ଯେଉଁ ନିମିତ୍ତ ଏହି ପୃଥିବୀକୁ ଆଗମନ କରିଥିଲ, ତଦ୍ ବିଷୟରେ କୃତକୃତ୍ୟ ହୋଇଅଛ ବୋଲି ଆମ୍ଭେ ଜାଣୁଅଛୁଁ । ୩୧ ।

ସଂପ୍ରତି ତୁମ୍ଭମାନଙ୍କର କାଳ ଉପସ୍ଥିତ ହୋଇଅଛି । ଅତଏବ ଆମ୍ଭ ବିବେଚନାରେ ଅଧୁନା ଏହି ସ୍ଥାନରୁ ଗମନ କରିବାର ଶ୍ରେୟସ୍କର ବୋଲି ବୋଧ ହେଉଅଛି । କାରଣ, ସମ୍ପତ୍ତି ସମୟରେ ବୁଦ୍ଧି ଯେଉଁ ତେଜ ଓ ପ୍ରତିପତ୍ତି ଥାଏ, ଆପତ୍ ସମୟରେ ତାହାସବୁ ବିନଷ୍ଟ ହୁଏ ।

Digitized by srujanika@gmail.com

ହେ ଧନଞ୍ଜୟ ! କାଳ ସମସ୍ତଙ୍କର ମୂଳ । ସେ ବୀଜସ୍ୱରୂପ ହୋଇ ଏହି ଜଗତ୍ ସୃଷ୍ଟି କରିଅଛନ୍ତି ଏବଂ ସେ ଇଚ୍ଛାନୁସାରେ ପୁନଶ୍ଚ ଏହାସବୁ ହରଣ କରିବେ । ମନୁଷ୍ୟ ବଳବାନ୍ ହେଲେ ସୁଦ୍ଧା କାଳବଶତଃ ପୁନଶ୍ଚ ଦୁର୍ବଳ ହୁଅନ୍ତି, ଏବଂ ସମସ୍ତଙ୍କର ଈଶ୍ୱର ହୋଇ ସୁଦ୍ଧା ପୁନଶ୍ଚ ପର ଆଜ୍ଞାର ବଶୀଭୂତ ହୁଅନ୍ତି । ଅତଏବ ତନ୍ନିମିତ୍ତ ଶୋକ କରିବାର ଉଚିତ ନୁହେ ।

ତୁମ୍ଭେ ସମୟାନୁସାରେ ଯେଉଁ ସମସ୍ତ ଅସ୍ତ୍ର ଲାଭ କରିଥିଲ, ସେସବୁ କୃତକୃତ୍ୟ ହୋଇ ସଂପ୍ରତି ନିଜ ନିଜ ସ୍ଥାନକୁ ଗମନ କରିଅଛନ୍ତି । ଯୁଗାନ୍ତରରେ ସେମାନେ ସମସ୍ତେ ପୁନଶ୍ଚ ତୁମ୍ଭର ହସ୍ତଗତ ହେବେ । ହେ ଭରତପୁଙ୍ଗବ ! ତୁମ୍ଭମାନଙ୍କ ଅଭିଳାଷର ଯୋଗ୍ୟ ମହାପ୍ରସ୍ଥାନର ସମୟ ଉପସ୍ଥିତ ହୋଇଅଛି । ଅତଏବ ଆମ୍ଭ ବିବେଚନାରେ ସଂପ୍ରତି ତଦନୁରୂପ ଅଧିଷ୍ଠାନ କଲେ ପରମ ଶ୍ରେୟୋ ଲାଭ କରିପାରିବ ।

ବୈଶମ୍ପାୟନ କହିଲେ—ବୀରବର ପୃଥାନନ୍ଦନ ଅମିତତେଜସ୍ୱୀ ବ୍ୟାସଦେବଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ତତ୍କର୍ତ୍ତୃକ ଅନୁଜ୍ଞାତ ହୋଇ ହସ୍ତିନାନଗରକୁ ପ୍ରସ୍ଥାନ କଲେ । ଏବଂ ପୁରମଧ୍ୟରେ ପ୍ରବେଶକରି ଧର୍ମରାଜଙ୍କ ସମୀପରେ ଉପସ୍ଥିତ ହୋଇ ବୃଷ୍ଣି ଓ ଅନ୍ଧକବଂଶୀୟଗଣ ଯେଉଁରୂପେ ବିନଷ୍ଟ ହୋଇଥିଲେ, ପୂର୍ବ ଅନୁକ୍ରମେ ସେହି ସମସ୍ତ ବିଷୟ ନିବେଦନ କଲେ । ୩୮ ।



Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

ନାରାୟଣ, ନରୋତ୍ତମ, ନର ଏବଂ ଦେବୀ ସରସ୍ୱତୀଙ୍କୁ ପ୍ରଣାମ କରି ଜୟ ନାମକ ଗ୍ରନ୍ଥ କୀର୍ତ୍ତନ କରିବ ।

ଜନମେଜୟ କହିଲେ—ବୃଷ୍ଣି ଓ ଅନ୍ଧକବଂଶୀୟଗଣ ଏହିରୂପେ ମୌଷଳ ଯୁଦ୍ଧରେ ନିହତ ହୋଇଅଛନ୍ତି, ଏହି ସମ୍ବାଦ ଶ୍ରବଣ କରି ପାଣ୍ଡବଗଣ କେଉଁ କାର୍ଯ୍ୟ ଅନୁଷ୍ଠାନ କଲେ, ଆପଣ ତାହାସବୁ ଆମ୍ଭ ନିକଟରେ ପ୍ରକାଶ କରି କହିବା ହେଉନ୍ତୁ ।

ବୈଶମ୍ପାୟନ କହିଲେ—କୌରବରାଜ ଯୁଧିଷ୍ଠିର ବୃଷ୍ଣିବଂଶୀୟଗଣଙ୍କର ତାଦୃଶ ନିଦାରୁଣ ବିନାଶ ବିବରଣ ଶ୍ରବଣ କରି ସୁରଲୋକକୁ ଗମନ କରିବା ବିଷୟରେ ଅଭିଳାଷୀ ହୋଇ ଅର୍ଜ୍ଜୁନଙ୍କୁ କହିଲେ—ହେ ମହାମତେ ! କାଳ ପ୍ରାଣିଗଣଙ୍କୁ ହରଣ କରନ୍ତି । ଆମ୍ଭେ ଜାଣୁଅଛୁଁ, ଆମ୍ଭେମାନେ ସେହି କାଳପାଶରେ ଆବଦ୍ଧ ହୋଇ ରହିଥାଇଁ । ଅତଏବ ସମ୍ପ୍ରତି ତୁମ୍ଭର ଏହି ସମସ୍ତ ବିଷୟ ଆଲୋଚନା କରିବାର ଉଚିତ ଅଟେ । ୩ ।

କୁନ୍ତୀନନ୍ଦନ ଅର୍ଜ୍ଜୁନ ଜ୍ୟେଷ୍ଠଭ୍ରାତା ଧୀମାନ୍ ଧର୍ମନନ୍ଦନଙ୍କ ମୁଖରୁ ଏହି ବାକ୍ୟ ଶ୍ରବଣ କରି 'କାଳ ଅପରିହାର୍ଯ୍ୟ' ଏହା କହି ତଦୀୟ ବାକ୍ୟ ସ୍ୱୀକାର କଲେ । ୪ ।

ଭୀମସେନ ଏବଂ ନକୁଳ ଓ ସହଦେବ ସବ୍ୟସାଚୀ ଧନଞ୍ଜୟଙ୍କ ମତ ଅବଗତ ହୋଇ ସେ ଯାହା କହିଥିଲେ ତହିଁରେ ସେମାନେ ନିଜ ନିଜ ସମ୍ମତି ପ୍ରକାଶ କଲେ । ୫ ।

ତଦନନ୍ତର ପାଣ୍ଡବଜ୍ୟେଷ୍ଠ ରାଜା ଯୁଧିଷ୍ଠିର ବୈଶ୍ୟାପୁତ୍ର ଯୁଯୁତ୍ସୁଙ୍କୁ ଆହ୍ୱାନ କରି ଧର୍ମାଚରଣ ନିମିତ୍ତ ବନଗମନର ଅଭିପ୍ରାୟ ପ୍ରକାଶ କରି ତାହାଙ୍କୁ ସମସ୍ତ ରାଜ୍ୟଭାର ପ୍ରଦାନ କଲେ ଏବଂ ରାଜା ପରୀକ୍ଷିତଙ୍କୁ ନିଜ ରାଜ୍ୟରେ ଅଭିଷେଚନ କରି ଦୁଃଖିତ ଭାବରେ ସୁଭଦ୍ରାଙ୍କୁ କହିଲେ— । ୭ ।

ହେ ସୁଭଦ୍ରେ ! ଯାଦବଗଣଙ୍କର ଅବଶିଷ୍ଟ ବଜ୍ରଙ୍କୁ ରାଜପଦରେ ଅଭିଷିକ୍ତ କରାହୋଇଅଛି ଏବଂ ତୁମ୍ଭର ଏହି ପୌତ୍ର ହସ୍ତିନାନଗରରେ କୌରବ-

Digitized by srujanika@gmail.com

ଗଣଙ୍କର ରାଜା ହେଲେ । ହେ ଭଦ୍ରେ ! ଯଦୁନନ୍ଦନ ବଜ୍ର ଇନ୍ଦ୍ରପ୍ରସ୍ଥରେ ଅଭିଷିକ୍ତ ହୋଇଅଛନ୍ତି । ତୁମ୍ଭେ ତାହାଙ୍କଠାରେ କୌଣସି ପ୍ରକାର ଅଧର୍ମାଚରଣର ଅଭିଳାଷ ନ କରି ନିରନ୍ତର ତାହାଙ୍କୁ ରକ୍ଷା କରିବ । ୯ ।

ଧର୍ମାତ୍ମା ଧର୍ମରାଜ ଏହି କଥା କହି ଭ୍ରାତୃଗଣଙ୍କ ସହିତ ଧୀମାନ୍ ବାସୁଦେବ, ବୃଦ୍ଧ ମାତୁଳ ବସୁଦେବ ଏବଂ ରାମ ପ୍ରଭୃତିଙ୍କୁ ଉଦକଦାନ କରି ଯଥାବିଧାନରେ ସମସ୍ତଙ୍କ ଶ୍ରାଦ୍ଧ କଲେ । ୧୧ ।

ଅନନ୍ତର ଶାର୍ଙ୍ଗଧର କେଶବଙ୍କର ନାମ ଉଲ୍ଲେଖ କରି ତାହାଙ୍କ ଉଦ୍ଦେଶ୍ୟରେ ଦ୍ୱୈପାୟନ, ନାରଦ, ମାର୍କଣ୍ଡେୟ, ଭରଦ୍ୱାଜ ଓ ଯାଜ୍ଞବଲ୍କ୍ୟ ପ୍ରଭୃତି ତପୋଧନ ଦ୍ୱିଜବରଗଣଙ୍କୁ ଯତ୍ନ ସହକାରରେ ବହୁବିଧ ସ୍ୱାଦୁଭୋଜ୍ୟ ଭୋଜନ କରାଇ ଅସଂଖ୍ୟ ରତ୍ନ, ବସ୍ତ୍ର, ଅଶ୍ୱ, ରଥ ଓ ଶତସହସ୍ର ରମଣୀ ଏବଂ ଗ୍ରାମ ଦାନକଲେ । ହେ ଭରତସତ୍ତମ ! ତତ୍ପରେ ସେମାନେ ପୌରଗଣକର୍ତ୍ତୃକ ପୁରସ୍କୃତ ଗୁରୁ କୃପାଚାର୍ଯ୍ୟଙ୍କୁ ପୂଜାକରି ପରୀକ୍ଷିତଙ୍କୁ ଶିଷ୍ୟରୂପେ ତାଙ୍କ ହସ୍ତରେ ସମର୍ପଣ କଲେ ।

ଅନନ୍ତର ରାଜର୍ଷି ଯୁଧିଷ୍ଠିର ପ୍ରକୃତିଗଣଙ୍କୁ ଆନୟନ କରି ସ୍ୱୀୟ ଚିକୀର୍ଷିତ ବିଷୟ ପ୍ରକାଶ କରି କହିଲେ । ପୌର ଓ ଜାନପଦଗଣ ତାହାଙ୍କର ତାଦୃଶ ବାକ୍ୟ ଶ୍ରବଣ କରି ନିରତିଶୟ ଦୁଃଖିତମନା ହେଲେ ଏବଂ ତାହା ଅନୁମୋଦନ ନ କରି, 'ହେ ନରନାଥ ! ଆପଣଙ୍କର ଏହା କର୍ତ୍ତବ୍ୟ ନୁହେ' ଏହି କଥା ବାରମ୍ବାର କହୁଥିଲେ । ୧୬ ।

ପରନ୍ତୁ ରାଜା କାଳଙ୍କ ବିପରୀତ ଧର୍ମସବୁ ଜାଣି ପାରିଥିଲେ । ସୁତରାଂ ସେହି ପୌର ଓ ଜାନପଦଗଣଙ୍କ ଅଭିଳାଷାନୁରୂପ କାର୍ଯ୍ୟ କରିବାକୁ ଅସମ୍ମତି ପ୍ରକାଶ କରି ସମସ୍ତଙ୍କ ଅନୁମତି ଗ୍ରହଣ ପୂର୍ବକ ଭ୍ରାତୃଗଣଙ୍କ ସହିତ ଗମନ କରିବାକୁ ଅଭିଳାଷୀ ହେଲେ ।

ଅନନ୍ତର କୁରୁନନ୍ଦନ ଧର୍ମପୁତ୍ର ରାଜା ଯୁଧିଷ୍ଠିର ଶରୀରରୁ ଆଭରଣସମୂହ ଉନ୍ମୋଚନ କରି ବଲ୍କଳ ପରିଧାନ କଲେ । ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଏବଂ ଯଶସ୍ୱିନୀ ଦ୍ରୁପଦନନ୍ଦିନୀ ଭୂଷଣ ମାଲ୍ୟ ପରିତ୍ୟାଗ କରି

Digitized by srujanika@gmail.com

ବଲ୍‌କଲ ବନ୍ଧନ କଲେ । ହେ ଭରତପୁଙ୍ଗବ ! ତଦନନ୍ତର ସେହି ପୁରୁଷପୁଙ୍ଗବଗଣ ଯଥାବିଧି ଉତ୍ସର୍ଗକାଳୋଚିତ ଅନ୍ତିମ ଯଜ୍ଞ ସମାଧାନ କରି ଅଗ୍ନିମାନଙ୍କୁ ଜଳ ମଧ୍ୟରେ ନିକ୍ଷେପ କଲେ ।

ପାଣ୍ଡବଗଣ ପୂର୍ବେ ଦ୍ୟୂତକ୍ରୀଡ଼ାରେ ପରାଜିତ ହୋଇ ଯେଉଁରୂପେ ଗମନ କରିଥିଲେ, ସେତେବେଳେ ସେହି ନରଶ୍ରେଷ୍ଠଗଣଙ୍କୁ ଦ୍ରୌପଦୀଙ୍କ ସହିତ ତଦନୁରୂପେ ଗମନ କରୁଥିବାର ଦେଖି ପୁରସ୍ତ୍ରୀଗଣ ରୋଦନ କଲେ । ପରନ୍ତୁ ସେହି ଭ୍ରାତୃଗଣ ବୃଷ୍ଣିବଂଶୀୟଗଣଙ୍କ ବିନାଶ ଦର୍ଶନ ଏବଂ ଯୁଧିଷ୍ଠିରଙ୍କ ଅଭିପ୍ରାୟ ଅବଗତ ହୋଇ ଗମନ ବିଷୟରେ ହର୍ଷ ପ୍ରକାଶ କରୁଥିଲେ ।

ତଦନନ୍ତର ରାଜା ଯୁଧିଷ୍ଠିର, ଭ୍ରାତୃଚତୁଷ୍ଟୟ, କୃଷ୍ଣା ଏବଂ ଗୋଟିଏ କୁକୁର—ଏହି ସାତଜଣ ହସ୍ତିନାନଗରରୁ ନିର୍ଗତ ହେଲେ । ପୁରବାସୀ ଅନ୍ତଃପୁରବାସିଗଣ ସମସ୍ତେ ବହୁଦୂର ପର୍ଯ୍ୟନ୍ତ ସେମାନଙ୍କ ଅନୁଗମନ କଲେ । ପରନ୍ତୁ କେହି ସେମାନଙ୍କୁ 'ନିବର୍ତ୍ତିତ ହୁଅନ୍ତୁ' ଏହିପରି କହିବାକୁ ସମର୍ଥ ହେଲେ ନାହିଁ ।

ତଦନନ୍ତର ନଗରବାସୀ ଓ କୃପାଚାର୍ଯ୍ୟ ପ୍ରଭୃତି ଅନୁଯାୟିଗଣ ପ୍ରତି-ନିବୃତ୍ତ ହୋଇ ଯୁଯୁତ୍ସୁଙ୍କୁ ପରିବେଷ୍ଟନ କଲେ । ଭୁଜଗନନ୍ଦିନୀ ଉଲୂପୀ ଗଙ୍ଗା ମଧ୍ୟରେ ପ୍ରବେଶ କଲେ, ଚିତ୍ରାଙ୍ଗଦା ମଣିପୁରାଭିମୁଖରେ ପ୍ରସ୍ଥାନ କଲେ ଓ ଅପର କୁରୁନାରୀଗଣ ପରୀକ୍ଷିତଙ୍କ ନିକଟରେ ଅବସ୍ଥାନ କଲେ ।

ହେ କୁରୁନନ୍ଦନ ! ସନ୍ନ୍ୟାସଧର୍ମାବଲମ୍ବୀ ଯୋଗଯୁକ୍ତ ମହାତ୍ମା ପାଣ୍ଡୁ-ନନ୍ଦନଗଣ ଏବଂ ଯଶସ୍ୱିନୀ ଦ୍ରୁପଦନନ୍ଦିନୀ ଉପବାସ କରି ପୂର୍ବାଭିମୁଖରେ ପ୍ରସ୍ଥାନ କରି ଅନେକ ଜନପଦ, ସାଗର ଓ ସରିତ୍‌ସମୂହ ଅତିକ୍ରମ କଲେ । ୩୦ । ସେତେବେଳେ ଯୁଧିଷ୍ଠିର ସମସ୍ତଙ୍କ ଅଗ୍ରରେ ଏବଂ ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଯଥାକ୍ରମେ ପ୍ରତ୍ୟେକେ ଅନ୍ୟର ପଶ୍ଚାଦ୍‌ଗମନ କଲେ । ୩୧ ।

ହେ ଭରତସତ୍ତମ ! କମଳଦଳଲୋଚନା ଶ୍ୟାମାଙ୍ଗୀ ବରାରୋହା ନାରୀଶ୍ରେଷ୍ଠା ଦ୍ରୁପଦନନ୍ଦିନୀ ସେହି ସମସ୍ତଙ୍କ ପଶ୍ଚାତ୍ ଗମନ କଲେ । ୩୨ ।

Digitized by srujanika@gmail.com

ପାଣ୍ଡୁନନ୍ଦନଗଣ ଏହିରୂପେ ବନରେ ପ୍ରସ୍ଥାନ କଲେ । କେବଳ ଗୋଟିଏ କୁକ୍କୁର ସେମାନଙ୍କ ଅନୁଗାମୀ ହୋଇଥିଲା । ହେ ମହାରାଜ ! ସେହି ମହାପ୍ରସ୍ଥାନ ସମୟରେ ଧନଞ୍ଜୟ ରତ୍ନଲୋଭବଶତଃ ସୁମହତ୍ ଗାଣ୍ଡୀବ ନାମକ ଧନୁ ଏବଂ ଅକ୍ଷୟ ତୂଣଯୁଗଳ ପରିତ୍ୟାଗ କରିପାରିଲେ ନାହିଁ ।

ହେ ଭାରତ ! ଏହିରୂପେ କ୍ରମେ କ୍ରମେ ଗମନ କରି ସେମାନେ ଉଦୟାଚଳର ପ୍ରାନ୍ତସ୍ଥିତ ଲୋହିତସମୁଦ୍ର ତୀରରେ ଉପସ୍ଥିତ ହୋଇ ଦେଖିଲେ, ମୂର୍ତ୍ତିମାନ୍ ଅଗ୍ନିପୁରୁଷ ବିଗ୍ରହ ପରିଗ୍ରହ କରି ମହୀଧରର ମାର୍ଗ ଅବରୋଧ କରି ସମ୍ମୁଖରେ ଅବସ୍ଥିତ ହୋଇଥିଲେ । ୩୬ ।

ଦେବପ୍ରବର ସପ୍ତାର୍ଚ୍ଚି ସମାଗତ ପାଣ୍ଡୁନନ୍ଦନଗଣଙ୍କୁ ଦେଖି କହିଲେ— ହେ ବୀର ପାଣ୍ଡୁନନ୍ଦନଗଣ ! ଆମ୍ଭଙ୍କୁ ହୁତାଶନ ବୋଲି ଜାଣ । ହେ ମହାବାହୋ ଯୁଧିଷ୍ଠିର ! ହେ ବୀରବର ଭୀମସେନ ! ହେ ଅରିନ୍ଦମ ଅର୍ଜ୍ଜୁନ ! ହେ ବୀର ଅଶ୍ୱିନୀକୁମାରଯୁଗଳ ! ତୁମ୍ଭେମାନେ ସମସ୍ତେ ଆମ୍ଭ ବାକ୍ୟ ଶ୍ରବଣ କର । ହେ କୁରୁଶ୍ରେଷ୍ଠଗଣ ! ଆମ୍ଭେ ଅଗ୍ନି, ଆମ୍ଭେ ସେହି ନାରାୟଣ ଏବଂ ଅର୍ଜ୍ଜୁନଙ୍କ ପ୍ରଭାବରେ ଖାଣ୍ଡବ ବନ ଦଗ୍ଧ କରିଥିଲୁଁ । ୩୮ । ତୁମ୍ଭମାନଙ୍କ ଭ୍ରାତା ଏହି ଅର୍ଜ୍ଜୁନ ଏହି ପରମାୟୁଧ ଗାଣ୍ଡୀବକୁ ପରିତ୍ୟାଗ ପୂର୍ବକ ବନରେ ଗମନ କରନ୍ତୁ । କାରଣ, ଏଥିରେ ସମ୍ପ୍ରତି ଏହାଙ୍କର ଆଉ କୌଣସି ପ୍ରୟୋଜନ ନାହିଁ । ୩୯ । ମହାତ୍ମା କୃଷ୍ଣଙ୍କ ନିକଟରେ ଯେଉଁ ଚକ୍ରରତ୍ନ ଥିଲା, ସମ୍ପ୍ରତି ତାହା ପ୍ରସ୍ଥିତ ହୋଇଅଛି । ପରନ୍ତୁ ଅବତାର ଆରମ୍ଭରେ ପୁନଶ୍ଚ ତାହାଙ୍କ ହସ୍ତରେ ଅବସ୍ଥିତ ହେବ । ୪୦ । ଆମ୍ଭେ ଅର୍ଜ୍ଜୁନଙ୍କ ନିମିତ୍ତ ବରୁଣଙ୍କ ନିକଟରୁ ଏହି ଧନୁଃଶ୍ରେଷ୍ଠ ଗାଣ୍ଡୀବକୁ ଆନୟନ କରିଥିଲୁଁ । ଅତଏବ ସମ୍ପ୍ରତି ଏହା ତାହାଙ୍କୁ ପ୍ରଦତ୍ତ ହେଉ । ୪୧ ।

ସମସ୍ତ ଭ୍ରାତୃଗଣ ହୁତାଶନଙ୍କ ଏହି କଥା ଶୁଣି ଅର୍ଜ୍ଜୁନଙ୍କୁ ଅନୁରୋଧ କଲେ । ସେ ସେହି ଧନୁ ଓ ଅକ୍ଷୟ ତୂଣଯୁଗଳ ଜଳ ମଧ୍ୟରେ ନିକ୍ଷେପ କଲେ । ୪୨ । ହେ ଭରତଶ୍ରେଷ୍ଠ ! ଅଗ୍ନିଦେବ ତାହା ଦର୍ଶନ କରି ଅବିଲମ୍ବେ ସେହି ସ୍ଥାନରୁ ଅନ୍ତର୍ହିତ ହେଲେ । ଏବଂ ସେମାନେ ଦକ୍ଷିଣଦିଗକୁ ଗମନ କଲେ । ୪୩ । ହେ ଭରତଶାର୍ଦ୍ଦୂଳ ! ତଦନନ୍ତର ସେମାନେ ଲବଣ-ସମୁଦ୍ରର ଉତ୍ତରତୀର ଧରି ଦକ୍ଷିଣ-ପଶ୍ଚିମ ଦିଗକୁ ଗମନ କଲେ । ୪୪ ।

Digitized by srujanika@gmail.com

ତଦନନ୍ତର ସେଠାରୁ ପ୍ରତ୍ୟାବୃତ୍ତ ହୋଇ ପଶ୍ଚିମାଭିମୁଖରେ ଗମନ କରି ଦ୍ୱାରକାରେ ଉପସ୍ଥିତ ହୋଇ ଦେଖିଲେ, ମହାସାଗର ସେହି ନଗରୀକୁ ପ୍ଲାବନ କରିଅଛନ୍ତି । ୪୫ ।

ହେ ମହାରାଜ ! ସେହି ଯୋଗାବଲମ୍ବୀ ଭରତସତ୍ତମଗଣ ଏହିରୂପେ ପୃଥିବୀ ପ୍ରଦକ୍ଷିଣ କରିବାକୁ ଅଭିଳାଷୀ ହୋଇ ପଶ୍ଚିମ ଦିଗରୁ ପୁନରାଗମନ କରି ଉତ୍ତରାଭିମୁଖରେ ପ୍ରସ୍ଥାନ କଲେ । ୪୬ ।

---

# ଦ୍ୱିତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ସଂଯତଚିତ୍ତ ପାଣ୍ଡୁ-ନନ୍ଦନଗଣ ଏହିରୂପେ ତିନି ଦିଗ ପ୍ରଦକ୍ଷିଣ କରି ସମାହିତ ମନରେ ଉତ୍ତରାଭି-ମୁଖରେ ପ୍ରସ୍ଥିତ ହୋଇ ମହାଗିରି ହିମାଳୟଙ୍କୁ ଦେଖିଲେ । ୧ । ସେମାନେ ସେହି ଶିଖରିରାଜଙ୍କୁ ଅତିକ୍ରମ କରି ବାଲୁକାର୍ଣ୍ଣବ ଦର୍ଶନ କଲେ ଏବଂ ତାହା ପାରହୋଇ ଶିଖରିଶ୍ରେଷ୍ଠ ମହାଶୈଳ ସୁମେରୁ ପର୍ବତ ଦର୍ଶନ କଲେ । ୨ ।

ସେହି ଯୋଗଧର୍ମିକଗଣ ସୁମେରୁ ପର୍ବତରେ ଶୀଘ୍ର ଗମନ କରୁଥିଲେ, ଏହି ଅବସରରେ ଯାଜ୍ଞସେନୀ ଯୋଗଭ୍ରଷ୍ଟା ହୋଇ ଧରଣୀତଳରେ ପଡ଼ିଲେ । ୩ । ମହାବଳ ଭୀମସେନ ଦ୍ରୁପଦନନ୍ଦିନୀଙ୍କୁ ଭୂମିତଳରେ ପଡ଼ିଯିବାର ଦେଖି ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—ହେ ଅରିନ୍ଦମ ! ଏହି ରାଜନନ୍ଦିନୀ କୃଷ୍ଣା କଦାପି କୌଣସି ଅଧର୍ମ ଆଚରଣ କରିନାହାନ୍ତି, ତଥାପି ଧରଣୀତଳରେ ପଡ଼ିଲେ । ଏହାର କାରଣ କ'ଣ, ଏହା ଆମ୍ଭଙ୍କୁ ପ୍ରକାଶ କରି କହିବା ହେଉନ୍ତୁ । ୪ ।

ଯୁଧିଷ୍ଠିର କହିଲେ—ହେ ପୁରୁଷୋତ୍ତମଶେଖର ! ଆମ୍ଭେମାନେ ସମସ୍ତେ ସମାନ ହେଲେ ସୁଦ୍ଧା ଏହାଙ୍କର ଧନଞ୍ଜୟଙ୍କ ଉପରେ ବିଶେଷ ରୂପେ ସୁମହତ୍ ପକ୍ଷପାତ ଥିଲା । ଏ ଅଦ୍ୟ ତାହାର ଫଳ ଭୋଗ କରୁଅଛନ୍ତି । ୬ ।

Digitized by srujanika@gmail.com

ବୈଶମ୍ପାୟନ କହିଲେ—ହେ ରାଜନ୍ ! ଧର୍ମାତ୍ମା ଧୀମାନ୍ ପୁରୁଷପୁଙ୍ଗବ ଭରତସତ୍ତମ ଯୁଧିଷ୍ଠିର ଏହି କଥା କହି ଦ୍ରୌପଦୀଙ୍କ ପ୍ରତି ଆଉ ଦୃଷ୍ଟି-ନିକ୍ଷେପ ନ କରି ସମାହିତ ମନା ହୋଇ ଗମନ କଲେ । ୭ । ଏହି ଅବସରରେ ବିଦ୍ୱାନ ସହଦେବ ଧରଣୀତଳରେ ପତିତ ହେଲେ । ଭୀମସେନ ତାହା ଦର୍ଶନକରି ରାଜାଙ୍କୁ କହିଲେ—ହେ ପ୍ରଭୋ ! ଯେ ଅହଂକାରଶୂନ୍ୟ ହୋଇ ନିରନ୍ତର ଆମ୍ଭ ସମସ୍ତଙ୍କର ଶୁଶ୍ରୂଷା କରନ୍ତି, ଏହି ସେହି ମାଦ୍ରୀନନ୍ଦନ କି ନିମିତ୍ତ ଭୂତଳରେ ପତିତ ହେଲେ ? ୯ ।

ଯୁଧିଷ୍ଠିର କହିଲେ—ନୃପନନ୍ଦନ ! ସେ କୌଣସି ବ୍ୟକ୍ତିଙ୍କୁ ଆପଣା ସଦୃଶ ପ୍ରାଜ୍ଞ ବୋଲି ବୋଧ କରନ୍ତି ନାହିଁ । ସୁତରାଂ ସେହି ଦୋଷରେ ସମ୍ପ୍ରତି ପତିତ ହେଲେ । ୧୦ ।

ବୈଶମ୍ପାୟନ କହିଲେ—ତେତେବେଳେ କୁନ୍ତୀପୁତ୍ର ଯୁଧିଷ୍ଠିର ଏହି କଥା କହି ସହଦେବଙ୍କୁ ପରିତ୍ୟାଗ କରି ଭ୍ରାତୃଗଣ ଓ ସେହି କୁକ୍କୁର ସହିତ ଗମନ କଲେ । ୧୧ । ପରନ୍ତୁ କୃଷ୍ଣା ଏବଂ ପାଣ୍ଡୁନନ୍ଦନ ସହଦେବଙ୍କୁ ନିପତିତ ହେବାର ଦର୍ଶନ କରି ଭ୍ରାତୃପ୍ରିୟ ଶୂର ନକୁଳ ଶୋକପୀଡ଼ିତ ହୋଇ ମହୀତଳରେ ନିପତିତ ହେଲେ । ୧୨ ।

ସେହି ସୁରୂପଦର୍ଶନ ବୀରବର ନକୁଳ ନିପତିତ ହେବାରୁ ଭୀମ ପୁନଶ୍ଚ ରାଜା ଯୁଧିଷ୍ଠିରଙ୍କୁ ପ୍ରଶ୍ନ କଲେ—ହେ ରାଜନ୍ ! ଯେ କଦାପି ଧର୍ମପଥରୁ ବିଚଳିତ ହୁଅନ୍ତି ନାହିଁ, ନିରନ୍ତର ଆମ୍ଭମାନଙ୍କ ଆଜ୍ଞାର ଅନୁବର୍ତ୍ତୀ ଥିଲେ, ଏବଂ ତ୍ରିଲୋକମଧ୍ୟରେ ଯାହାଙ୍କ ସଦୃଶ କେହି ରୂପବାନ୍ ନାହାନ୍ତି, ସେହି ଏହି ଭ୍ରାତା ନକୁଳ କେଉଁ କାରଣରୁ ଭୂତଳରେ ପତିତ ହେଲେ ? ୧୪ ।

ଧାର୍ମିକକୁଳର ଅଗ୍ରଗଣ୍ୟ ଧର୍ମାତ୍ମା ରାଜା ଯୁଧିଷ୍ଠିର ଭୀମସେନଙ୍କ ମୁଖରୁ ଏହି ପ୍ରଶ୍ନ ଶ୍ରବଣ କରି କହିଲେ—ନକୁଳ ସର୍ବଦା ଏହିପ୍ରକାର ମନୋମଧ୍ୟରେ ବିବେଚନା କରନ୍ତି ଯେ, ତ୍ରିଲୋକମଧ୍ୟରେ କୌଣସି ବ୍ୟକ୍ତି ଆମ୍ଭ ସଦୃଶ ରୂପବାନ୍ ନାହାନ୍ତି ଏବଂ ଆମ୍ଭେ ସର୍ବାପେକ୍ଷା ଅଧିକ ରୂପବାନ୍ । ହେ ବୃକୋଦର ! ଅଧୁନା ଏ ସେହି ଗର୍ବବଶତଃ ପତିତ ହେଲେ । ହେ ବୀର ! ଯାହାଙ୍କର ଯେଉଁ ପ୍ରକାର ବିହିତ ହୋଇଅଛି, ସେ ତଦନୁସାରେ ଅବଶ୍ୟ

Digitized by srujanika@gmail.com

ଫଳଭୋଗ କରିବେ । ଅତଏବ ଏହାଙ୍କ ନିମିତ୍ତ ଶୋକ ନ କରି ଆଗମନ କର । ୧୭ ।

ପରବୀରନିସୂଦନ ପାଣ୍ଡୁନନ୍ଦନ ଶ୍ୱେତବାହନ ପାର୍ଥ ଦ୍ରୌପଦୀ ଏବଂ ଭ୍ରାତୃମାନଙ୍କୁ ଏପରି ପତିତ ହୋଇଥିବାର ଦର୍ଶନ କରି ଶୋକସନ୍ତପ୍ତ ହୋଇ ପତିତ ହେଲେ । ୧୮ ।

ସୁରରାଜଙ୍କ ସଦୃଶ ତେଜଶାଳୀ ଦୁରାଧର୍ଷ ପୁରୁଷଶାର୍ଦ୍ଦୂଳ ପାର୍ଥଙ୍କୁ ପତିତ ମ୍ରିୟମାଣ ଦର୍ଶନ କରି ଭୀମ ପୁନଶ୍ଚ ରାଜାଙ୍କୁ ପ୍ରଶ୍ନ କଲେ—ହେ ମହାବାହୋ ! ଏହି ଅର୍ଜ୍ଜୁନ ଯେ କୌଣସି ସ୍ଥାନରେ ପରିହାସ ଛଳରେ ମିଥ୍ୟା କହିଥିଲେ, ଆମ୍ଭର ଏପରି ସ୍ମରଣ ହେଉନାହିଁ । ତଥାପି କେଉଁ କର୍ମବିପାକ ବଶତଃ ଅଧୁନା ଭୂତଳରେ ପତିତ ହେଲେ ? ୨୦ ।

ଯୁଧିଷ୍ଠିର କହିଲେ—ଅର୍ଜ୍ଜୁନ କହିଥିଲେ ଯେ ଆମ୍ଭେ ଏକଦିବସ ମଧ୍ୟରେ ଶତ୍ରୁଗଣଙ୍କୁ ଦଗ୍ଧ କରିବୁ, କିନ୍ତୁ କାର୍ଯ୍ୟରେ ତାହା ସମ୍ପାଦନ କଲେ ନାହିଁ । ହେ ବୀର ! ଏହି ଶୂରାଭିମାନୀ ସେହି ମିଥ୍ୟାପ୍ରତିଜ୍ଞା ବଶତଃ ଅଧୁନା ପତିତ ହେଲେ । ୨୧ । ବିଶେଷତଃ ଫାଲ୍‌ଗୁନ ଧନୁର୍ଦ୍ଧାରୀଗଣଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ବୋଲି ଅପର ଧନୁର୍ଦ୍ଧାରିମାନଙ୍କୁ ଅବଜ୍ଞା କରନ୍ତି । ଏହା ତାହାଙ୍କ ପତନର ଅନ୍ୟବିଧ କାରଣ ଅଟେ । ୨୨ ।

ବୈଶମ୍ପାୟନ କହିଲେ—ରାଜା ଯୁଧିଷ୍ଠିର ଏହି କଥା କହି ଗମନ କଲେ । ଏହି ଅବସର ମଧ୍ୟରେ ଭୀମସେନ ପତିତ ହେଲେ ଏବଂ ପତିତ ହେଉ ହେଉ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କଲେ—ଭୋ ଭୋ ରାଜନ୍ ! ଦେଖିବା ହୁଅନ୍ତୁ । ଆମ୍ଭେମାନେ ଆପଣଙ୍କର ପ୍ରିୟ ହୋଇ ପତିତ ହେଉଅଛୁଁ । ଆପଣ ଯଦି ଜାଣନ୍ତି ତାହା ପ୍ରକାଶିବା ହେଉନ୍ତୁ । ୨୪ । ଆମ୍ଭେ ଆପଣଙ୍କର ପ୍ରିୟ ହୋଇ ପତିତ ହେଉଅଛୁଁ । ଆମ୍ଭେ କେଉଁ କାରଣରୁ ପତିତ ହେଉଅଛୁଁ ଆପଣ ଦୟାକରି କହନ୍ତୁ ।

ଯୁଧିଷ୍ଠିର କହିଲେ—ଭୀମ ! ତୁମ୍ଭେ ବହୁଭୋଜନ କରୁଥାଅ, ଅନ୍ୟର ବଳ ନ ଦେଖି ଆପଣା ବଳର ଶ୍ଳାଘା କରୁଥାଅ । ସେହି ନିମିତ୍ତ ଭୂତଳରେ ପତିତ ହେଲ । ୨୫ ।

Digitized by srujanika@gmail.com

ମହାବାହୁ ଯୁଧିଷ୍ଠିର ଏହା କହି ତାହାଙ୍କ ପ୍ରତି ଆଉ ଦୃଷ୍ଟି ନକରି ଗମନ କଲେ ।

ଆମ୍ଭେ ଯାହାର ବିଷୟ ବାରମ୍ବାର କୀର୍ତ୍ତନ କରୁଅଛୁଁ, ସେହି କୁକୁର ଗୋଟିକ ତେତେବେଳେ ତାହାଙ୍କ ଅନୁଗମନ କଲା । ୨୬ ।

---

# ତୃତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ଦେବରାଜ ରଥାରୂଢ଼ ହୋଇ ଭୂମି ଓ ନଭୋମଣ୍ଡଳକୁ ସମ୍ୟଗ୍ ଭାବରେ ନାଦଯୁକ୍ତ କରି ସେହି ସ୍ଥାନକୁ ଆଗମନ କରି ଯୁଧିଷ୍ଠିରଙ୍କୁ ଆରୋହଣ କରିବାକୁ କହିଲେ । ୧ । ପରନ୍ତୁ ଧର୍ମରାଜ ଯୁଧିଷ୍ଠିର ଭ୍ରାତୃଗଣଙ୍କୁ ପତିତ ହେବାର ଦେଖି ଶୋକସନ୍ତପ୍ତ ହୋଇ ସହସ୍ରଲୋଚନଙ୍କୁ ଏହି କଥା କହିଲେ—ହେ ସୁରେଶ୍ୱର ! ଭ୍ରାତୃଗଣ ଆମ୍ଭ ସାଙ୍ଗେ ସାଙ୍ଗେ ଗମନ କରିବେ, ଆମ୍ଭେ ଏହା ଅତି ଅଭିଳାଷ କରିଥିଲୁଁ । କିନ୍ତୁ ସେମାନେ ଏହି ସ୍ଥାନରେ ପତିତ ହୋଇଅଛନ୍ତି । ଅତଏବ ଆମ୍ଭେ ଭ୍ରାତୃଗଣବିହୀନ ହୋଇ ସ୍ୱର୍ଗଗମନ ବିଷୟରେ ଇଚ୍ଛା କରୁନାହୁଁ । ୩ । ସେମାନେ ଆମ୍ଭ ସାଥିରେ ସ୍ୱର୍ଗକୁ ଚାଲନ୍ତୁ, ଆପଣ ଏହାର ବ୍ୟବସ୍ଥା କରିବା ହେଉନ୍ତୁ । ଏବଂ ସୁଖସମ୍ବୃଦ୍ଧା ସୁକୁମାରୀ ରାଜକୁମାରୀ ଆମ୍ଭମାନଙ୍କ ସହିତ ସ୍ୱର୍ଗକୁ ଗମନ କରିବା ବିଷୟରେ ଆପଣ ଅନୁମତି ଦିଅନ୍ତୁ । ୪ ।

ଇନ୍ଦ୍ର କହିଲେ—ହେ ଭରତଶ୍ରେଷ୍ଠ ! ତୁମ୍ଭେ ସେମାନଙ୍କ ନିମିତ୍ତ ଶୋକ କରନା । ସେମାନେ ତୁମ୍ଭ ପୂର୍ବରୁ ସ୍ୱର୍ଗକୁ ଗମନ କରିଅଛନ୍ତି । ତୁମ୍ଭେ ସ୍ୱର୍ଗକୁ ଯାଇ କୃଷ୍ଣାଙ୍କ ସହିତ ସମସ୍ତ ଭ୍ରାତୃଗଣଙ୍କୁ ଦେଖିବ । ହେ ଭରତଶ୍ରେଷ୍ଠ ! ସେମାନେ ମାନୁଷ ଶରୀରଂ ପରିତ୍ୟାଗ ପୂର୍ବକ ଗମନ କରିଅଛନ୍ତି । କିନ୍ତୁ ଆପଣ ସ୍ୱଶରୀରରେ ସ୍ୱର୍ଗକୁ ଗମନ କରନ୍ତୁ । ତଦ୍‌ବିଷୟରେ କିଞ୍ଚିନ୍ମାତ୍ର ସଂଶୟ ନାହିଁ । ୬ ।

ଯୁଧିଷ୍ଠିର କହିଲେ—ହେ ଭୂତଭବ୍ୟଗଣେଶ୍ୱର ! ଏହି କୁକୁର ଆମ୍ଭର ଚିର ଭକ୍ତ । ଅତଏବ ଏହାକୁ ସ୍ୱୀୟ ସମଭିବ୍ୟାହାରରେ ସ୍ୱର୍ଗକୁ ନେଇଯିବା

Digitized by srujanika@gmail.com

ନିମିତ୍ତ ଇଚ୍ଛା କରୁଅଛୁ । କାରଣ, ତାହା ନକଲେ ଆମ୍ଭର ବିବେଚନାରେ ଏହାଠାରେ ଆମ୍ଭର ନିର୍ଦ୍ଦୟ ବ୍ୟବହାର ପ୍ରକାଶିତ ହେବ । ୭ ।

ଇନ୍ଦ୍ର କହିଲେ—ହେ ରାଜନ୍ ! ସଂପ୍ରତି ତୁମ୍ଭେ ମର୍ତ୍ତ୍ୟଭାବବିହୀନ ହୋଇ ଆମ୍ଭ ସଦୃଶ ହୋଇଅଛ, ଏବଂ ସମସ୍ତ ଲକ୍ଷ୍ମୀ, ମହତୀ ସିଦ୍ଧି ଓ ସ୍ୱର୍ଗସୁଖ ଲାଭ କରିଅଛ । ଅତଏବ ଏହି କୁକୁରକୁ ପରିତ୍ୟାଗ କର । ତଦ୍ଦ୍ୱାରା ତୁମ୍ଭର କଦାପି ନିର୍ଦ୍ଦୟତା ପ୍ରକାଶିତ ହେବ ନାହିଁ । ୮ ।

ଯୁଧିଷ୍ଠିର କହିଲେ—ହେ ଆର୍ଯ୍ୟ ! ସହସ୍ରଲୋଚନ ହୋଇ ଏତାଦୃଶ ଅନାର୍ଯ୍ୟ କାର୍ଯ୍ୟ କରିବା ଉଚିତ ନୁହେଁ । ଆପଣ ଯେଉଁ ଐଶ୍ୱର୍ଯ୍ୟରେ ଏପରି କଥା କହୁଅଛନ୍ତି ତାହା ସହିତ ଆମ୍ଭର ସମ୍ମିଳନ ନ ହେଉ । ତଥାପି ଆମ୍ଭେ ଏତାଦୃଶ ଭକ୍ତଜନଙ୍କୁ ପରିତ୍ୟାଗ କରିପାରିବୁ ନାହିଁ । ୯ ।

ଇନ୍ଦ୍ର କହିଲେ—ମହାରାଜ ! ଯେଉଁମାନେ କୁକୁର ସହିତ ବାସ କରନ୍ତି ସେହି ଅଶୁଚିମାନଙ୍କୁ ସ୍ୱର୍ଗରେ ସ୍ଥାନ ମିଳେ ନାହିଁ । କାରଣ, କ୍ରୋଧବଶ ନାମକ ଦେବଗଣ ସେମାନଙ୍କର ଯଜ୍ଞ ଦାନାଦିର ଫଳ ନଷ୍ଟ କରନ୍ତି । ଅତଏବ ତୁମ୍ଭେ ବିଚାର କରି ଏହି କୁକୁରକୁ ପରିତ୍ୟାଗ କର । ତାହାହେଲେ ତୁମ୍ଭର ନିର୍ଦ୍ଦୟତା ହେବ ନାହିଁ । ୧୦ ।

ଯୁଧିଷ୍ଠିର କହିଲେ—ହେ ମୁନୀନ୍ଦ୍ର ! ମୁନିମାନେ ଭକ୍ତତ୍ୟାଗକୁ ବ୍ରହ୍ମହତ୍ୟା ସଦୃଶ ମହାପାତକ ବୋଲି କହନ୍ତି । ଅତଏବ ଆମ୍ଭେ ସ୍ୱୀୟ ସୁଖାଭିଳାଷରେ ଏହି ଭକ୍ତକୁ କଦାପି ପରିତ୍ୟାଗ କରିପାରିବୁ ନାହିଁ । ୧୧ । ବିଶେଷତଃ ଭୀତ, ଭକ୍ତ, ଅନନ୍ୟଗତି, କ୍ଷୀଣ, ପ୍ରାଣରକ୍ଷା ନିମିତ୍ତ ଅତିଶୟ କାତର ଏତାଦୃଶ ଶରଣାଗତ ବ୍ୟକ୍ତିକୁ ଆମ୍ଭେ ପ୍ରାଣପଣରେ ରକ୍ଷାକରୁଁ । ଏହା ଆମ୍ଭର ନିତ୍ୟବ୍ରତ ଅଟେ । ଅତଏବ ଆମ୍ଭେ ଏହାକୁ କଦାପି ପରିତ୍ୟାଗ କରିପାରିବୁ ନାହିଁ । ୧୨ ।

ଇନ୍ଦ୍ର କହିଲେ—ହେ ମହାରାଜ ! କୁକୁର ହୋମଯଜ୍ଞାଦି କ୍ରିୟା ଦର୍ଶନକଲେ କ୍ରୋଧବଶ ନାମକ ଦେବଗଣ ସମୁଦାୟ କାର୍ଯ୍ୟର ଫଳ ଧ୍ୱଂସ କରନ୍ତି । ଅତଏବ ତୁମ୍ଭେ ଏହି କୁକୁରକୁ ପରିତ୍ୟାଗ କର । କାରଣ, ଏହି କୁକୁରକୁ ପରିତ୍ୟାଗ କଲେ ସ୍ୱର୍ଗଲୋକକୁ ଗମନ କରି ପାରିବ । ୧୩ । ହେ ବୀର ! ଯଦି ତୁମ୍ଭେ ଭ୍ରାତୃଗଣ ଓ ଦୟିତା କୃଷ୍ଣାଙ୍କୁ ପରିତ୍ୟାଗ କରି ସ୍ୱୀୟ

Digitized by srujanika@gmail.com

କର୍ମଦ୍ୱାରା ସ୍ୱର୍ଗଲାଭର ଅଧିକାରୀ ହୋଇ ପାରିଅଛ, ତେବେ ଏହି କୁକୁରକୁ କି ନିମିତ୍ତ ପରିତ୍ୟାଗ କରି ପାରୁ ନାହିଁ ? ତୁମ୍ଭେ ସମସ୍ତ ତ୍ୟାଗ କରି ଅଦ୍ୟ ଯେ ମୋହାବିଷ୍ଟ ହେଉଛ, ଏହା ଅତିଶୟ ଆଶ୍ଚର୍ଯ୍ୟ ବିଷୟ ଅଟେ । ୧୪ ।

ଯୁଧିଷ୍ଠିର କହିଲେ—ହେ ସୁରେଶ୍ୱର ! ମୃତବ୍ୟକ୍ତିଗଣଙ୍କୁ ପୁନଶ୍ଚ ଜୀବିତ କରାଯାଇ ପାରେ ନାହିଁ, ଏବଂ ମୃତବ୍ୟକ୍ତିଗଣଙ୍କ ସହିତ ମର୍ତ୍ତ୍ୟ-ଗଣଙ୍କର ସନ୍ଧି, ବିଗ୍ରହ ଅବା ଅନ୍ୟ କୌଣସି ପ୍ରକାର ସମ୍ବନ୍ଧ ରହେ ନାହିଁ । ଆମ୍ଭେ ଏହି ଲୋକସ୍ଥିତିର ବଶବର୍ତ୍ତୀ ହୋଇ ସେମାନଙ୍କୁ ତ୍ୟାଗ କରିଅଛୁଁ । ସେମାନେ ଜୀବିତ ଥାଉଁ ଥାଉଁ ତ୍ୟାଗ କରିନାହୁଁ ।

ହେ ଶକ୍ର ! ଶରଣାଗତଙ୍କୁ ଭୟ ପ୍ରଦର୍ଶନ, ସ୍ତ୍ରୀବଧ, ବ୍ରହ୍ମସ୍ୱାପହରଣ ଏବଂ ମିତ୍ରଦ୍ରୋହ ଏହି ଯେଉଁ ଚାରିଗୋଟି ପାତକ ଅଛି, ଭକ୍ତତ୍ୟାଗକୁ ଆମ୍ଭେ ତାହା ସଦୃଶ ବୋଲି ଜ୍ଞାନ କରୁଁ । ୧୬ ।

ବୈଶମ୍ପାୟନ କହିଲେ—ଯୁଧିଷ୍ଠିର ଏହିପରି କହିବାରୁ ତାହାଙ୍କ ସମଭିବ୍ୟାହାରୀ ସେହି କୁକୁର ସାକ୍ଷାତ୍ ଭଗବାନ୍ ଧର୍ମ ସ୍ୱରୂପୀ ହୋଇ ନିରତିଶୟ ପ୍ରୀତ ହେଲେ ଏବଂ ସ୍ତବସମ୍ବଳିତ ମଧୁର ବାକ୍ୟରେ ନରେନ୍ଦ୍ର ଯୁଧିଷ୍ଠିରଙ୍କୁ କହିଲେ । ୧୭ ।

ଧର୍ମରାଜ କହିଲେ—ହେ ରାଜେନ୍ଦ୍ର ! ଯୁଧିଷ୍ଠିର ! ଭାରତ ! ତୁମ୍ଭେ ସ୍ୱୀୟ ମେଧା ଓ ସର୍ବଭୂତରେ ଏତାଦୃଶୀ ଦୟା ପ୍ରକାଶ କରି ପିତାଙ୍କ ସାଦୃଶ୍ୟ ଲାଭ କରିଅଛ । ହେ ପୁତ୍ର ! ପାମାୟୁ ନିମିତ୍ତ ପରାକ୍ରମ ପ୍ରକାଶ କରି ତୁମ୍ଭର ଭ୍ରାତୃଗଣ ନିହତ ହୋଇଥିଲେ । ଯେଉଁ ସ୍ଥାନରେ ତୁମ୍ଭେ ସହୋଦର ଭୀମ ଓ ଅର୍ଜ୍ଜୁନଙ୍କୁ ପରିତ୍ୟାଗ କରି ମାତୃଯୁଗଳଙ୍କର ସମାନତା ରକ୍ଷିବା ଅଭିଳାଷରେ ନକୁଳଙ୍କୁ ଜୀବିତ କରାଇବା ନିମିତ୍ତ ଇଚ୍ଛା କରିଥିଲ, ଆମ୍ଭେ ପୂର୍ବେ ସେହି ଦ୍ୱୈତବନରେ ତୁମ୍ଭଙ୍କୁ ଥରେ ପରୀକ୍ଷା କରିଥିଲୁଁ ।

ହେ ନରନାଥ ! ଜଣାଯାଏ, ସ୍ୱର୍ଗମଧ୍ୟରେ ତୁମ୍ଭ ସଦୃଶ କେହି ନାହାନ୍ତି । କାରଣ, ଏହି ସାରମେୟ ଭକ୍ତ ବୋଲି ତୁମ୍ଭେ ଏହାର ଅନୁରୋଧରେ ଦେବରଥକୁ ପରିତ୍ୟାଗ କରିବା ନିମିତ୍ତ ଉଦ୍ୟତ ହୋଇଅଛ ।

Digitized by srujanika@gmail.com

ହେ ଭରତଶ୍ରେଷ୍ଠ ! ଭାରତ ! ଏହି କାରଣରୁ ତୁମ୍ଭେ ସଶରୀରରେ ଅକ୍ଷୟ ସ୍ୱର୍ଗଲୋକ ଏବଂ ଅନୁତ୍ତମା ଦିବ୍ୟଗତି ଲାଭକଲ ।

ବୈଶମ୍ପାୟନ କହିଲେ—ତଦନନ୍ତର ଧର୍ମ, ଇନ୍ଦ୍ର, ମରୁଦ୍‌ଗଣ, ଅଶ୍ୱିନୀକୁମାରଯୁଗଳ ଏବଂ ଯେଉଁମାନଙ୍କ ବାକ୍ୟ, ବୁଦ୍ଧି ଓ କର୍ମସମୂହ ପବିତ୍ର, ସେହି ରଜୋବିହୀନ ପୁଣ୍ୟାତ୍ମା ଦେବ, ଦେବର୍ଷି ଓ କାମବିହାରୀ ସିଦ୍ଧଗଣ ପାଣ୍ଡୁନନ୍ଦନଙ୍କୁ ରଥମଧ୍ୟରେ ଆରୋହଣ କରାଇ ନିଜ ନିଜ ବିମାନରେ ଆରୂଢ଼ ହୋଇ ଗମନ କଲେ । ୨୪ ।

କୁରୁକୁଳଶ୍ରେଷ୍ଠ ରାଜା ଯୁଧିଷ୍ଠିର ସେହି ରଥରେ ଆରୂଢ଼ ହୋଇ ସ୍ୱୀୟ ତେଜଦ୍ୱାରା ପୃଥିବୀ ଓ ସ୍ୱର୍ଗକୁ ଆଚ୍ଛାଦନ କରି ଶୀଘ୍ର ଊର୍ଦ୍ଧ୍ୱଭାଗରେ ଉତ୍ଥିତ ହେଲେ । ସେତେବେଳେ ସୁରପୁରସ୍ଥିତ ସର୍ବଲୋକବିତ୍ ବକ୍ତୃପ୍ରବର ବୃହତ୍ତପା ନାରଦ ଉଚ୍ଚୈଃସ୍ୱରରେ ଏହି କଥା କହିଲେ । ୨୬ ।

ଯେଉଁ ସମସ୍ତ ରାଜର୍ଷି ସୁରପୁରକୁ ଆସିଅଛନ୍ତି, ସେମାନେ ସମସ୍ତେ ଉପସ୍ଥିତ ହୋଇଅଛନ୍ତି । ପରନ୍ତୁ ରାଜା ଯୁଧିଷ୍ଠିର ସେ ସମସ୍ତଙ୍କ କୀର୍ତ୍ତିକୁ ଆଚ୍ଛାଦନ ପୂର୍ବକ ଆଗମନ କରିଅଛନ୍ତି । ୨୭ । ସେ ସ୍ୱୀୟ ଯଶ, ତେଜ, ସଚ୍ଚରିତ୍ର ଓ ସମ୍ପତ୍ତିଦ୍ୱାରା ସମସ୍ତ ଲୋକ ଆବରଣ କରି ସଶରୀରରେ ସୁରପୁରରେ ପ୍ରବିଷ୍ଟ ହୋଇଅଛନ୍ତି, ଯୁଧିଷ୍ଠିରଙ୍କ ବିନା ଏତାଦୃଶ କୌଣସି ରାଜର୍ଷିଙ୍କ କଥା ଆମ୍ଭେ ଶ୍ରବଣ କରିନାହୁଁ । ୨୮ ।

ହେ ବିଭୋ ! ଆପଣ ଭୂମିଷ୍ଠ ହୋଇଥିବା ସମୟରେ ଦେବଗଣଙ୍କର ଯେଉଁ ସହସ୍ର ସହସ୍ର ତେଜଃପୂର୍ଣ୍ଣ ବେଶ୍ମସବୁ ଦେଖିଥିଲେ, ସମ୍ପ୍ରତି ଏହି ସେହିମାନଙ୍କୁ ଦର୍ଶନ କରିବା ହେଉନ୍ତୁ । ୨୯ ।

ଧର୍ମାତ୍ମା ରାଜା ଯୁଧିଷ୍ଠିର ଦେବଗଣ ଓ ସ୍ୱପକ୍ଷ ପାର୍ଥିବଗଣଙ୍କୁ ଆମନ୍ତ୍ରଣ କରି କହିଲେ—ଆମ୍ଭ ଭ୍ରାତୃଗଣ ଯେଉଁ ସ୍ଥାନକୁ ଗମନ କରିଅଛନ୍ତି, ତାହା ଶୁଭ ଅବା ଅଶୁଭ ହେଉ ପଛକେ ଆମ୍ଭେ ସେହି ସ୍ଥାନକୁ ଗମନ କରିବା ନିମିତ୍ତ ଅଭିଳାଷୀ ହେଉଅଛୁଁ । ଆମ୍ଭେ ଅନ୍ୟଲୋକକୁ କାମନା କରୁନାହୁଁ । ୩୧ ।

Digitized by srujanika@gmail.com

ଦେବରାଜ ପୁରନ୍ଦର ଦସ୍ମାଳୁହୃଦୟ ଧର୍ମରାଜ ଯୁଧିଷ୍ଠିରଙ୍କ ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ—ହେ ରାଜେନ୍ଦ୍ର ! ସମ୍ପ୍ରତି କି ନିମିତ୍ତ ମାନୁଷସୁଲଭ ସ୍ନେହଭାବ ବହନ କରୁଅଛ ? ସ୍ୱୀୟ ଶୁଭକର୍ମସମୂହଦ୍ୱାରା ଯେଉଁ ଲୋକ ଜୟ କରିଅଛ, ଏତେବେଳେ ତହିଁରେ ବାସ କର । ୩୩ ।

ହେ କୁରୁନନ୍ଦନ ! ଅନ୍ୟ କୌଣସି ପୁରୁଷ ଯାହା ପ୍ରାପ୍ତ ହୋଇନାହାନ୍ତି ଆପଣ ତାଦୃଶୀ ପରମସିଦ୍ଧି ପ୍ରାପ୍ତ ହୋଇଅଛନ୍ତି । ପରନ୍ତୁ ଭବଦୀୟ ଭ୍ରାତୃଗଣ କୌଣସି ସ୍ଥାନ ପ୍ରାପ୍ତ ହୋଇନାହାନ୍ତି । ୩୪ । ହେ ନରାଧିପ ! ଏତେବେଳେ ଆପଣଙ୍କୁ ମାନୁଷଭାବ ଯେ ପରିତ୍ୟାଗ କରୁନାହିଁ, ଏହାର କାରଣ କଣ ? ଏ ସ୍ୱର୍ଗ । ଏହି ତ୍ରିଦିବବନବାସୀ ଦେବର୍ଷି ଓ ସିଦ୍ଧଗଣଙ୍କୁ ଦର୍ଶନ କର । ୩୫ ।

ସର୍ବଭୂତେଶ୍ୱର ଦେବେନ୍ଦ୍ର ଏହି କଥା କହିବାରୁ ଧୀମାନ୍ ଯୁଧିଷ୍ଠିର ପୁନଶ୍ଚ ଏହି ଅର୍ଥସଙ୍ଗତ ବାକ୍ୟ କହିଲେ—ହେ ଦେବରାଜ ! ଦୈତ୍ୟନିସୂଦନ ! ଆମ୍ଭେ ଭ୍ରାତୃଗଣବିହୀନ ହୋଇ ଏ ସ୍ଥାନରେ ରହିବାକୁ ଇଚ୍ଛା କରୁନାହୁଁ । ଅତଏବ ଆମ୍ଭ ଭ୍ରାତୃଗଣ ଯେଉଁ ସ୍ଥାନକୁ ଯାଇଅଛନ୍ତି, ଆମ୍ଭେ ସେହି ସ୍ଥାନକୁ ଗମନ କରିବୁଁ । ହା ! ଆମ୍ଭର ସେହି ବୁଦ୍ଧିସତ୍ତ୍ୱା ଓ ଗୁଣାନ୍ୱିତା ଶ୍ୟାମାଙ୍ଗୀ ବରବର୍ଣ୍ଣିନୀ ଦ୍ରୁପଦନନ୍ଦିନୀ ଯେଉଁ ସ୍ଥାନକୁ ଗମନ କରିଅଛନ୍ତି, ଆମ୍ଭେ ସେହି ସ୍ଥାନକୁ ଗମନ କରିବୁଁ । ୩୮ ।



Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

ନାରାୟଣ, ନରୋତ୍ତମ, ନର ଏବଂ ସରସ୍ୱତୀ ଦେବୀଙ୍କୁ ନମସ୍କାର କରି ଜୟ ନାମକ ଗ୍ରନ୍ଥ କୀର୍ତ୍ତନ କରିବ ।

ଜନମେଜୟ କହିଲେ—ହେ ବ୍ରହ୍ମର୍ଷେ ! ଫଳର ଉତ୍କର୍ଷ ବଶତଃ ତ୍ରିଭୁବନ ଯାହାର ଅନ୍ତର୍ଭୁକ୍ତ ଅଟେ, ସେହି ତ୍ରିପିଷ୍ଟପ ସ୍ୱର୍ଗଲୋକ ଲାଭକରି ଆମ୍ଭର ପୂର୍ବପିତାମହ ପାଣ୍ଡବଗଣ ଏବଂ ଧାର୍ତ୍ତରାଷ୍ଟ୍ରଗଣ କେଉଁ ସ୍ଥାନ ପ୍ରାପ୍ତ ହୋଇଥିଲେ, ଆମ୍ଭେ ତାହା ଶୁଣିବା ନିମିତ୍ତ ଇଚ୍ଛା କରୁଅଛୁଁ । ଆଶ୍ଚର୍ଯ୍ୟ କର୍ମଶୀଳ ମହର୍ଷି ବ୍ୟାସଦେବଙ୍କଦ୍ୱାରା ଅନୁଜ୍ଞାତ ହୋଇଥିବାରୁ ଆପଣ ସର୍ବଜ୍ଞ ଅଟନ୍ତି, ଏହା ଆମ୍ଭର ଅଭିମତ ଅଟେ । ୨ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ଆପଣଙ୍କ ପୂର୍ବପିତାମହ ଯୁଧିଷ୍ଠିର ପ୍ରଭୃତି ତ୍ରିପିଷ୍ଟପ ସ୍ୱର୍ଗ ପ୍ରାପ୍ତହୋଇ ଯାହା କରିଥିଲେ, ତାହା ଶ୍ରବଣ କରିବା ହେଉନ୍ତୁ । ୩ । ଧର୍ମରାଜ ଯୁଧିଷ୍ଠିର ତ୍ରିପିଷ୍ଟପକୁ ଗମନ କରି ଶ୍ରୀସମ୍ପନ୍ନ ଦୁର୍ଯ୍ୟୋଧନଙ୍କୁ ଦୀପ୍ୟମାନ ଦିବାକରଙ୍କ ସଦୃଶ ଆସନରେ ସମାସୀନ ହୋଇଥିବାର ଦର୍ଶନ କଲେ । ସେ ତେତେବେଳେ ବୀରଶ୍ରୀ ଦ୍ୱାରା ସମାବୃତ ଏବଂ ଦୀପ୍ତିମାନ୍ ଦେବଗଣ ଓ ପୁଣ୍ୟକର୍ମଶୀଳ ପୁରୁଷଗଣଙ୍କ ସହିତ ଉପବିଷ୍ଟ ହୋଇଥିଲେ ।

ଅନନ୍ତର ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ଦର୍ଶନ କରି ଅମର୍ଷ ପରବଶ ଏବଂ ତଦୀୟ ଶ୍ରୀଦର୍ଶନରେ ସହସା ସନ୍ନିବୃତ୍ତ ହେଲେ । ଅନନ୍ତର ଉଚ୍ଚୈଃସ୍ୱରରେ ସେମାନଙ୍କୁ କହିଲେ—ଆମ୍ଭେ ଅଦୀର୍ଘଦର୍ଶୀ ଲୁବ୍ଧ ଦୁର୍ଯ୍ୟୋଧନଙ୍କ ସହିତ ସ୍ୱର୍ଗଲୋକରେ ବାସ କରିବାକୁ ଇଚ୍ଛା କରୁନାହୁଁ । ୭ । ଆମ୍ଭେମାନେ ଯାହାଙ୍କ ନିମିତ୍ତ ପ୍ରଥମତଃ ମହାରଣ୍ୟରେ ମହାକଷ୍ଟ ଭୋଗକରି ପରିଶେଷରେ ପୃଥିବୀସ୍ଥ ସମସ୍ତ ସୁହୃତ୍ ଓ ବନ୍ଧୁବର୍ଗଙ୍କୁ ବଳପୂର୍ବକ ସଂଗ୍ରାମରେ ସଂହାର କରିଅଛୁଁ ଏବଂ ଧର୍ମଚାରିଣୀ ପାଞ୍ଚାଳ ରାଜନନ୍ଦିନୀ ଅନବଦ୍ୟାଙ୍ଗୀ ଦ୍ରୌପଦୀ ଆମ୍ଭମାନଙ୍କର ପତ୍ନୀ ହୋଇ ସଭା ମଧ୍ୟରେ ଗୁରୁଜନଗଣଙ୍କ ସନ୍ନିଧିରେ ଆକୃଷ୍ଟ ହୋଇଥିଲେ, ହେ ଦେବଗଣ ! ସେହି ଦୁର୍ଯ୍ୟୋଧନଙ୍କ ପ୍ରତି ଦୃଷ୍ଟିନିକ୍ଷେପ କରିବାକୁ

Digitized by srujanika@gmail.com

ଆମ୍ଭର ଇଚ୍ଛା ହେଉନାହିଁ । ଆମ୍ଭର ସେହି ଭ୍ରାତୃଗଣ ଯେଉଁ ସ୍ଥାନରେ ଅଛନ୍ତି, ଆମ୍ଭେ ସେହି ସ୍ଥାନକୁ ଯିବା ନିମିତ୍ତ ଇଚ୍ଛା କରୁଅଛୁଁ । ୧୦ ।

ତେତେବେଳେ ନାରଦ ହାସ୍ୟ କଲାପରି ହସିକରି କହିଲେ—ହେ ରାଜେନ୍ଦ୍ର ! ଆପଣ ଏପ୍ରକାର କହନ୍ତୁ ନାହିଁ । ସ୍ୱର୍ଗବାସରେ ବିରୁଦ୍ଧ ଭାବ ବିନଷ୍ଟ ହୁଏ । ଅତଏବ, ହେ ମହାବାହୋ ! ଯୁଧିଷ୍ଠିର ! ଆପଣ ଦୁର୍ଯ୍ୟୋଧନ ନୃପତିଙ୍କ ପ୍ରତି ଏପ୍ରକାର କଥା କଦାପି କହିବେ ନାହିଁ । ଆମ୍ଭର ଏହି କଥା ଶ୍ରବଣ କରନ୍ତୁ । ଏହି ଯେଉଁ ସମସ୍ତ ସାଧୁ ନୃପବରଗଣ ସ୍ୱର୍ଗବାସୀ ହୋଇ ଅଛନ୍ତି, ଏମାନେ ତ୍ରିଦଶଗଣଙ୍କ ସହିତ ରାଜା ଦୁର୍ଯ୍ୟୋଧନଙ୍କୁ ପୂଜା କରୁଅଛନ୍ତି । ୧୩ । ଏ ସମରରେ ଆତ୍ମ ତନୁ ଆହୁତି ପ୍ରଦାନ କରି ବୀରଲୋକକୁ ଆଗମନ କରିଅଛନ୍ତି । ଆପଣମାନେ ଦେବସଦୃଶ । ଏ ଆପଣମାନଙ୍କୁ ସର୍ବଦା ହିଂସା କରୁଥିଲେ । ଏହି ଭୂପାଳ ମହାଭୟରେ ଭୀତ ହେଉନଥିଲେ । ସେହି କ୍ଷାତ୍ର ଧର୍ମାନୁସାରେ ସେ ଏହି ସ୍ଥାନ ପ୍ରାପ୍ତ ହୋଇ ଅଛନ୍ତି । ୧୫ ।

ହେ ପୁତ୍ର ! ଦ୍ୟୁତକ୍ରୀଡ଼ା ସମୟରେ ଯାହା ହୋଇଥିଲା ତାହା ମନେ କରିବାର ଉଚିତ ନୁହେ ଏବଂ ଦ୍ରୌପଦୀଙ୍କର ଯେଉଁ ସମସ୍ତ କ୍ଲେଶ ହୋଇଥିଲା ତାହା ଚିନ୍ତା କରିବାର ଅକର୍ତ୍ତବ୍ୟ । ସଂଗ୍ରାମରେ ଅନ୍ୟ ସ୍ଥାନରେ ତୁମ୍ଭମାନଙ୍କର ଜ୍ଞାତିଗଣକୃତ ଅନ୍ୟାନ୍ୟ ଯେଉଁ ସମସ୍ତ କ୍ଲେଶ ହୋଇଥିଲା ତାହା ଆଉ ସ୍ମରଣ କରିବାର ଉଚିତ ନୁହେ । ସମ୍ପ୍ରତି ଯଥାନ୍ୟାୟରେ ରାଜା ଦୁର୍ଯ୍ୟୋଧନଙ୍କ ସହିତ ସଙ୍ଗତ ହେଉନ୍ତୁ । ହେ ମନୁଜାଧିପ ! ଏ ସ୍ୱର୍ଗଲୋକ । ଏହି ସ୍ଥାନରେ କୌଣସି ଶତ୍ରୁତା ହୁଏ ନାହିଁ । ୧୮ ।

ନାରଦ କୁରୁରାଜ ଯୁଧିଷ୍ଠିରଙ୍କୁ ଏହି କଥା କହିବାରୁ ସେହି ମେଧାବୀ ନୃପତି ଭ୍ରାତୃଗଣଙ୍କ କଥା ପ୍ରଶ୍ନକଲେ ଏବଂ ଏହି ବାକ୍ୟ କହିଲେ—ଯାହାଙ୍କ ନିମିତ୍ତ ଅଶ୍ୱ-ଗଜ-ମନୁଷ୍ୟ ସହିତ ଭୂମଣ୍ଡଳ ବିନଷ୍ଟ ହୋଇଅଛି ଏବଂ ଆମ୍ଭେମାନେ ବୈର ପ୍ରତି ଚିକୀର୍ଷୁ ହୋଇ କ୍ରୋଧଦାବାଗ୍ନି ଦଗ୍ଧ ହୋଇଥିଲୁଁ, ସେହି ଅଧର୍ମଜ୍ଞ ପାପାଚାର ପୃଥ୍ୱୀ ଓ ସୁହୃଦ୍‌ଗଣଙ୍କ ଦ୍ରୋହକାରୀ ଦୁର୍ଯ୍ୟୋଧନଙ୍କର ଯଦି ଏହି ସମସ୍ତ ସନାତନ ଲୋକ ଲାଭ ହେଲା, ତେବେ ଆମ୍ଭର ଯେଉଁ ଭ୍ରାତୃମାନେ ବୀର, ମହାତ୍ମା, ମହାବ୍ରତ, ସତ୍ୟପ୍ରତିଜ୍ଞ, ବିଶ୍ୱବିଖ୍ୟାତ ଶୂର ଓ ସତ୍ୟବାଦୀ,

Digitized by srujanika@gmail.com

ସେମାନଙ୍କର ସମ୍ପ୍ରତି କାଦୃଶ ଲୋକସମୂହ ଲାଭ ହୋଇଅଛି ? ଆମ୍ଭେ ସେହି ସମସ୍ତ ଲୋକ ଅବଲୋକନ କରିବାକୁ ଇଚ୍ଛା କରୁଅଛୁଁ ।

ସତ୍ୟସଙ୍ଗର ସୁମହାତ୍ମା କୁନ୍ତୀନନ୍ଦନ କର୍ଣ୍ଣ, ଧୃଷ୍ଟଦ୍ୟୁମ୍ନ, ସାତ୍ୟକି, ଧୃଷ୍ଟଦ୍ୟୁମ୍ନଙ୍କ ଆତ୍ମଜଗଣ ଏବଂ ଯେଉଁ ସମସ୍ତ ପାର୍ଥିବଗଣ କ୍ଷତ୍ରଧର୍ମାନୁସାରେ ଶସ୍ତ୍ରବୃନ୍ଦଦ୍ୱାରା ନିଧନଲାଭ କରିଅଛନ୍ତି, ହେ ବ୍ରହ୍ମନ୍ ! ନାରଦ ! ସେହି ସମସ୍ତ ନୃପତିଗଣ କେଉଁଠାରେ ଅଛନ୍ତି ? ଆମ୍ଭେ ସେମାନଙ୍କୁ ଦେଖି-ନାହୁଁ । ହେ ନାରଦ ! ବିରାଟ, ଦ୍ରୁପଦ ଓ ଧୃଷ୍ଟକେତୁ ପ୍ରଭୃତି ଏବଂ ପାଞ୍ଚାଲନନ୍ଦନ ଶିଖଣ୍ଡୀ, ଦ୍ରୌପଦୀଙ୍କ ପୁତ୍ରଗଣ ଓ ଦୁର୍ଦ୍ଧର୍ଷ ଅଭିମନ୍ୟୁଙ୍କୁ ଅବଲୋକନ କରିବା ନିମିତ୍ତ ଆମ୍ଭେ ଅଭିଳାଷ କରୁଅଛୁଁ । ୨୭ ।

---

# ଦ୍ୱିତୀୟ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ ବିବୁଧଗଣ ! ଆମ୍ଭେ ଏହି ସ୍ଥାନରେ ତ ଅମିତତେଜସ୍ୱୀ କର୍ଣ୍ଣ, ମହାନୁଭବ ଭ୍ରାତୃଯୁଗଳ, ଯୁଧାମନ୍ୟୁ ଓ ଉତ୍ତମୌଜାଙ୍କୁ ଅବଲୋକନ କରୁନାହୁଁ ! ଯେଉଁ ସମସ୍ତ ମହାରଥ, ରାଜା ଓ ରାଜପୁତ୍ରଗଣ ଆମ୍ଭନିମିତ୍ତ ସମରାନଳରେ ଶରୀରକୁ ଆହୁତି ପ୍ରଦାନ କରିଅଛନ୍ତି ଏବଂ ଆମ୍ଭନିମିତ୍ତ ହତ ହୋଇଅଛନ୍ତି, ସେହି ଶାର୍ଦ୍ଦୂଳସମ ବିକ୍ରମଶାଳୀ ସମସ୍ତ ମହାରଥ କେଉଁଠାରେ ଅଛନ୍ତି ? ସେହି ପୁରୁଷୋତ୍ତମଗଣ ଏହି ସ୍ୱର୍ଗଲୋକକୁ କି ଜୟ କରି ନାହାନ୍ତି ? ୩ । ହେ ଦେବଗଣ ! ଯଦି ସେହି ସମସ୍ତ ମହାରଥଗଣ ଏହି ସମସ୍ତ ଲୋକ ଜୟ କରିଅଛନ୍ତି, ତେବେ ଆମ୍ଭେ ପ୍ରସ୍ତାବିତ ମହାତ୍ମାଗଣଙ୍କ ସହିତ ଏହି ସ୍ଥାନରେ ଅବସ୍ଥିତ କରିବୁଁ । ୪ ।

ଆମ୍ଭେ ପଚାରୁଅଛୁଁ, ସେହି ସମସ୍ତ ନୃପତିଗଣ କି ଏହି ଅକ୍ଷୟ ଶୁଭ-ଲୋକରେ ନିବାସ କରି ନାହାନ୍ତି ? ଯଦି ତାହା ହୋଇଥାଏ, ତେବେ ଆମ୍ଭେ ସେହି ଭ୍ରାତା ଓ ଜ୍ଞାତିଗଣଙ୍କ ବ୍ୟତିରେକେ ଏହି ସ୍ଥାନରେ ବସତି କରିବୁଁ ନାହିଁ । ୫ ।

'ତୁମ୍ଭେ କର୍ଣ୍ଣଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ପ୍ରଦାନ କର', ଜନନୀଙ୍କର ଏହି କଥା ଶ୍ରବଣ କରି ଅମିତାତ୍ମା ସୂର୍ଯ୍ୟନନ୍ଦନଙ୍କୁ ଜଳାଞ୍ଜଳି ପ୍ରଦାନ କଲୁଁ ।

Digitized by srujanika@gmail.com

ହେ ସୁରଗଣ ! ସମ୍ପ୍ରତି ଆମ୍ଭେ ବାରମ୍ବାର ଏହି ପଶ୍ଚାତାପ କରୁଅଛୁଁ ଯେ, ଆମ୍ଭେ ସେହି ପରବଳପୀଡ଼ନକାରୀ କର୍ଣ୍ଣଙ୍କର ପଦଯୁଗଳକୁ ଜନନୀଙ୍କ ଚରଣଦ୍ୱୟ ସଦୃଶ ଦର୍ଶନ କରି ସୁଦ୍ଧା ତାହାଙ୍କର ଅନୁଗତ ହେଲୁଁ ନାହିଁ । ଆମ୍ଭେମାନେ କର୍ଣ୍ଣଙ୍କ ସହିତ ମିଳିତ ଥିଲେ ଦେବରାଜ ସୁଦ୍ଧା ଆମ୍ଭମାନଙ୍କୁ ସମରରେ ଜୟ କରିବାକୁ ସମର୍ଥ ନୁହନ୍ତି । ଆମ୍ଭର ମତାନୁସାରେ ସବ୍ୟସାଚି-କର୍ତ୍ତୃକ ସେ ଘାତିତ ହୋଇଅଛନ୍ତି । ସେହି ସୂର୍ଯ୍ୟନନ୍ଦନ ଯେଉଁ ସ୍ଥାନରେ ଥାଆନ୍ତୁ ପଛକେ ଆମ୍ଭେ ତାହାଙ୍କୁ ଦେଖିବା ନିମିତ୍ତ ଇଚ୍ଛା କରୁଅଛୁଁ । ୯ ।

ଆମ୍ଭର ପ୍ରାଣାପେକ୍ଷା ପ୍ରିୟତମ ଭୀମବିକ୍ରମ ଭୀମସେନ, ଇନ୍ଦ୍ରଙ୍କ ସଦୃଶ ଅର୍ଜ୍ଜୁନ, ଯମୋପମ ଯମଜ ନକୁଳ ଓ ସହଦେବ ଏବଂ ସେହି ଧର୍ମଚାରିଣୀ ଦ୍ରୁପଦନନ୍ଦିନୀଙ୍କୁ ଅବଲୋକନ କରିବା ନିମିତ୍ତ ଅଭିଳାଷ କରୁଅଛୁଁ । ଆମ୍ଭେ ଏହି ସ୍ଥାନରେ ଅବସ୍ଥାନ କରିବାକୁ ଅଭିଳାଷୀ ହେଉନାହୁଁ । ହେ ସୁରସତ୍ତମଗଣ ! ଆପଣମାନଙ୍କୁ ସତ୍ୟ କହୁଅଛୁଁ, ଭ୍ରାତୃବିହୀନ ହୋଇ ରହିଲେ ଆମ୍ଭର ସ୍ୱର୍ଗରେ କେଉଁ ପ୍ରୟୋଜନ ! ସେମାନେ ଯେଉଁ ସ୍ଥାନରେ ଅଛନ୍ତି, ସେହି ସ୍ଥାନ ଆମ୍ଭର ସ୍ୱର୍ଗ, ଆମ୍ଭ ମତରେ ଏହି ସ୍ଥାନ ସ୍ୱର୍ଗ ନୁହେ । ୧୨ ।

ଦେବଗଣ କହିଲେ—ହେ ବତ୍ସ ! ତୁମ୍ଭର ଯଦି ସେହି ସ୍ଥାନରେ ଶ୍ରଦ୍ଧା ଅଛି, ତେବେ ସେହି ସ୍ଥାନକୁ ଗମନ କର, ବିଳମ୍ବରେ ପ୍ରୟୋଜନ ନାହିଁ । ଦେବରାଜଙ୍କ ଶାସନବଶତଃ ଆମ୍ଭେମାନେ ତୁମ୍ଭ ପ୍ରିୟ କାର୍ଯ୍ୟର ଅନୁଷ୍ଠାନ କରିବୁଁ । ୧୩ ।

ବୈଶମ୍ପାୟନ କହିଲେ—ହେ ଶତ୍ରୁତାପନ ! ଦେବଗଣ ତାହାଙ୍କୁ ଏହି କଥା କହି ଦେବଦୂତଙ୍କ ପ୍ରତି "ଯୁଧିଷ୍ଠିରଙ୍କୁ ତଦୀୟ ସୁହୃଦ୍‌ଗଣଙ୍କ ସହିତ ସାକ୍ଷାତ୍କାର କରାଅ" ଏହି ପ୍ରକାର ଉପଦେଶ କଲେ । ୧୪ ।

ହେ ନୃପବର ! ତଦନନ୍ତର କୁନ୍ତୀସୁତ ରାଜା ଯୁଧିଷ୍ଠିର ଓ ଦେବଦୂତ ଏହି ଦୁହେଁ ଏକତ୍ର ହୋଇ ଯେଉଁ ସ୍ଥାନରେ ସେହି ପୁରୁଷପୁଙ୍ଗବଗଣ ଅବସ୍ଥାନ କରିଥିଲେ ସେହି ସ୍ଥାନକୁ ଗମନ କଲେ । ୧୫ । ଦେବଦୂତ ଅଗ୍ରଭାଗରେ ଏବଂ ରାଜା ପଶ୍ଚାତ୍ ଭାଗରେ ପାପକର୍ମୀ ପୁରୁଷଗଣଙ୍କଦ୍ୱାରା ସେବିତ ଅଶୁଭ ପଥରେ ଅବଲମ୍ବିରେ ଗମନ କଲେ ।

Digitized by srujanika@gmail.com

ସେହି ପଥ ଅନ୍ଧକାରବୃତ, ଘୋରତର କ୍ଳେଶ, ଶୈବଳ, ଶାଦ୍ୱଳ-ସମନ୍ୱିତ, ପାପକାରୀଗଣଙ୍କ ଗନ୍ଧଯୁକ୍ତ, ମାଂସ-ଶୋଣିତ-କର୍ଦ୍ଦମବିଶିଷ୍ଟ, ଡାଂଶ ଓ ଉତ୍ପାଣ୍ଡ ଉଲୂକ, ମକ୍ଷିକା ଓ ମଶକାନ୍ୱିତ, ସର୍ବସ୍ୱ ଇତସ୍ତତଃ ମୃତଶରୀରଦ୍ୱାରା ପରିବାରିତ, ଅସ୍ଥି ଓ କେଶସମୂହରେ ସମାକୀର୍ଣ୍ଣ, କ୍ରିମି ଓ କୀଟଗଣରେ ସମାକୁଳ, ପ୍ରଜ୍ୱଳିତ ଜ୍ୱଳନଦ୍ୱାରା ସମନ୍ତାତ୍ ପରିବେଷ୍ଟିତ । ଅୟୋମୁଖ କାକ ପ୍ରଭୃତି ଓ ସୂଚୀମୁଖ ଗୃଧ୍ରଗଣ ସେଠାରେ ଧାବିତ ହେଉଥିଲେ । ସେହି ପଥ ବିନ୍ଧ୍ୟଶୈଳୋପମ ପ୍ରେତଗଣକର୍ତ୍ତୃକ ପରିବୃତ ହୋଇଥିଲା । ମେଦ ଓ ରୁଧିରଯୁକ୍ତ ଛିନ୍ନବାହୁ, ଛିନ୍ନୋରୁ, ଛିନ୍ନପାଣି, ଛିନ୍ନୋଦର ଶବଗଣ ସେଠାରେ ଇତସ୍ତତଃ ପତିତ ହୋଇ ରହିଥିଲେ ।

ଧର୍ମାତ୍ମା ନୃପତି ଯୁଧିଷ୍ଠିର ସେହି ମୃତଶରୀର-ଦୁର୍ଗନ୍ଧଯୁକ୍ତ ଲୋମହର୍ଷଣ ପଥରେ ବହୁ ଚିନ୍ତାନ୍ୱିତ ହୋଇ ଗମନ କରୁଥିଲେ । ୨୨ । ପଥମଧ୍ୟରେ ଉଷ୍ଣୋଦକପରିପୂର୍ଣ୍ଣ ସୁଦୁର୍ଗମ ନଦୀ ଓ ନିଶିତ କ୍ଷୁରସଦୃଶ ଅସିପତ୍ର ବନ ଅବଲୋକନ କଲେ । ୨୩ । ଉତ୍ତପ୍ତ ସୂକ୍ଷ୍ମ ବାଲୁକା, ଆୟସୀ ଶିଳା ଏବଂ ତୈଳପୂର୍ଣ୍ଣ ଲୌହକୁମ୍ଭସମୂହ ଚତୁର୍ଦ୍ଦିଗରେ ସଜ୍ଜିତ ହୋଇ ରହିଥିଲା । ୨୪ ।

କୁନ୍ତୀନନ୍ଦନ ସେତେବେଳେ ତୀକ୍ଷ୍ଣ କଣ୍ଟକଯୁକ୍ତ ଦୁଷ୍ପର୍ଶ କୂଟ ଶାଲ୍ମଳୀ ତରୁ ଏବଂ ପାପକର୍ମୀମାନଙ୍କର ଯାତନାସମୂହ ଦର୍ଶନ କଲେ । ସେ ସେହି ଦୁର୍ଗମ ସ୍ଥାନ ଅବଲୋକନ କରି ଦେବଦୂତଙ୍କୁ କହିଲେ, ହେ ଦେବଦୂତ ! ଆମ୍ଭେମାନେ ଈଦୃଶ କେତେ ପଥ ଗମନ କରିବା ? ଆମ୍ଭର ସେହି ଭ୍ରାତୃଗଣ କେଉଁଠାରେ ଅଛନ୍ତି ? ତୁମ୍ଭେ ଆମ୍ଭ ନିକଟରେ ତାହା ପ୍ରକାଶ କର । ଦେବଗଣଙ୍କର ଏହା କେଉଁ ସ୍ଥାନ ଅଟେ, ଏହା ମଧ୍ୟ ଜାଣିବାକୁ ଇଚ୍ଛା କରୁଅଛୁଁ । ୨୫ ।

ଦେବଦୂତ ଧର୍ମରାଜଙ୍କର ଏହି କଥା ଶ୍ରବଣ କରି ଗମନରୁ ନିବୃତ୍ତ ହେଲେ ଏବଂ ତାହାଙ୍କୁ କହିଲେ, ତୁମ୍ଭର ଏହି ପର୍ଯ୍ୟନ୍ତ ଗମନ କର୍ତ୍ତବ୍ୟ । ଅତଃପର ନିବୃତ୍ତ ହେବାର ଉଚିତ । ଦେବଗଣ ଆମ୍ଭଙ୍କୁ ଏହା କହିଥିଲେ । ହେ ରାଜେନ୍ଦ୍ର ! ତୁମ୍ଭେ ଯଦି ଶ୍ରାନ୍ତ ହୋଇଅଛ ତେବେ ପ୍ରତ୍ୟାଗମନ କରିପାରିବ । ୨୯ ।

Digitized by srujanika@gmail.com

ହେ ଭାରତ ! ଯୁଧିଷ୍ଠିର ନିର୍ବିଣ୍ଣ ଏବଂ ସେହି ଗନ୍ଧରେ ମୂର୍ଚ୍ଛିତ ହୋଇ ନିବୃତ୍ତ ହେବାକୁ ମନ ସ୍ଥିର କଲେ ଓ ପ୍ରତ୍ୟାବୃତ୍ତ ହେଲେ । ୩୦ ।

ସେହି ଧର୍ମାତ୍ମା ସନ୍ନିବୃତ୍ତ ହୋଇ ସେହି ସ୍ଥାନର ଚତୁର୍ଦ୍ଦିଗରେ ଦୁଃଖ-ଶୋକ-ସମାକୁଳ ଚିତ୍କାରକାରୀ ନରଗଣଙ୍କର ଦୀନ ବାକ୍ୟସମୂହ ଶ୍ରବଣ କଲେ—୩୧ । "ହେ ଧର୍ମନନ୍ଦନ ! ପୁଣ୍ୟାଭିଜନ ! ରାଜର୍ଷି ପାଣ୍ଡବ ! ଆପଣ ଆମ୍ଭମାନଙ୍କ ପ୍ରତି ଅନୁଗ୍ରହ ନିମିତ୍ତ ମୁହୂର୍ତ୍ତକ କାଳ ଅବସ୍ଥାନ କରନ୍ତୁ । ୩୨ । ହେ ତାତ ! ଆପଣ ଆଗମନ କରିବାରୁ ପବିତ୍ର ସମୀରଣ ପ୍ରବାହିତ ହେଉଅଛି, ଏବଂ ଆପଣଙ୍କ ଗନ୍ଧର ଅନୁଗତ ହେଉଅଛି । ସେହି କାରଣରୁ ଆମ୍ଭମାନଙ୍କର ସୁଖ ଜନ୍ମୁଅଛି । ୩୩ । ହେ ପୁରୁଷପ୍ରବର ରାଜସତ୍ତମ ପାର୍ଥ ! ଆମ୍ଭେମାନେ ଦୀର୍ଘକାଳ ଉତ୍ତାରେ ଆପଣଙ୍କୁ ଦର୍ଶନ କରି ସୁଖୀ ହେଉଅଛୁଁ । ଅତଏବ ହେ ମହାବାହୁ ଭାରତ ! ଆପଣ ମୁହୂର୍ତ୍ତକ କାଳ ଅବସ୍ଥାନ କରନ୍ତୁ । ହେ କୌରବ୍ୟ ! ଆପଣ ଦଣ୍ଡାୟମାନ ଥିଲେ ଯାତନାସମୂହ ଆମ୍ଭମାନଙ୍କୁ ପୀଡ଼ା ଦେଇ ପାରିବେ ନାହିଁ" । ୩୫ ।

ହେ ନୃପ ! ସେ ସେହି ସ୍ଥାନରେ ଅବସ୍ଥାନ କରି ବିଳାପକାରୀ ନରଗଣଙ୍କର ଏବଂବିଧ ବହୁବିଧ କୃପଣ ବାକ୍ୟ ଶ୍ରବଣ କଲେ । ୩୬ । ଦୟାଳୁ ଯୁଧିଷ୍ଠିର ସେହି ଦୀନଭାଷିଗଣଙ୍କର ବଚନ ଶ୍ରବଣ କରି 'ଆଃ କି କଷ୍ଟ' ଏହି କଥା କହି ଅବସ୍ଥିତ ହେଲେ । ପାଣ୍ଡୁନନ୍ଦନ ଅଗ୍ରଭାଗରେ ଗ୍ଳାନଯୁକ୍ତ ଦୁଃଖିତଗଣଙ୍କର ସେହି ସମସ୍ତ ଶ୍ରୁତପୂର୍ବ ବାକ୍ୟସମୂହ ବାରମ୍ବାର ଶ୍ରବଣ କରି ତାହା କେଉଁମାନଙ୍କର ବାକ୍ୟ ତାହା ବୁଝିପାରିଲେ ନାହିଁ । ୩୮ ।

ଧର୍ମପୁତ୍ର ଯୁଧିଷ୍ଠିର ସେହି ବାକ୍ୟସମୂହ ବୁଝି ନ ପାରି କହିଲେ, ଆପଣମାନେ କିଏ ? ଏବଂ କେଉଁ କାରଣରୁ ଏହି ସ୍ଥାନରେ ଅବସ୍ଥାନ କରିଅଛନ୍ତି ? ୩୯ । ସେମାନେ ଏହି ବାକ୍ୟ ଶ୍ରବଣ କରି ଚତୁର୍ଦ୍ଦିଗରେ କହିଲେ—ହେ ପ୍ରଭୋ ! ଆମ୍ଭେ କର୍ଣ୍ଣ, ଆମ୍ଭେ ଭୀମସେନ, ଆମ୍ଭେ ଅର୍ଜ୍ଜୁନ, ଆମ୍ଭେ ନକୁଳ, ଆମ୍ଭେ ସହଦେବ, ଆମ୍ଭେ ଧୃଷ୍ଟଦ୍ୟୁମ୍ନ, ଆମ୍ଭେ ଦ୍ରୌପଦୀ ଏବଂ ଆମ୍ଭେମାନେ ଦ୍ରୌପଦେୟଗଣ । ସେମାନେ ଏହିରୂପେ ଚିତ୍କାର କଲେ । ୪୧ ।

Digitized by srujanika@gmail.com

ହେ ରାଜନ୍ ! ରାଜା ଯୁଧିଷ୍ଠିର ସେତେବେଳେ ତଦ୍ଦେଶ ସଦୃଶ ସେହି ସମସ୍ତ କଥା ଶ୍ରବଣ କରି ବିବେଚନା କଲେ, ହା, ଦୈବ କି ଏହା କରିଅଛନ୍ତି ! ମହାତ୍ମା କର୍ଣ୍ଣ, ଦ୍ରୌପଦୀଙ୍କ ପୁତ୍ରଗଣ, ସୁମଧ୍ୟମା ପାଞ୍ଚାଳୀ ଏହିମାନେ କେଉଁ ପାପକର୍ମ କରିଥିଲେ ? ସେମାନେ ଏହି ପାପଗନ୍ଧପରିପୂର୍ଣ୍ଣ ସୁଦାରୁଣ ଦେଶରେ ଅବସ୍ଥାନ କରିଅଛନ୍ତି ! ଏହି ସମସ୍ତ ପୁଣ୍ୟ-କର୍ମାମାନଙ୍କର ଯେ କେଉଁ ଦୁଷ୍କୃତ ଥିଲା ତାହା ତ ଆମ୍ଭେ ଜାଣିନାହୁଁ ! ୪୪ ।

ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନ କେଉଁ କର୍ମ କରି ପଦାନୁଗ ପାପାତ୍ମର-ମାନଙ୍କ ସହିତ ତାଦୃଶ ଶ୍ରୀସମ୍ପନ୍ନ ହୋଇଅଛନ୍ତି, ଏବଂ ମହେନ୍ଦ୍ରଙ୍କ ସଦୃଶ ଲକ୍ଷ୍ମୀବାନ୍ ଓ ପରମପୂଜିତ ହୋଇ ରହିଅଛନ୍ତି ? ଏବଂ ଏମାନେ ସର୍ବଧର୍ମଜ୍ଞ ଶୂର ସତ୍ୟପରାୟଣ କ୍ଷତ୍ରଧର୍ମନିରତ ଓ ଯାଜ୍ଞିକ ହୋଇ, ଭୂରି ଦକ୍ଷିଣା ଦାନକରି ଯେ ସମ୍ପ୍ରତି ନରକଗାମୀ ହୋଇଅଛନ୍ତି, ଏହା କେଉଁ ପାପର ବିକାର ? ଆମ୍ଭେ କି ସୁପ୍ତ ହୋଇଅଛୁଁ ଅଥବା ଜାଗରିତ ହୋଇଅଛୁଁ ? ଆମ୍ଭର ଚେତନା ଅଛି ନା ଆମ୍ଭେ ଅଚେତନ ହୋଇଅଛୁଁ ? କି ଆଶ୍ଚର୍ଯ୍ୟ ! ଆମ୍ଭର କି ଏହା ଚିତ୍ତବିକାର ଅଥବା ଚିତ୍ତବିଭ୍ରମ ହୋଇଅଛି ? ୪୮ ।

ରାଜା ଯୁଧିଷ୍ଠିର ଏହିପ୍ରକାର ବହୁବିଧ ବିବେଚନା କଲେ । ଧର୍ମନନ୍ଦନ ନୃପତି ଯୁଧିଷ୍ଠିର ସୁଖଦୁଃଖସମାବିଷ୍ଟ ଓ ଚିନ୍ତାଦ୍ୱାରା ବ୍ୟାକୁଳଚେତ୍ରିୟ ହୋଇ ତୀବ୍ର କ୍ରୋଧାବିଷ୍ଟ ହେଲେ ଏବଂ ଦେବଗଣ ଓ ଧର୍ମଙ୍କୁ ନିନ୍ଦାକଲେ । ୫୦ ।

ସେ ତୀବ୍ରଗନ୍ଧଦ୍ୱାରା ସନ୍ତପ୍ତ ହୋଇ ଦେବଦୂତଙ୍କୁ କହିଲେ— ହେ ଦେବଦୂତ ! ତୁମ୍ଭେ ଯେଉଁମାନଙ୍କର ଦୂତ, ସେହିମାନଙ୍କ ନିକଟକୁ ଗମନ କର । ଆମ୍ଭେ ସେଠାକୁ ଗମନ କରିବୁନାହିଁ, ଏହି ସ୍ଥାନରେ ରହିଲୁଁ । ସେମାନଙ୍କୁ ନିବେଦନ କର, ଏହି ଦୁଃଖିତ ମଦୀୟ ଭ୍ରାତୃଗଣ ଆମ୍ଭର ଆଶ୍ରୟ ବଶତଃ ସୁଖୀ ହେଉଅଛନ୍ତି । ୫୨ ।

ସେତେବେଳେ ଦେବଦୂତ ଧୀମାନ୍ ପାଣ୍ଡୁପୁତ୍ରଙ୍କର ଏହିପ୍ରକାର ବାକ୍ୟ ଶ୍ରବଣ କରି ଶତକ୍ରତୁ ଯେଉଁ ସ୍ଥାନରେ ଅବସ୍ଥିତ କରିଥିଲେ, ସେଠାକୁ ଗମନ କଲେ । ୫୩ ।

Digitized by srujanika@gmail.com

ହେ ଜନନାଥ ! ଧର୍ମରାଜ ଯାହା କରିଥିଲେ ଏବଂ ଧର୍ମପୁତ୍ର ଯାହା କହିଥିଲେ, ତତ୍‌ସମୁଦାୟ ଦେବରାଜଙ୍କ ନିକଟରେ ନିବେଦନ କଲେ । ୫୪ ।

---

# ତୃତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ହେ କୌରବ୍ୟ ! ପୃଥାନନ୍ଦନ ଧର୍ମରାଜ ଯୁଧିଷ୍ଠିର ସେହି ଅପବିତ୍ର ସ୍ଥାନରେ ମୁହୂର୍ତ୍ତକ କାଳ ଅବସ୍ଥିତ କଲାରୁ ଦେବରାଜପୁରୋଗମ ଦେବଗଣ ସେଠାକୁ ଆଗମନ କଲେ । ୧ । ଏବଂ କୁରୁରାଜ ଯୁଧିଷ୍ଠିର ଯେଉଁ ସ୍ଥାନରେ ଥିଲେ, ମୂର୍ତ୍ତିମାନ୍ ଧର୍ମ ସେହି ନୃପତିଙ୍କୁ ନିରୀକ୍ଷଣ କରିବା ନିମିତ୍ତ ସେଠାରେ ଉପସ୍ଥିତ ହେଲେ ।

ହେ ରାଜନ୍ ! ସେହି ଭାସ୍ୱରଦେହ, ପବିତ୍ର ଜନ୍ମକର୍ମଯୁକ୍ତ ସୁରଗଣ ସେଠାକୁ ଆଗମନ କଲାରୁ ସେହି ଅନ୍ଧକାର ଅପଗତ ହେଲା । ସେହିପରି ମଧ୍ୟ ସେହି ପାପକର୍ମାମାନଙ୍କର ତାଦୃଶ ଯାତନାସମୂହ, ବୈତରଣୀ ନଦୀ ଓ କୂଟ ଶାଲ୍ମଳୀ ତରୁ ଆଉ ଦୃଷ୍ଟି ବିଷୟ ହେଲା ନାହିଁ । ୪ । ଭୟାନକ ଲୌହକୁମ୍ଭ ଓ ଶିଳାବୃନ୍ଦ ଅଦୃଶ୍ୟ ହେଲା, ଏବଂ ଚତୁର୍ଦ୍ଦିଗରେ ଯେଉଁ ବିକୃତ ଶରୀରସମୂହ ଥିଲା, ତାହା ମଧ୍ୟ ଦୃଷ୍ଟ ହେଲା ନାହିଁ । ୫ ।

ରାଜା ଦେଖିଲେ, ତତ୍ସମୁଦାୟ ଅଦୃଶ୍ୟ ହେଲା । ହେ ଭାରତ ! ତଦନନ୍ତର ଦେବସମୀପସ୍ଥ ଶୀତଳ ଶୁଚି ପୁଣ୍ୟଗନ୍ଧବହ ସୁଖସ୍ପର୍ଶ ସମୀରଣ ପ୍ରବାହିତ ହେଲା । ଯେଉଁ ସ୍ଥାନରେ ମହାତେଜା ରାଜା ଧର୍ମପୁତ୍ର ଅବସ୍ଥିତ ହୋଇଥିଲେ, ସେଠାରେ ଶକ୍ରଙ୍କ ସହିତ ମରୁଦ୍‌ଗଣ, ବସୁଗଣ, ଅଶ୍ୱିନୀ-କୁମାରଯୁଗଳ, ସାଧ୍ୟଗଣ, ରୁଦ୍ରଗଣ, ଆଦିତ୍ୟଗଣ, ତଦ୍ଭିନ୍ନ ଅନ୍ୟାନ୍ୟ ସୁରପୁରବାସିବୃନ୍ଦ ଏବଂ ସିଦ୍ଧ ଓ ମହର୍ଷି ସମୁଦାୟ ସମୁପସ୍ଥିତ ହେଲେ ।

ଅନନ୍ତର ପରମ ଶ୍ରୀସମ୍ପନ୍ନ ସୁରରାଜ ଶକ୍ର ସାନ୍ତ୍ୱନା ପୂର୍ବକ ଯୁଧିଷ୍ଠିରଙ୍କୁ ଏହି କଥା କହିଲେ—ହେ ମହାବାହୁ ଯୁଧିଷ୍ଠିର ! ତୁମ୍ଭଠାରେ ଦେବଗଣ ପ୍ରୀତ ହୋଇଅଛନ୍ତି । ହେ ପୁରୁଷପ୍ରବର ! ଆମ୍ଭ ସହିତ ଆଗମନ କର । ତୁମ୍ଭଙ୍କୁ ଆଉ କଷ୍ଟ ସହ୍ୟ କରିବାକୁ ହେବ ନାହିଁ । ତୁମ୍ଭର ଅକ୍ଷୟ ଲୋକସମୂହ

Digitized by srujanika@gmail.com

ଏବଂ ସିଦ୍ଧିଲାଭ ହୋଇଅଛି । ତୁମ୍ଭେ କ୍ରୋଧ କରନା, ଆମ୍ଭର ଏହି ବାକ୍ୟ ଶ୍ରବଣ କର । ହେ ତାତ ! ସମସ୍ତ ରାଜା ନରକ ଦର୍ଶନ କରିବେ । ଅର୍ଥାତ୍ ସମସ୍ତ ରାଜାଙ୍କୁ ନରକ ଦର୍ଶନ କରିବାକୁ ହୁଏ । ହେ ପୁରୁଷପ୍ରବର ! ଶୁଭ ଓ ଅଶୁଭ ସମସ୍ତଙ୍କର ଦୁଇଟି ରାଶି ଅଛି । ତନ୍ମଧ୍ୟରେ ଯେ ପ୍ରଥମେ ସୁକୃତ ଭୋଗ କରନ୍ତି ସେ ପଶ୍ଚାତ୍ ନରକ ଭୋଗକରନ୍ତି, ଏବଂ ଯେ ପ୍ରଥମତଃ ନରକଭୋଗୀ ହୁଅନ୍ତି, ସେ ପଶ୍ଚାତ୍ ସ୍ୱର୍ଗଲାଭ କରନ୍ତି ।

ଯେ ପ୍ରଭୂତ ପୁଣ୍ୟକର୍ମ କରନ୍ତି, ସେ ପ୍ରଥମତଃ ନରକ ଭୋଗକରନ୍ତି । ଏହି ନିମିତ୍ତ ଆମ୍ଭେ ତୁମ୍ଭର କଲ୍ୟାଣାର୍ଥୀ ହୋଇ ଏହିପ୍ରକାର କରାଇଲୁଁ । ହେ ରାଜନ୍ ! ତୁମ୍ଭେ ଛଳପୂର୍ବକ ଦ୍ରୋଣଙ୍କୁ ସନ୍ତାନ ନିମିତ୍ତ ପ୍ରତାରଣା କରିଥିଲ । ଏହି କାରଣରୁ ଆମ୍ଭେ ତୁମ୍ଭଙ୍କୁ ଛଳକ୍ରମରେ ନରକ ଦର୍ଶନ କରାଇଲୁଁ । ତୁମ୍ଭେ ଯେଉଁପରି କପଟ ନରକ ଦର୍ଶନ କଲ, ତଦ୍‌ବତ୍ ଭୀମ, ଅର୍ଜୁନ, ସହଦେବ ଓ ଦ୍ରୁପଦରାଜନନ୍ଦିନୀ କୃଷ୍ଣା ଛଳକ୍ରମରେ ନରକ ଗମନ କରିଥିଲେ ।

ହେ ଭରତଶ୍ରେଷ୍ଠ ! ଯେଉଁ ସମସ୍ତ ପାର୍ଥିବଗଣ ତୁମ୍ଭ ସ୍ୱପକ୍ଷରେ ସମରରେ ନିହତ ହୋଇଥିଲେ, ସେମାନେ ସମସ୍ତେ ସ୍ୱର୍ଗକୁ ଆସିଅଛନ୍ତି, ଅବଲୋକନ କର । ତୁମ୍ଭେ ଯାହାଙ୍କ ନିମିତ୍ତ ପରିତାପ କରୁଅଛ, ସେହି ସର୍ବଶସ୍ତ୍ରଧାରିପ୍ରବର ମହାଧନୁର୍ଦ୍ଧର କର୍ଣ୍ଣ ପରମସିଦ୍ଧି ପ୍ରାପ୍ତ ହୋଇଅଛନ୍ତି । ହେ ନରଶ୍ରେଷ୍ଠ ! ମହାବାହୋ ! ପୁରୁଷଶ୍ରେଷ୍ଠ ! ସ୍ୱସ୍ଥାନସ୍ଥ ଆଦିତ୍ୟ-ତନୟଙ୍କୁ ଅବଲୋକନ କର ।

ହେ ନରବର ! ଶୋକ ପରିହାର କର । ୨୦ । ତୁମ୍ଭର ଭ୍ରାତୃଗଣ ଓ ଅନ୍ୟାନ୍ୟ ସ୍ୱପକ୍ଷ ପାର୍ଥିବଗଣଙ୍କୁ ସ୍ୱ ସ୍ୱ ସ୍ଥାନରେ ଅବସ୍ଥାନ କରିଥିବାର ଅବଲୋକନ କର । ତୁମ୍ଭର ମାନସଜ୍ୱର ବିଗତ ହେଉ । ୨୧ । ହେ କୌରବ୍ୟ ! ପ୍ରଥମତଃ କଷ୍ଟ ଅନୁଭବ କର ଅତଃପର ଶୋକ-ଶୂନ୍ୟ ଓ ନିରାମୟ ହୋଇ ଆମ୍ଭ ସହିତ ବିହାର କର । ହେ ତାତ ! ମହାବାହୁ ମହାରାଜ ! ତୁମ୍ଭର ତପସ୍ୟାଦ୍ୱାରା ଉପାର୍ଜିତ ପୁଣ୍ୟକର୍ମ ଓ ଦାନ-ସମୂହର ଫଳ ସ୍ୱୟଂ ଲାଭ କର । ରଜୋହୀନ ବସନଭୂଷଣସମନ୍ୱିତ ଦେବ,

Digitized by srujanika@gmail.com

ଗନ୍ଧର୍ବ ଓ ଦିବ୍ୟ ଅପ୍‌ସରାଗଣ ସ୍ୱର୍ଗଲୋକରେ ଅଦ୍ୟ ତୁମ୍ଭଙ୍କୁ ସେବା କରନ୍ତୁ । ହେ ମହାବାହୋ ! ତୁମ୍ଭେ ରାଜସୂୟ ଯଜ୍ଞଦ୍ୱାରା ଯେଉଁ ସମସ୍ତ ଲୋକଙ୍କୁ ବୃଦ୍ଧିଯୁକ୍ତ କରିଅଛ, ସେହି ସମସ୍ତ ଲୋକ ଓ ତପସ୍ୟାର ମହାଫଳ ପ୍ରାପ୍ତ ହୁଅ । ୨୫ ।

ହେ ଯୁଧିଷ୍ଠିର ! ନୃପତିଗଣଙ୍କ ଉପର୍ଯ୍ୟୁପରି ତୁମ୍ଭର ଲୋକ ପ୍ରସ୍ତୁତ ହୋଇଅଛି । ହେ ପାର୍ଥ ! ତୁମ୍ଭେ ଯେଉଁ ସମସ୍ତ ଲୋକରେ ବିହାର କରିବ, ତାହା ହରିଶ୍ଚନ୍ଦ୍ର ନୃପତିଙ୍କ ଲୋକ ସଦୃଶ ଅଟେ । ଯେଉଁ ସ୍ଥାନରେ ରାଜର୍ଷି ମାନ୍ଧାତା, ରାଜା ଭଗୀରଥ ଏବଂ ଦୁଷ୍ମନ୍ତନନ୍ଦନ ଭରତ ଅବସ୍ଥାନ କରିଅଛନ୍ତି, ତୁମ୍ଭେ ସେହିଠାରେ ବିହାର କରିବ । ୨୭ । ହେ ରାଜେନ୍ଦ୍ର ! ପାର୍ଥ ! ଏହି ତ୍ରୈଲୋକ୍ୟପାବନୀ ପବିତ୍ରା ଦେବନଦୀ ଆକାଶଗଙ୍ଗା । ତୁମ୍ଭେ ଏଥିରେ ଅବଗାହନ ପୂର୍ବକ ଗମନ କରିବ । ୨୮ । ଏଥିରେ ସ୍ନାନ କଲେ ତୁମ୍ଭର ମାନୁଷଭାବ ବିଗତ ହେବ । ତୁମ୍ଭେ ଗତଶୋକ, ନିରାୟାସ ଏବଂ ମୁକ୍ତ-ବୈର ହେବ । ୨୯ ।

ହେ କୌରବେନ୍ଦ୍ର ! ଦେବରାଜ ଯୁଧିଷ୍ଠିରଙ୍କୁ ଏହିପ୍ରକାର କହୁଥିବା ସମୟରେ ମୂର୍ତ୍ତିମାନ୍ ସାକ୍ଷାତ୍ ଧର୍ମ ସ୍ୱୀୟ ପୁତ୍ରଙ୍କୁ କହିଲେ—ହେ ମହାପ୍ରାଜ୍ଞ ରାଜେନ୍ଦ୍ର ! ହେ ପୁତ୍ର ! ଆମ୍ଭପ୍ରତି ଭକ୍ତି, ସତ୍ୟବାକ୍ୟ, କ୍ଷମା ଓ ଦମ ହେତୁରୁ ଆମ୍ଭେ ତୁମ୍ଭପ୍ରତି ପ୍ରୀତ ହୋଇଅଛୁଁ । ହେ ରାଜନ୍ ! ଆମ୍ଭେ ତୁମ୍ଭର ଏହି ତୃତୀୟବାର ପରୀକ୍ଷା କଲୁଁ । ହେ ପାର୍ଥ ! କୌଣସି କାରଣବଶତଃ ତୁମ୍ଭଙ୍କୁ ସ୍ୱଭାବରୁ ବିଚଳିତ କରାଇବାକୁ କାହାର ସାମର୍ଥ୍ୟ ନାହିଁ । ପୂର୍ବେ ଦ୍ୱୈତବନରେ ଅରଣୀ ସହିତ ବ୍ରାହ୍ମଣଙ୍କ ନିମିତ୍ତ ଆମ୍ଭେ ତୁମ୍ଭଙ୍କୁ ପ୍ରଶ୍ନଜିଜ୍ଞାସା ହେତୁ ପରୀକ୍ଷା କରିଥିଲୁଁ । ତୁମ୍ଭେ ତହିଁରୁ ନିସ୍ତୀର୍ଣ୍ଣ ହୋଇଅଛ । ହେ ପୁତ୍ର ! ଭରତ ! ଦ୍ରୌପଦୀଙ୍କୁ ଆରମ୍ଭ କରି ତୁମ୍ଭର ସହୋଦରଗଣ ବିନଷ୍ଟ ହେଉଥିବା ସମୟରେ ଆମ୍ଭେ ସେଠାରେ କୁକ୍କୁର ରୂପ ଧାରଣପୂର୍ବକ ପୁନଶ୍ଚ ତୁମ୍ଭର ପରୀକ୍ଷା କରିଥିଲୁଁ । ୩୪ । ହେ ମହାଭାଗ ! ଏହା ଆମ୍ଭର ତୃତୀୟ ପରୀକ୍ଷା । ତୁମ୍ଭେ ଭ୍ରାତୃଗଣଙ୍କ ନିମିତ୍ତ ଯାହା ଏଠାରେ ଅବସ୍ଥାନ କରିବାକୁ ଇଚ୍ଛା କରିଅଛ, ସେହି କାରଣରୁ ତୁମ୍ଭେ ଅତି ବିଶୁଦ୍ଧ, ସୁଖୀ ଓ ପାପବର୍ଜିତ ହେଲ ।

Digitized by srujanika@gmail.com

ହେ ନରବର ପାର୍ଥ ! ତୁମ୍ଭର ଭ୍ରାତୃଗଣ ନରକର ପାତ୍ର ନୁହନ୍ତି । ଦେବରାଜ ମହେନ୍ଦ୍ରଙ୍କ ଦ୍ୱାରା ଏହି ମାୟା ପ୍ରଯୋଜିତ ହୋଇଥିଲା । ହେ ତାତ ! ସମସ୍ତ ରାଜାମାନଙ୍କୁ ଅବଶ୍ୟ ନରକ ଦର୍ଶନ କରିବାକୁ ହୁଏ । ସେହି କାରଣରୁ ତୁମ୍ଭେ ମୁହୂର୍ତ୍ତିକ ସମୟ ଏହି କଷ୍ଟକର ଦୁଃଖ ପ୍ରାପ୍ତ ହେଲ । ୩୭ । ହେ ନୃପ ! ସବ୍ୟସାଚୀ, ଭୀମସେନ, ପୁରୁଷଶ୍ରେଷ୍ଠ ନକୁଳ ଓ ସହଦେବ, ସତ୍ୟବାଦୀ ଶୂରବର କର୍ଣ୍ଣ ଦୀର୍ଘକାଳ ପର୍ଯ୍ୟନ୍ତ ନରକଭୋଗ କରିବାର ଉପଯୁକ୍ତ ନୁହନ୍ତି । ୩୮ । ହେ ଯୁଧିଷ୍ଠିର ! ରାଜପୁତ୍ରୀ କୃଷ୍ଣା ମଧ୍ୟ କଦାପି ନରକର ଯୋଗ୍ୟା ନୁହନ୍ତି । ହେ ଭରତଶ୍ରେଷ୍ଠ ! ଆସ, ଆସ, ତ୍ରିଲୋକଗାମିନୀ ଗଙ୍ଗାଙ୍କୁ ଅବଲୋକନ କର । ୩୯ ।

ହେ ଜନମେଜୟ ! ଆପଣଙ୍କର ପୂର୍ବପିତାମହ ସେହି ରାଜର୍ଷି ଯୁଧିଷ୍ଠିର ଏହି ବାକ୍ୟ ଶ୍ରବଣ କରି ଧର୍ମ ଓ ସମସ୍ତ ସୁରଗଣଙ୍କ ସହିତ ଋଷିଗଣ-ସଂସ୍ତୁତା ପାବନୀ ପବିତ୍ରସଲିଳା ଦେବନଦୀ ଗଙ୍ଗାତୀରକୁ ଗମନ କଲେ ।

ତଦନନ୍ତର ରାଜା ଯୁଧିଷ୍ଠିର ତହିଁରେ ଅବଗାହନ କରି ମାନୁଷୀ ମୂର୍ତ୍ତି ପରିତ୍ୟାଗ କଲେ । ୪୧ । ପରିଶେଷରେ ଧର୍ମରାଜ ଯୁଧିଷ୍ଠିର ସେହି ଗଙ୍ଗାଜଳରେ ସମାପ୍ଲୁତ ଦିବ୍ୟଦେହ, ସନ୍ତାପହୀନ ଓ ନିର୍ବୈର ହୋଇ ଶୋଭା ପାଇଲେ । ୪୨ ।

ତଦନନ୍ତର ଧୀମାନ୍ କୁରୁରାଜ ଯୁଧିଷ୍ଠିର ଦେବଗଣରେ ପରିବୃତ ଓ ଋଷିଗଣକର୍ତ୍ତୃକ ସ୍ତୂୟମାନ ହୋଇ ଧର୍ମଙ୍କ ସହିତ ଯେଉଁ ସ୍ଥାନରେ ସେହି ପୁରୁଷପ୍ରବର ଶୋକଶୂନ୍ୟ ଶୂରବର ପାଣ୍ଡବଗଣ ଓ ଧାର୍ତ୍ତରାଷ୍ଟ୍ରଗଣ ସ୍ୱ ସ୍ୱ ସ୍ଥାନ ଲାଭକରି ରହିଥିଲେ ସେହି ସ୍ଥାନକୁ ଗମନ କଲେ ।

---

## ଚତୁର୍ଥ ଅଧ୍ୟାୟ

ବୈଶମ୍ପାୟନ କହିଲେ—ତଦନନ୍ତର ରାଜା ଯୁଧିଷ୍ଠିର, ଋଷିଗଣ ସହ ମରୁଦ୍‌ଗଣକର୍ତ୍ତୃକ ସ୍ତୂୟମାନ ହୋଇ କୁରୁପାଣ୍ଡବଗଣ ଯେଉଁ ସ୍ଥାନରେ ଅବସ୍ଥାନ କରିଥିଲେ, ଦେବଗଣଙ୍କ ସହିତ ସେହି ସ୍ଥାନକୁ ଗମନ କଲେ । ୧ ।

Digitized by srujanika@gmail.com

ସେଠାରେ ଦେଖିଲେ, ଭଗବାନ୍ ବାସୁଦେବ ବ୍ରାହ୍ମଦେହ ଧାରଣକରି ବିରାଜମାନ ହୋଇଥିଲେ । ତାହାଙ୍କ ପୂର୍ବଦୃଷ୍ଟ ଆକୃତିର କିଞ୍ଚିନ୍ମାତ୍ର ବୈଲକ୍ଷଣ୍ୟ ହୋଇନଥିଲା । ଚକ୍ର ପ୍ରଭୃତି ଘୋରତର ଦିବ୍ୟାସ୍ତ୍ରସମୂହ ପୁରୁଷରୂପ ଧାରଣପୂର୍ବକ ତାହାଙ୍କ ଚତୁର୍ଦ୍ଦିଗରେ ପରିବେଷ୍ଟନ କରି ତାହାଙ୍କ ସ୍ତବ କରୁଥିଲେ । ସୁନ୍ଦର ତେଜଃଶାଳୀ ବୀରବର ଫାଲ୍‌ଗୁନ ତାହାଙ୍କର ଉପାସନା କରୁଥିଲେ । କୁନ୍ତୀତନୟ ତାଦୃଶ ସ୍ୱରୂପ ମଧୁସୂଦନଙ୍କୁ ଦର୍ଶନ କଲେ ।

ସେହି ପୁରୁଷପ୍ରବର ସୁରପୂଜିତ ନରନାରାୟଣ ଯୁଧିଷ୍ଠିରଙ୍କୁ ଅବଲୋକନ କରି ଯଥାବିଧି ପୂଜାକରି ସମ୍ମାନ ପ୍ରଦର୍ଶନ କଲେ । ୭ । ତଦନନ୍ତର ଅପର ସ୍ଥାନରେ ମରୁଦ୍‌ଗଣପରିବୃତ ବିଭୁ ଭୀମସେନଙ୍କୁ ତାଦୃଶ ଶରୀରସମନ୍ୱିତ ଅବଲୋକନ କଲେ । ସେ ସେଠାରେ ମୂର୍ତ୍ତିମାନ୍ ବାୟୁଙ୍କ ପାର୍ଶ୍ୱରେ ଦିବ୍ୟମୂର୍ତ୍ତିସମ୍ପନ୍ନ, ପରମ ଶ୍ରୀସମ୍ପନ୍ନ ଏବଂ ପରମସିଦ୍ଧି ପ୍ରାପ୍ତହୋଇ ଥିଲେ । ୮ ।

ଅନନ୍ତର କୁରୁନନ୍ଦନ ଅଶ୍ୱିନୀକୁମାରଯୁଗଳଙ୍କ ସନ୍ନିଧାନରେ ସ୍ୱକୀୟ ତେଜୋଦ୍ୱାରା ଦୀପ୍ୟମାନ ନକୁଳ ଓ ସହଦେବଙ୍କୁ ନିରୀକ୍ଷଣ କଲେ । ୯ । ଏବଂ ସୂର୍ଯ୍ୟଙ୍କ ସଦୃଶ ତେଜଃଶାଳିନୀ କମଳମାଳିନୀ ପାଞ୍ଚାଳୀଙ୍କୁ ଶରୀର-ସୌନ୍ଦର୍ଯ୍ୟଦ୍ୱାରା ସୁରପୁରକୁ ଆକ୍ରମଣ କରୁଥିବାର ପରି ରହିବା ଦେଖିଲେ । ୧୦ ।

ରାଜା ଯୁଧିଷ୍ଠିର ତାହାଙ୍କୁ ଦେଖିଲାମାତ୍ରେ ସହସା ପ୍ରଶ୍ନ କରିବାକୁ ଇଚ୍ଛାକଲେ । ଦେବରାଜ ଇନ୍ଦ୍ର କହିଲେ—ହେ ଯୁଧିଷ୍ଠିର ! ଏ ଲକ୍ଷ୍ମୀ ତୁମ୍ଭମାନଙ୍କ ନିମିତ୍ତ ଦ୍ରୌପଦୀ ରୂପରେ ମନୁଷ୍ୟଲୋକକୁ ଗମନ କରିଥିଲେ । ଏ ଅଯୋନିଜା, ସର୍ବଲୋକକାନ୍ତା ଓ ପୁଣ୍ୟଗନ୍ଧଶାଳିନୀ ଅଟନ୍ତି । ୧୨ । ତୁମ୍ଭମାନଙ୍କ ରତିନିମିତ୍ତ ଶୂଳପାଣି ଏହାଙ୍କୁ ନିର୍ମାଣ କରିଥିଲେ । ଏ ଦ୍ରୁପଦକୁଳରେ ଜନ୍ମପରିଗ୍ରହ ପୂର୍ବକ ତୁମ୍ଭମାନଙ୍କୁ ଉପଜୀବ୍ୟ କରିଥିଲେ । ୧୩ ।

ହେ ରାଜନ୍ ! ଏହି ପାବକପ୍ରଭ ଅମିତତେଜସ୍ୱୀ ମହାଭାଗ ପଞ୍ଚ ଚନ୍ଦ୍ରଙ୍କ ଦ୍ରୌପଦୀଙ୍କ ଗର୍ଭରେ ତୁମ୍ଭମାନଙ୍କ ତନୟରୂପେ ଜନ୍ମିଥିଲେ । ୧୪ ।

Digitized by srujanika@gmail.com

ଏହି ଗନ୍ଧର୍ବରାଜ ମନୀଷୀ ଧୃତରାଷ୍ଟ୍ରଙ୍କୁ ଦର୍ଶନ କର । ଏହାଙ୍କୁ ତୁମ୍ଭ ପିତାଙ୍କ ପୂର୍ବଜ ଭ୍ରାତା ବୋଲି ଜ୍ଞାନକର । ଏହି ପାବକଦ୍ୟୁତି କୁନ୍ତୀନନ୍ଦନ ସୂର୍ଯ୍ୟପୁତ୍ର ରାଧେୟ ତୁମ୍ଭର ପୂର୍ବଜ ଭ୍ରାତା । ଏ ତୁମ୍ଭର ଜ୍ୟେଷ୍ଠ ଓ ଶ୍ରେଷ୍ଠରୂପେ ବିଖ୍ୟାତ ଆଦିତ୍ୟସଦୃଶ କର୍ଣ୍ଣ ଗମନ କରୁଅଛନ୍ତି । ଏହି ପୁରୁଷପ୍ରବରଙ୍କୁ ଅବଲୋକନ କର । ୧୬ ।

ହେ ରାଜେନ୍ଦ୍ର ! ସାଧ୍ୟଗଣ, ବିଶ୍ୱେଦେବଗଣ, ମରୁଦ୍‌ଗଣ ମଧ୍ୟରେ ବୃଷ୍ଣି ଓ ଅନ୍ଧକବଂଶୀୟ ସମସ୍ତ ମହାରଥଗଣଙ୍କୁ ଏବଂ ସାତ୍ୟକି ପ୍ରଭୃତି ଭୋଜବଂଶଧର ମହାବଳ ସମୁଦୟଙ୍କୁ ନିରୀକ୍ଷଣ କର । ୧୮ । ନିଶାକରସମ-ଦ୍ୟୁତି ମହାଧନୁର୍ଦ୍ଧର ସୁଭଦ୍ରାସୁତ ଅପରାଜିତ ଅଭିମନ୍ୟୁଙ୍କୁ ସୋମଙ୍କ ସହିତ ଦର୍ଶନ କର । ଏ ତୁମ୍ଭ ପିତା ମହାଧନୁର୍ଦ୍ଧର ପାଣ୍ଡୁ, କୁନ୍ତୀ ଓ ମାଦ୍ରୀଙ୍କ ସହିତ ସର୍ବଦା ବିମାନଦ୍ୱାରା ଆମ୍ଭନିକଟକୁ ଆଗମନ କରନ୍ତି ।

ହେ ରାଜନ୍ ! ଶାନ୍ତନୁନନ୍ଦନ ଭୀଷ୍ମଙ୍କୁ ବସୁସୁରଗଣଙ୍କ ସହିତ ଦର୍ଶନ କର । ଏବଂ ବୃହସ୍ପତିଙ୍କ ପାର୍ଶ୍ୱରେ ତୁମ୍ଭ ଗୁରୁ ଦ୍ରୋଣଙ୍କୁ ନିରୀକ୍ଷଣ କର । ୨୧ । ହେ ପାଣ୍ଡବ ! ଏମାନେ ସମସ୍ତେ ଓ ଏତଦ୍‌ଭିନ୍ନ ଅନ୍ୟାନ୍ୟ ଭୂପାଳଗଣ ଏବଂ ତୁମ୍ଭର ଯୋଦ୍ଧୃଗଣ ଗନ୍ଧର୍ବ, ଯକ୍ଷ ଓ ପୁଣ୍ୟଜନଗଣଙ୍କ ସହିତ ଗମନ କରୁଅଛନ୍ତି । ହେ ନରନାଥ ! କେହି କେହି ଦେହପରିତ୍ୟାଗ ପୂର୍ବକ ପବିତ୍ର ବାକ୍ୟ, ବୁଦ୍ଧି ଓ କର୍ମଦ୍ୱାରା ସ୍ୱର୍ଗଜୟ କରି ଗୁହ୍ୟକଗଣଙ୍କର ଗତି ଲାଭ କରିଅଛନ୍ତି । ୨୩ ।

---

# ପଞ୍ଚମ ଅଧ୍ୟାୟ

ଜନମେଜୟ କହିଲେ—ମହାନୁଭାବ ଭୀଷ୍ମ, ଦ୍ରୋଣ, ମହାରାଜ ଧୃତରାଷ୍ଟ୍ର, ବିରାଟ, ଦ୍ରୁପଦ, ଶଙ୍ଖ, ଉତ୍ତର, ଧୃଷ୍ଟକେତୁ, ଜୟସେନ ଏବଂ ସେହି ରାଜା ସତ୍ୟଜିତ୍, ଦୁର୍ଯ୍ୟୋଧନଙ୍କ ପୁତ୍ରଗଣ, ସୁବଳନନ୍ଦନ ଶକୁନି, ବିକ୍ରାନ୍ତ କର୍ଣ୍ଣଙ୍କ ପୁତ୍ରଗଣ, ରାଜା ଜୟଦ୍ରଥ ଏବଂ ଘଟୋତ୍କଚ ପ୍ରଭୃତି ଯେଉଁ-ମାନଙ୍କର ନାମ ଏଠାରେ କୀର୍ତ୍ତନ ହୁଏ ନାହିଁ, ଏବଂ ଯେଉଁ ସମସ୍ତ ଦୀପ୍ତମୂର୍ତ୍ତି ନୃପତିଗଣ କୀର୍ତ୍ତିତ ହୋଇଅଛନ୍ତି, ସେମାନେ କେତେ ସମୟ ସ୍ୱର୍ଗରେ

Digitized by srujanika@gmail.com

ବାସ କରିଥିଲେ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୪ । ହେ ଦ୍ୱିଜବର ! ସେମାନଙ୍କର ସ୍ୱର୍ଗ କି ଶାଶ୍ୱତ ସ୍ଥାନ ? ଅଥବା କର୍ମଫଳ ଭୋଗାବସାନରେ ସେହି ନରବରଗଣ କେଉଁ ଗତି ପ୍ରାପ୍ତ ହେଲେ ? ୫ । ଏହା ଶ୍ରବଣ କରିବା ନିମିତ୍ତ ଆମ୍ଭେ ଅଭିଳାଷୀ ହେଉଅଛୁଁ । ଆପଣ ପ୍ରଦୀପ୍ତ ତପସ୍ୟାଦ୍ୱାରା ସମସ୍ତ ଅବଲୋକନ କରିଅଛନ୍ତି । ୬ ।

ସୌତି କହିଲେ—ସେହି ବିପ୍ରର୍ଷି ବୈଶମ୍ପାୟନ ରାଜା ପରୀକ୍ଷିତଙ୍କ ପୁତ୍ରଙ୍କ ଏହି ବାକ୍ୟ ଶ୍ରବଣ କରି ମହାତ୍ମା ବ୍ୟାସଙ୍କ ଅନୁଜ୍ଞାନୁସାରେ ତାହାଙ୍କ ନିକଟରେ ସମସ୍ତ ବର୍ଣ୍ଣନ କରିବାକୁ ଉପକ୍ରମ କଲେ । ୭ ।

ବୈଶମ୍ପାୟନ କହିଲେ—ହେ ନରନାଥ ! କର୍ମର ଅବସାନ ହେଲେ ସମସ୍ତେ ପ୍ରକୃତି ପ୍ରାପ୍ତ ହୋଇ ପାରନ୍ତି ନାହିଁ । ଯଦି ସମସ୍ତ ଜୀବ ପ୍ରାରବ୍ଧ କର୍ମର ଅବସାନରେ ପ୍ରକୃତିପ୍ରାପ୍ତ ହୁଅନ୍ତେ, ତେବେ ସମସ୍ତେ ମୁକ୍ତ ହୋଇଯାଆନ୍ତେ, ସଂସାର ଆଦିମାନ୍ ହୁଅନ୍ତା । ଅତଏବ କେହି କେହି କର୍ମାବସାନରେ ସ୍ୱକୀୟ ପ୍ରକୃତି ପ୍ରାପ୍ତ ହୁଅନ୍ତି, ସମସ୍ତେ ପ୍ରାପ୍ତ ହୁଅନ୍ତି ନାହିଁ । ଏହା ବିବେଚନା କରି ତୁମ୍ଭର ପ୍ରଶ୍ନ ସମ୍ୟକ୍‌ରୂପେ ପ୍ରଯୋଜିତ ହେଉଅଛି । ୮ ।

ହେ ରାଜନ୍ ! ଭରତଶ୍ରେଷ୍ଠ ! ମହାତେଜା ପ୍ରତାପବାନ୍ ଅଗାଧବୁଦ୍ଧି ସର୍ବଜ୍ଞ ସର୍ବଗତଙ୍କ ଦିବ୍ୟଚକ୍ଷୁ ପୁରାଣ ମୁନି ପରାଶରସୁତ ଯାହା କହିଅଛନ୍ତି, ଦେବଗଣଙ୍କର ଗୋପନୀୟ ସେହି ବୃତ୍ତାନ୍ତ ଶ୍ରବଣ କରିବା ହେଉନ୍ତୁ ।

ହେ କୁରୁକୁଳଧୁରନ୍ଧର ! ଯେଉଁ ଅଷ୍ଟବସୁ ଦୃଷ୍ଟ ହେଉଅଛନ୍ତି, ମହାତେଜା ମହାଦ୍ୟୁତି ଭୀଷ୍ମ ସେହି ବସୁଗଣଙ୍କ ଲୋକ ପ୍ରାପ୍ତ ହୋଇଅଛନ୍ତି । ଦ୍ରୋଣ ଆଙ୍ଗିରସପ୍ରବର ବୃହସ୍ପତିଙ୍କ ଶରୀରରେ ପ୍ରବିଷ୍ଟ ହେଲେ । ୧୨ । ହାର୍ଦ୍ଦିକ୍ୟ କୃତବର୍ମା ମରୁଦ୍‌ଗଣରେ ପ୍ରବେଶ କଲେ । ପ୍ରଦ୍ୟୁମ୍ନ ଯେଉଁ ସ୍ଥାନରୁ ଆସିଥିଲେ, ସେ ସେହି ସନତ୍କୁମାରଙ୍କଠାରେ ପ୍ରବିଷ୍ଟ ହେଲେ । ୧୩ । ଧୃତରାଷ୍ଟ୍ର ଦୁରାସଦ ଧନେଶ୍ୱରଙ୍କ ଲୋକସମୂହକୁ ଗମନ କଲେ । ଯଶସ୍ୱିନୀ ଗାନ୍ଧାରୀ ତାହାଙ୍କ ସହିତ ଉକ୍ତ ଲୋକ ପ୍ରାପ୍ତହେଲେ । ୧୪ । ପାଣ୍ଡୁ ପତ୍ନୀଦ୍ୱୟଙ୍କ ସହିତ ମହେନ୍ଦ୍ରଙ୍କ ସଦନକୁ ଗମନ କଲେ । ବିରାଟ, ଦ୍ରୁପଦ, ନୃପତି ଧୃଷ୍ଟକେତୁ, ନିଶଠ, ଅକ୍ରୂର, ସାମ୍ବ, ଭାନୁକମ୍ପ, ବିଦୁର, ଭୂରିଶ୍ରବା,

Digitized by srujanika@gmail.com

ଶଲ୍ୟ, ପୃଥିବୀପତି ଭୂରି, କଂସ, ଉଗ୍ରସେନ ଓ ବସୁଦେବ, ନରଶ୍ରେଷ୍ଠ ଉତ୍ତର ଏବଂ ତାହାଙ୍କ ଭ୍ରାତା ଶଂଖ ପ୍ରଭୃତି ନରବରଗଣ ବିଶ୍ୱେଦେବଗଣରେ ପ୍ରବିଷ୍ଟ ହେଲେ । ବର୍ଚ୍ଚା ନାମକ ମହାତେଜା ପ୍ରତାପବାନ୍ ସୋମପୁତ୍ର, ଯେ ଅଭିମନ୍ୟୁ ରୂପରେ ନରବର ଅର୍ଜ୍ଜୁନଙ୍କର ପୁତ୍ର ହୋଇଥିଲେ, ସେହି ଧର୍ମାତ୍ମା ମହାରଥ ଅନ୍ୟାନ୍ୟ ସାଧାରଣ ପୁରୁଷଙ୍କ ସଦୃଶ କ୍ଷତ୍ରଧର୍ମାନୁସାରେ ସଂଗ୍ରାମ କରି କର୍ମାବସାନରେ ସୋମମଣ୍ଡଳରେ ପ୍ରବେଶ କରିଅଛନ୍ତି । ପୁରୁଷଶ୍ରେଷ୍ଠ କର୍ଣ୍ଣ ନିହତ ହୋଇ ସୂର୍ଯ୍ୟମଣ୍ଡଳରେ ଆବିଷ୍ଟ ହୋଇଅଛନ୍ତି । ୨୦ । ଶକୁନି ଦ୍ୱାପରଙ୍କୁ ଏବଂ ଧୃଷ୍ଟଦ୍ୟୁମ୍ନ ପାବକଙ୍କୁ ପ୍ରାପ୍ତହେଲେ । ଧୃତରାଷ୍ଟ୍ରଙ୍କ ପୁତ୍ରଗଣ ସମସ୍ତେ ବଳୋତ୍କଟ ରାକ୍ଷସ । ସେହି ମହାବଳଗଣ ସମୃଦ୍ଧିସଂପନ୍ନ ଓ ଶସ୍ତ୍ରପୂତ ହୋଇ ସ୍ୱର୍ଗକୁ ଗମନ କରିଥିଲେ । ବିଦୁର ଏବଂ ରାଜା ଯୁଧିଷ୍ଠିର ଧର୍ମରେ ଆବିଷ୍ଟ ହୋଇଥିଲେ । ୨୩ । ଯେ ପିତାମହଙ୍କ ନିଯୋଗାନୁସାରେ ଯୋଗବଳତଃ ଧରଣୀ ଧାରଣ କରିଥିଲେ, ସେହି ଭଗବାନ୍ ଅନନ୍ତ ଦେବ ରସାତଳରେ ପ୍ରବିଷ୍ଟ ହୋଇଅଛନ୍ତି । ଯେ ଦେବଦେବ ସନାତନ ନାରାୟଣଙ୍କ ଅଂଶରେ ବାସୁଦେବ ରୂପରେ ଜନ୍ମଗ୍ରହଣ କରିଥିଲେ, ସେ କାର୍ଯ୍ୟାବସାନରେ ନାରାୟଣଙ୍କଠାରେ ପ୍ରବିଷ୍ଟ ହେଲେ । ୨୪ ।

ହେ ଜନମେଜୟ ! ବାସୁଦେବଙ୍କର ଯେଉଁ ଷୋଡ଼ଶ ସହସ୍ର ପତ୍ନୀ ଥିଲେ, ସେମାନେ କାଳକ୍ରମରେ ସରସ୍ୱତୀ ଜଳରେ ନିମଗ୍ନା ହେଲେ । ୨୫ । ସେମାନେ ତହିଁରେ ଶରୀର ପରିହାର ପୂର୍ବକ ସ୍ୱର୍ଗାରୋହଣ କଲେ । ସେମାନେ ସେଠାରେ ଅପ୍ସରା ହୋଇ ବାସୁଦେବଙ୍କ ସମୀପକୁ ଗମନ କରିଥିଲେ । ୨୬ । ସେହି ମହାସଂଗ୍ରାମରେ ଯେଉଁ ଘଟୋତ୍କଚ ପ୍ରଭୃତି ମହାରଥ ବୀରଗଣ ହତ ହୋଇଥିଲେ, ସେମାନେ ଦେବଗଣ ଓ ଯକ୍ଷଗଣଙ୍କୁ ପ୍ରାପ୍ତ ହେଲେ । ୨୭ । ହେ ରାଜନ୍ ! ଦୁର୍ଯ୍ୟୋଧନଙ୍କ ସହାୟକବୃନ୍ଦ ରାକ୍ଷସରୂପେ ପରିକୀର୍ତ୍ତିତ ହୁଅନ୍ତି । ତଥାପି ସେମାନେ କ୍ରମଶଃ ଉତ୍କୃଷ୍ଟ ଲୋକସମୂହ ପ୍ରାପ୍ତ ହୋଇଥିଲେ । ୨୮ ।

ସେହି ପୁରୁଷପ୍ରବରଗଣ ମହେନ୍ଦ୍ରଙ୍କ ଭବନରେ ଧୀମାନ୍ କୁବେରଙ୍କ ସଦନରେ ଏବଂ ବରୁଣଙ୍କ ନିକେତନରେ ପ୍ରବେଶ କରିଥିଲେ । ହେ ମହାଦ୍ୟୁତିମନ୍ ! ୨୯ । ହେ ଭାରତ ! ଆପଣଙ୍କ ନିକଟରେ କୁରୁ ଏବଂ ପାଣ୍ଡବଗଣଙ୍କର ସମସ୍ତ ଚରିତ ବିସ୍ତାର କ୍ରମରେ କଥିତ ହେଲା । ୩୦ ।

Digitized by srujanika@gmail.com

ସୌତି କହିଲେ—ହେ ଦ୍ୱିଜବରଗଣ ! ରାଜା ଜନମେଜୟ ଯଜ୍ଞକାର୍ଯ୍ୟ ମଧ୍ୟରେ ଏହା ଶ୍ରବଣ କରି ଅତିଶୟ ବିସ୍ମିତ ହେଲେ । ୩୧ ।

ଅନନ୍ତର ଯାଜକଗଣ ତାହାଙ୍କର ସେହି କାର୍ଯ୍ୟ ସମାପନ କଲେ । ଆସ୍ତିକ ମୁନି ଭୁଜଗଗଣଙ୍କୁ ମୋଚନ କରି ଅତିଶୟ ପ୍ରୀତ ହେଲେ । ୩୨ ।

ପରିଶେଷରେ ନୃପତି ସେହି ସମସ୍ତ ଦ୍ୱିଜାତିଗଣଙ୍କୁ ଦକ୍ଷିଣାଦାନ ଦ୍ୱାରା ପରିତୁଷ୍ଟ କରାଇଲେ । ସେମାନେ ଭୂପାଳକର୍ତ୍ତୃକ ପୂଜିତ ହୋଇ ଯଥାସ୍ଥାନକୁ ଗମନ କଲେ । ୩୩ । ମହାରାଜ ଜନମେଜୟ ବିପ୍ରଗଣଙ୍କୁ ବିଦାୟକରି ତକ୍ଷଶିଳାରୁ ପୁନଶ୍ଚ ହସ୍ତିନାପୁରରେ ଉପସ୍ଥିତ ହେଲେ । ୩୪ । ରାଜା ଜନମେଜୟଙ୍କ ସର୍ପଯଜ୍ଞରେ ବ୍ୟାସଦେବଙ୍କ ଆଜ୍ଞାନୁସାରେ ବୈଶମ୍ପାୟନ-କର୍ତ୍ତୃକ କୀର୍ତ୍ତିତ ଏହି ସମସ୍ତ ବିଷୟ ତୁମ୍ଭ ନିକଟରେ କୀର୍ତ୍ତିତ ହେଲା । ୩୫ ।

ଏହି ଇତିହାସ ଅତି ପବିତ୍ର ଏବଂ ଅତିଉତ୍କୃଷ୍ଟ । ହେ ବିପ୍ର ! ସତ୍ୟବାଦୀ ସର୍ବଜ୍ଞ ବିଧିଜ୍ଞ ଧର୍ମଜ୍ଞାନବାନ୍ ସାଧୁ ଅତୀନ୍ଦ୍ରିୟ ଏବଂ ପବିତ୍ର ତପସ୍ୟାଦ୍ୱାରା ଶୁଦ୍ଧଚିତ୍ତ ଐଶ୍ୱର୍ଯ୍ୟସମ୍ପନ୍ନ ସାଂଖ୍ୟଯୋଗବାନ୍ ଅନେକତନ୍ତ୍ରବିଶୁଦ୍ଧ କୃଷ୍ଣଦ୍ୱୈପାୟନ ମୁନି ଦିବ୍ୟଦୃଷ୍ଟି ଦ୍ୱାରା ଦର୍ଶନକରି ଲୋକରେ ପ୍ରସାର ନିମିତ୍ତ ମହାନୁଭବ ପାଣ୍ଡବଗଣଙ୍କର ଏବଂ ଅନ୍ୟାନ୍ୟ ପ୍ରଭୂତ ଧନ ଓ ତେଜଃସମ୍ପନ୍ନ କ୍ଷତ୍ରିୟଗଣଙ୍କର କୀର୍ତ୍ତି ବିସ୍ତାରକରି ଏହା ରଚନା କରିଅଛନ୍ତି । ୩୯ । ଯେଉଁ ବିଦ୍ୱାନ୍ ବ୍ୟକ୍ତି ସର୍ବଦା ଏହାର ପ୍ରତି ପର୍ବ ଶ୍ରବଣ କରନ୍ତି ସେ ପାପକ୍ଷୟ ଓ ସ୍ୱର୍ଗଜୟ କରି ବ୍ରହ୍ମସ୍ୱରୂପତାକୁ ପ୍ରାପ୍ତ ହୁଅନ୍ତି । ୪୦ । ଯେଉଁ ବ୍ୟକ୍ତି ସମାହିତ ହୋଇ କୃଷ୍ଣଦ୍ୱୈପାୟନଙ୍କ ବିରଚିତ ଏହି ସମସ୍ତ ବେଦ ଶ୍ରବଣ କରନ୍ତି, ତାହାଙ୍କର ବ୍ରହ୍ମହତ୍ୟାଦି ଜନିତ କୋଟିସଂଖ୍ୟକ ପାପ ନଷ୍ଟ ହୁଏ । ୪୧ । ଯେ ଶ୍ରାଦ୍ଧକାଳରେ ବ୍ରାହ୍ମଣଗଣଙ୍କୁ ଅତିଅଳ୍ପ ଏକ ପାଦ ଶ୍ରବଣ କରାନ୍ତି, ତାହାଙ୍କ ପିତୃଗଣଙ୍କ ନିକଟରେ ଅକ୍ଷୟ ଅନ୍ନ-ପାନ ଉପସ୍ଥିତ ହୁଏ । ୪୨ ।

ଦିବସରେ ଇନ୍ଦ୍ରିୟ ଅଥବା ମନଦ୍ୱାରା ଯେଉଁ ପାପକର୍ମ କରାଯାଇଥାଏ, ସାୟଂ-ସନ୍ଧ୍ୟା ସମୟରେ ମହାଭାରତ ପାଠକଲେ ମନୁଷ୍ୟ ସେହି ପାପରୁ ମୁକ୍ତ ହୁଅନ୍ତି । ୪୩ । ବ୍ରାହ୍ମଣ ସ୍ତ୍ରୀଗଣରେ ପରିବୃତ ହୋଇ ରଜନୀରେ ଯେଉଁ

Digitized by srujanika@gmail.com

ପାପ କରନ୍ତି, ପ୍ରାତଃ-ସନ୍ଧ୍ୟା କାଳରେ ମହାଭାରତ କୀର୍ତ୍ତନ କଲେ ସେହି ପାପରୁ ମୁକ୍ତ ହୁଅନ୍ତି । ୪୪ ।

ଭରତବଂଶୀୟଗଣଙ୍କର ସୁମହତ୍ ଜନ୍ମବୃତ୍ତାନ୍ତ ଏଥିରେ ବର୍ଣ୍ଣିତ ହୋଇଅଛି । ଏହି ନିମିତ୍ତ ଏହାକୁ ଭାରତ ବୋଲାଯାଏ । ଏବଂ ମହତ୍ତ୍ୱ ଓ ଭାରବତ୍ତ୍ୱ ହେତୁରୁ ଏହା ମହାଭାରତ ନାମରେ କୀର୍ତ୍ତିତ ହୋଇଅଛି । ୪୫ । ହେ ଭରତଶ୍ରେଷ୍ଠ ! ଯେଉଁ ବ୍ୟକ୍ତି ଏହି ମହାଭାରତର ନିରୁକ୍ତ ଅବଗତ ହୁଅନ୍ତି, ସେ ଧର୍ମ ଅର୍ଥ କାମ ଓ ମୋକ୍ଷ ବିଷୟରେ ସର୍ବପାପରୁ ବିମୁକ୍ତ ହୁଅନ୍ତି । ଯାହା ଏଥିରେ ଅଛି, ତାହା ଅନ୍ୟତ୍ର ଅଛି, ଏବଂ ଏଥିରେ ଯାହା ନାହିଁ, ତାହା କୌଣସିଠାରେ ମଧ୍ୟ ନାହିଁ ।

ଏହି ଜୟ ନାମକ ଇତିହାସ ମୁମୁକ୍ଷୁ ବ୍ୟକ୍ତିମାନଙ୍କର ଶ୍ରୋତବ୍ୟ । ବ୍ରାହ୍ମଣ, କ୍ଷତ୍ରିୟ ଓ ଗର୍ଭିଣୀ ରମଣୀଗଣଙ୍କର ଏହା ଶ୍ରବଣ କରିବାର ଉଚିତ । ଏହା ଶ୍ରବଣ କଲେ ସ୍ୱର୍ଗକାମ ମାନବ ସ୍ୱର୍ଗଲାଭ କରନ୍ତି, ଜୟାଭିଳାଷୀ ଜୟପ୍ରାପ୍ତ ହୁଅନ୍ତି, ଗର୍ଭିଣୀ ପୁତ୍ରଲାଭ କରନ୍ତି ଅଥବା ବହୁଭାଗ୍ୟବତୀ କନ୍ୟା ଲାଭ କରନ୍ତି ।

ନିତ୍ୟସିଦ୍ଧ ମୋକ୍ଷସ୍ୱରୂପ ସର୍ବଶକ୍ତିମାନ୍ କୃଷ୍ଣଦ୍ୱୈପାୟନ ଧର୍ମକାମନା-ବଶତଃ ଏହି ଭାରତ ସନ୍ଦର୍ଭ କରିଅଛନ୍ତି । ସେ ବେଦଚତୁଷ୍ଟୟରୁ ପୃଥଗ୍‌ଭୂତ ଅନ୍ୟ ଷଷ୍ଟିଶତସହସ୍ର ସଂହିତା ରଚନା କରିଥିଲେ । ତନ୍ମଧ୍ୟରୁ ତ୍ରିଂଶତ୍‌ଲକ୍ଷ ଦେବଲୋକରେ, ପଞ୍ଚଦଶଲକ୍ଷ ପିତୃଲୋକରେ, ଚତୁର୍ଦ୍ଦଶଲକ୍ଷ ଯକ୍ଷଲୋକରେ ପ୍ରତିଷ୍ଠିତ ହୋଇ ରହିଅଛି ଏବଂ ଏକଲକ୍ଷ ମାତ୍ର ମନୁଷ୍ୟ-ଲୋକରେ ପ୍ରଚଳିତ ହେଉଅଛି । ୫୫ ।

ନାରଦ ଏହା ଦେବଗଣଙ୍କୁ ଶ୍ରବଣ କରାଇଥିଲେ । ଶୁକଦେବ ଯକ୍ଷ ଓ ରାକ୍ଷସଗଣଙ୍କୁ ଶ୍ରବଣ କରାଇଥିଲେ ଏବଂ ବୈଶମ୍ପାୟନ ମାନବଗଣଙ୍କୁ ଶ୍ରବଣ କରାଇଥିଲେ । ୫୬ । ହେ ଶୌନକ ! ଯେଉଁ ବ୍ୟକ୍ତି ବ୍ରାହ୍ମଣଗଣଙ୍କୁ ଅଗ୍ରସର କରି ଏହି ବେଦ ସଦୃଶ ପବିତ୍ର ମହାର୍ଥ ବ୍ୟାସୋକ୍ତ ଇତିହାସ ଶ୍ରବଣ କରନ୍ତି ସେହି ନର ଇହଲୋକରେ ସମସ୍ତ କାମନା ଓ କୀର୍ତ୍ତିଲାଭ କରି ପରିଶେଷରେ ପରମସିଦ୍ଧି ପ୍ରାପ୍ତ ହୁଅନ୍ତି, ଏହି ବିଷୟରେ ଆମ୍ଭର କୌଣସି ସଂଶୟ ନାହିଁ । ୫୮ ।

Digitized by srujanika@gmail.com

ପବିତ୍ର ଭାରତର ସମୁଦାୟ ଅଂଶ ପାଠ କରିବାର ଦୁଃସାଧ୍ୟ । ଯେଉଁ ବ୍ୟକ୍ତି ଏହାର ଏକ ପାଦ ମାତ୍ର ପାଠକରନ୍ତି, ସେ ପରମ ସିଦ୍ଧି ପ୍ରାପ୍ତ ହୁଅନ୍ତି । ଯେଉଁ ବ୍ୟକ୍ତି ପରମ ଭକ୍ତି ଓ ଶ୍ରଦ୍ଧା ପୂର୍ବକ ଏହା ଶ୍ରବଣ କରନ୍ତି, ସେହି ଶ୍ରଦ୍ଧାଶୀଳ ମାନବଙ୍କର ସମସ୍ତ ଅଶେଷ ପାପ ବିଧୂତ ହୁଏ । ଧର୍ମାତ୍ମା ଭଗବାନ୍ ମହର୍ଷି ବ୍ୟାସଦେବ ପୂର୍ବକାଳରେ ଶ୍ଳୋକଚତୁଷ୍ଟୟଦ୍ୱାରା ଏହି ସଂହିତା ରଚନା କରି ନିଜ ପୁତ୍ର ଶୁକଦେବଙ୍କୁ ଅଧ୍ୟୟନ କରାଇଥିଲେ । ୬୦ ।

ଏହି ମହାଭାରତ ମଧ୍ୟରେ କୀର୍ତ୍ତିତ ହୋଇଅଛି ଯେ, ଏହି ସଂସାର ମଧ୍ୟରେ ମନୁଷ୍ୟଗଣ ଅସଂଖ୍ୟ ମାତାପିତା ଓ ସହସ୍ର ସହସ୍ର ପୁତ୍ରକଳତ୍ରଙ୍କ ସହିତ ମିଳିତ ହୋଇ ଥାଆନ୍ତି ଓ ସେମାନଙ୍କ ବିୟୋଗରେ ଦୁଃଖିତ ହେଉଥାଆନ୍ତି । କେହି ପ୍ରାପ୍ତ ହୋଇଅଛନ୍ତି, କେହି ଅପରେ ପ୍ରାପ୍ତ ହେବେ । ଏହି ସଂସାରରେ ସହସ୍ର ସହସ୍ର ହର୍ଷର କାରଣ ଓ ଶତ ଶତ ଭୟର କାରଣ ବିଦ୍ୟମାନ ଅଛି । ତାହାସବୁ ନିରନ୍ତର ମୂଢ଼ବ୍ୟକ୍ତିମାନଙ୍କୁ ଆକ୍ରମଣ କରେ, ପଣ୍ଡିତ ବ୍ୟକ୍ତିମାନଙ୍କ ନିକଟକୁ କଦାପି ଆଗମନ କରିପାରେ ନାହିଁ । ଆମ୍ଭେ ଊର୍ଦ୍ଧ୍ୱବାହୁ ହୋଇ ବୃଥା ରୋଦନ କରୁଅଛୁଁ, କେହି ଆମ୍ଭର ବାକ୍ୟ ଶ୍ରବଣ କରୁନାହାନ୍ତି ।

ଧର୍ମୋପାର୍ଜନ ନିମିତ୍ତ ଅର୍ଥ ଓ କାମରେ ଲିପ୍ତ ହେବା ମନୁଷ୍ୟର କର୍ତ୍ତବ୍ୟ । କାମ, ଭୟ, ଲୋଭ ଅବା ଜୀବନରକ୍ଷା ନିମିତ୍ତ ଧର୍ମ ପରିତ୍ୟାଗ କରିବାର କଦାପି ଉଚିତ ନୁହେ । ଧର୍ମ ନିତ୍ୟ, ସୁଖ ଓ ଦୁଃଖ ଅନିତ୍ୟ; ଜୀବ ନିତ୍ୟ, ଜୀବର ହେତୁ ଶରୀରାଦି ଅନିତ୍ୟ । ଯେ ପ୍ରାତଃକାଳରେ ଗାତ୍ରୋତ୍ଥାନ ପୂର୍ବକ ପବିତ୍ରଚିତ୍ତରେ ମହାଭାରତର ସାରଭୂତ ଉପଦେଶ 'ଭାରତସାବିତ୍ରୀ' ପାଠ କରନ୍ତି, ସେ ସମ୍ପୂର୍ଣ୍ଣ ମହାଭାରତ ଅଧ୍ୟୟନର ଫଳ ପ୍ରାପ୍ତ ହୋଇ ପରମବ୍ରହ୍ମ ଲାଭ କରନ୍ତି । ୬୫ ।

ସର୍ବୈଶ୍ୱର୍ଯ୍ୟଶାଳୀ ସମୁଦ୍ର ଓ ହିମାଳୟ ଶୈଳ ଯେଉଁପରି ରତ୍ନନିଧି ବୋଲି ବିଖ୍ୟାତ, ମହାଭାରତ ତାଦୃଶ ଅଟେ । ୬୬ । ବିଦ୍ୱାନ୍ ଜନ କୃଷ୍ଣ-ଦ୍ୱୈପାୟନଙ୍କ ବିରଚିତ ଏହି ବେଦ ଶ୍ରବଣ କରି ଅର୍ଥବୋଧ କରନ୍ତି ।

ଯେଉଁ ବ୍ୟକ୍ତି ସୁସମାହିତ ହୋଇ ଏହି ମହାଭାରତ ଆଖ୍ୟାନ ପାଠ କରନ୍ତି ସେ ପରମ ସିଦ୍ଧି ଲାଭ କରନ୍ତି, ଏହି ବିଷୟରେ ଆମ୍ଭର

Digitized by srujanika@gmail.com

ସଂଶୟ ନାହିଁ । ଯେଉଁ ବ୍ୟକ୍ତି କୃଷ୍ଣଦ୍ୱୈପାୟନଙ୍କର ଓଷ୍ଠପୁଟ-ବିନିଃସୃତ ଅପ୍ରମେୟ, ପୁଣ୍ୟ, ପବିତ୍ର, ପାପହର ଓ କଲ୍ୟାଣକର ଏହି ମହାଭାରତ ପାଠ ଅବା ଶ୍ରବଣ କରନ୍ତି, ତାହାଙ୍କର ପୁଷ୍କରତୀର୍ଥ-ସଲିଳଦ୍ୱାରା ଅଭିଷେକର ପ୍ରୟୋଜନ କି ? ୬୯ ।

---

# ଷଷ୍ଠ ଅଧ୍ୟାୟ

## ଫଳଶ୍ରୁତି

ଜନମେଜୟ କହିଲେ—ଭଗବନ୍ ! ପଣ୍ଡିତଗଣ କେଉଁ ପ୍ରକାର ବିଧି ଅନୁସାରେ ମହାଭାରତ ଶ୍ରବଣ କରିବେ ? ଏହା ଶ୍ରବଣ କଲେ କେଉଁ ଫଳ ହୁଏ, ଏବଂ ପାରଣ ସମୟରେ କେଉଁ ଦେବତାଙ୍କୁ ପୂଜା କରିବାକୁ ହେବ ? ହେ ଭଗବନ୍ ! ପ୍ରତି ପର୍ବ ସମାପ୍ତ ହେଲେ କେଉଁ ଦ୍ରବ୍ୟ ଦାତବ୍ୟ, ଏବଂ ଏହାର ପାଠକ କି ପ୍ରକାର ଅଭିଲଷଣୀୟ, ତାହା ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨ ।

ବୈଶମ୍ପାୟନ କହିଲେ—ହେ ଭରତବଂଶଧର ! ରାଜେନ୍ଦ୍ର ! ଆପଣ ଆମ୍ଭଙ୍କୁ ଯାହା ପଚାରୁଅଛନ୍ତି, ତଦ୍‌ବିଷୟରେ ଏହାର ବିଧି ଏବଂ ଏହି ଭାରତ ଶ୍ରବଣ କଲେ ଯେଉଁ ଫଳ ହୁଏ, ତାହା ଶ୍ରବଣ କରିବା ହେଉନ୍ତୁ । ୩ ।

ହେ ମହୀପାଳ ! ସୁରଲୋକବାସୀ ଦେବଗଣ କ୍ରୀଡ଼ା କରିବା ନିମିତ୍ତ ଭୂମଣ୍ଡଳକୁ ଗମନ କରିଥିଲେ । ସେଠାରେ କାର୍ଯ୍ୟ ଶେଷକରି ପୁନଶ୍ଚ ସ୍ୱର୍ଗକୁ ଗମନ କରିଅଛନ୍ତି । ୪ ।

ହେ ଭାରତ ! ଋଷି ଓ ଦେବଗଣଙ୍କର ବସୁଧାତଳରେ ସମ୍ଭବ ବିଷୟରେ ଆପଣଙ୍କୁ ଯାହା ସଂକ୍ଷେପରେ କହୁଅଛୁଁ, ତାହା ଶ୍ରବଣ କରିବା ହେଉନ୍ତୁ ।୫।

ହେ ଭାରତ ! ଯେଉଁ ରୁଦ୍ରଗଣ, ସାଧ୍ୟଗଣ, ଶାଶ୍ୱତ ବିଶ୍ୱେଦେବଗଣ, ଆଦିତ୍ୟଗଣ, ଅଶ୍ୱିନୀକୁମାରଯୁଗଳ, ଲୋକପାଳବୃନ୍ଦ, ମହର୍ଷିନିକର, ଗୁହ୍ୟକଗଣ, ଗନ୍ଧର୍ବଗଣ, ନାଗଗଣ, ବିଦ୍ୟାଧରନିକର, ସିଦ୍ଧସମୂହ, ଧର୍ମସମୂହ, ସ୍ୱୟମ୍ଭୂ, ମୁନିବର କାତ୍ୟାୟନ, କାୟୁଗୋଚର ଗିରି, ସାଗର ଓ

Digitized by srujanika@gmail.com

ଚରିତସମୂହ, ଅପ୍‌ସରାଗଣ, ଗ୍ରହଗଣ, ସମ୍ବତ୍ସରସମୂହ, ଅୟନସମୂହ, ଋତୁନିକର ଓ ସୁରାସୁର ସହ ସ୍ଥାବର ଜଙ୍ଗମ ଜଗତ୍ ଏହି ଭାରତରେ ଏକ ସ୍ଥାନରେ ସୁଦୃଶ୍ୟ ହୋଇଥିଲେ, ସେହି ସମସ୍ତଙ୍କ ନାମ ଓ କର୍ମାନୁକୀର୍ତ୍ତନ ନିବନ୍ଧନ ପ୍ରତିଷ୍ଠା ଶ୍ରବଣ କଲେ ନର ଘୋରତର ପାପ କରିଥିଲେ ସୁଦ୍ଧା ତତ୍‌କ୍ଷଣାତ୍ ମୁକ୍ତ ହୁଅନ୍ତି । ୧୦ ।

ହେ ଭରତ ! ଯଥାବିଧି ଆନୁପୂର୍ବିକ କ୍ରମେ ଏହି ଇତିହାସ ଶ୍ରବଣ କରି, ସଂଯତଚିତ୍ତ ଓ ଶୁଚି ହୋଇ ଭାରତର ପାରଗାମୀ ହୋଇ ଭାରତ ଶ୍ରବଣାନନ୍ତର ଶ୍ରଦ୍ଧାପୂର୍ବକ ସେମାନଙ୍କ ଶ୍ରାଦ୍ଧ ଓ ଦାନ କରିବା ଉଚିତ । ୧୨ ।

ଭାରତ ଶ୍ରବଣ କରି ବ୍ରାହ୍ମଣଗଣଙ୍କୁ ଭକ୍ତିପୂର୍ବକ ଯଥାଶକ୍ତି ମହାଦାନ, ବିବିଧ ରତ୍ନ, କାଂସ୍ୟ, ଦୋହାଗାଭୀ, କାମଗୁଣସମ୍ପନ୍ନ ସୁନ୍ଦରରୂପେ ଅଳଂକୃତା କନ୍ୟାସମୂହ, ବହୁବିଧ ଯାନସମୂହ, ବିଚିତ୍ର ଭବନସମୂହ, ଭୂମି, ବସନ, କାଞ୍ଚନ, ତୁରଙ୍ଗ, ମତ୍ତମାତଙ୍ଗ ପ୍ରଭୃତି ବାହନ, ଶଯ୍ୟା, ଶିବିକା, ଅଳଂକୃତ ରଥ, ଏବଂ ଗୃହରେ ଯେଉଁ ଉତ୍କୃଷ୍ଟ ବସ୍ତୁ ଓ ମୂଲ୍ୟବାନ୍ ଧନ ଥାଏ ତତ୍‌ସମୁଦାୟ ଦ୍ୱିଜାତିଗଣଙ୍କୁ ଦାନ କରିବାର ଉଚିତ । ୧୬ । ଅନ୍ୟ କଥା ଅଧିକ ନୁହେ, ଆତ୍ମା, ଦାରା ଓ ପୁତ୍ରଗଣଙ୍କୁ ପରମ ଶ୍ରଦ୍ଧାପୂର୍ବକ ଦାନ କରି କରି କ୍ରମେ କ୍ରମେ ତଦ୍‌ବିଷୟରେ ପାରଗ ହେବେ ।

ଶକ୍ତି ଅନୁସାରେ ସୁମନା, ହୃଷ୍ଟ, ଶୁଶ୍ରୂଷୁ, ବିକଳ୍ପବର୍ଜ୍ଜିତ, ସତ୍ୟ ଓ ସରଳତାନିରତ, ଦାନ୍ତ, ଶୁଚି-ଶୌଚ ସମନ୍ୱିତ, ଶ୍ରଦ୍ଧଧାନ ଏବଂ ଜିତକ୍ରୋଧ ହୋଇ ମାନବ ଯେଉଁ ପ୍ରକାର ସିଦ୍ଧିଲାଭ କରନ୍ତି, ତାହା ଶ୍ରବଣ କରିବା ହେଉନ୍ତୁ । ୧୮ ।

ଶୁଚି, ଶୀଳସମନ୍ୱିତ, ସଦାଚାର, ଶୁକ୍ଳବାସା, ଜିତେନ୍ଦ୍ରିୟ, ସଂସ୍କାରସମ୍ପନ୍ନ, ସର୍ବଶାସ୍ତ୍ରଜ୍ଞ, ଶ୍ରଦ୍ଧାଳୁ, ଅସୂୟାଶୂନ୍ୟ, ରୂପବାନ୍, ସୌନ୍ଦର୍ଯ୍ୟଶାଳୀ, ସତ୍ୟବାଦୀ, ଦାନ ଓ ସମ୍ମାନଶୀଳ ବାଚକ ନିଯୁକ୍ତ କରିବା ବିଧେୟ । ୨୦ ।

ବାଚକ ସୁନ୍ଦର ଆସନରେ ଉପବିଷ୍ଟ, ସ୍ୱସ୍ଥ ଓ ସମାହିତ ହୋଇ, ବିଳମ୍ବ ନକରି, ଅଦ୍ରୁତ ଧୀର ଉର୍ଜ୍ଜସ୍ୱଳ ଅସଂସକ୍ତ ଅକ୍ଷର ଓ ପଦସମନ୍ୱିତ, ସ୍ୱର ଏବଂ ଭାବଯୁକ୍ତ, ତ୍ରିଷଷ୍ଟିବର୍ଣ୍ଣାନ୍ୱିତ କଣ୍ଠ ତାଳୁ ପ୍ରଭୃତି ଅଷ୍ଟ ସ୍ଥାନ ସମୀରିତ ବାକ୍ୟ ପାଠ କରିବେ । ୨୨ ।

Digitized by srujanika@gmail.com

ନାରାୟଣ, ନରୋତ୍ତମ, ନର ଏବଂ ସରସ୍ୱତୀ ଦେବୀଙ୍କୁ ନମସ୍କାର କରି ଜୟ ନାମକ ଗ୍ରନ୍ଥ କୀର୍ତ୍ତନ କରିବେ । ୨୩ । ହେ ଭରତବଂଶପ୍ରଦୀପ ମହାରାଜ ! ନିୟମସ୍ଥ ଶୁଚି ଶ୍ରୋତା ଈଦୃଶ ପାଠକଙ୍କ ପ୍ରମୁଖରୁ ଭାରତ ଶ୍ରବଣ କଲେ ଫଳଲାଭ କରନ୍ତି । ୨୪ ।

ମନୁଷ୍ୟ ପ୍ରଥମତଃ ଭାରତର ପାର ପ୍ରାପ୍ତ ହୋଇ ଇଚ୍ଛାନୁସାରେ ଦ୍ୱିଜଗଣଙ୍କର ତୃପ୍ତିସାଧନ କରିବେ । ତାହାହେଲେ ତାହାଙ୍କର ଅଗ୍ନିଷ୍ଟୋମ ଯଜ୍ଞର ଫଳଲାଭ ହେବ । ୨୫ । ସେ ପରିଣାମରେ ଅପ୍‌ସରୋଗଣସଂକୁଳ ସୁମହତ୍ ବିମାନ ଲାଭ କରନ୍ତି ଓ ପ୍ରହୃଷ୍ଟ ଏବଂ ସମାହିତ ହୋଇ ଦେବଗଣଙ୍କ ସହିତ ସୁରଲୋକକୁ ଗମନ କରନ୍ତି । ୨୬ ।

ଯେଉଁ ବ୍ୟକ୍ତି ଦ୍ୱିତୀୟ ପାରାୟଣ ସମାପନ କରନ୍ତି ତାହାଙ୍କର ଅତିରାତ୍ର ଯଜ୍ଞର ସମସ୍ତ ଫଳ ଲାଭହୁଏ । ସେ ରତ୍ନମୟ ଦିବ୍ୟ ବିମାନରେ ଆରୋହଣ କରନ୍ତି, ଦିବ୍ୟମାଲ୍ୟାମ୍ବରଧର, ଦିବ୍ୟଗନ୍ଧବିଭୂଷିତ ଏବଂ ନିରନ୍ତର ଦିବ୍ୟଗନ୍ଧ ଧାରଣ କରି ଦେବଲୋକରେ ବସତି କରନ୍ତି । ୨୮ ।

ଯେଉଁ ବ୍ୟକ୍ତି ତୃତୀୟ ପାରାୟଣ ସମାପନ କରନ୍ତି ତାହାଙ୍କର ଦ୍ୱାଦଶାହ ଯଜ୍ଞର ଫଳ ଲାଭ ହୁଏ । ସେ ଦେବତାଙ୍କ ତୁଲ୍ୟ ତେଜସ୍ୱୀ ହୋଇ ସହସ୍ର ସମ୍ବତ୍ସର ପର୍ଯ୍ୟନ୍ତ ଦେବଲୋକରେ ନିବାସ କରନ୍ତି । ୨୯ ।

ଯେଉଁ ବ୍ୟକ୍ତି ଚତୁର୍ଥ ପାରାୟଣ ସମାପନ କରନ୍ତି, ସେ ବାଜପେୟ ଯଜ୍ଞର ଏବଂ ଯେଉଁ ବ୍ୟକ୍ତି ପଞ୍ଚମ ପାରାୟଣ ସମାପନ କରନ୍ତି ସେ ତହିଁର ଦ୍ୱିଗୁଣ ଫଳ ପ୍ରାପ୍ତ ହୁଅନ୍ତି । ସେହି ମାନବ ଉଦିତ ଆଦିତ୍ୟ ସଙ୍କାଶ ଜ୍ୱଳନ୍ତ ଅନଳୋପମ ବିମାନରେ ଦେବଗଣଙ୍କ ସହିତ ଆରୋହଣ ପୂର୍ବକ ସ୍ୱର୍ଗକୁ ଗମନ କରନ୍ତି ଏବଂ ସେଠାରେ ଅୟୁତ ବର୍ଷ ପର୍ଯ୍ୟନ୍ତ ଇନ୍ଦ୍ରଙ୍କ ଭବନରେ ପ୍ରମୋଦ ପ୍ରାପ୍ତ ହୋଇ ରହନ୍ତି । ୩୧ ।

ଷଷ୍ଠ ପାରାୟଣରେ ଦ୍ୱିଗୁଣ ଏବଂ ସପ୍ତମ ପାରାୟଣ ସମାପନକର୍ତ୍ତା ତ୍ରିଗୁଣ ଫଳ ପ୍ରାପ୍ତ ହୁଅନ୍ତି । ସେ କୈଳାସ ଶିଖର ସଦୃଶ ବୈଦୂର୍ଯ୍ୟ ମଣିର ବେଦିକା ସମନ୍ୱିତ, ବହୁବିଧ ମଣିଖଚିତ ବିଦ୍ରୁମବିଭୂଷିତ ଓ ସୁନ୍ଦର ଅପ୍‌ସରୋଗଣସମନ୍ୱିତ କାମଗାମୀ ବିମାନରେ ଅଧିଷ୍ଠାନ କରି ଦ୍ୱିତୀୟ ଭାସ୍କର ସଦୃଶ ସର୍ବଲୋକରେ ବିଚରଣ କରନ୍ତି । ୩୩ ।

Digitized by srujanika@gmail.com

ଅଷ୍ଟମ ପାରଣରେ ରାଜସୂୟ ଯଜ୍ଞର ଫଳ ଲାଭ ହୁଏ । ୩୪ । ଚନ୍ଦ୍ରକିରଣ ପ୍ରଭାକାଶ ମନୋଜବ ହଂସଯୁକ୍ତ ଚନ୍ଦ୍ରୋଦୟନିଭ ରମଣୀୟ ବିମାନରେ ଅଧିରୋହଣ କରନ୍ତି । ସେହି ବିମାନ ଚନ୍ଦ୍ରାପେକ୍ଷା କାନ୍ତିରେ ମୁଖସମନ୍ୱିତ ବରସ୍ତ୍ରୀଗଣଦ୍ୱାରା ସେବ୍ୟମାନ । ସେ ସୁନ୍ଦରୀ ନାରୀଗଣଙ୍କ ଅଙ୍କରେ ସୁଖରେ ଶୟନ କରି ମେଖଳାସମୂହର ନିନାଦ ଏବଂ ନୂପୁରବୃନ୍ଦର ନିଃସ୍ୱନଦ୍ୱାରା ବିବୋଧିତ ହୁଅନ୍ତି । ୩୬ ।

ହେ ଭରତ ! ନବମ ପାରଣରେ ଅଶ୍ୱମେଧ ଯଜ୍ଞର ଫଳ ଲାଭହୁଏ । ୩୭ । କାଞ୍ଚନସ୍ତମ୍ଭସମନ୍ୱିତ, ବୈଦୂର୍ଯ୍ୟନିର୍ମିତ ବେଦିଯୁକ୍ତ, ସ୍ୱର୍ଣ୍ଣମୟ ଦିବ୍ୟ ଗବାକ୍ଷଦ୍ୱାରା ସର୍ବତୋଭାବରେ ପରିବୃତ, ଦ୍ୟୁଲୋକଚାରୀ ଗନ୍ଧର୍ବ ଏବଂ ଅପ୍‌ସରାଗଣସେବିତ ବିମାନରେ ଅଧିଷ୍ଠାନ କରି ପରମ ଶ୍ରୀସମ୍ପନ୍ନ ମାନବ ଦିବ୍ୟମାଲ୍ୟ ଧାରଣ ପୂର୍ବକ ଦିବ୍ୟଚନ୍ଦନଦ୍ୱାରା ବିଭୂଷିତ ହୋଇ ଦେବଲୋକରେ ଅନ୍ୟ ଏକ ଦେବସଦୃଶ ଦେବଗଣଙ୍କ ସହିତ ଆନନ୍ଦିତ ହୋଇ ରହନ୍ତି । ୪୦ ।

ଯେଉଁ ବ୍ୟକ୍ତି ଦଶମ ପାରାୟଣ ସମାପନ କରି ବ୍ରାହ୍ମଣଗଣଙ୍କ ପୂଜା କରନ୍ତି, ସେ କିଂକିଣୀଜାଲଜଡ଼ିତ ଧ୍ୱଜପତାକାଶୋଭିତ ରତ୍ନମୟ ବେଦି, ବୈଦୂର୍ଯ୍ୟମୟ ତୋରଣ ଓ ପ୍ରବାଳମୟ ବଳଭୀସଂଯୁକ୍ତ ଅପ୍‌ସରା ଓ ଗନ୍ଧର୍ବଗଣରେ ସମାକୀର୍ଣ୍ଣ ବିମାନରେ ଆରୋହଣ ପୂର୍ବକ ସୁବର୍ଣ୍ଣବିଭୂଷିତ ଅନଳବର୍ଣ୍ଣ ଦିବ୍ୟମୁକୁଟ, ଦିବ୍ୟଚନ୍ଦନ ଓ ଦିବ୍ୟମାଲ୍ୟରେ ବିଭୂଷିତ ହୋଇ ପରମସୁଖରେ ଦିବ୍ୟଲୋକସମୂହରେ ବିଚରଣ କରନ୍ତି ଏବଂ ଏକବିଂଶତି ସହସ୍ର ବର୍ଷ ଗନ୍ଧର୍ବଗଣଙ୍କ ସହିତ ଇନ୍ଦ୍ରାଳୟରେ ବାସକରି ଇନ୍ଦ୍ରଙ୍କ ସହିତ ପ୍ରମୋଦ ପ୍ରାପ୍ତହୁଅନ୍ତି । ଦିବ୍ୟ ଯାନ ଓ ବିମାନସମୂହରେ ଦିବ୍ୟସ୍ତ୍ରୀଗଣରେ ପରିବୃତ ହୋଇ ବିବିଧ ଲୋକରେ ଅମର ସଦୃଶ ବସତି କରନ୍ତି ।

ହେ ରାଜନ୍ ! ଅନନ୍ତର ସେ ସୂର୍ଯ୍ୟଙ୍କ ସଦନରେ, ପରେ ଚନ୍ଦ୍ରଲୋକରେ ଓ ଶିବଙ୍କ ଭବନରେ ବାସକରି ବିଷ୍ଣୁଙ୍କ ସମାନ ଲୋକ ପ୍ରାପ୍ତ ହୁଅନ୍ତି । ହେ ମହାରାଜ ! ଏହି ବିଷୟରେ ବିଚାରଣା କରିବାର ଉଚିତ ନୁହେଁ । ୪୯ । ଏହା ଏହିରୂପେ ଶ୍ରଦ୍ଧାନ ହୋଇ ଶୁଣିବାର କର୍ତ୍ତବ୍ୟ । ଆମ୍ଭର ଗୁରୁ ଏହିପ୍ରକାର କହିଅଛନ୍ତି ।

Digitized by srujanika@gmail.com

ମନେ ମନେ ଯାହା ଇଚ୍ଛା ହେବ ତାହା ବାଚକଙ୍କୁ ଦାନକରିବେ । ୫୦ । ବିଶେଷତଃ ହସ୍ତୀ, ଅଶ୍ୱ, ରଥ, ଯାନ ଏବଂ ବାହନସମୂହ, କଟକ, କୁଣ୍ଡଳ, ବ୍ରହ୍ମସୂତ୍ର ଓ ବିଚିତ୍ର ବସ୍ତ୍ର ଏବଂ ଗନ୍ଧ ଦାନ କରିବେ ଓ ତାହାଙ୍କୁ ଦେବ ସଦୃଶ ପୂଜା କରିବେ । ତାହାହେଲେ ବିଷ୍ଣୁଲୋକ ଲାଭ ହୁଏ । ୫୨ ।

ହେ ରାଜନ୍ ! ଅନନ୍ତର ପ୍ରତି ପର୍ବ ପାଠରେ ବିପ୍ରବରଙ୍କୁ ଯାହା ଦାତବ୍ୟ ତାହା କହୁଅଛୁଁ । ୫୩ । ହେ ଭରତଶ୍ରେଷ୍ଠ ! ରାଜନ୍ ! କ୍ଷତ୍ରିୟଗଣଙ୍କର ଜାତି, ଦେଶ, ସତ୍ୟ, ମାହାତ୍ମ୍ୟ ଓ ଧର୍ମବୃତ୍ତି ବିଜ୍ଞାତ ହୋଇ ଏହା ଶ୍ରବଣ କରିବା ପାଇଁ ପ୍ରଥମତଃ ଦ୍ୱିଜଗଣଙ୍କୁ ସ୍ୱସ୍ତିବାଚନ କରାଇ ପରିଶେଷରେ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେବାର ବିଧେୟ । ପର୍ବ ସମାପ୍ତ ହେଲା ଉତ୍ତାରେ ସ୍ୱୀୟ ଶକ୍ତି ଅନୁସାରେ ବିପ୍ରଗଣଙ୍କୁ ପୂଜା କରିବାର ଉଚିତ । ୫୫ ।

ହେ ରାଜନ୍ ! ଆଦିପର୍ବ ପାଠ ସମୟରେ ବାଚକଙ୍କୁ ବସ୍ତ୍ର ଓ ଗନ୍ଧଯୁକ୍ତ କରି ପ୍ରଥମତଃ ତାହାଙ୍କୁ ବିଧିପୂର୍ବକ ଉତ୍ତମ ମଧୁଯୁକ୍ତ ପାୟସ ଭୋଜନ କରାଇବାର ବିଧେୟ । ୫୬ ।

ହେ ରାଜନ୍ ! ଅନନ୍ତର ଆସ୍ତିକ ପର୍ବରେ ପ୍ରଚୁର ଫଳମୂଳ ଭୋଜନ ଓ ମଧୁଘୃତଯୁକ୍ତ ପାୟସ ଭୋଜନ କରାଇବାର ବିଧେୟ । ୫୭ । ସଭାପର୍ବ ପ୍ରାରମ୍ଭରେ ବ୍ରାହ୍ମଣଙ୍କୁ ଘୃତପାକ ପିଷ୍ଟକ, ମୋଦକାଦି ଭୋଜନ ଦାନ ପୂର୍ବକ କ୍ଷୀରପାନ କରାଇବେ । ୫୮ । ବନପର୍ବରେ ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ଫଳମୂଳ ଭୋଜନ ଦେଇ ତୃପ୍ତ କରାଇବେ ଏବଂ ଆରଣ୍ୟକ ପର୍ବ ଆରମ୍ଭରେ ଜଳପୂର୍ଣ୍ଣ ଘଟ ଦାନ କରିବେ । ୫୯ । ଏହା ବ୍ୟତୀତ ଭୋଜନେଚ୍ଛୁକ ବ୍ରାହ୍ମଣଙ୍କୁ ଉତ୍ତମ ବନ୍ୟ ଫଳମୂଳ ଓ ସର୍ବଗୁଣସମ୍ପନ୍ନ ଅଭିଳଷିତ ଅନ୍ନ ଦାନ କରିବେ । ୬୦ ।

ବିରାଟ ପର୍ବ ପାରାୟଣ ସମାପନ କରି ବିବିଧ ବସ୍ତ୍ରଦାନ ତଥା ଉଦ୍ୟୋଗ ପର୍ବରେ ବ୍ରାହ୍ମଣଙ୍କୁ ଚନ୍ଦନ ଓ ପୁଷ୍ପମାଳାରେ ଅଲଂକୃତ କରି ସର୍ବଗୁଣସମନ୍ୱିତ ଉତ୍ତମ ଭୋଜନ କରାଇବେ । ୬୧ ।

ଭୀଷ୍ମ ପର୍ବରେ ଉତ୍ତମ ଯାନ ଦାନ କରି ସୁସଂସ୍କୃତ ସର୍ବଗୁଣୋପେତ ଅନ୍ନଭୋଜନ କରାଇବେ । ୬୨ । ଏବଂ ଦ୍ରୋଣ ପର୍ବରେ ବ୍ରାହ୍ମଣଙ୍କୁ ଉତ୍ତମ ଭୋଜନ କରାଇ ତାହାଙ୍କୁ ଧନୁଷ୍, ବାଣ ଓ ଉତ୍ତମ ଖଡ୍‌ଗ ପ୍ରଦାନ

Digitized by srujanika@gmail.com

କରିବେ । ୭୩ । କର୍ଣ୍ଣ ପର୍ବରେ ମଧ୍ୟ ସଂଯତମାନସ ହୋଇ ବ୍ରାହ୍ମଣଙ୍କୁ ତଦ୍ରୂପ ରୁଚିଅନୁକୂଳ ଉତ୍ତମ ଭୋଜନ କରାଇବେ । ୭୪ ।

ଶଲ୍ୟ ପର୍ବରେ ମୋଦକ, ଗୁଡ଼ଘୃତ, ପିଷ୍ଟକ ତଥା ତୃପ୍ତିକାରକ ଫଳାଦି ସହିତ ସକଳ ପ୍ରକାର ଉତ୍ତମ ଅନ୍ନ ଦାନ କରିବେ । ୭୫ । ଗଦା ପର୍ବରେ ମୁଗମିଶ୍ରିତ ଚାଉଳ ତଥା ସ୍ତ୍ରୀ ପର୍ବରେ ରତ୍ନଦାନ ଦ୍ୱାରା ବ୍ରାହ୍ମଣଙ୍କ ତୃପ୍ତିସାଧନ କରିବେ । ୭୬ ।

ଐଷୀକ ପର୍ବ ପାରାୟଣ ପ୍ରାରମ୍ଭରେ ବ୍ରାହ୍ମଣଙ୍କୁ ସୁପକ୍ୱ ଘୃତାନ୍ନ ଭୋଜନ କରାଇବେ । ୭୭ । ଶାନ୍ତି ପର୍ବରେ ହବିଷ୍ୟ ଭୋଜନ ଏବଂ ଆଶ୍ୱମେଧିକ ପର୍ବ ଆରମ୍ଭରେ ରୁଚିଅନୁକୂଳ ଉତ୍ତମ ଭୋଜନ ପ୍ରଦାନ କରିବେ । ୭୮ ।

ଆଶ୍ରମବାସିକ ପର୍ବରେ ବ୍ରାହ୍ମଣଙ୍କୁ ହବିଷ୍ୟ ଭୋଜନ ଏବଂ ମୌଷଳ ଓ ମହାପ୍ରାସ୍ଥାନିକ ପର୍ବ ସମାପ୍ତ ହେଲେ ସର୍ବଗୁଣସମ୍ପନ୍ନ ଅନ୍ନାଦି ସହିତ ଗନ୍ଧମାଲ୍ୟାନୁଲେପନ ପ୍ରଦାନ କରିବା ଉଚିତ । ୭୦ । ସ୍ୱର୍ଗାରୋହଣ ପର୍ବ ସମାପ୍ତ ହେଲେ ଦ୍ୱିଜଗଣଙ୍କୁ ହବିଷ୍ୟ ଭୋଜନ କରାଇବାର ବିଧେୟ ।

ହରିବଂଶ ସମାପ୍ତ ହେଲେ ସହସ୍ର ବ୍ରାହ୍ମଣଙ୍କୁ ଭୋଜନ କରାଇ ଜଣେ ବ୍ରାହ୍ମଣଙ୍କୁ ନିଷ୍କସମନ୍ୱିତ ଏକ ଗୋଦାନ କରିବାର ବିଧେୟ । ହେ ରାଜନ୍ ! ଶ୍ରୋତା ଦରିଦ୍ର ହୋଇଥିଲେ ତଦର୍ଦ୍ଧ ଦାନ କରିବାର ଉଚିତ । ୭୨ । ସର୍ବ ପର୍ବ ସମାପ୍ତ ହେଲେ ବିଚକ୍ଷଣ ଜନ ବାଚକଙ୍କୁ ସୁବର୍ଣ୍ଣସଂଯୁକ୍ତ ପୁସ୍ତକ ପ୍ରଦାନ କରିବେ । ହରିବଂଶ ପର୍ବରେ ବ୍ରାହ୍ମଣଗଣଙ୍କୁ ପାୟସ ଭୋଜନ କରାଇବାର ସମୁଚିତ । ୭୪ ।

ହେ ଭରତଶ୍ରେଷ୍ଠ ! ମହାରାଜ ! ପ୍ରତି ପାରାୟଣରେ ଶାସ୍ତ୍ରକୋବିଦ ମାନବ ପ୍ରଯତ୍ନ ହୋଇ ଯଥାବିଧି ସମସ୍ତ ସଂହିତା ସମାପନ୍, ପରେ କ୍ଷୌମ ବସ୍ତ୍ର ପରିବୃତ କରି ପବିତ୍ର ସ୍ଥାନରେ ରଖିବେ ଏବଂ ସ୍ୱୟଂ ଶୁକ୍ଳାମ୍ବରଧର, ମାଲ୍ୟବାନ୍, ସୁନ୍ଦରରୂପରେ ଅଳଂକୃତ ଓ ସମାହିତ ହୋଇ ପୃଥକ୍ ପୃଥକ୍ ସଂହିତା-ପୁସ୍ତକସମୂହଙ୍କୁ ଗନ୍ଧମାଲ୍ୟଦ୍ୱାରା ପୂଜା କରିବେ । ଭକ୍ଷ୍ୟ, ଭୋଜ୍ୟ, ପେୟ, ମାଲ୍ୟ ଏବଂ ବିବିଧ ପବିତ୍ର କାମ୍ୟବସ୍ତୁସମୂହ, ହିରଣ୍ୟ ଓ ସୁବର୍ଣ୍ଣ ଦକ୍ଷିଣା ଦାନ କରିବେ । ୭୭ ।

Digitized by srujanika@gmail.com

ତଦନନ୍ତର ସମସ୍ତ ଦେବଗଣଙ୍କର ଓ ନରନାରୀମାନଙ୍କର କୀର୍ତ୍ତନ କରିବେ । ୮୦ । ପରିଶେଷରେ ଦ୍ୱିଜବରଗଣଙ୍କୁ ଗନ୍ଧମାଲ୍ୟଦ୍ୱାରା ଅଲଂକୃତ କରି ବିବିଧ କାମ୍ୟ ବିଷୟ ଓ ନାନାବିଧ ଦାନଦ୍ୱାରା ପରିତୃପ୍ତ କରାଇବେ । ତେବେ ନର ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ଏବଂ ପ୍ରତି ପର୍ବ ପାରାୟଣରେ ଯଜ୍ଞଫଳ ପ୍ରାପ୍ତ ହୁଅନ୍ତି । ୮୨ ।

ହେ ଭରତଶ୍ରେଷ୍ଠ ! ଯାହାଙ୍କର ପଦ, ଅକ୍ଷର ଓ ସ୍ୱର ସ୍ପଷ୍ଟରୂପେ ଉଚ୍ଚାରିତ ହୁଏ, ତାଦୃଶ ବିଦ୍ୱାନ୍ ବାଚକ ମହାଭାରତ କିମ୍ବା ହରିବଂଶର ଭବିଷ୍ୟ ପର୍ବ ଶ୍ରୋତାଙ୍କୁ ଶ୍ରବଣ କରାଇବେ । ୮୩ । ପୁରାଣଶ୍ରବଣ ପରେ ଦ୍ୱିଜବରଗଣଙ୍କୁ ଭୋଜନ ଦେଇ ସେମାନଙ୍କୁ ଯଥାବିଧି ଦାନ ଦେବାର ବିଧେୟ ।

ହେ ଭରତପ୍ରବର ! ବାଚକଙ୍କୁ ସୁନ୍ଦରରୂପେ ବସ୍ତ୍ରଭୂଷଣରେ ଅଲଂକୃତ କରି ଭୋଜନ କରାଇ ସେମାନଙ୍କର ସନ୍ତୋଷ ବର୍ଦ୍ଧନ କଲେ ଅନୁତ୍ତମା କଲ୍ୟାଣଦାୟିନୀ ପ୍ରୀତି ହୁଏ । ବ୍ରାହ୍ମଣଗଣ ପରିତୁଷ୍ଟ ହେଲେ ସମସ୍ତ ଦେବତା ପ୍ରସନ୍ନ ହୁଅନ୍ତି । ୮୪ ।

ଅତଏବ ହେ ଭରତଶ୍ରେଷ୍ଠ ! ସାଧୁସ୍ୱଭାବଯୁକ୍ତ ମହାଭାରତ ଶ୍ରୋତା ନ୍ୟାୟପୂର୍ବକ ବ୍ରାହ୍ମଣଗଣଙ୍କୁ ବରଣ କରି ସେମାନଙ୍କ ବିଭିନ୍ନ ପ୍ରକାର ଇଚ୍ଛା ପୂରଣ ପୂର୍ବକ ସେମାନଙ୍କୁ ଯଥୋଚିତ ପୂଜାକରିବା ବିଧେୟ । ୮୫ ।

ହେ ନରବର ! ଆମ୍ଭେ ଆପଣଙ୍କ ନିକଟରେ ଏହି ମହାଭାରତ ପାଠର ବିଧି କହିଲୁଁ । ଅତଏବ ଆପଣ ଆମ୍ଭଙ୍କୁ ଯାହା ପଚାରିଅଛ ତଦ୍‌ବିଷୟରେ ଶ୍ରଦ୍ଧାନ୍ୱିତ ହେବାର ବିଧେୟ । ୮୭ ।

ହେ ନୃପବର ! ଯେଉଁ ବ୍ୟକ୍ତି ପରମ ମଙ୍ଗଳ କାମନା କରନ୍ତି, ତାହାଙ୍କର ମହାଭାରତ ଶ୍ରବଣରେ ଓ ପାରାୟଣରେ ସର୍ବଦା ଯତ୍ନବାନ୍ ହେବା ଉଚିତ । ୮୮ ।

ନିତ୍ୟ ମହାଭାରତ ଶ୍ରବଣ କରିବେ, ନିୟତଭାବେ ମହାଭାରତ କୀର୍ତ୍ତନ କରିବେ । ଯାହାଙ୍କ ସଦନରେ ମହାଭାରତ ଥାଆନ୍ତି, ତାହାଙ୍କର ଜୟ କରଗତ ହୋଇଥାଏ । ଭାରତ ପରମ ପବିତ୍ର ଗ୍ରନ୍ଥ । ଭାରତରେ ବିବିଧ କଥା

Digitized by srujanika@gmail.com

ବିଦ୍ୟମାନ ରହିଅଛି । ଦେବଗଣ ଭାରତ ସେବା କରନ୍ତି । ଭାରତ ପରମପଦ । ୯୦ ।

ହେ ଭରତଶ୍ରେଷ୍ଠ ! ଭାରତ ସର୍ବଶାସ୍ତ୍ର ଅପେକ୍ଷା ଶ୍ରେଷ୍ଠ । ଭାରତରୁ ମୋକ୍ଷଲାଭ ହୁଏ । ଆମ୍ଭେ ତତ୍ତ୍ୱ କଥା କହୁଅଛୁଁ । ୯୧ । ମହାଭାରତ ଆଖ୍ୟାନ, କ୍ଷିତି, ଗୌ, ସରସ୍ୱତୀ, ବ୍ରାହ୍ମଣଗଣ ଏବଂ କେଶବଙ୍କୁ କୀର୍ତ୍ତନ କଲେ ମନୁଷ୍ୟ ଅବସନ୍ନ ହୁଅନ୍ତି ନାହିଁ । ୯୨ ।

ହେ ଭରତଶ୍ରେଷ୍ଠ ! ବେଦ, ରାମାୟଣ ଓ ପବିତ୍ର ପୁରାଣ ଭାରତର ଆଦି, ଅନ୍ତ ଓ ମଧ୍ୟରେ ସର୍ବତ୍ର ହରିନାମ କୀର୍ତ୍ତିତ ହୋଇ ରହିଅଛି । ୯୩ । ଯେଉଁ ସ୍ଥାନରେ ପବିତ୍ର ବିଷ୍ଣୁକଥା ଓ ସନାତନ ଶ୍ରୁତିସମୂହ କୀର୍ତ୍ତିତ ହୁଏ, ପରମପଦାଭିଳାଷୀ ମାନବ ସେଠାରେ ତାହା ଅବଶ୍ୟ ଶ୍ରବଣ କରିବେ ।୯୪। ଏହା ପରମ ପବିତ୍ର, ଏହା ଧର୍ମର ନିଦର୍ଶନ, ଏବଂ ଏହା ସର୍ବଗୁଣସମ୍ପନ୍ନ । ଅତଏବ ଐଶ୍ୱର୍ଯ୍ୟ ଅଭିଳାଷୀ ମାନବ ତାହା ଅବଶ୍ୟ ଶ୍ରବଣ କରିବେ । ୯୫ ।

ସୂର୍ଯ୍ୟୋଦୟ ହେଲେ ଅନ୍ଧକାର ଯେଉଁରୂପେ ନଷ୍ଟ ହୁଏ, ତଦ୍‌ବତ୍ ଏହା ଶ୍ରବଣ କଲେ କାୟିକ, ବାଚକ ଓ ମାନସିକ ସମୁଦାୟ ପାପ ବିଲୟପ୍ରାପ୍ତ ହୁଏ । ୯୬। ଅଷ୍ଟାଦଶ ପୁରାଣ ଶ୍ରବଣ କଲେ ଯେଉଁ ଫଳ ହୁଏ, ବୈଷ୍ଣବ ଜନ ମହାଭାରତ ଶ୍ରବଣ କଲେ ସେହି ଫଳ ପ୍ରାପ୍ତ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ । ୯୭ ।

ନାରୀଗଣ ଓ ନରଗଣ ଏହା ଶ୍ରବଣ କଲେ ବୈଷ୍ଣବପଦ ପ୍ରାପ୍ତ ହୁଏ । ପୁତ୍ରକାମା ସ୍ତ୍ରୀଗଣଙ୍କର ବୈଷ୍ଣବ ଯଶ ସ୍ୱରୂପ ଏହି ମହାଭାରତ ଶ୍ରବଣ କରିବାର ଉଚିତ । ୯୮ । ଯଥୋକ୍ତ ମାନାଭିଳାଷୀ ନର ଏହା ଶ୍ରବଣ ପୂର୍ବକ ବ୍ରାହ୍ମଣଙ୍କୁ ଯଥାଶକ୍ତି ସୁବର୍ଣ୍ଣ ଦକ୍ଷିଣା ଦାନ କରିବେ । ୯୯ । ଯେଉଁ ବ୍ୟକ୍ତି ଆପଣାର ଶ୍ରେୟ ଇଚ୍ଛା କରନ୍ତି ସେ ବାଚକଙ୍କୁ ସୁବର୍ଣ୍ଣଶୃଙ୍ଗୀ ସବତ୍ସା ବସ୍ତ୍ରସମ୍ବୃତା କପିଳା ଧେନୁ ଦାନ କରିବେ । ୧୦୦ ।

ହେ ଭରତଶ୍ରେଷ୍ଠ ! ପବିତ୍ର ମାନବ ବାଚକଙ୍କୁ ସ୍ୱର୍ଣ୍ଣ କଙ୍କଣ ଓ କୁଣ୍ଡଳ ଦାନ କରିବେ । ଏହାପରେ ବିଶେଷରୂପେ ଅନ୍ୟାନ୍ୟ ବସ୍ତୁ ଦାନ କରିବେ । ଭୂମିଦାନ ସଦୃଶ ଦାନ ନାହିଁ ଓ ହେବ ନାହିଁ । ୧୦୧ । ଶ୍ରୋତା ପାଠକମାନଙ୍କୁ ଭୂମିଦାନ କରିବା ଉଚିତ । ୧୦୨ ।

Digitized by srujanika@gmail.com

ଯେଉଁ ନର ସର୍ବଦା ମହାଭାରତ ଶ୍ରବଣ କରନ୍ତି ସେ ସର୍ବପାପରୁ ବିମୁକ୍ତ ହୋଇ ବୈଷ୍ଣବପଦ ପ୍ରାପ୍ତ ହୁଅନ୍ତି । ୧୦୩ । ସେ ଏକାଦଶପୁରୁଷ ପର୍ଯ୍ୟନ୍ତ ପିତୃଲୋକଗଣଙ୍କ ସହିତ ପିତାଙ୍କର ଏବଂ ପତ୍ନୀଙ୍କର ଓ ପୁତ୍ରଙ୍କର ଉଦ୍ଧାର ସାଧନ କରନ୍ତି । ୧୦୪ ।

ହେ ନରାଧିପ ! ନରଶ୍ରେଷ୍ଠ ! ମହାଭାରତ ଶ୍ରବଣ ଉତ୍ତାରୁ ଦଶସହସ୍ର ହୋମ କରିବା ଆବଶ୍ୟକ । ଆପଣଙ୍କ ନିକଟରେ ଆମ୍ଭେ ଏହି ସମସ୍ତ ବିଷୟ କହିଲୁଁ । ୧୦୫ । ଯେଉଁ ଲୋକ ଭକ୍ତିରେ ଆଦ୍ୟପର୍ବ ଠାରୁ ଏହି ମହାଭାରତ ଶ୍ରବଣ କରନ୍ତି ସେ ବ୍ରହ୍ମହା, ଗୁରୁତଳ୍ପଗାମୀ, ସୁରାପାୟୀ, ସ୍ତେୟକାରକ, ଅଧିକ କି କହିବା, ଚଣ୍ଡାଳଯୋନିରେ ଜନ୍ମଗ୍ରହଣ କରିଥିଲେ ସୁଦ୍ଧା ସଦ୍ୟ ପାପରୁ ମୁକ୍ତ ହୁଅନ୍ତି । ଦିବାକର ଯେଉଁପରି ଅନ୍ଧକାର ହରଣ କରନ୍ତି, ତଦ୍‌ବତ୍ ସେ ସମସ୍ତ ପାପ ପରିହାର କରି ବିଷ୍ଣୁଲୋକରେ ବିଷ୍ଣୁଙ୍କ ସଦୃଶ ପ୍ରମୋଦ ପ୍ରାପ୍ତ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ । ୧୦୬ ।

ମହାଭାରତ-ମାହାତ୍ମ୍ୟ ଓ ଅଷ୍ଟାଦଶ ପର୍ବ ସମ୍ପୂର୍ଣ୍ଣ ।

**ସ୍ୱସ୍ତି ସ୍ୱସ୍ତି ସ୍ୱସ୍ତି ସ୍ୱସ୍ତି ସ୍ୱସ୍ତି**



ବ୍ରହ୍ମପୁର : ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କ୍‌ସ୍‌ରେ, ଶ୍ରୀ ହାଡ଼ୁ ସାହୁ ଗୁରୁଙ୍କ ଦ୍ୱାରା ମୁଦ୍ରିତ । ୧୯୬୫ ।

Digitized by srujanika@gmail.com